

# ଆର୍ତ୍ତବଲ୍ଲଭ ରଚନାସମଗ୍ର

ମୁଖ୍ୟ ସଂପାଦକ:
ପ୍ରଫେସର ପ୍ରକାଶ ଚନ୍ଦ୍ର ଷଡ଼ଙ୍ଗୀ

ସଂପାଦକ: ଗୌରାଙ୍ଗ ଚରଣ ଦାଶ

# ଆର୍ତ୍ତବଲ୍ଲଭ ରଚନାସମଗ୍ର

## ଦ୍ୱିତୀୟଭାଗ

ମୁଖ୍ୟ ସଂପାଦକ

ପ୍ରଫେସର ପ୍ରକାଶ ଚନ୍ଦ୍ର ଷଡ଼ଙ୍ଗୀ

ସଂପାଦନା

ଗୌରାଙ୍ଗ ଚରଣ ଦାଶ




ରେଭେନ୍‌ସା ବିଶ୍ୱବିଦ୍ୟାଳୟ

କଟକ

ଆର୍ତ୍ତବଲ୍ଲଭ ରଚନାସମଗ୍ର
ଦ୍ୱିତୀୟଭାଗ
ମୁଖ୍ୟ ସଂପାଦକ
ପ୍ରଫେସର ପ୍ରକାଶ ଚନ୍ଦ୍ର ଷଡ଼ଙ୍ଗୀ
ସଂପାଦନା
ଗୌରାଙ୍ଗ ଚରଣ ଦାଶ
ପ୍ରକାଶକ: କୁଳସଚିବ, ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ

ପ୍ରଥମ ପ୍ରକାଶନ : ୨୦୧୫
ମୁଦ୍ରକ : ରେଭେନ୍ସା ବିଶ୍ୱବିଦ୍ୟାଳୟ ପ୍ରେସ୍, କଟକ
ପ୍ରଚ୍ଛଦ : ରଂଜିତ ପରିଜା
ଅକ୍ଷରସଜ୍ଜା: ମନୁ ସେଠୀ
ମୂଲ୍ୟ: ସାଧାବନ୍ଧେଇ: ଟ ୧୫୦ଙ୍କା ମାତ୍ର
କନାବନ୍ଧେଇ: ଟ ୨୦୦ଙ୍କା ମାତ୍ର

**Complete works of Artaballabha Mohanty**

Vol: 2
**Chief Editor**
Prof. Prakash Chandra Sarangi
**Editor**
Gouranga Charan Dash
Publisher
Registrar, Ravenshaw University, Cuttack

1st Edition: 2015
Printed at : Ravenshaw University Press, Cuttack
Cover design : Ranjit Parija
Layout : Manu Sethy
*Price : Paper back: Rs. 150 only*
*Cloth bound: Rs. 200 only*

## ସମର୍ପଣ

ଆର୍ତ୍ତବଲ୍ଲଭଙ୍କ ସୁଯୋଗ୍ୟ ଉତ୍ତରାଧିକାରୀ

ଶ୍ରୀଯୁକ୍ତ ହୃଦୟବଲ୍ଲଭ ମହାନ୍ତିଙ୍କୁ

ଶ୍ରଦ୍ଧାର ସହ

**ପ୍ରକାଶ ଚନ୍ଦ୍ର ଷଡଙ୍ଗୀ**

# ସୂଚିପତ୍ର

ଅ ଗ୍ର ଲେ ଖ

ବିଶ୍ୱବିଦ୍ୟାଳୟ ପ୍ରକାଶନ-ଯାତ୍ରାର ଏହା ଦ୍ୱିତୀୟ ପାଦ। ନାୟକ, ଆର୍ତ୍ତବଲ୍ଲଭ ମହାନ୍ତି। ପ୍ରଥମ ପାଦର ବିଷୟ ଥିଲା, ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ତାଙ୍କ ସମ୍ପାଦିତ ଗ୍ରନ୍ଥଗୁଡ଼ିକର ମୁଖବନ୍ଧ। ଏଥିରେ ଅଛି- ପ୍ରବନ୍ଧ, ସାହିତ୍ୟ-ଚର୍ଚ୍ଚା, ଅଭିଭାଷଣ ଓ ତିନିଖଣ୍ଡ ବହିର ମୁଖବନ୍ଧ। ଉପର୍ଯ୍ୟୁକ୍ତ ଲେଖାଗୁଡ଼ିକ ସମ୍ପର୍କରେ ଅନେକ ଆର୍ତ୍ତବଲ୍ଲଭପ୍ରିୟଙ୍କର ସ୍ପଷ୍ଟ ଧାରଣା ନ ଥିଲା। ସେମାନେ 'ରତ୍ନବତ୍' ମଣୁଥିବା ମୁଖବନ୍ଧଗୁଡ଼ିକ ଭିତରେ ନିଜନିଜକୁ କିଳି ରଖିଥିଲେ। ଏବେ ଆର୍ତ୍ତଲ୍ଲଭ ସମଗ୍ର ଆଉ ଅପୂର୍ଣ୍ଣ ନୁହେଁ, ପ୍ରାୟତଃ ପୂର୍ଣ୍ଣ।

ଅନେକଙ୍କର କେଜାଣି କାହିଁକି ବିଚିତ୍ର ଧାରଣା ରହିଛି, ପ୍ରାଚୀନ ଗ୍ରନ୍ଥର ସମ୍ପାଦନା କେବଳ ତାଳପତ୍ରସ୍ଥ ଶବ୍ଦପୁଞ୍ଜର ପ୍ରତିଲିପୀକରଣ। ସେମାନେ ଜାଣନ୍ତି ନାହିଁ, ତାଳପତ୍ରକୁ ଆଖିଆଗରେ ରଖି, ଅକ୍ଷର ସହିତ ଅକ୍ଷର ଯୋଡ଼ି ଶବ୍ଦ/ପଦ, ଶବ୍ଦ ସହିତ ଶବ୍ଦ ଯୋଡ଼ି ପାଦ, ପାଦକୁ ପାଦ ଯୋଡ଼ି ପଦ ତିଆରି କରାଯାଏ। ପାଦ ଓ ପାଦର ଯୋଡ଼ଣ ମାଧ୍ୟମରେ ଶେଷକୁ ତିଆରି ହୋଇଯାଏ ଗ୍ରନ୍ଥଟିଏ। ଏତିକିରେ କାମ ଶେଷ ହୁଏନାହିଁ। ଶେଷକୁ ଗ୍ରନ୍ଥସ୍ଥ ବିଷୟ ଓ ବିଦ୍ୟାକୁ ବ୍ୟାଖ୍ୟା କରିବାକୁ ପଡ଼େ। ଜଣେ ବହୁ ବିଦ୍ୟା-ଅବଗାହୀ ହୋଇ ନ ଥିଲେ ଗ୍ରନ୍ଥଟିଏ ତିଆରି କରିପାରିବେନାହିଁ। ସଂକଳନସ୍ଥ ପ୍ରବନ୍ଧ ଓ ଅନ୍ୟ ରଚନାଗୁଡ଼ିକ ପଢିଲେ ଜଣେ ପାଠକ ଜାଣିପାରିବେ, ସମ୍ପାଦକ ଆର୍ତ୍ତବଲ୍ଲଭ କେତେ ବିଦ୍ୟାତୀର୍ଥରେ ଅବଗାହନ କରିଛନ୍ତି। ତାଙ୍କ ବିଦ୍ୟା-ଅବବୋଧ କେତେ ସ୍ପଷ୍ଟ ଓ ଅନ୍ତର୍ଦୃଷ୍ଟି କେତେ ତୀକ୍ଷ୍ଣ। ବିଶ୍ୱବିଦ୍ୟାଳୟ ଜଣେ ଅନ୍ତର୍ଦୃଷ୍ଟିସମ୍ପନ୍ନ ଓ ଇତିହାସ-ପୁରୁଷଙ୍କ ବ୍ୟକ୍ତିତ୍ୱ ସମୁଦ୍‌ଭାସନର ସୁଯୋଗ ପାଇଛି। ସୁଯୋଗଦାତାମାନଙ୍କୁ ଏହି ଅବକାଶରେ ସ୍ମରଣ କରୁଛି।

୨୩ ଅଗଷ୍ଟ, ୨୦୧୪ ମସିହାରେ ଆର୍ତ୍ତବଲ୍ଲଭ ରଚନାସମଗ୍ର, ପ୍ରଥମଭାଗ, ଲୋକାର୍ପିତ ହୋଇଛି । ଉତ୍ସବରେ ଆମ ଗହଣରେ ବର୍ତ୍ତମାନ ଥିଲେ ବିଖ୍ୟାତ କବି ପଦ୍ମଭୂଷଣ ରମାକାନ୍ତ ରଥ, ଆର୍ତ୍ତବଲ୍ଲଭଙ୍କ ସୁପୁତ୍ର ଶ୍ରୀ ହୃଦୟବଲ୍ଲଭ ମହାନ୍ତି ଓ ବିଖ୍ୟାତ ଗବେଷକ ପ୍ରଫେସର ଦାଶରଥି ଦାସ । ସଂପୃକ୍ତ ସକଳଙ୍କ ବକ୍ତବ୍ୟ ଏହି ସଂକଳନରେ ସ୍ଥାନିତ ହୋଇଛି । ମାତ୍ର, ଯଥାର୍ଥତଃ, ବିଶ୍ୱବିଦ୍ୟାଳୟ ପ୍ରକାଶନର ସୂତ୍ରଧର ପ୍ରାକ୍ତନ କୁଳପତି ଶ୍ରୀ ବୈଷ୍ଣବ ଚରଣ ତ୍ରିପାଠୀ ଏବଂ ଆର୍ତ୍ତବଲ୍ଲଭ ରଚନାସମଗ୍ର ସଂକଳନ ପରି ଦୂରୁହ କାର୍ଯ୍ୟର ସଂଯୋଜକ ଥିଲେ- ବିଶ୍ୱବିଦ୍ୟାଳୟ ପ୍ରାକ୍ତନ ଛାତ୍ର ଓ ଶିକ୍ଷକ, ସର୍ବଶ୍ରୀ ଗିରୀଶ ଚନ୍ଦ୍ର ମିଶ୍ର, ନଟବର ଶତପଥୀ, ବାବାଜୀ ଚରଣ ପଟ୍ଟନାୟକ । ଶ୍ରୀ ହୃଦୟବଲ୍ଲଭ ମହାନ୍ତି ଓ ତାଙ୍କ ପରିବାରର ଅନ୍ୟ ସଦସ୍ୟମାନେ ପ୍ରକାଶନ ସଂକ୍ରାନ୍ତ ସକଳ ଆବଶ୍ୟକତାର ଉତ୍ସ ଓ ଉତ୍ସାହଦାତା । ଅତ୍ୟନ୍ତ ଆନନ୍ଦର କଥା, ପ୍ରକାଶନର ମାତ୍ର ଏକ ବର୍ଷ ଅବଧିରେ ଗ୍ରନ୍ଥ ବିପୁଳ ପାଠକ-ସ୍ୱୀକୃତି ଓ ଶ୍ରଦ୍ଧା ପାଇଛି । ଏବଂ, ସେମାନଙ୍କ ଶ୍ରଦ୍ଧା 'ସମଗ୍ର'କୁ ପୂର୍ଣ୍ଣ କରିବା ପାଇଁ ଆମକୁ ଯଥାର୍ଥତଃ ଅନୁବନ୍ଧିତ ଓ ଅନୁପ୍ରେରିତ କରିଛି । ଏହା, ଯଥାର୍ଥତଃ, ଆମର ନୁହେଁ, ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱ ପ୍ରତି ସ୍ୱୀକୃତି ।

ଆର୍ତ୍ତବଲ୍ଲଭ ରଚନାସମଗ୍ରକୁ ପୂର୍ଣ୍ଣତା ଦେବା କ୍ଷେତ୍ରରେ ଆମେ ବହୁ ଅନୁଷ୍ଠାନର କର୍ମକର୍ତ୍ତାଙ୍କ ପାଖରେ ଋଣୀ । ସେମାନେ- ରାଜ୍ୟ ଅଭିଲେଖାଗାର, କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଉତ୍କଳ ସାହିତ୍ୟ ସମାଜ, ରେଭେନ୍ସା ବିଶ୍ୱବିଦ୍ୟାଳୟ ଏବଂ ବାଲେଶ୍ୱରସ୍ଥ କବି ବ୍ରଜନାଥ ରଥଙ୍କ ବ୍ୟକ୍ତିଗତ ପାଠାଗାରାର କର୍ମକର୍ତ୍ତା । ଆର୍ତ୍ତବଲ୍ଲଭଙ୍କ ଏକ ହିନ୍ଦୀ ରଚନାକୁ ପ୍ରଫେସର ସ୍ୱରପ୍ରିୟା ମିଶ୍ର ଅନୁବାଦ କରିଛନ୍ତି । ଏବଂ, ଏହି କାର୍ଯ୍ୟକୁ ଯଥାଶୀଘ୍ର ସମ୍ପାଦନ କରିବାପାଇଁ ପ୍ରରଣାର ଉତ୍ସ ହୋଇଛନ୍ତି ଆର୍ତ୍ତବଲ୍ଲଭ ସ୍ମୃତି ସଂସଦର କର୍ମକର୍ତ୍ତାମାନେ । ଏହି ଅବକାଶରେ ସମ୍ପୃକ୍ତ ସକଳଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜଣାଉଛି ।

ପ୍ରକାଶ ଚନ୍ଦ୍ର ଷଡଙ୍ଗୀ

୩୦ ସେପ୍ଟେମ୍ବର, ୨୦୧୫

# ଅବତରଣିକା

ଏକ

ଏ କଥା ମାନିନେବାରେ କାହାରି ଟିକେ ମାତ୍ର କିନ୍ତୁ ନାହିଁ ଯେ, ଆର୍ତ୍ତବଲ୍ଲଭ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ଅନ୍ୟତମ ବିଦଗ୍ଧ ଅବଗାହୀ । ପ୍ରଥମେ ଆପଣା ଉଦ୍ୟମ ଓ ପରେ ପ୍ରାଚୀ ସମିତି ନାମକ ଅନୁଷ୍ଠାନ ଗଢଣ ମାଧ୍ୟମରେ ସେ ନିଜେ ଓ ଆପଣା ସମଧର୍ମାମାନଙ୍କ ମାଧ୍ୟମରେ ଚଉବନଖଣ୍ଡ ବହି ପ୍ରକାଶ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ତାଙ୍କ ସମ୍ପାଦିତ ବହିର ସଂଖ୍ୟା ସଇଁତିରିଶ । ତାଙ୍କ ତିରୋଧାନ(୧୯୬୩) ପରେ ଓଡ଼ିଶା ରାଜ୍ୟ ସଂସ୍କୃତି ବିଭାଗ ସରଳା ଦାସଙ୍କ ମହାଭାରତର ଶୁଦ୍ଧ ସଂସ୍କରଣ ମଧ୍ୟ ପ୍ରକାଶ କରିଛି । ବହିଗୁଡ଼ିକ ତାଙ୍କ ଜାତିପ୍ରୀତିର ଅନବଦ୍ୟ ଉଦାହରଣ ।

ମାତ୍ର ସର୍ଜନ-ଭୂମିରେ ଆର୍ତ୍ତବଲ୍ଲଭଙ୍କର ଅନ୍ୟ ପରିଚୟ ରହିଛି । ସେ ଜଣେ ପ୍ରାବନ୍ଧିକ, ସାହିତ୍ୟ-ସମାଲୋଚକ ଓ ମୁଖବନ୍ଧ-ରଚନାକାର । ସାଧାରଣ ଓ ବିଦଗ୍ଧ ପାଠକ ତାଙ୍କ ବ୍ୟକ୍ତିତ୍ୱର ଏଇ ବିଶେଷ ଅନୁରକ୍ତି ସମ୍ପର୍କରେ କେଜାଣି କାହିଁକି ଚର୍ଚ୍ଚା କରିନାହାନ୍ତି । ଏପରିକି ତାଙ୍କ ସାଧନାର ମୁଗ୍ଧ ଚର୍ଚ୍ଚାକାର ନଟବର ସାମନ୍ତରାୟ ଏବଂ ବଂଶୀଧର ମହାନ୍ତି ଓଡ଼ିଆ ସାହିତ୍ୟ ଅଧ୍ୟାପନକୁ ଆର୍ତ୍ତବଲ୍ଲଭଙ୍କ ଦାନ ଶୀର୍ଷକ ଗ୍ରନ୍ଥରେ ଏ ସମ୍ପର୍କରେ ସୂଚନା ମଧ୍ୟ ଦେଇନାହାନ୍ତି ।[୧] ଇତିମଧ୍ୟରେ ତାଙ୍କ ତିରୋଧାନର ଚାଳିଶରୁ ଅଧିକ ବର୍ଷ ବିତିଗଲାଣି । ଉପର୍ଯ୍ୟୁକ୍ତ ଶୀର୍ଷକ ରଚନାଗୁଡ଼ିକ ତଥାପି ତାଙ୍କ ମୁଗ୍ଧ ପ୍ରାଚୀ ପରିବାରର ସଦସ୍ୟମାନଙ୍କ ବିଶ୍ୱସ୍ତତାକୁ ଆନ୍ଦୋଳିତ କରିପାରିନାହିଁ । ଏହି ସଂକଳନ ତାଙ୍କ ବିକ୍ଷିପ୍ତ ବିଭବଗୁଡ଼ିକର ସଂପାଦିତ ରୂପ । ବିଭବଗୁଡ଼ିକୁ ଭୂମିକରି ତାଙ୍କ ବ୍ୟକ୍ତିତ୍ୱର ପୁନଃ-ସର୍ଜନା କରାଯାଇପାରିବ ।

ଦୁଇ

ପ୍ରସ୍ତୁତ ଗ୍ରନ୍ଥରେ ଆର୍ତ୍ତବଲ୍ଲଭଙ୍କ ରଚନାଗୁଡ଼ିକୁ ଚାରିଭାଗରେ ବିଭକ୍ତ କରାଯାଇଛି । ସେଗୁଡ଼ିକର କ୍ରମ ଏହିପରି-

ଅଭିଭାଷଣ

କଟକସ୍ଥ ଉତ୍କଳ ସାହିତ୍ୟ ସମାଜର ଏକତ୍ରିଂଶ ବାର୍ଷିକ ଅଧିବେଶନରେ ଏହି ଅଭିଭାଷଣ ପ୍ରଦତ୍ତ ଏବଂ ଉତ୍କଳ ସାହିତ୍ୟ: ୩୮ଶ ଭାଗ, ୧୦ମ ସଂଖ୍ୟା- ୧୩୪୨ ସାଲ, ମାଘ ମାସରେ ପ୍ରକାଶିତ, ୧୯୩୬ ମସିହା)

ପ୍ରବନ୍ଧ

ଭାରତର ପ୍ରାଚୀନ ନୀତି: ମୁକୁର,୯ମ ଭାଗ, ୨ୟ, ୩ୟ, ୪ର୍ଥ, ୫ମ, ୬ଷ୍ଠ ଓ ୭ମ ସଂଖ୍ୟା (ଏହା ବାମଣ୍ଡା – ରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଓଡ଼ିଶା ଇଉନିଅନର ଏକ ଅଧିବେଶନରେ ପଠିତ)
ସାରିପୁତ୍ର ଓ ମୋଗଗଲ୍ଲାନ : ଝଙ୍କାର, ତୃତୀୟ ବର୍ଷ, ଚତୁର୍ଥ ସଂଖ୍ୟା, ୧୩୫୮ ସାଲ, କଟକ, ଜୁଲାଇ- ୧୯୫୧
ଶିଷ୍ଟତା : ଝଙ୍କାର, ତୃତୀୟ ବର୍ଷ, ୭ମ ସଂଖ୍ୟା, ୧୩୫୮ ସାଲ, ଅକ୍ଟୋବର, ୧୯୫୧
ମହିଷାସୁରମର୍ଦ୍ଦିନୀ : ଝଙ୍କାର, ୬ଷ୍ଠ ବର୍ଷ, ୬ଷ୍ଠ ସଂଖ୍ୟା, କନ୍ୟା ୧୩୬୧, ସେପ୍ଟେମ୍ବର, ୧୯୫୪
ସୁସ୍ଥିତି: ଝଙ୍କାର, ୭ମ ବର୍ଷ, ୮ମ ସଂଖ୍ୟା, ୧୩୬୨ ସାଲ, ନଭେମ୍ବର, ୧୯୫୫
ଶ୍ରୀକୃଷ୍ଣଙ୍କ ସ୍ୱରୂପ ନିର୍ଣ୍ଣୟ: ଝଂକାର, ୭ମ ବର୍ଷ, ୧୦ମ ସଂଖ୍ୟା, ମକର- ୧୩୬୨, ଜାନୁଆରି, ୧୯୫୫
ଶକ୍ତି: ଝଂକାର, ଅଷ୍ଟମ ବର୍ଷ, ୬ଷ୍ଠ ସଂଖ୍ୟା, ୧୩୬୩ ସାଲ, ସେପ୍ଟେମ୍ବର, ୧୯୫୬
ଧର୍ମସଂସ୍ଥାନ : ଝଂକାର, ୯ମ ବର୍ଷ, ୯ମ ସଂଖ୍ୟା, ଧନୁ ୧୩୬୫, ସାଲ, ଡିସେମ୍ବର, ୧୯୫୭
ଦୁର୍ଗାପୂଜା : ଝଂକାର, ଦଶମ ବର୍ଷ, ୬ଷ୍ଠସଂଖ୍ୟା, କନ୍ୟା, ୧୩୬୪. ସାଲ, ସେପ୍ଟେମ୍ବର, ୧୯୫୮
ଭାରତରେ ଧମର୍ର ଗତି ଓ ତା'ର ପ୍ରବାହ: ଝଂକାର, ୧୦ମ ବର୍ଷ, ୮ମ, ୧୦ମ ଓ ୧୧ତମ ସଂଖ୍ୟା, ବିଛା ୧୩୬୬, ନଭେମ୍ବର, ୧୯୫୯, ଜାନୁଆରି, ଫେବ୍ରୁଆରି, ୧୯୫୮
ପ୍ରଚ୍ଛନ୍ନ: କୋଣାର୍କ, ୧ମ ବର୍ଷ, ପ୍ରଥମ ସଂଖ୍ୟା, ସେପ୍ଟେମ୍ବର, ୧୯୫୮
ବେଦ ଓ ଉପନିଷଦରେ ହିମାଳୟ: ଝଂକାର, ୧୫ଶ ବର୍ଷ, ୭ମ ସଂଖ୍ୟା, ଅକ୍ଟୋବର, ୧୯୬୩
Kalinga and Telengana: The Prachi, ପ୍ରଥମ ବର୍ଷ, ତୃତୀୟ ସଂଖ୍ୟା, ପୃ. ୭୨-୭୯, ୧୯୩୧
ସାହିତ୍ୟ-ଚର୍ଚ୍ଚା
ଏକାବଳୀ : ମୁକୁର, ୭ମ ଭାଗ, ୮ମ ଓ ୯ମ ସଂଖ୍ୟା
ଓଡ଼ିଶାରେ ପୁରାଣ ସାହିତ୍ୟର ବୈଶିଷ୍ଟ୍ୟ : ଝଂକାର ୮ମ ବର୍ଷ, ୧ମ ସଂଖ୍ୟା ୧୩୬୩, ସାଲ, ଏପ୍ରିଲ୍, ୧୯୫୬
ଉତ୍କଳ ଓ କବିସମ୍ରାଟ ଉପେନ୍ଦ୍ରଭଞ୍ଜ: କୋଣାର୍କ, ୨ୟ ବର୍ଷ, ୨ୟ ଓ ଚତୁର୍ଥ ସଂଖ୍ୟା, ୧୯୫୯
ସାରଳା ଦାସ : ସାରଳା ସ୍ମରଣିକା, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ,୧୯୫୪
ଓଡ଼ିଆ ସାହିତ୍ୟ (ପୂର୍ବ-ମଧ୍ୟକାଳୀନ) : ରାଷ୍ଟ୍ରଭାଷା ସୁବର୍ଣ୍ଣ ଜୟନ୍ତୀ ବିଶେଷାଙ୍କ(ହିନ୍ଦୀ) ୧୯୫୮
ମୁଖବନ୍ଧ
ପ୍ରେମଚିନ୍ତାମଣି : କୁନ୍ତଳା କୁମାରୀ ସାବତ, ୧୯୩୦, ପ୍ରାଚୀ ପ୍ରେସ୍, କଟକ
କବିତାକୁମୁଦ: ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ୧୯୪୬, କଳିଙ୍ଗଭାରତୀ, କଟକ
ଜାନକୀବଲ୍ଲଭ ବିଳାସ: ଗୋକୁଳାନନ୍ଦ ପଟ୍ଟନାୟକ, ୧୯୩୦, ୧୯୬୪

ପ୍ରକାଶଥାଉ କି, ଜଣେ ମୁଖବନ୍ଧ ରଚୟିତା ରୂପରେ ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର । ମୁଖବନ୍ଧଗୁଡ଼ିକ ଗ୍ରନ୍ଥ-ବୈଶିଷ୍ଟ୍ୟ ଓ କବି-ବ୍ୟକ୍ତିତ୍ୱର ସୂକ୍ଷ୍ମ ଅବଲୋକନ । ମାତ୍ର ଉପର୍ଯ୍ୟୁକ୍ତ ମୁଖବନ୍ଧଗୁଡ଼ିକର ସ୍ୱାତନ୍ତ୍ର୍ୟ, ସେ ଗ୍ରନ୍ଥଗୁଡ଼ିକର ସଂପାଦନା କରିନାହାନ୍ତି, ସଂପାଦିତ ଓ ରଚିତ ଗ୍ରନ୍ଥଗୁଡ଼ିକ ସମ୍ପର୍କରେ ଆପଣାର ସହୃଦୟତାକୁ ପ୍ରକାଶ କରିଛନ୍ତି ।

ଅର୍ଥାତ୍, ତାଙ୍କ ଆଖି ମାଧ୍ୟମରେ କୁନ୍ତଳା କୁମାରୀ, ବିଚ୍ଛନ୍ଦ ଓ ଗୋକୁଳାନନ୍ଦଙ୍କୁ ଚିହ୍ନି ହେଉଛି ।

ସଂକଳନର ଏକ ସ୍ପଷ୍ଟ ଓ ଅକ୍ଷମଣୀୟ ଦୁର୍ବଳତା ରହିଛି । ତାହା, ଦୁଇଗୋଟି ସ୍ୱତନ୍ତ୍ର ରଚନାର ଅନୁପସ୍ଥିତି । ପ୍ରଥମ, କବି ଦୀନକୃଷ୍ଣ । ଏହା ସହକାରର ନବମ ଭାଗ, ପଞ୍ଚମ ସଂଖ୍ୟାରେ (ଜାନୁଆରି ୧୯୨୯)ପ୍ରକାଶିତ ବୋଲି ନଟବର ସାମନ୍ତରାୟ ଆପଣାର ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ ଗ୍ରନ୍ଥରେ ସୂଚନା ଦେଇଛନ୍ତି । ' ଏହା ପାଇବାରେ ମୁଁ ଅସମର୍ଥ ହୋଇଛି । ଦ୍ୱିତୀୟ, ସାରଳା ମହାଭାରତର ମୁଖବନ୍ଧ । ଏକଥା କହିଲେ ଧାପେ ବି ଅତିକଥନ ହେବନାହିଁ ଯେ, ଆର୍ତ୍ତବଲ୍ଲଭଙ୍କର ଅନ୍ୟତମ ପ୍ରିୟ କବି ସାରଳା ଦାସ । ପ୍ରିୟ ବ୍ୟକ୍ତିତ୍ୱଙ୍କର ସର୍ଜନ-କର୍ମକୁ ସେ ସଂପାଦନା କରିଛନ୍ତି; ମାତ୍ର ତାହା ମୁଖବନ୍ଧହୀନ ବେଶରେ ପ୍ରକାଶ ପାଇଛି ୧୯୬୪(?) ମସିହାରେ । ଶୁଣାଯାଏ, ସେ ଗ୍ରନ୍ଥର ଏକ ସୁଦୀର୍ଘ ମୁଖବନ୍ଧ ଲେଖିଛନ୍ତି । ମୁଦ୍ରଣ ପାଇଁ ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ଦେଇଛନ୍ତି । ମାତ୍ର ତାହା ଅମୁଦ୍ରିତ ରହିଛି । ମୁଁ ତାଙ୍କ ଆତ୍ମଜ ଓ ପ୍ରିୟତମମାନଙ୍କୁ ଏ ସମ୍ପର୍କରେ ପଚାରିଛି । ମାତ୍ର ପ୍ରତ୍ୟେକ ନିରୁତ୍ତର । ମୁଖବନ୍ଧର ଅବର୍ତ୍ତମାନ ସାରଳା-ବ୍ୟକ୍ତିତ୍ୱ ଚର୍ଚ୍ଚାରେ ଏକ ସାର୍ବକାଳିକ ଶୂନ୍ୟତା ବୋଲି କୁହାଯାଇପାରିବ । ମାତ୍ର ଶାନ୍ତ୍ୱନା ଆମପାଇଁ ଏତିକି ଯେ, ସାରଳା ଦାସ ଶୀର୍ଷକ ଆଲୋଚନା ସେହି ଶୂନ୍ୟତାର ସାମାନ୍ୟ ପରିପୂରକ ।

ପରିଶିଷ୍ଟରେ ଚାରିଗୋଟି ଲେଖା ରହିଛି । ପ୍ରଥମ, ଆର୍ତ୍ତବଲ୍ଲଭଙ୍କ ତିରୋଧାନ ପରେ, ହରେକୃଷ୍ଣ ମହତାବଙ୍କ ଅନୁଭବର ଅକ୍ଷର ରୂପ ତାଙ୍କ ସମ୍ପାଦିତ ଝଙ୍କାରର ୧୫ଶ ବର୍ଷ ୬ଷ୍ଠ (୧୯୬୩) ସଂଖ୍ୟାରେ ପ୍ରକାଶପାଇଛି । ଏବଂ, ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶପାଇଛି ଆର୍ତ୍ତବଲ୍ଲବଙ୍କ ଶେଷ ଲେଖା ବେଦ ଓ ଉପନିଷଦରେ ହିମାଳୟ । ଏହା ନିଶ୍ଚିତଭାବରେ ପାଠକମାନଙ୍କ ପାଇଁ ସ୍ୱତନ୍ତ୍ର ରଚନା । ଅନ୍ୟ ତିନୋଟି ଲେଖା ଆର୍ତ୍ତବଲ୍ଲଭ ରଚନାସମଗ୍ର(ପ୍ରଥମଭାଗ) ଉନ୍ମୋଚନକାଳୀନ ବକ୍ତବ୍ୟ । ଶ୍ରୀ ହୃଦୟବଲ୍ଲଭ, ଆର୍ତ୍ତବଲ୍ଲଭଙ୍କ ଆତ୍ମଜ । ରକ୍ତ ହିଁ ରକ୍ତର ଅସ୍ତିତ୍ୱକୁ ବୁଝିଥାଏ, କହିବା, ନ କହିପାରିବା-ରକ୍ତର ମାନସିକତା- ନିର୍ଭର । ହୃଦୟବଲ୍ଲଭ ଆପଣାର ସ୍ରଷ୍ଟାଙ୍କୁ କେତେ ଭାବରେ ମୁକ୍ତ କରିପାରିଛନ୍ତି, ସେ ଜାଣିଥିବେ । ଶ୍ରୀ ରମାକାନ୍ତ ରଥ, ଅନ୍ୟତମ ଆର୍ତ୍ତବଲ୍ଲଭପ୍ରିୟ ଓ କବିପ୍ରାଣ । ମିତବାକ୍, ମାତ୍ର ଅନ୍ତର୍ଭେଦୀ । ଏହା ତାଙ୍କର ସ୍ୱାତନ୍ତ୍ର୍ୟ । ଶ୍ରୀ ଦାଶରଥି ଦାସ ରମାକାନ୍ତଙ୍କ ପରି ଅନ୍ତର୍ଭେଦୀ, ମାତ୍ର ମିତବାକ୍ ନୁହନ୍ତି, ଭାବ-ବିସ୍ତାରଣ-ପ୍ରିୟ । କୁହାଯାଏ, ତାଙ୍କ ବିଚାର ଓ ବକ୍ତବ୍ୟ ବହୁତର ମୋହମୁକ୍ତ । ନ କହିବା କଥା ବି ତାଙ୍କ ଭିତରୁ ସ୍ୱତଃ ସର୍ବମୁଖ ହୋଇଯାଏ । ଏକ ଶୀତଳତାଦାୟୀ ସର୍ବତୋମୁଖ । ଏହି ମିତ୍ରତ୍ରୟଙ୍କର ସମୁଦ୍ଭାସନକୁ ମୁଁ ଏକ ଆବଶ୍ୟକତା ବୋଲି ଅନୁଭବ କରିଛି । ଆର୍ତ୍ତବଲ୍ଲଭ ଅନୁଭବରେ ରଚନାଗୁଡ଼ିକ ନିଶ୍ଚିତ ଭାବରେ ଗୋଟିଏ ଗୋଟିଏ ଅନୁଘଟକ, ତେଣୁ ପ୍ରସ୍ତୁତ ସଂକଳନରେ ଏଗୁଡ଼ିକର ସଂଯୋଜନ ।

ତିନି

ଆର୍ତ୍ତବଲ୍ଲଭଙ୍କ ପ୍ରବନ୍ଧ ସଂଖ୍ୟା ମାତ୍ର ତେର । ସେଗୁଡ଼ିକ ମଧ୍ୟରୁ ଗୋଟିଏ ମାତ୍ର ଇଂରାଜୀ ଭାଷାରେ- **କଳିଙ୍ଗ ଆଣ୍ଡ ତେଲେଙ୍ଗନା** । ତାଙ୍କ ପ୍ରକାଶନର ଅବଧି ୧୯୧୪-୧୯୬୩ ମସିହା, ପ୍ରାୟ ପଚାଶ ବର୍ଷ, ଆରମ୍ଭ ମୁକୁର ପତ୍ରିକାରୁ । ଲେଖାର ଶୀର୍ଷକ **ଭାରତର ପ୍ରାଚୀନ ନୀତି** । ସେତେବେଳକୁ ବୟସ ସତେଇଶି ଏବଂ, ରେଭେନ୍‌ସା କଲେଜର ଶିକ୍ଷକ । ଶେଷ ପ୍ରକାଶନ **ଝଙ୍କାର** ପୃଷ୍ଠାରେ, ଲେଖାର ଶୀର୍ଷକ **ଭାରତରେ ଧର୍ମର ଗତି ଓ ତାର ପ୍ରବାହ**, ବୟସ ସତସ୍ତରୀ । ପ୍ରବନ୍ଧଗୁଡ଼ିକ ପଢିଲେ ଲାଗିବ, ବସ୍ତୁତଃ, ଆରମ୍ଭ ଓ ଶେଷ ଦୁଇଟି ବିନ୍ଦୁ ନୁହେଁ, ଗୋଟିଏ ବିନ୍ଦୁ ଯାହା ବୃତ୍ତାୟିତ ହୋଇଛି । ବହୁ ଧାରା ବା ପ୍ରବାହ ତିଆରି କରିନାହିଁ । ଅର୍ଥାତ୍ ସମଗ୍ର ଜୀବନ ସେ ବହୁ ଆୟାମବିଶିଷ୍ଟ ବିଦ୍ୟା-ସମୁଦ୍ରର ଏକମାତ୍ର ତୀର୍ଥରେ ଅବଗାହନ କରିଛନ୍ତି । ସଶ୍ରଦ୍ଧ ଅବଗାହନ । ତୀର୍ଥର ନାଁ ସଂସ୍କୃତି । ଏହା ଏପରି ଏକ ବିଚିତ୍ର ତୀର୍ଥ- ଯାହାକୁ କୌଣସି ଜନ-ସମୁଦାୟ ତିଆରି କରିଥାଏ । ଅର୍ଥାତ୍ ଏକ ଜନସମୁଦାୟ ଏହି ସର୍ଜନ ମାଧ୍ୟମରେ ନିଜ ଅସ୍ମିତା ପ୍ରତିଷ୍ଠା କରେ । ଏବଂ, ଗୁରୁତ୍ୱପୂର୍ଣ୍ଣ କଥା, ଏହି ସୃଷ୍ଟ ତୀର୍ଥ ହିଁ ଜୀବନୀ-ଶକ୍ତି, ଯାହା ସମୁଦାୟର ଯାତ୍ରାକୁ ନିୟନ୍ତ୍ରଣ କରୁଥାଏ, ବେଗ ଦେଉଥାଏ, ଚିତ୍ରମୟ କରୁଥାଏ । ଧର୍ମ, ଦର୍ଶନ, ଭାଷା, ସାହିତ୍ୟ, ସଂଗୀତ, ସ୍ଥାପତ୍ୟ, ରାଜନୀତି, ଚିତ୍ର ଓ ସମାଜବ୍ୟବସ୍ଥା– ଜୀବନ ବଂଚିବାର ସକଳ ବିଭବ ବା ଆବଶ୍ୟକତାର ତାହା କଳାତ୍ମକ ଓ ଜୈବିକ ଯୋଡ଼ଣ-ଚିତ୍ର । ସେହି ନ୍ୟାୟରେ ତାଙ୍କ ପ୍ରବନ୍ଧଗୁଡ଼ିକ ସଂସ୍କୃତି ବିନ୍ଦୁର ବୃତ୍ତାୟନ କହିଲେ ଭୁଲ୍ ହେବନାହିଁ ।

ପ୍ରବନ୍ଧଗୁଡ଼ିକୁ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ: **ମହିଷାସୁରମର୍ଦ୍ଦିନୀ, ଶକ୍ତି, ଦୁର୍ଗାପୂଜା, ପ୍ରଚ୍ଛନ, ଶ୍ରୀକୃଷ୍ଣଙ୍କ ସ୍ୱରୂପ ବର୍ଣ୍ଣନା**, ବେଦ ଓ ଉପନିଷଦରେ ହିମାଳୟ; ଦ୍ୱିତୀୟ: **ଭାରତର ପ୍ରାଚୀନ ନୀତି, ସାରିପୁତ୍ତ ଓ ମେଗ୍‌ଗାଲ୍ଲନ, ଶିଷ୍ଟତା, ସୁସ୍ଥିତି, ଧର୍ମସଂସ୍ଥାନ, ଭାରତରେ ଧର୍ମର ଗତି ଓ ତାହାର ପ୍ରବାହ** ଏବଂ ତୃତୀୟ: **କଳିଙ୍ଗ ଆଣ୍ଡ ତେଲେଙ୍ଗାନା** । ପ୍ରଥମ ଭାଗର ପ୍ରବନ୍ଧଗୁଡ଼ିକର କେନ୍ଦ୍ରରେ ଶକ୍ତି, ଦ୍ୱିତୀୟ ଭାଗରେ ଧର୍ମ, ରାଜନୀତି ଓ ଦର୍ଶନ ଏବଂ ତୃତୀୟଭାଗରେ: ମୁଖ୍ୟତଃ ଓଡ଼ିଶାର ଇତିହାସ । ମାତ୍ର ପ୍ରତ୍ୟେକ ପ୍ରବନ୍ଧରେ ଆପଣାର ବକ୍ତବ୍ୟକୁ ସେ ଇତିହାସର ଭୂମି ଉପରେ ସୌଧାୟନର ଚେଷ୍ଟା କରିଛନ୍ତି । ଏବଂ, ଏହି ଇତିହାସବୋଧ ହିଁ ସମକାଳୀନମାନଙ୍କ ଗହଣରେ ତାଙ୍କ ବ୍ୟକ୍ତିତ୍ୱକୁ ସ୍ୱତନ୍ତ୍ର ବୋଲି ଚିହ୍ନାଇ ଦେଉଛି । ଫଳତଃ, ତାଙ୍କୁ ପଢିଲାବେଳେ ଜଣେ ଓଡ଼ିଶା ଭୂମିରେ ଠିଆହୋଇ ଭାରତ ଓ ଅବଶିଷ୍ଟ ପୃଥିବୀ ଅବଲୋକନରେ ସମର୍ଥ ହୋଇପାରୁଛି ।

ପ୍ରଥମ ଛଅଗୋଟି ପ୍ରବନ୍ଧର ଗୁଣସୂତ୍ର 'ଶକ୍ତି' । ଏହା ବ୍ୟକ୍ତି ଓ ଗୋଷ୍ଠୀ ଚେତନାରେ ପ୍ରଚ୍ଛନ୍ନ ଭାବରେ ଥାଏ । ତାହା ଚିତ୍‌ଶକ୍ତି ଓ ଆତ୍ମଶକ୍ତି । ତେଣୁ କାର୍ଯ୍ୟ ଓ କାରଣ । ତାହା ଜଡ଼ ଅଥବା ଜୀବନ୍ତ- ଯାହା ହେଉନା କାହିଁକି, ବିଶ୍ୱବ୍ରହ୍ମାଣ୍ଡର ସକଳଙ୍କ ସତ୍ତାରେ ତା'ର ସୂକ୍ଷ୍ମତମ ସ୍ଥିତି । ତେଣୁ ତାହା ବ୍ୟକ୍ତି ଜୀବନ, ସମାଜ ବା ଗୋଷ୍ଠୀ ଜୀବନ ଓ ବିଶ୍ୱର ସକଳ ସୃଜନକୁ ତାତି ଓ ଗତି ଦେଉଥାଏ । ଏବଂ, ତାର ଅନୁପସ୍ଥିତିରେ ପ୍ରତ୍ୟେକ ସତ୍ତା ସବୁଦିନ ପାଇଁ ବ୍ରହ୍ମାଣ୍ଡରେ ନିଜର ସ୍ଥିତି ହରାଏ । ବ୍ୟକ୍ତି ଆପଣାର ଇନ୍ଦ୍ରିୟ

ଓ ଚେତନା ମାଧ୍ୟମରେ ଯାହା ଦେଖୁଥାଏ ଓ ଅନୁଭବ କରୁଥାଏ, ତାହା ଶକ୍ତିର ସୂକ୍ଷ୍ମତମ ସତ୍ତାର ସ୍ଥୂଳ ଅଭିବ୍ୟକ୍ତି । ତେଣୁ ପୃଥିବୀର ପ୍ରତ୍ୟେକ ଭୂମିର ବ୍ୟକ୍ତି-ମଣିଷ ଓ ଗୋଷ୍ଠୀ-ମଣିଷ ସର୍ବବ୍ୟାପ୍ତ ଓ ନିୟନ୍ତ୍ରିକା ଶକ୍ତିର ଆବାହନ କରନ୍ତି, ପୂଜା କରନ୍ତି ଏବଂ ଆପଣାର ପ୍ରିୟତମ ବିଭବକୁ ତାଙ୍କ ପାଖରେ ସମର୍ପଣ କରନ୍ତି । ଏବଂ, ଶକ୍ତି ଆପଣାର ବହୁ ଭାବ ଓ ରୂପରେ ଅହଂଚାଳିତ ବ୍ୟକ୍ତି ଓ ଗୋଷ୍ଠୀ ସତ୍ତାର ସଂହାର, ଅନ୍ୟ ପରିଭାଷାରେ, କହିଲେ ଅଧ୍ୟାତ୍ମ ଉତ୍ତରଣର କାରଣ ହୋଇଥାଆନ୍ତି ।

ଶକ୍ତିର ରୂପବୈଚିତ୍ର୍ୟ, ଗୁଣବୈଚିତ୍ର୍ୟକୁ ସ୍ପଷ୍ଟତର କରିବା ପାଇଁ ଆର୍ତ୍ତବଲ୍ଲଭ ବୈଦିକ କାଳଠାରୁ ଆରମ୍ଭ କରି ଆଧୁନିକ କାଳ ପର୍ଯ୍ୟନ୍ତ ଭାରତୀୟ ମନୀଷାରେ ଶକ୍ତି ଅନୁଭବର ଇତିହାସ ଚର୍ଚ୍ଚା କରିଛନ୍ତି । ସେ ସ୍ପଷ୍ଟ କରିଦେବା ପାଇଁ ଚାହିଁଛନ୍ତି- ବେଦ ଓ ଉପନିଷଦରେ ଶକ୍ତି ଅଗ୍ରପୂଜ୍ୟା । ପ୍ରତ୍ୟେକ ଧର୍ମ ସମ୍ପ୍ରଦାୟ, ଧର୍ମର ପ୍ରବକ୍ତା ଓ ଧର୍ମତତ୍ତ୍ୱ-ଅବଗାହୀ, ସେମାନେ ଆସ୍ତିକ ଅଥବା ନାସ୍ତିକ, ସଗୁଣ ଅଥବା ନିର୍ଗୁଣ, ଏକେଶ୍ୱରାବାଦୀ ଅଥବା ବହୁଦେବଦେବୀ ପୂଜକ, ଯିଏ ହୁଅନ୍ତୁ, ପ୍ରତ୍ୟେକଙ୍କ ନିୟନ୍ତକ ହେଉଛନ୍ତି ଶକ୍ତି । ଏହା ସନାତନ ଚେତନା । ନାରୀର ଆହ୍ୱାନ ଓ ଦେବତାଙ୍କୁ ରକ୍ତ- ସମର୍ପଣ ମାନସିକତାକୁ ଅସ୍ୱୀକାର କରୁଥିବା ମହାବୀର, ଗୌତମ ବୁଦ୍ଧ ଓ ଏମାନଙ୍କ ସୃଷ୍ଟ ସଂଗଠନ ଏବଂ ଆଦିଶଙ୍କର- ଏମାନେ ସନାତନ ଧର୍ମର ସନ୍ତାନ । ତେଣୁ ଶକ୍ତି-ସଂପୃକ୍ତି - ମୁକ୍ତ ନୁହନ୍ତି । ବ୍ରହ୍ମା, ବିଷ୍ଣୁ ଓ ଶିବ ମଧ୍ୟ ଶକ୍ତି-ନିୟନ୍ତ୍ରିତ । ଜଣେ ଶାକ୍ତ ନ ହେଲେ, ବୈଷ୍ଣବ ହୋଇପାରିବନାହିଁ । ପବିତ୍ର ସର୍ଜନ କର୍ମର ଗୁଣସୂତ୍ର ମଧ୍ୟ ଶକ୍ତି । ଶକ୍ତିର ଅବର୍ତ୍ତମାନରେ ଶିବ ଶବରେ ରୂପାନ୍ତରିତ ହୋଇଯାନ୍ତି । ଗାୟତ୍ରୀ ଜପ କରୁଥିବା ବିପ୍ରମାନେ ଶାକ୍ତ । ଗାୟତ୍ରୀ ମନ୍ତ୍ର ହିଁ ଶକ୍ତି-ସ୍ତୁତି । ଜଗତ ମିଥ୍ୟା ଓ ବ୍ରହ୍ମ ସତ୍ୟ ପରି ଏକ ମହାବାକ୍ୟର ଉଦ୍‌ଗାତା ଶଙ୍କର ମାୟା-ସଂପୃକ୍ତିରେ ଜଗତ ଓ ବ୍ରହ୍ମଙ୍କ ସତ୍ତାକୁ ଅନୁଭବ କରିଛନ୍ତି । ବୌଦ୍ଧସିଦ୍ଧାଚାର୍ଯ୍ୟମାନଙ୍କ ଚେତନା ଓ ଶରୀର ଶକ୍ତିସଂପୃକ୍ତ । ଶ୍ରୀଚୈତନ୍ୟ ମାୟାବାଦୀ, ମାତ୍ର ଶକ୍ତିସାଧକ । ଶ୍ରୀକୃଷ୍ଣଙ୍କ ହ୍ଲାଦିନୀଶକ୍ତି ହେଉଛନ୍ତି ଶ୍ରୀରାଧା । ରାଧା-କୃଷ୍ଣ, ଶିବ-ପାର୍ବତୀ ଯୁଗନଦ୍ଧ । ଏବଂ, ସର୍ବୋପରି ଆମେ ବଂଚୁଥିବା ପ୍ରାକୃତିକ ପରିମଣ୍ଡଳ- ଝରଣା, ନଦୀ, ସମୁଦ୍ର, ଗଛଲତା; ପ୍ରତ୍ୟେକ ଶକ୍ତିର ଉଦ୍ଭାସନ । ଭାରତୀୟ ମନୀଷା, ତେଣୁ, ଚେତନାର ଉଦୟନ କାଳରୁ ଶକ୍ତିର ଭାବ ଓ ରୂପର ବୈଚିତ୍ର୍ୟକୁ ସ୍ତୁତି କରିଆସୁଛି । ଏବଂ, ଶକ୍ତି ସଂହାରକାରୀମାନଙ୍କୁ ସଂସାର ବିରୋଧୀ, ତେଣୁ, ଶକ୍ତି ମାଧ୍ୟମରେ ସେମାନଙ୍କ ଚେତନା ପରିମୁକ୍ତୀକରଣର ସଂକ୍ରାନ୍ତ ଶାସ୍ତ୍ରମାନ ରଚନା କରିଛି ।

ଆର୍ତ୍ତବଲ୍ଲଭ ଶକ୍ତିର ଗୂଢତାର ସ୍ପଷ୍ଟୀକରଣ ପାଇଁ ବେଦ, ଉପନିଷଦ, ସଂହିତା, ଧର୍ମଶାସ୍ତ୍ର, ପୁରାଣ(ଚଣ୍ଡୀପୁରାଣ, ଅଧ୍ୟାତ୍ମପୁରାଣ ଇତ୍ୟାଦି) ଏବଂ ଲୋକାଚାରକୁ ଉତ୍ସ କରିଛନ୍ତି । ପୁରାଣ ବର୍ଣ୍ଣିତ ଗପ ଲେଖିଛନ୍ତି । ଶ୍ଳୋକଗୁଡ଼ିକର ଉଦ୍ଧୃତି ସହିତ ବ୍ୟାଖ୍ୟା ବି କରିଛନ୍ତି । ଏବଂ, ସନାତନ ଚେତନାର ବ୍ୟାଖ୍ୟାନ କାଳରେ ଆପଣା ଜନ୍ମଭୂମିରେ ଶକ୍ତିପୂଜା ପରମ୍ପରାର ଇତିହାସ କଥା କହିଛନ୍ତି । ଓଡ଼ିଶାରେ ଘଟପୂଜା ଓ ମୃଣ୍ମୟପ୍ରତିମା ପୂଜା, ବୁଦ୍ଧମୂର୍ତ୍ତିଗୁଡ଼ିକର ଶକ୍ତିପ୍ରତିମାରେ ରୂପାନ୍ତରଣ, ପ୍ରାୟ ପ୍ରତ୍ୟେକ ଗାଁରେ ବହୁ ବିଚିତ୍ର ନାଁରେ ଶକ୍ତି ନିରାଜନା ଓ ବିଭିନ୍ନ ସ୍ଥାନରେ ଶକ୍ତିପୀଠ ଗଢଣ ଏବଂ ଅକ୍ଷରକର୍ମୀମାନଙ୍କ

ଅବବୋଧରେ ଶକ୍ତିର ସ୍ୱରୂପ- ସବୁ ତାଙ୍କ କଲମକୁ ମୁଖର କରିଛି । ତେଣୁ ତାଙ୍କ ସକଳ ପ୍ରବନ୍ଧରେ ଏକ ତତ୍ତ୍ୱ ଓ ତାହାର ପ୍ରୟୋଗ- ଉଭୟ ଅନୁଭବ କରିହେଉଛି । ଓଡ଼ିଶା କଥା ନ କହିଲେ ତାଙ୍କ ଆତ୍ମାର ଯେମିତି ଶାନ୍ତି କି ମୁକ୍ତି କେବଳ ସ୍ୱପ୍ନ ହୋଇରହିଯିବ- ପ୍ରବନ୍ଧଗୁଡ଼ିକୁ ପଢିଲେ ଜଣେ ପାଠକ ଏହା ସ୍ପଷ୍ଟ ଅନୁଭବ କରୁଛି ।

ଦ୍ୱିତୀୟଭାଗରେ ସଂଯୋଜିତ ପ୍ରବନ୍ଧଗୁଡ଼ିକର ଭୂମି- ଧର୍ମ, ଦର୍ଶନ ଓ ରାଜନୀତି । ବ୍ୟକ୍ତି-ଚିନ୍ତନର ଏହା ତିନିଗୋଟି ଶୃଙ୍ଖଳା ଅବଶ୍ୟ । ସ୍ୱତନ୍ତ୍ର ଲାଗୁଛି, ମାତ୍ର ଗୋଟିଏକୁ ବିଯୁକ୍ତ କରି ଅନ୍ୟର ଚର୍ଚ୍ଚା ସମ୍ଭବ ନୁହଁ । ଦର୍ଶନ, ଅନ୍ତର୍ଦୃଷ୍ଟି; ଧର୍ମ, ଦୃଷ୍ଟିର ସଂହତ ଓ ଆନୁଷ୍ଠାନିକ ସଂରଚନା ଏବଂ ରାଜନୀତି ଦର୍ଶନପୁଷ୍ଟ ଅନୁଷ୍ଠାନର ନିୟନ୍ତ୍ରଣ ଓ ପ୍ରସାରଣ ଶକ୍ତି । ଆର୍ତ୍ତବଲ୍ଲଭ ଆପଣା ପ୍ରବନ୍ଧଗୁଡ଼ିକରେ ଏହି ଶୃଙ୍ଖଳାତ୍ରୟୀ ବ୍ୟକ୍ତିଜୀବନ, ସମାଜଜୀବନ ଓ ରାଷ୍ଟ୍ରଜୀବନକୁ କିପରି ନିୟନ୍ତ୍ରଣ କରୁଛି, ତାହାର ବ୍ୟାଖ୍ୟା କରିଛନ୍ତି । ବ୍ୟାଖ୍ୟାୟନ କାଳରେ ତାଙ୍କ ଇତିହାସବୋଧ ସ୍ପଷ୍ଟ ହୋଇଯାଉଛି । ଭାରତବର୍ଷର କଥା କହୁକହୁ ତାଙ୍କ ବିଚାର ନିଜ ଭୂମି ଉତ୍କଳରେ କେନ୍ଦ୍ରୀଭୂତ ହୋଇଯାଉଛି । ସେ ସ୍ପଷ୍ଟତଃ କହିବାକୁ ଚାହୁଁଛନ୍ତି, ତାଙ୍କ ଭୂମି ଭାରତର ସମଗ୍ରକୁ ଠୁଳ କରିପାରୁଥିବା ଏକ ସ୍ୱତନ୍ତ୍ର ରାଜନୀତିକ ଆୟତନ, ଅର୍ଥାତ ସମୀକରଣର ଭୂମି ।

ଆର୍ତ୍ତବଲ୍ଲଭ ଧର୍ମର ଆଭିଧାନିକ ଅର୍ଥ ଚର୍ଚ୍ଚା କରିଛନ୍ତି । କହୁଛନ୍ତି- ଏହା ଧାରଣ ଓ ବନ୍ଧନ ସୂତ୍ର । ସୂତ୍ର ପୁଣି ଦୁଇଟି । ଗୋଟିଏ ସୂତ୍ର ବିଶ୍ୱାସ ସହିତ ଏବଂ ଅନ୍ୟ ସୂତ୍ର ବିଚାର ସହିତ ସମ୍ପର୍କିତ । ବିଶ୍ୱାସ ସୂତ୍ରର ଅଭିବ୍ୟକ୍ତି ଅଲୌକିକ ଓ ଅଧ୍ୟାତ୍ମଜଗତ ଏବଂ ବିଚାର ସୂତ୍ରର ସମ୍ପର୍କ ସୁସ୍ଥ ସାମାଜିକ ଜୀବନଯାପନ ସହିତ ସଂପୃକ୍ତ ଏବଂ ଉଭୟ ସୂତ୍ର ପରସ୍ପର ସହିତ ସମଛନ୍ଦରେ ଗତିଶୀଳ ।

ବିଶ୍ୱାସ ପ୍ରସଙ୍ଗ ଚର୍ଚ୍ଚାକାଳରେ, ସେ ସନାତନ ଧର୍ମର ବିଧିର କଥା କହୁଛନ୍ତି । କହୁଛନ୍ତି, ଧର୍ମ ଏକ ନିୟମବଦ୍ଧ ଅନୁଷ୍ଠାନ ।  ମାତ୍ର ବିଧିର ଜନ୍ମ ଅନ୍ତର୍ଲୋକରୁ । ଏହା ଜୀବନ ଓ ଜଗତ ସଂକ୍ରାନ୍ତ ରହସ୍ୟ ଉନ୍ମୋଚନଜନିତ ଅନ୍ତର୍ଦୃଷ୍ଟି । ଜୀବନ ଓ ଜଗତ ଉଭୟ ସତ୍ୟ, ଦୃଶ୍ୟମାନ । ମାତ୍ର ଉଭୟ ମଧ୍ୟରେ ସଂପର୍କର ସୂତ୍ର ବା ସ୍ୱରୂପ କ'ଣ ? ତାହା ଦର୍ଶନ । ଏଥିରେ ଦୃଷ୍ଟିଭଙ୍ଗୀଗତ ବିବିଧତା ରହିଛି । ଏହି ବିବିଧତାକୁ ଆଧାରକରି ଅନୁଷ୍ଠାନ ବା ଗୋଷ୍ଠୀମାନ ଜନ୍ମନେଇଛି ।  ଗୋଷ୍ଠୀଗୁଡ଼ିକ ନିଜନିଜର ସ୍ୱତନ୍ତ୍ର ପରିଚୟ ତିଆରି କରିଛନ୍ତି । ଅହଂ ପ୍ରତିଷ୍ଠା ପାଇଁ ଗ୍ରନ୍ଥମାନ ମଧ୍ୟ ଲେଖାଯାଇଛି । ଏକଥା ସ୍ପଷ୍ଟ କରିଦେବା ପାଇଁ ସେ ବେଦ, ବେଦାନ୍ତ, ଉପନିଷଦ ପାଖକୁ ଯାଇଛନ୍ତି । ପ୍ରମାଣ କରୁଛନ୍ତି-ସନାତନଧର୍ମ ଏକ ବଡ଼ ବରଗଛ । ଜୈନ, ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ, ଗାଣପତ୍ୟ ଆଦି ଧର୍ମ ସେହି ଗଛର ଶାଖା ଓ ପ୍ରଶାଖା  । ପ୍ରତ୍ୟେକ ସ୍ୱତନ୍ତ୍ର ପରି ବୋଧ ହେଉଛନ୍ତି  । ମାତ୍ର ଏହି 'ବୋଧ' ଏକ 'ଭ୍ରମ' ମାତ୍ର  । ଦର୍ଶନ ଚର୍ଚ୍ଚା କାଳରେ ସେ ବେଦାନ୍ତ, ନ୍ୟାୟ, ସାଂଖ୍ୟ, ବୈଶେଷିକ, ପୂର୍ବମୀମାଂସା, ଉତ୍ତରମୀମାଂସା(ଆସ୍ତିକଦର୍ଶନ) ଓ ମହାବୀର, ବୁଦ୍ଧ ଓ ଚାର୍ବାକ୍‌ଙ୍କ ଜୀବନଦୃଷ୍ଟି(ନାସ୍ତିକ)ର ସୂକ୍ଷ୍ମ ଅବବୋଧକୁ ସ୍ପଷ୍ଟ କରିଦେଉଛନ୍ତି । କହୁଛନ୍ତି- ଅଧ୍ୟାତ୍ମ୍ୟ ବା ରହସ୍ୟ ଅବବୋଧରେ ଉପର୍ଯ୍ୟୁକ୍ତ ସକଳ ଭାବାଦର୍ଶ ଗୋଟିଏ ଗୋଟିଏ ମାର୍ଗ ମାତ୍ର । ଶେଷରେ ସେ ଗୀତା ପାଖରେ ପହଂଚି

ଯାଇଛନ୍ତି । ଏହାକୁ ସନାତନ ମନୀଷାର ସ୍ଫୁଲ୍ଲ ଅଭିବ୍ୟକ୍ତି ବୋଲି ସ୍ୱୀକାର କରୁଛନ୍ତି । ଏବଂ, ଏକଥା ପ୍ରମାଣ ପାଇଁ ବିଭିନ୍ନ ଦର୍ଶନର ସାରକଥାକୁ, ଅକ୍ଷରେ ସୂଚନା ଦେଉଛନ୍ତି ।

ମାତ୍ର ଆର୍ତ୍ତବଲ୍ଲଭ ଦର୍ଶନପିଣ୍ଡିତ ଧର୍ମ-ବିଚାର ଭିତରେ ନିଜକୁ ବାନ୍ଧିପାରୁନାହାନ୍ତି । ସେ ଅନୁଭବ କରୁଛନ୍ତି- କୌଣସି ବିଚାର ବାୟବୀୟ ନୁହେଁ । ତାହା ଭୂମିସଂଲଗ୍ନ ହେବା ପାଇଁ ବାଧ୍ୟ । ଭୂମିଗତ ହୋଇ ନ ପାରିଲେ, ତାହାର ମୃତ୍ୟୁ ଅନିବାର୍ଯ୍ୟ । ଭୂମି କହିଲେ- ସମାଜ । ଅର୍ଥାତ, ସମାଜ ହେଉଛି ସମବିଚାର ଓ ଭାବପୁଷ୍ଟ ବ୍ୟକ୍ତିମାନଙ୍କର ଶୃଙ୍ଖଳିତ ସଂଗଠନ । ଏବଂ, ଏହି ସଂଗଠନ ହିଁ କୌଣସି ବିଚାରର ପ୍ରୟୋଗଶାଳା । ତେଣୁ ଧର୍ମ ଓ ଦର୍ଶନର ପ୍ରୟୋଗ ଚର୍ଚ୍ଚା କାଳରେ, ଆର୍ତ୍ତବଲ୍ଲଭ ଧର୍ମ ନାମକ ଅନୁଷ୍ଠାନର କଥା କହୁନାହାନ୍ତି । ସେଥିପାଇଁ ସେ 'ଧର୍ମବୋଧ' ଶବ୍ଦ ପ୍ରୟୋଗ କରିଛନ୍ତି । କହିଛନ୍ତି- ବ୍ୟକ୍ତି ଚେତନାରେ ଏହି 'ଧର୍ମବୋଧ'ର ଅନୁଭବ ହିଁ ଦେଶ ଓ ଜନ ସମୁଦାୟର ସୁଖ ଓ ଶାନ୍ତି ପ୍ରତିଷ୍ଠା କରିପାରିବ । (ଦ୍ରଷ୍ଟବ୍ୟ: ସୁସ୍ଥିତି) ତେଣୁ ସେ ପ୍ରସଙ୍ଗକ୍ରମେ ବ୍ୟକ୍ତି ଜୀବନର ଚାରିଗୋଟି ଅବସ୍ଥା –ଶୈଶବରୁ ବାର୍ଦ୍ଧକ୍ୟ(ବର୍ଣ୍ଣାଶ୍ରମ); ସମାଜବ୍ୟବସ୍ଥା ନିୟନ୍ତ୍ରଣରେ ଛାତ୍ର, ଶିକ୍ଷକ, କୃଷକ, ବଣିକ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର; ରାଜା ଓ ପ୍ରଜା; ଶାସନ ବ୍ୟବସ୍ଥା ସହିତ ସଂପୃକ୍ତ ସକଳ ଅଧିକାରୀ, ଧର୍ମାଧ୍ୟକ୍ଷ ଏବଂ ସର୍ବୋପରି ମାନବିକ ସଂପର୍କ ସଂକ୍ରାନ୍ତରେ ବିଶଦ ଚର୍ଚ୍ଚା କରିଛନ୍ତି । ବିଶେଷତଃ, ଭାରତରେ ପ୍ରାଚୀନ ନୀତି ଓ ଶିଷ୍ଟତା ପ୍ରବନ୍ଧ ସ୍ୱତନ୍ତ୍ର ପର୍ଯ୍ୟାୟର । କୁହାଯାଇଛି- ରାଜାର ଧର୍ମ କେବଳ ଆନୁଷ୍ଠାନିକ ଧର୍ମବିଶ୍ୱାସର ନିୟନ୍ତ୍ରଣ ନୁହେଁ, ଏକ ସୁସଂହତ ଅର୍ଥ ବ୍ୟବସ୍ଥା ଓ ସଂସ୍କୃତି ସୂତ୍ର ମାଧ୍ୟମରେ ଜନସମୁଦାୟର ଶୃଙ୍ଖଳିତ ଓ ସୁଖକର ଜୀବନ ବଂଚିବା ପାଇଁ ଅହଂମୁକ୍ତ ଜୀବନଚର୍ଯ୍ୟା । ପ୍ରଜାର ଧର୍ମ, ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ ପାରସ୍ପରିକ ସମ୍ପର୍କ ଭିତ୍ତିରେ ଏକ ଆଦର୍ଶ ରାଷ୍ଟ୍ର ଗଢଣରେ କ୍ଷମତା ପ୍ରତି ଅନୁରକ୍ତି ଓ ବିଶ୍ୱସ୍ତତା ; ଗୁରୁର ଧର୍ମ ତ୍ୟାଗ ଓ ବୁଦ୍ଧିଦୀପ୍ତ ଭବିଷ୍ୟତ ଗଢଣ; ଛାତ୍ରର ଧର୍ମ ବିଦ୍ୟା ସାଧନ ଓ ସାଧିତ ବିଦ୍ୟା ମାଧ୍ୟମରେ ସମୁଦାୟ ଚେତନାରେ ନୈତିକ, ଶାରୀରିକ ଓ ମାନସିକ ଶକ୍ତିର ବାଜାୟନ । ବଣିକର ଧର୍ମ ଗ୍ରାହକ-ଶୋଷଣ ନୁହେଁ, ନୈତିକ ମୂଲ୍ୟବୋଧ ଆଧାରରେ ଉପଭୋକ୍ତା ତୁଷ୍ଟୀକରଣ । ଏବଂ, ଶାସକର ଧର୍ମ, ସମାଜର ସକଳ ବର୍ଗର ମଣିଷମାନଙ୍କ ନିରପେକ୍ଷ ପରିତୋଷଣ ମାଧ୍ୟମରେ ଆପଣା ପ୍ରଜାବତ୍ସଳତା ଓ ମହାନୁଭବତାର ପ୍ରତିଷ୍ଠା । ମାତ୍ର ବ୍ୟକ୍ତି ସ୍ୱଭାବତଃ ଆତ୍ମକୈନ୍ଦ୍ରିକ । ଜଣେ କ୍ଷମତା ଶିଢ଼ିର ଶୀର୍ଷସ୍ଥ ଅଥବା ସମାଜ ବ୍ୟବସ୍ଥାର ସବା ତଳେ ବଂଚିଥିବା ଯେ କୌଣସି ମଣିଷ ହେଉ- ଉପର୍ଯ୍ୟୁକ୍ତ ଭାବାଦର୍ଶର ପରିପାଳନ ଏତେ ସହଜ ନୁହେଁ, ମାତ୍ର ସମ୍ଭବ ।

ପ୍ରଶ୍ନ ଉଠେ, ଆର୍ତ୍ତବଲ୍ଲଭ ଉପର୍ଯ୍ୟୁକ୍ତ ଶୀର୍ଷକରେ ଚର୍ଚ୍ଚା କରିବାପାଇଁ ସିଦ୍ଧାନ୍ତ ନେଇଛନ୍ତି କାହିଁକି? ଉତ୍ତର ସ୍ପଷ୍ଟ । ଆପଣା କାଳରେ ଉଭୟ ଦେଶୀ ଓ ବିଦେଶୀ କ୍ଷମତାକେନ୍ଦ୍ରର ଔଦ୍ଧତ୍ୟ ଓ ସ୍ୱାର୍ଥପରତା ସମ୍ଭବତଃ ତାଙ୍କୁ ଚକିତ ଓ ଆହତ କରିଛି । ଏକ ଆଦର୍ଶ ରାଷ୍ଟ୍ରର ଲକ୍ଷଣ ସେ ଖୋଜିଛନ୍ତି । ଆଦର୍ଶ ରାଷ୍ଟ୍ର କହିଲେ- ସଂହତ, ସୁବ୍ୟବସ୍ଥିତ, ସୁନିୟନ୍ତ୍ରିତ ଶାସନ ଓ ସମାଜ-ବ୍ୟବସ୍ଥା । ଏବଂ, କ୍ଷମତାର ଅହଂମୁକ୍ତ ଓ ସହୃଦୟ ମାନସିକତା ହିଁ ଆଦର୍ଶ-ରାଷ୍ଟ୍ର ଗଢଣର ଭିତ୍ତିଭୂମି । ଆର୍ତ୍ତବଲ୍ଲଭ ଏହାର ବୀଜ

ଖୋଜିଛନ୍ତି । ଏବଂ ବୀଜକୁ ବେଦ, ଉପନିଷଦ, ରାମାୟଣ, ମହାଭାରତ, ଶ୍ରୁତି ଓ ସ୍ମୃତିଶାସ୍ତ୍ର ଏବଂ ଗୀତା ଆଦି ଅକ୍ଷରକର୍ମରେ ଆବିଷ୍କାର କରିଛନ୍ତି । ଆପଣା ଅନୁଭବ ଓ ବିଚାରକୁ ପ୍ରତିଷ୍ଠା କରିବା ପାଇଁ ଉପର୍ଯ୍ୟୁକ୍ତ ଗ୍ରନ୍ଥଗୁଡ଼ିକରୁ ଶତାଧିକ ଶ୍ଲୋକ ସଂଗ୍ରହ କରିଛନ୍ତି । ଚର୍ଚ୍ଚା-ପ୍ରବନ୍ଧରେ ସେଗୁଡ଼ିକର ଉଦ୍ଧାର ସହିତ ବ୍ୟାଖ୍ୟା କରିଛନ୍ତି । କହିଛନ୍ତି- ତାଙ୍କ ବକ୍ତବ୍ୟ ମନଗଢା ନୁହେଁ, ପ୍ରମାଣିକ ଓ ବ୍ୟାଖ୍ୟାତ୍ମକ । ଏହି ବ୍ୟାଖ୍ୟା ବର୍ତ୍ତମାନର ମଣିଷମାନଙ୍କୁ ଅତୀତ ସଂପର୍କରେ ଅବିହିତ କରିବାପାଇଁ ସୁଯୋଗ ସୃଷ୍ଟି କରୁଛି । ବର୍ତ୍ତମାନ କହିଲେ- ଔପନିବେଶିକ ଔଦ୍ଧତ୍ୟ ଓ ଦେଶୀ-ସାହେବ ସଂକ୍ରମିତ ପରିମଣ୍ଡଳମୁକ୍ତ ଜୀବନବୋଧ ପାଇଁ ଅନ୍ୱେଷା । ସେହି ନ୍ୟାୟରେ ଉପର୍ଯ୍ୟୁକ୍ତ ପ୍ରବନ୍ଧଗୁଡ଼ିକୁ ଆର୍ତ୍ତବଲ୍ଲଭଙ୍କ କାଳ-ସଚେତନ ମାନସିକତାର ପ୍ରତିଲେଖ କୁହାଯାଇପାରିବ ।

ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ଏକ ସ୍ୱାଧୀନ ଭାରତବର୍ଷର ଜନ-ଗଣ-ମନ ନିୟନ୍ତ୍ରଣର ଉପସର୍ଗଗୁଡ଼ିକ ଖୋଜିବା କାଳରେ, ପ୍ରାଚୀନ କାଳର ଧର୍ମ ଓ ଶାସନ ସଂକ୍ରାନ୍ତ ଭାବାଦର୍ଶଗୁଡ଼ିକ ତାଙ୍କ ଚର୍ଚ୍ଚା ମାଧ୍ୟମରେ ଆମ ପାଖରେ ସ୍ପଷ୍ଟ ହୋଇଯାଉଛି । କାରଣ କୌଣସି ଭାବାଦର୍ଶ ତାତ୍‌କାଳିକ ସଂରଚନା ନୁହେଁ, ତାହା ଅନୁଭବସିଦ୍ଧ ଓ ପରୀକ୍ଷିତ । ତେଣୁ ଆର୍ତ୍ତବଲ୍ଲଭଙ୍କ ପ୍ରବନ୍ଧଗୁଡ଼ିକ ପଢିବା ବେଳେ, ଏକଥା କହିବା ପାଇଁ ଆଦୌ କିନ୍ତୁ ନାହିଁ ଯେ, ସେ ଆପଣାର ତରୁଣ ଓ ପୌଢ କାଳରେ ଧର୍ମ, ଦର୍ଶନ ଓ ରାଜନୀତି ସଂପର୍କରେ ଯେଉଁ ଗୂଢ ଓ ସୂକ୍ଷ୍ମ ସୂତ୍ରଗୁଡ଼ିକର ଚର୍ଚ୍ଚା କରିଛନ୍ତି, ତାହାର ସାର୍ବକାଳିକ ଆବଶ୍ୟକତା ରହିଛି । ତାଙ୍କ ମାଧ୍ୟମରେ ଆମେ ବର୍ତ୍ତମାନର ଆବଶ୍ୟକତା ଓ ଆଦର୍ଶ ସଂପର୍କରେ ଅବହିତ ହୋଇପାରୁଛୁ ।

ଚାରି

କୌଣସି ଗ୍ରନ୍ଥର ମୁଖବନ୍ଧ ରଚନା, ଆର୍ତ୍ତବଲ୍ଲଭ ସର୍ଜନ-ବ୍ୟକ୍ତିତ୍ୱର ଗୁରୁତ୍ୱପୂର୍ଣ୍ଣ ଓ ଅନତିକ୍ରମଣୀୟ ବିଶେଷତ୍ୱ । ଆମେ ଜାଣୁ, ସେ ୧୯୨୫/୨୬ ମସିହାରେ ପ୍ରାଚୀ ସମିତି ଗଢିଛନ୍ତି । ସମିତି ଆନୁକୂଲ୍ୟରେ ଚଉବନ ଖଣ୍ଡ ଗ୍ରନ୍ଥର ସଂପାଦିତ ରୂପ ପ୍ରକାଶ ପାଇଛି । ଏଗୁଡ଼ିକ ମଧ୍ୟରୁ ଏକତିରିଶ ଖଣ୍ଡ ବହିରେ ମୁଖବନ୍ଧ ନିଜେ ଆର୍ତ୍ତବଲ୍ଲଭ ଲେଖିଛନ୍ତି । ଏବଂ, ଅନ୍ୟ ଗ୍ରନ୍ଥଗୁଡ଼ିକର ମୁଖବନ୍ଧ ରଚନାରେ ମଧ୍ୟ ତାଙ୍କର ଅନ୍ତରଙ୍ଗ ସମ୍ପର୍କ ରହିଛି । ଏଗୁଡ଼ିକ ବ୍ୟତୀତ ସେ ଅନ୍ୟ ତିନିଖଣ୍ଡ ଗ୍ରନ୍ଥର ମୁଖବନ୍ଧ ଲେଖିଛନ୍ତି, ସଂପାଦନା କରିନାହାନ୍ତି । ସେଗୁଡ଼ିକ, କୁନ୍ତଳା କୁମାରୀ ସାବତଙ୍କ ପ୍ରେମଚିନ୍ତାମଣି, ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ କବିତାକୁମୁଦ ଓ ଗୋକୁଳାନନ୍ଦ ପଟ୍ଟନାୟକଙ୍କ ଜାନକୀବଲ୍ଲଭବିଳାସ । ସକଳ ମୁଖବନ୍ଧକୁ ଆମେ ଗ୍ରନ୍ଥ-ସମାଲୋଚନାର ଉଦାହରଣ ଭାବରେ ଗ୍ରହଣ କରିପାରିବା ।

ଗ୍ରନ୍ଥର ମୁଖବନ୍ଧ ପଢିଲାବେଳେ ସ୍ପଷ୍ଟ ଦିଶିଯାଏ, ସେ ଏହାକୁ ଥରେ ନୁହେଁ, ବାରମ୍ବାର ପଢିଛନ୍ତି । ଗ୍ରନ୍ଥର ଗଢଣରୀତି, ଶବ୍ଦପ୍ରୟୋଗ, କାହାଣୀ ଓ ଭାବକୁ ଆପଣା ବିଚାର ଓ ପ୍ରଜ୍ଞାର କଷଟିରେ ପରଖିଛନ୍ତି । ପରଖ କାଳରେ କାହାଣୀର ଗୁଣସୂତ୍ର ଓ ସାଂସ୍କୃତିକ ଇତିହାସରେ ତାହାର କାରଣ ଖୋଜିଛନ୍ତି । କେଉଁ ବିଶେଷ ମାନସିକତା

ଲେଖକଙ୍କୁ ଗ୍ରନ୍ଥ ରଚନା ପାଇଁ ପ୍ରଚୋଦିତ କରିଛି, ସେ କେଉଁ କାଳଖଣ୍ଡର କଥା କହୁଛନ୍ତି- ତାହା ଖୋଜିଛନ୍ତି । ଅର୍ଥାତ ସେ ସ୍ପଷ୍ଟ କରିଦେବା ପାଇଁ ଚାହୁଁଛନ୍ତି, ଗ୍ରନ୍ଥ ଜଣେ ବ୍ୟକ୍ତିଙ୍କର ଅନୁଭବ, ଅଧ୍ୟୟନ ଓ ମେଧାପ୍ରସୂତ ସାମଗ୍ରୀ, ସହୃଦୟ ଉପଭୋଗପାଇଁ ତାହାର ସୃଷ୍ଟି । ଏବଂ, ଏହା ଆସ୍ୱାଦନ କାଳରେ ସ୍ରଷ୍ଟାର ବ୍ୟକ୍ତିତ୍ୱ, ସର୍ଜନ ରହସ୍ୟ ଓ ସମକାଳର ସକଳ ଗୁମର ସ୍ୱତଃ ଖୋଲିଯାଉଥାଏ । ଏହା ସର୍ଜନକର୍ମ ପ୍ରସଙ୍ଗର କଥା । ମାତ୍ର ଜଣେ ସମୀକ୍ଷକ କେବଳ 'ମାତ୍ର' ସହୃଦୟ ଉପଭୋକ୍ତା ନୁହେଁ, ପଦାର୍ଥର ମୋହମୁକ୍ତ ବ୍ୟବଚ୍ଛେଦକ । ସେ ପଦାର୍ଥର ରୂପ ପାଖରେ ଆପଣାର ଆନନ୍ଦ, ବିରକ୍ତି ଅଥବା କ୍ଳାନ୍ତିକୁ ସମର୍ପି ଦିଏନାହିଁ, ଅନାସକ୍ତ ଭାବରେ ଆପଣା ଅବବୋଧକୁ ସ୍ପଷ୍ଟତର କରିଦେଉଥାଏ ।

ଆର୍ତ୍ତବଲ୍ଲଭ ଗ୍ରନ୍ଥଗୁଡ଼ିକର ମୁଖବନ୍ଧରେ ତାହାହିଁ କରିଛନ୍ତି । ପ୍ରେମଚିନ୍ତାମଣିର ମୁଖବନ୍ଧ ହେଉଛି ରାଗାନୁଗା- ଭକ୍ତିମାର୍ଗ ଆଧାରିତ ବୈଷ୍ଣବଦର୍ଶନର ମନସ୍ତାତ୍ତ୍ୱିକ ଓ କାଳଗତ ବ୍ୟାଖ୍ୟା । କହିଛନ୍ତି- ପ୍ରେମର ସ୍ୱରୂପ ଓ ଶକ୍ତି ମଧ୍ୟରେ ପ୍ରେମ-ଶକ୍ତି ଶ୍ରେଷ୍ଠ । ପ୍ରେମ ହେଉଛି ଶକ୍ତିର ପ୍ରତୀକ । ଗୋପୀମାନଙ୍କର କୃଷ୍ଣ ସମ୍ମେଳନ ଇଚ୍ଛା, ତୃଷ୍ଣା ଦୈହିକ କାମନାର ଉଦ୍ଘାଟନ ନୁହେଁ, ସ୍ୱତନ୍ତ୍ର । ପ୍ରବୃତ୍ତି ଅସତ୍ୟ ନୁହେଁ, ମାନସିକ ଉତ୍ତରଣରେ ହିଁ ତାହାର ସ୍ନିଗ୍ଧତାକୁ ଅନୁଭବ କରାଯାଇପାରବ । ସେଥିପାଇଁ, ଏକ ଦର୍ଶନ ଅବବୋଧ ପାଇଁ କବିମାନେ ରାଧାକୃଷ୍ଣ ଓ ଗୋପାଙ୍ଗନାମାନଙ୍କୁ ମଣିଷରେ ରୂପାନ୍ତର କରିଦେଇଛନ୍ତି । ଇନ୍ଦ୍ରିୟ ମାଧ୍ୟମ ଦେଇ ଅପ୍ରାକୃତ ପ୍ରେମକୁ ଅନୁଭବ କରିହେଉଛି । କୁନ୍ତଳାକୁମାରୀ ସେହିପରି ଜଣେ ନାରୀ, ଶକ୍ତି-ସ୍ୱରୂପିଣୀ ଏବଂ ଦିବ୍ୟପ୍ରେମ ବ୍ୟାଖ୍ୟାକାରିଣୀ, ଅସାମାନ୍ୟ ପ୍ରତିଭା । ଏକ ଜଟିଳ ଦର୍ଶନକୁ ଭାଷାର ସହଜାଶକ୍ତି ମାଧ୍ୟମରେ କିପରି 'ହୃଦ୍ୟ' ଓ 'ବୋଧ୍ୟ', ଅନ୍ୟଶବ୍ଦରେ 'ଚମତ୍କାର' କରାଯାଇପାରେ, ତାଙ୍କ ବ୍ୟକ୍ତିତ୍ୱ ଏହି ଭାବାଦର୍ଶର ଉଦାହରଣ । ମାତ୍ର କେଉଁ ବିଶେଷ ପ୍ରଚୋଦନା ଜଣେ ନାରୀକୁ ଏତେ ଭାବମୟୀ ଓ ବିହ୍ୱଳା କରିପାରିଛି, ସମ୍ଭବତଃ ଆର୍ତ୍ତବଲ୍ଲଭ ଏହାର ରହସ୍ୟ ଖୋଜିନାହାନ୍ତି । ପରବର୍ତ୍ତୀକାଳରେ, ଚକ୍ରଧର ମହାପାତ୍ରଙ୍କ କୁନ୍ତଳାକୁମାରୀ ଜୀବନଚରିତ ଗ୍ରନ୍ଥରେ ଏହି ରହସ୍ୟ ସ୍ପଷ୍ଟତର ହୋଇଛି । ୩

ଅନ୍ୟପକ୍ଷରେ, ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ କବିତାକୁମୁଦର ମୁଖବନ୍ଧ ଭିନ୍ନ ପର୍ଯ୍ୟାୟର । ଏଥିରେ କୁହାଯାଇଛି, ବିଚ୍ଛନ୍ଦଙ୍କ କବିତା ତାଙ୍କ ଜାତିପ୍ରୀତିବୋଧ ଓ ସଂଗୀତ ଅନୁରକ୍ତିର ଅଭିବ୍ୟକ୍ତି । "ପୁରାତନରେ ଯାହା ଉପଯୋଗୀ ତାହାକୁ ସଂରକ୍ଷଣ କରି ତଦ୍‌ସହ ନୂତନର ମଧୁର ସମାବେଶ ଯୁଗ ପ୍ରବର୍ତ୍ତକଙ୍କ କାମ । ଏହାଦ୍ୱାରା ଜାତୀୟ ଜୀବନ ସଂଗଠିତ ଓ ସଂସ୍ଥାପିତ ହୁଏ"- ବିଚ୍ଛନ୍ଦଙ୍କ ସୃଷ୍ଟି ଉପର୍ଯ୍ୟୁକ୍ତ ଭାବାଦାର୍ଶର କଳାସୌଧ । ଏବଂ, ଜାନକୀବଲ୍ଲଭବିଳାସର ମୁଖବନ୍ଧରେ ସ୍ପଷ୍ଟ କରିଦିଆଯାଇଛି, "କାବ୍ୟ ଗଣ ସାହିତ୍ୟ ନୁହେଁ", ମାତ୍ର ଗଣସଂପୃକ୍ତ । ଏହି ପ୍ରସଙ୍ଗରେ ବାଲ୍ମୀକି ସୃଷ୍ଟ ରାମ, ପରବର୍ତ୍ତୀ କାଳରେ ସ୍ଥାନ ଓ କବି ପ୍ରତିଭା ମାଧ୍ୟମରେ କିପରି ବାରମ୍ବାର ନୂଆ ରୂପ ଓ ଭାବରେ ସମୁଜ୍ଜ୍ୱଳ- ଆର୍ତ୍ତବଲ୍ଲଭ ତାହାହିଁ କହିଛନ୍ତି । ଏବଂ, ପ୍ରସଙ୍ଗକ୍ରମେ ଆପଣାର ପ୍ରିୟ ଅଳଂକାରଶାସ୍ତ୍ରର ଚର୍ଚ୍ଚା ମଧ୍ୟ କରିଛନ୍ତି । ସଂପୃକ୍ତ ଗ୍ରନ୍ଥଗୁଡ଼ିକର ମୁଖବନ୍ଧ ପ୍ରାଚୀ ଗ୍ରନ୍ଥମାଳା

ଆନୁକୂଲ୍ୟରେ ପ୍ରକାଶିତ ଗ୍ରନ୍ଥଗୁଡ଼ିକର ମୁଖବନ୍ଧର ପ୍ରତିଧ୍ୱନି- ଟେକ୍‌ସ୍‌ଚୁଆଲ୍ କ୍ରିଟିସିଜିମ୍‌ର ଉଦାହରଣ ।

**ପାଂଚ**

ଆର୍ତ୍ତବଲ୍ଲଭଙ୍କ ସାହିତ୍ୟ ସଂକ୍ରାନ୍ତ ଚର୍ଚ୍ଚା ସଂଖ୍ୟାରେ ମାତ୍ର 'ଛଅ' । ଏଥିରେ ଅଭିଭାଷଣ ରହିଛି । ମାତ୍ର ଏଗୁଡ଼ିକୁ "ମାତ୍ର" କହିଲେ ଠିକ୍ ହେବ ନାହିଁ । "ମାତ୍ର" ଭିତରେ "ବହୁତ" ସମୀକୃତ । ଦୁଇଟି ଆଲୋଚନା ଦୁଇଜଣ କବିଙ୍କ ବିଷୟରେ- **ସାରଳା** ଓ **ଉପେନ୍ଦ୍ର**; ଗୋଟିଏ ଏକ ଅଳଂକାର ଗ୍ରନ୍ଥ- **ଏକାବଳୀ**, ଅନ୍ୟଟି **ପୁରାଣସାହିତ୍ୟ** । ଅଭିଭାଷଣ ଓ ଓଡ଼ିଆ ସାହିତ୍ୟ(ପୂର୍ବ-ମଧ୍ୟକାଳୀନ) ଗୋଟିଏ ପ୍ରକାରର- ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚା । ଏତିକି । ଅଧିକ ଲେଖିବାର ସମ୍ଭବତଃ ଆବଶ୍ୟକତା ନ ଥିଲା । ସେ ଏକଥା ବୁଝିଛନ୍ତି । ତେଣୁ, ଲେଖିନାହାନ୍ତି ।

ଏକାବଳୀ, ଆର୍ତ୍ତବଲ୍ଲଭଙ୍କ ପ୍ରଥମ ସାହିତ୍ୟ-ଚର୍ଚ୍ଚା ପ୍ରବନ୍ଧ । ବିଦ୍ୟାଧରଙ୍କ ରଚିତ ଏକ ଅଳଙ୍କାରଶାସ୍ତ୍ର ଗ୍ରନ୍ଥର ଏହା ମୁଦ୍ରିତ ରୂପ, ବିଖ୍ୟାତ ଟୀକାକାର ମଲ୍ଲିନାଥକୃତ ତରଳା ଟୀକା ସହିତ ୧୯୦୩ ମସିହାରେ ପ୍ରକାଶ ପାଇଛି । ବମ୍ବେ ସଂସ୍କୃତ ଗ୍ରନ୍ଥମାଳାର ପ୍ରଥମ ପ୍ରକାଶନ । ପ୍ରକାଶକ: କମଳା ପ୍ରସାଦ ତ୍ରିବେଦୀ । କବି ଓଡ଼ିଆ । ନିଜକୁ ମାହେଶ୍ୱର କବି ବିଦ୍ୟାଧର କହିଛନ୍ତି । କୌଣସିଠାରେ ବାପା, ବୋଉ, ଜାତି, ଗୋତ୍ରର ଠିକଣା ଦେଇନାହାନ୍ତି । ମାତ୍ର ଗ୍ରନ୍ଥର ୩୧୪ତମ ଶ୍ଳୋକର ରାଜା ନରସିଂହ ଦେବଙ୍କର ପ୍ରଶସ୍ତି ଗାନ କରିଛନ୍ତି । ତିନି ଜଣ ନରସିଂହ ନାମଧାରୀ ରାଜା(ସତ୍ୟନାରାୟଣ ରାଜଗୁରୁ) ବିଭିନ୍ନ କାଳରେ ଓଡ଼ିଶାର ଶାସକ । ସେମାନଙ୍କ ମଧ୍ୟରୁ କିଏ ଏହି ନରସିଂହ ଦେବ? ମନମୋହନ ଚକ୍ରବର୍ତ୍ତୀ **ଗଙ୍ଗବଂଶର ଇତିହାସ** ଆଲୋଚନାରେ ତାଙ୍କୁ ପ୍ରଥମ ନରସଂହଦେବ କହିଛନ୍ତି(ଜର୍ନାଲ୍ ଅଫ୍ ଏସିଆଟିକ୍ ସୋସାଇଟି, ୧୯୦୩, ୨ୟ ଭାଗ, ପୃ-୫୧) । କମଳାପ୍ରସାଦ ତ୍ରିବେଦୀ ଓ ସତ୍ୟନାରାୟଣ ରାଜଗୁରୁ ଯଥାକ୍ରମେ ତାଙ୍କୁ ଦ୍ୱିତୀୟ ଓ ତୃତୀୟ ନରସିଂହ କହିଛନ୍ତି । ଆର୍ତ୍ତବଲ୍ଲଭଙ୍କ ବିଚାର କିନ୍ତୁ ଭିନ୍ନ ପ୍ରକାରର । ସେ ଓଡ଼ିଶାରେ ଆଠଜଣ ନରସିଂହଦେବଙ୍କୁ ଠାବ କରିଛନ୍ତି । ଏବଂ, କହିଛନ୍ତି- ବିଦ୍ୟାଧର କେଶରୀ ନରସିଂହଦେବଙ୍କ ସାମସମୟିକ । କେଦାରନାଥ ମହାପାତ୍ରଙ୍କ ବିଚାରରେ ସେ କିନ୍ତୁ ପ୍ରଥମ ନରସିଂହ ଦେବ(୧୨୩୮ ମସିହା)ଙ୍କ ସମକାଳୀନ ଜଣେ ଶକ୍ତିଶାଳୀ ଅଳଙ୍କାର ଶାସ୍ତ୍ରବିତ୍ ଏବଂ **ସାହିତ୍ୟଦର୍ପଣ**କାର ବିଶ୍ୱନାଥ କବିରାଜଙ୍କ ଉଦୟ(ପଂଚଦଶ ଶତାବ୍ଦୀର ପ୍ରଥମ/ଦ୍ୱିତୀୟ ଦଶକ)ଏକାବଳୀ ଗ୍ରନ୍ଥର ଆଧିପତ୍ୟ ହରାଇବାର କାରଣ ହୋଇଛି ।[୪]

ଓଡ଼ିଶାର ପୁରାଣ ସାହିତ୍ୟର ବୈଶିଷ୍ଟ୍ୟ ଆଲୋଚନାରେ ପୁରାଣ ସମ୍ପର୍କରେ ବିଶେଷ କିଛି କୁହାଯାଇନାହିଁ । ପୁରାଣ ରଚନାର କାରଣ ଖୋଲି ଦିଆଯାଇଛି ! ଉତ୍କଳ ଓ କବିସମ୍ରାଟ ଉପେନ୍ଦ୍ରଭଂଜ ମଧ୍ୟ ଉପର୍ଯ୍ୟୁକ୍ତ ଚର୍ଚ୍ଚା ଗୋତ୍ରର । ଉଭୟ ଆଲୋଚନାରେ ଉତ୍କଳ ବିଷୟରେ ଅଧିକ କୁହାଯାଇଛି । ଏବଂ, କୁହାଯାଇଛି- ଓଡ଼ିଶା ହିଁ କେବଳ ଏପରି କବିମାନଙ୍କୁ ଜନ୍ମ ଦେଇପାରେ । ପ୍ରସଙ୍ଗକ୍ରମେ, ଉପେନ୍ଦ୍ରଭଞ୍ଜଙ୍କ ପାଖରେ ଦୀନକୃଷ୍ଣ ବସିଛନ୍ତି । ଉପେନ୍ଦ୍ରଙ୍କ ସଂପର୍କରେ ଅତ୍ୟନ୍ତ ପ୍ରଗଲ୍‌ଭ ଶବ୍ଦରେ ଆର୍ତ୍ତବଲ୍ଲଭ ଘୋଷଣା

କରିଛନ୍ତି- କବି **ଧର୍ମତତ୍ତ୍ୱ-ଅବଗାହୀ, ଉତ୍କଳୀୟ ବୈଷ୍ଣବ, ଗୋପୀ ଓ କୃଷ୍ଣତତ୍ତ୍ୱର ପ୍ରବକ୍ତା, ଧାର୍ମିକପ୍ରବର ଓ ବୈଷ୍ଣବଶ୍ରେଷ୍ଠ ।** ଉପେନ୍ଦ୍ରଙ୍କ ସମ୍ପର୍କରେ ଯେଉଁ କଥା ସେ ଲାବଣ୍ୟବତୀର ମୁଖବନ୍ଧରେ କହିବାକୁ ଚାହିଁ ମଧ୍ୟ କହିପାରି ନ ଥିଲେ, ଆଲୋଚ୍ୟ ପ୍ରବନ୍ଧରେ ତାହା ପ୍ରକାଶ କରିଛନ୍ତି । ଜାତି-ପ୍ରୀତିବୋଧ ଓ ଉପେନ୍ଦ୍ର- ବିଦଗ୍ଧ-ଭାବର ଏହା ଏକ ଅନନ୍ୟ ଉଦାହରଣ । ଏକଥା କହିଲେ ଆଦୌ ଅତିରଂଜନ ହେବନାହିଁ, ଆର୍ତ୍ତବଲ୍ଲଭଙ୍କ ଉପେନ୍ଦ୍ର ପ୍ରେମର ସଭା-ସଂସ୍କରଣ **କଳିଙ୍ଗଭାରତୀ** ଅନୁଷ୍ଠାନ । ମାତ୍ର ଗୁରୁତ୍ୱପୂର୍ଣ୍ଣ କଥା, ଜୀବନର ପରିଣତ ବୟସରେ, ଆପଣା ପ୍ରିୟ ଓ ଜାତୀୟ କବି ଉପେନ୍ଦ୍ରଙ୍କ ଗ୍ରନ୍ଥଗୁଡ଼ିକ ଶୁଦ୍ଧ ସଂସ୍କାରଣ ପ୍ରକାଶ ପାଇନାହିଁ ବୋଲି ଆର୍ତ୍ତବଲ୍ଲଭ କ୍ଷୋଭ ପ୍ରକାଶ କରିଛନ୍ତି । କ୍ଷୋଭର ନାଦ ଆଜି ବି ସଭାସଦ ଓ 'ଭାରତୀ'ଭୂଷଣମାନଙ୍କୁ ଆନ୍ଦୋଳିତ କରିପାରିନାହିଁ , ଅପୂର୍ଣ୍ଣ ରହିଛି ।

ଆର୍ତ୍ତବଲ୍ଲଭଙ୍କ **ଅଭିଭାଷଣ ଓ ଓଡ଼ିଆ ସାହିତ୍ୟର ବିକାଶଧାରା**(ପୂର୍ବ-ମଧ୍ୟକାଳ) ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ । ଅଭିଭାଷଣରେ ପ୍ରାଚୀନକାଳରୁ ସମକାଳ(୧୯୩୬ ମସିହା ପର୍ଯ୍ୟନ୍ତ) ଏବଂ ଓଡ଼ିଆ ସାହିତ୍ୟର ବିକାଶଧାରାରେ ମଧ୍ୟକାଳ ପର୍ଯ୍ୟନ୍ତ ଚର୍ଚ୍ଚା କରାଯାଇଛି । ଚର୍ଚ୍ଚାର ବକ୍ତବ୍ୟକୁ ପ୍ରାଚୀ ପ୍ରକାଶିତ ଓ ସ୍ୱ ସମ୍ପାଦିତ ଗ୍ରନ୍ଥଗୁଡ଼ିକୁ ମୁଖବନ୍ଧର ସାରକଥା ବା ମର୍ମ କୁହାଯାଇପାରେ । ଏଠାରେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ତାଙ୍କ ପୂର୍ବରୁ, ଅର୍ଥାତ୍ ସମକାଳରେ ଲିଖିତ ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥଗୁଡ଼ିକୁ ସେ ପଢିଛନ୍ତି, ଆଲୋଚନା କରିଛନ୍ତି, ଆଲୋଚନାରେ ପୂର୍ବ-ସିଦ୍ଧାନ୍ତଗୁଡ଼ିକର ସ୍ୱୀକୃତି ଅଥବା ପୁନଃନିର୍ମାଣର ସ୍ୱର ରହିଛି । ସ୍ଥଳବିଶେଷରେ ପୂର୍ବ-ସିଦ୍ଧାନ୍ତବିରୋଧୀ-ସ୍ୱର(ବିଶେଷତଃ ବିଜୟଚନ୍ଦ୍ର ମଜୁମଦାର ଓ ବିନାୟକ ମିଶ୍ର ସମ୍ପର୍କରେ) ଅତ୍ୟନ୍ତ ପ୍ରଖର ଓ ମୁଖର । ଆପଣା ବିଚାର ଓ ସିଦ୍ଧାନ୍ତ ସମ୍ପର୍କରେ ସେ ଏତେ ମାତ୍ରାରେ ନିଶ୍ଚିତ ଯେ, ଅନ୍ୟ କାହା ସ୍ୱରକୁ ସେ ଶ୍ରଦ୍ଧା ବା ସମ୍ମାନ ଦେଇନାହାନ୍ତି( ଯଦିଚ ସେ ବିଭିନ୍ନ ପ୍ରସଙ୍ଗରେ 'ସମ୍ଭବତଃ', 'ଅନୁମାନ' ଶବ୍ଦ ବାରମ୍ବାର ପ୍ରୟୋଗ କରିଛନ୍ତି) । ତେଣୁ ପ୍ରଶ୍ନ ଉଠିବା ସ୍ୱଭାବିକ, ଆତ୍ମବିଶ୍ୱାସରେ ଏତେ ମାତ୍ରାରେ ପ୍ରାଣବନ୍ତ ଜଣେ ସୁପଠ ଓ ମନନଶୀଳ ବ୍ୟକ୍ତିତ୍ୱ ସାହିତ୍ୟର ଇତିହାସ ଲେଖିଲେ ନାହିଁ କାହିଁକି? ସମାଜ, ଧର୍ମ, ରାଜନୀତି, ଦର୍ଶନ, ସଂସ୍କୃତି ଓ ଭାଷାର କାଳକ୍ରମିକ ବିବର୍ତ୍ତନକୁ ପୃଷ୍ଠଭୂମିରେ ରଖି ଆପଣା ଆବିଷ୍କୃତ ତଥ୍ୟର ବିଶ୍ଳେଷଣରେ ଜୀବନର ଆୟୁଷକୁ ଉପଯୋଗ କରିଚାଲିଲେ । ଏହି ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ପାଇବା ଓ କହିବା ନିରାପଦ ହେବନାହିଁ । ମାତ୍ର ଅତୀତକୁ ଖୋଜିବା ପାଇଁ ତାଙ୍କ ଭିତରେ ସ୍ୱପ୍ନ ସୃଷ୍ଟିର କାରଣ **ଉଷାଭିଳାଷର** ମୁଖବନ୍ଧ ଏବଂ କେତେକ ଆଲୋଚନାରେ ସ୍ୱତଃ ପ୍ରକାଶପାଇଛି । ଆଲୋଚନାର ଉକ୍ତି ଏହିପରି ।

> "ଆଧୁନିକ କବିମାନେ ପାଶ୍ଚାତ୍ୟ ପ୍ରଭାବରେ ଉତ୍କଳ ଭାଷାର ସହଜ ସୌନ୍ଦର୍ଯ୍ୟକୁ ଅନୁଭବ କରିପାରୁନାହାନ୍ତି । ** ଏହି ଅବସ୍ଥା ସଂଦର୍ଶନରେ ବ୍ୟଥିତ ହୋଇ ମୁଁ ଉତ୍କଳ ଭାଷା ଓ ତଥା ସାହିତ୍ୟର ସହଜ ଭାବ ଲୋକ ସାଧାରଣ ସମକ୍ଷରେ ଉପସ୍ଥାପନ କରିବା ମନାସ

କରି, ଦୃଢପରିକର ହୋଇ ପ୍ରାଚୀନ ସାହିତ୍ୟ ଅନୁଶୀଳନରେ ପ୍ରବୃତ୍ତ ହେଲି।(ମୁଖବନ୍ଧ: କବିତାକୁମୁଦ, ୧୯୪୬) ।

"ପ୍ରାଚୀନକୁ ତୁଚ୍ଛ କରି ନବୀନକୁ ଗଣ୍ଡିଧନ କରିବା ବା ପ୍ରାଚୀନକୁ ଗଣ୍ଡିଧନ କରି ନବୀନ ପ୍ରତି ଚକ୍ଷୁମୁଦ୍ରିତ କରିବା ଅବିମୃଶ୍ୟକାରିତାର ଚିହ୍ନ । ଭାଷାର ବ୍ୟଷ୍ଟିବୋଧ ହିଁ ଜାତିର ସ୍ୱତନ୍ତ୍ରର କାରଣ ।** ୧୯/୨୦ଶ ଶତାବ୍ଦୀର ଭାଷାର ସହଜା ଶକ୍ତିକୁ ବୁଝିଥିବା ଲୋକମାନଙ୍କର ସଂଖ୍ୟା କମ୍ ।(କୁନ୍ତଳାକୁମାରୀଙ୍କ ପ୍ରେମଚିନ୍ତାମଣିର ମୁଖବନ୍ଧ: ୧୯୩୦) ।"

"ଦୁଃଖର କଥା, ଯେଉଁ ମହାଭାରତ ପ୍ରକାଶିତ ହୋଇଛି, ସେଥିରେ ସାରଳା ଦାସ କେତେ ଅଣାରେ ଅଛନ୍ତି, ତାହା ବୁଝିବା ବଡ଼ କଠିନ । ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ଏପର୍ଯ୍ୟନ୍ତ ଓଡ଼ିଶାରେ ପ୍ରକାଶିତ ହୋଇନାହିଁ । ଏହାଠାରୁ ଦୁଃଖର ବିଷୟ ଆଉ କ'ଣ ହୋଇପାରେ? ଏପରି ପ୍ରାଚୀନ ଓ ବିଶାଳ ଗ୍ରନ୍ଥ ଅନ୍ୟ ପ୍ରାଦେଶିକ ଭାଷାରେ ଅଛି କି? ସୁବିଶୁଦ୍ଧ ସଂସ୍କରଣ ହେଲେ, ଭାଷାତତ୍ତ୍ୱ ବିଷୟରେ ସାରଳା ମହାଭାରତର ଯେ ଦାନ ହେବ, ତାହା ଅକଥନୀୟ । ଏହି ଅମୂଲ୍ୟ ରତ୍ନର ଉପଯୁକ୍ତ ପରିଚୟ ନ ଦେଇ ଆମ୍ଭେମାନେ କାପୁରୁଷତାର ପରିଚୟ ଦେଉନାହୁଁ କି ?" (ଅଭିଭାଷଣ: ୧୯୩୬)

"ଦୁଃଖର କଥା, ଆମ ଦେଶରେ ବହୁତ ଲୋକ ନିଜକୁ ସାହିତ୍ୟିକ ମନେକରି ଗର୍ବ ଅନୁଭବ କରନ୍ତି । କିନ୍ତୁ ସାରଳା ଦାସଙ୍କ ମହାଭାରତ ପାଠ କରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଓଡ଼ିଆ ସାହିତ୍ୟରେ ଯେ ପାରଦର୍ଶୀ ହେବାକୁ ଚାହିଁବ, ସେ ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବ । ଏ ଗ୍ରନ୍ଥମାନ ପାଠ ନ କଲେ ପ୍ରକୃତରେ ଲୋକ ଓଡ଼ିଆ ସାହିତ୍ୟର ପୂର୍ଣ୍ଣ ପରିଚୟ ପାଇପାରିବନାହିଁ । ଦୁଃଖର କଥା, ଭାରତର ଅତି ପ୍ରାଚୀନ, ଅମୂଲ୍ୟ ପ୍ରାକୃତ ଭାଷାର ଲିଖିତ ବିଶାଳ ଗ୍ରନ୍ଥର ଏପର୍ଯ୍ୟନ୍ତ ଶୁଦ୍ଧ ସଂସ୍କରଣ ସଂକଳିତ ଓ ପ୍ରକାଶିତ ହୋଇନାହିଁ । ବଜାରରେ ଯେ ଗ୍ରନ୍ଥ ମିଳେ ସେ ଗ୍ରନ୍ଥରେ ସାରଳାଙ୍କ ଅସ୍ତିତ୍ୱ ଆଠ ଦଶ ପଣ ଅଛି । ସାରଳା ଦାସ ନିଜ ମହାଭାରତକୁ ଦାଣ୍ଡିବୃତ୍ତରେ ଲେଖିଥିଲେ । ସେହି ଦାଣ୍ଡିବୃତ୍ତକୁ ଆମ ଦେଶରେ କାଟିକୁଟି, ଛାଟିଛୁଟି, ମାଠିମୁଠି ଏକ ଅଦ୍ଭୁତ କୌଶଳ ପ୍ରଦର୍ଶନ କରିଛନ୍ତି ।

ତାଙ୍କ ଭାଷା ସରଳ, ସହଜ ଓ ପ୍ରାକୃତିକ । ତାହା ସଂସ୍କୃତ-ମୂର୍ଚ୍ଛିତ ନୁହେଁ ଏବଂ ତାହା ପ୍ରାଚୀନ ଉତ୍କଳର ପ୍ରଚଳିତ ପ୍ରାକୃତର ବିକାଶ-ସମ୍ଭୂତ(ସାରଳାଦାସ: ସାରଳା ପରିକ୍ରମା, ୧୯୫୪) ।"

ଉପର୍ଯ୍ୟୁକ୍ତ ବକ୍ତବ୍ୟକୁ ଭୂମିକରି ଆର୍ତ୍ତବଲ୍ଲଭଙ୍କ ଭିତରେ ଆଧୁନିକତା ପ୍ରତି ବିମୁଖତା ଥିଲା ବୋଲି ଆମେ କହିପାରିବା କି ? ଏହି ପ୍ରଶ୍ନର ଏକ ନିରାପଦ ଉତ୍ତର ଦିଆଯାଇ ପାରିବନାହିଁ ।

କବିତାକୁମୁଦ, ପ୍ରେମଚିନ୍ତାମଣି ଓ ଜାନକୀବଲ୍ଲଭବିଳାସ ଗ୍ରନ୍ଥର ମୁଖବନ୍ଧରେ ଏହି ପ୍ରଶ୍ନର ଉତ୍ତର ରହିଛି । ସେ ସ୍ୱୀକାର କରୁଛନ୍ତି-

"ପୁରାତନ ଯାହା ଉପଯୋଗୀ, ତାହାକୁ ସଂରକ୍ଷଣ କରି ତଦ୍‌ସହ ନୂତନର ମଧୁର ସମାବେଶ ଯୁଗପ୍ରବର୍ତ୍ତକଙ୍କ କାମ ।** ଏହାଦ୍ୱାରା ଜାତୀୟ ଜୀବନ ସଂଗଠିତ ଓ ସଂସ୍ଥାପିତ ହୁଏ ** ଏବଂ ଜାତୀୟ ଜୀବନ ପରମ୍ପରାର ସମଷ୍ଟି ।"

ଅର୍ଥାତ୍, ପରମ୍ପରାର ଭୂମି ଉପରେ ଆଧୁନିକ ସୌଧ ଗଢଣ ଭାବାଦର୍ଶରେ ସେ ବିଶ୍ୱାସ କରନ୍ତି । ମାତ୍ର କୌତୂହଳର କଥା, ଆଧୁନିକ ଓଡ଼ିଆ ଭାଷାରେ ଭଲ ନାଟକ, ଉପନ୍ୟାସ, ଜୀବନଚରିତ ଏବଂ ସମାଲୋଚନା ନାହିଁ ବୋଲି ଅଭିଭାଷଣରେ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଉପନ୍ୟାସ ପାଇଁ 'କୁତ୍ସିତ ପ୍ରେମର କାହାଣୀ' ଏବଂ ସମାଲୋଚନା ପାଇଁ 'କେବଳ ନିନ୍ଦା ଓ ପ୍ରଶଂସା" ଶବ୍ଦ ପ୍ରୟୋଗ କରିଛନ୍ତି । ଉପର୍ଯ୍ୟୁକ୍ତ ମନ୍ତବ୍ୟକୁ ଆମେ ସ୍ୱୀକାର କରିପାରିବା କି?

ଭାଷାର ଇତିହାସ ଓ ଆଧୁନିକ କାଳରେ ଭାଷାର ପ୍ରୟୋଗ କ୍ଷେତ୍ରରେ ମଧ ଆର୍ତ୍ତବଲ୍ଲଭଙ୍କ ସ୍ୱତନ୍ତ୍ର ଦୃଷ୍ଟି ରହିଛି । ସେ କହିବାକୁ ଚାହୁଁଛନ୍ତି-

"ପାଣିନିଙ୍କ ବେଳକୁ ପ୍ରାକୃତ ଭାଷା ସୃଷ୍ଟି ହୋଇଛି** ଓଡ଼ିଆଭାଷା-ମାଗଧୀ, ଉତ୍ତ୍ରମାଗଧୀ, ଅବନ୍ତୀ ଓ ଶାବରୀ ଭାଷାର ସମ୍ମିଶ୍ରଣ** ଇଂରାଜୀ ଶିକ୍ଷାର ପ୍ରବର୍ତ୍ତନ ପରେ ନୂତନ ଯୁଗର ବଙ୍ଗଳା ଭାଷା ଅନୁକରଣରେ ସଂସ୍କୃତ ବ୍ୟାକ୍ୟରଣର ନିର୍ଦ୍ଦେଶ ଅନୁସାରେ ଉତ୍କଳ ଭାଷା ଲିଖିତ ହେବାକୁ ଲାଗିଲା** ସଂସ୍କୃତ ମାପକାଠିରେ ମାପି ଉତ୍କଳ ଭାଷାର ପ୍ରାଚୀନ ଲେଖାମାନଙ୍କ ଭାଷା ଦୋଷଦୁଷ୍ଟ କହିବା ଠିକ୍ ହେବନାହିଁ । ତେଣୁ ଆଧୁନିକ ଓଡ଼ିଆଭାଷା ନବସଂସ୍କୃତ ଭାଷା** ବିଶ୍ୱମନସ୍କ ହେବା ଆବଶ୍ୟକ** ଶବ୍ଦ ଆମଦାନୀ ହେବା ମଧ ଉଚିତ୍** ଭାଷା ସମୃଦ୍ଧ ହେବ** ମାତ୍ର ନିଜ ଭୂମିର ଶବ୍ଦ ପ୍ରୟୋଗ ସର୍ବାଦୌ ଶ୍ରେୟ ।"

ଏଥିପାଇଁ ସେ ଓଡ଼ିଆ ଭାଷାର ବ୍ୟାକରଣ, ଶବ୍ଦକୋଷ, ଅଳଂକାରଶାସ୍ତ୍ର ପ୍ରଣୟନ ଉପରେ ଗୁରୁତ୍ୱ ଦେଇଛନ୍ତି ।

ଉଦ୍ଧୃତାଂଶ ଆର୍ତ୍ତବଲ୍ଲଭଙ୍କ ଓଡ଼ିଆ ଭାଷାର ଇତିହାସ ଓ ଗୁଣସୂତ୍ର ସଂକ୍ରାନ୍ତ ଅବବୋଧର ସ୍ପଷ୍ଟ ଉଦାହରଣ । ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ-ଚର୍ଚ୍ଚା କାଳରେ ସେ ଭାଷାକୁ ନିଧି କରିଛନ୍ତି । ସଂସ୍କୃତ ଓ ବଙ୍ଗଳା ଭାଷା ଓ ସାହିତ୍ୟ ସଂପୃକ୍ତି ତାଙ୍କ ଅବବୋଧକୁ ଅନ୍ତର୍ଭେଦୀ କରିଛି । ଭାଷା ଆଧାରରେ ସେ ସାହିତ୍ୟର ଇତିହାସ ନିର୍ମାଣରେ ଅବଶ୍ୟ ଉଦ୍ୟମ କରିଛନ୍ତି । ଗ୍ରନ୍ଥ-ସଂପାଦନା ଯେ ମୁଖ୍ୟତଃ ଭାଷା ଓ ରଚନା ଶୈଳୀଭିତ୍ତିକ, ଏକଥା ବି ବୁଝିଛନ୍ତି । ମାତ୍ର ଅବବୋଧ ଉପସ୍ଥାପନରେ 'ବିଜ୍ଞାନଦୃଷ୍ଟି' ସ୍ପଷ୍ଟ

ହୋଇପାରୁନାହିଁ । କ'ଣ ବା ଏହାର କାରଣ ହୋଇପାରେ? କାରଣ ଏକ ନୁହେଁ, ବହୁ ପ୍ରସ୍ତଯୁକ୍ତ; ମାତ୍ର ଗୋଟିଏ କାରଣ ସୁସ୍ପଷ୍ଟ । ତାହା ଉଗ୍ର ଜାତିପ୍ରୀତିବୋଧ । ନିମ୍ନୋକ୍ତ ବାକ୍ୟକୁ ଆମେ ତାହାର ଉଦାହରଣ କରିପାରିବା । ଏହି ବାକ୍ୟ ଓଡ଼ିଆ ଗଦ୍ୟର ଇତିହାସରେ ଦୀର୍ଘତମ, କେବଳ 'ଯେଉଁ' ଏବଂ 'ଏବଂ' ମୟ ।

> ଯେଉଁ କଳିଙ୍ଗୋତ୍କଳ ସର୍ବକଳା ଓ ବିଦ୍ୟାରେ ପରମ ଉତ୍କର୍ଷ ଲଭିଥିଲା, ସେଠାରେ ଉପେନ୍ଦ୍ରଭଞ୍ଜଙ୍କ ଭଳି ଜଣେ ଅଦ୍ୱିତୀୟ କବିସମ୍ରାଟ୍‌ଙ୍କ ଆବିର୍ଭାବ କିଛି ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଯେଉଁ କଳିଙ୍ଗୋତ୍କଳଖଣ୍ଡରେ ଗୟାସୁରର ପବିତ୍ର ଶରୀରର ଅଂଶ ୧୨ ପଣ ଅବସ୍ଥିତ, ଯାହା ଉପରେ ବ୍ରହ୍ମାଦି ଦେବତାମାନେ ଯଜ୍ଞ ସମ୍ପାଦନ କରିଥିଲେ, ଯେଉଁ କଳିଙ୍ଗର ଉଦ୍ଭବ ଦୀର୍ଘତମା ଋଷିଙ୍କ ଔରସରେ ବଳିରାଜାଙ୍କ ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରେ କ୍ଷେତ୍ରଜ ସନ୍ତାନରୂପେ ହୋଇଥିଲା ଏବଂ ଯେଉଁ କଳିଙ୍ଗର ପିତା ବେଦର ଦୀର୍ଘତମା ଋଷି, ଏବଂ ଯେଉଁ କଳିଙ୍ଗରେ ପରଶୁରାମ ତାଙ୍କ ଚରମ ଜୀବନରେ ଘୋର ପ୍ରବୃତ୍ତିମାର୍ଗକୁ ଜଳାଞ୍ଜଳି ଦେଇ ନିବୃତ୍ତିମାର୍ଗରେ ପରମାତ୍ମାଧ୍ୟାନରେ ମହେନ୍ଦ୍ରଗିରିରେ ବ୍ୟାପୃତ ଥିଲେ ଏବଂ ଯେଉଁ କଳିଙ୍ଗରାଜ ମହାଭାରତ ଯୁଦ୍ଧରେ ଏକ ଅକ୍ଷୌହିଣୀ ସୈନ୍ୟସହ କୁରୁରାଜ ଦୁର୍ଯ୍ୟୋଧନ ପକ୍ଷରେ ଯୁଦ୍ଧ କରିଥିଲେ ଏବଂ ଯେଉଁ କଳିଙ୍ଗରାଜ ପ୍ରଧାନ ଶୂରବୀର ବୋଲି ମହାଭାରତରେ ନାନାସ୍ଥାନରେ କଥିତ, ଏବଂ ଯେଉଁ କଳିଙ୍ଗସ୍ଥିତ ଯାଜପୁରରେ ରୁଦ୍ର ପ୍ରଥମଥର ପାଇଁ ଯଜ୍ଞର ପଶୁବଳି ପ୍ରାପ୍ତିର ଅଧିକାରୀ ହୋଇଥିଲେ ଏବଂ ଯେଉଁ କଳିଙ୍ଗରେ କିମ୍ବଦନ୍ତୀ ଅନୁଯାୟୀ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ତପସ୍ୟା କରି ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହୋଇ ଅଜେୟ ହୋଇଥିଲେ ଏବଂ ଯେଉଁ କଳିଙ୍ଗରେ କଣ୍ଡୁଋଷିଙ୍କ ଔରସରେ ଓ ଅପ୍‌ସରା ଗର୍ଭରେ ବାର୍କ୍ଷେୟୀ ଜାତ ହୋଇ ଦଶ ପ୍ରଚେତସାଙ୍କ ପତ୍ନୀରୂପେ ଦକ୍ଷଙ୍କ ମାତାରୂପେ ବର୍ଣ୍ଣିତ ଏବଂ ଯେଉଁ କଳିଙ୍ଗରେ ପ୍ରଥମେ ଋଷଭଙ୍କ ମୂର୍ତ୍ତି ପୂଜିତ ହୋଇଥିଲା ଏବଂ ଯେଉଁ କଳିଙ୍ଗରେ ଜିନଶ୍ରେଷ୍ଠ ପରେଶନାଥ ଜିନଧର୍ମର ସାରମର୍ମ ପ୍ରଚାର କରିଥିଲେ ଏବଂ ଯେଉଁ ସ୍ଥାନରେ ଜିନଙ୍କ ବିଶାଳ ମୂର୍ତ୍ତି ପୂଜିତ ହେଉଥିଲା ଏବଂ ଯାହାକୁ ମଗଧରାଜ ବଳାତ୍କାରରେ ନେଇ ଯାଇଥିଲେ ଏବଂ ଯାହାକୁ ପରବର୍ତ୍ତୀ କାଳରେ ମହାମେଘବାହନ ସମ୍ରାଟ୍ ଖାରବେଳ ମଗଧରୁ ବଳାତ୍କାରରେ ପୁନରାନୟନ କରିଥିଲେ ଏବଂ ଯେଉଁ କଳିଙ୍ଗ ଚନ୍ଦ୍ରଗୁପ୍ତ ଓ ବିନ୍ଦୁସାରଙ୍କ ରାଜତ୍ୱକାଳରେ ସ୍ୱାଧୀନ ଥିଲା ଏବଂ ଯେଉଁ କଳିଙ୍ଗର ଶୂରବୀର କ୍ଷତ୍ରିୟମାନେ ଆପ୍ରାଣପାତ ଯୁଦ୍ଧକରି ଅଶୋକଙ୍କ ମନରୁ ହିଂସାଭାବ ବିଦୂରିତ କରାଇ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ, କଳିଙ୍ଗ କ୍ଷତ୍ରିୟଙ୍କ ଅଶୋକଙ୍କର ସହ ଯୁଦ୍ଧ ଆଜି ଇତିହାସରେ ମହାଭୟଙ୍କର ଯୁଦ୍ଧରୂପେ ସ୍ୱର୍ଣ୍ଣାକ୍ଷରରେ ଲିଖିତ, ସେହି କଳିଙ୍ଗର ପରାଜୟ ଫଳରେ

ବୌଦ୍ଧଧର୍ମ ଅଶୋକଙ୍କଦ୍ୱାରା ପୃଥିବୀର ନାନା ସ୍ଥାନରେ ପ୍ରଚାରର ବାଟ ଖୋଲି ଦେଇଥିଲା ଏବଂ ଯେଉଁ କଳିଙ୍ଗର ମହାମହିମ ଅଦ୍ଭୁତ ପରାକ୍ରାନ୍ତ ମହାମେଘବାହନ ସମ୍ରାଟ୍ ଭାରତର ପ୍ରାୟ ବାରପଣ ଜୟକରି ମଗଧ ଓ ଅନ୍ୟାନ୍ୟ ରାଜ୍ୟମାନ ଧ୍ୱସ୍ତବିଧ୍ୱସ୍ତ କରି ମଗଧରୁ ଜିନଙ୍କ ବିଶାଳମୂର୍ତ୍ତି ଆଣି ପାରିଥିଲେ ଏବଂ ଯେଉଁ କଳିଙ୍ଗରେ କ୍ଷେମରାଜ ଶ୍ରମଣଙ୍କ ପ୍ରଦତ୍ତ ବୁଦ୍ଧଙ୍କର ବାମଦନ୍ତ କଳିଙ୍ଗରାଜ ଦେବଦତ୍ତଙ୍କଦ୍ୱାରା ପୂଜିତ ହେଉଥିଲା ଏବଂ ଯେଉଁ ବାମଦନ୍ତକୁ ଭାରତର ନାନା ରାଜ୍ୟରୁ ରାଜା, ରାଜକୁମର ଓ ଜନସାଧାରଣ ଦନ୍ତପୁରକୁ ଆସି ପୂଜା କରୁଥିଲେ ଏବଂ ଯେଉଁ ଦନ୍ତକୁ ଗୁହରାଜ ସିଂହଳକୁ ତାଙ୍କ କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାର ସହିତ ସିଂହଳକୁ ପଠାଇ ଦେଇଥିଲେ ଏବଂ ଯେଉଁ କଳିଙ୍ଗ-ଉତ୍କଳର ଲୋକେ ବୋଇତଦ୍ୱାରା ଯାଇ ଦରିଆପାରିର ରାଜ୍ୟମାନଙ୍କରେ ସଭ୍ୟତା ସ୍ଥାପନ କରିଥିଲେ ଏବଂ ଯେଉଁ ଦେଶରେ ହରିହରଙ୍କ ଅପୂର୍ବ ମିଳନମୂର୍ତ୍ତି ଭୁବନେଶ୍ୱରରେ ପୂଜିତ ଏବଂ ଯେଉଁ ଉତ୍କଳରେ ସୂର୍ଯ୍ୟଦେବଙ୍କ ଉପାସନା କୋଣାର୍କରେ ପ୍ରତିଷ୍ଠିତ, ଯେଉଁ ଉତ୍କଳରାଜ ଶୁଭଙ୍କରକେଶରୀ ଚୀନ୍‌ସମ୍ରାଟ୍‌ଙ୍କ ନିକଟକୁ ସ୍ୱ ହସ୍ତଲିଖିତ ବୌଦ୍ଧଗ୍ରନ୍ଥ ଉତ୍କଳର କପିଶା ନଦୀତୀରବର୍ତ୍ତୀ ଭୂଖଣ୍ଡର ଅଧିବାସୀ ପ୍ରାଜ୍ଞଙ୍କ ହସ୍ତରେ ପ୍ରେରଣ କରିଥିଲେ(ଦୁଃଖର ବିଷୟ କପିଶା କେତେକ ପଣ୍ଡିତଙ୍କଦ୍ୱାରା ଆଫଗାନିସ୍ଥାନର ଅନ୍ତଃପାତୀ ବୋଲି ଲିଖିତ । ଆଶ୍ଚର୍ଯ୍ୟର କଥା ଉତ୍କଳରାଜ ଆଫଗାନିସ୍ଥାନର ଲୋକଙ୍କୁ ନିଜର ପ୍ରତିନିଧି ରୂପେ ଚୀନ୍‌ସମ୍ରାଟଙ୍କ ନିକଟକୁ ପଠାଇଥିଲେ ।), ଯେଉଁ କଳିଙ୍ଗ ଦେଶର ପ୍ରାକୃତ ଓ ପାଲିର ମୂଳ ଭାଷାରୂପେ କେତେକ ପଣ୍ଡିତଙ୍କଦ୍ୱାରା ସ୍ୱୀକୃତ, ଯେଉଁ କଳିଙ୍ଗୋତ୍କଳର ଅଧିପତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ ଏବଂ ଯେଉଁ କଳିଙ୍ଗୋତ୍କଳର ନରପତି ଅନେକବାର ଉତ୍ତର ଓ ଦକ୍ଷିଣ ଅଞ୍ଚଳର ମୁସଲମାନମାନଙ୍କୁ ପରାସ୍ତ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତି ଚୋଡ଼ଗଙ୍ଗଦେବଙ୍କ ସଭାରେ ଗାଣିତିକ ଶତାନନ୍ଦ, ଦଶମିକପ୍ରଥାର ପ୍ରବର୍ତ୍ତନ କରିଥିଲେ; ଯେଉଁ କଳିଙ୍ଗୋତ୍କଳର ନରପତି ନରସିଂହଦେବ ହିମାଳୟରୁ ସେତୁବନ୍ଧ ପର୍ଯ୍ୟନ୍ତ ରାଜ୍ୟାଧିକାର କରି କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତିମାନେ ପୁରୀ, ଭୁବନେଶ୍ୱର ଓ କୋଣାର୍କରେ ପ୍ରସ୍ତର ନିର୍ମିତ ଅପୂର୍ବ ମନ୍ଦିରମାନ ନିର୍ମାଣ କରିବାରେ ସମର୍ଥ ହୋଇଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତି କପିଳେନ୍ଦ୍ରଦେବ ବାହାମନୀ ସୈନ୍ୟଙ୍କୁ ପରାସ୍ତ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ହିନ୍ଦୁ ନରପତି ଗଜପତିଙ୍କର ଚରଣ ଭାରତର ସମସ୍ତ ନୃପତିଙ୍କର ମୁକୁଟସ୍ଥିତ ପୁଷ୍ପରେଣୁଦ୍ୱାରା ରଞ୍ଜିତ ହେଉଥିଲା, ଯେଉଁ କଳିଙ୍ଗୋତ୍କଳର ନରପତି ଜଗନ୍ନାଥଦେବଙ୍କର ପ୍ରତୀକରୂପେ ଅଭିପୂଜିତ ହେଉଥିଲେ, ଯେଉଁ ଦେଶର ବୃଦ୍ଧ ବାଜପେୟୀ

ନାଗପୁରରେ ଅଷ୍ଟାଦଶ ବିଦ୍ୟାରେ ପ୍ରାବୀଣ୍ୟ ପ୍ରଦର୍ଶନ କରାଇ ରଘୁଜୀ ଭୋନ୍‌ସଲାଙ୍କଠାରୁ ଉତ୍କଳ ନରେଶଙ୍କର ଅଧିକାର ଆଣିବାରେ ସମର୍ଥ ହୋଇଥିଲେ; ଯେଉଁ ଉତ୍କଳରେ ସାରଳାଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ପ୍ରଭୃତି ସ୍ୱସ୍ୱ ଅଦ୍ଭୁତ କବିତ୍ୱ ଓ ଧର୍ମବଳରେ ଅପୂର୍ବ ଗ୍ରନ୍ଥମାନ ରଚନା କରିଥିଲେ, ଯେଉଁ କଳିଙ୍ଗୋତ୍କଳର ପୁରୀଧାମକୁ ଭାରତର ନାନା ଦର୍ଶନ ଓ ମତବାଦର ମନୀଷୀମାନେ ଆସି ସ୍ୱସ୍ୱ ମତ ଖ୍ୟାପନ ତଥା ଧର୍ମଭାବ ପ୍ରଚାର କରିଥିଲେ; ଯେଉଁ କଳିଙ୍ଗୋତ୍କଳ ଶୈବ ଓ ଶାକ୍ତ ଧର୍ମର ପ୍ରଧାନ ପୀଠସ୍ଥଳୀ ହୋଇଥିଲା (ଉତ୍କଳରେ ଶିବମନ୍ଦିର ଓ ଦେବୀମନ୍ଦିର ସଂଖ୍ୟା ଯେତେ, ତାହା ଭାରତର ଅନ୍ୟ କୌଣସିଠାରେ ପରିଦୃଷ୍ଟ ହୁଏ ନାହିଁ), ଯେଉଁ କଳିଙ୍ଗୋତ୍କଳର ତାତକାଳିକ ରାଜଧାନୀ ପୁରୀଧାମରେ ଶ୍ରୀଚୈତନ୍ୟଦେବ ଅଷ୍ଟାଦଶ ବର୍ଷ ଅଦ୍ୱିତୀୟ ବୈଷ୍ଣବପ୍ରବର ରାମାନନ୍ଦଙ୍କ ସହିତ ଅତିବାହିତ କରିଥିଲେ; ଯେଉଁ କଳିଙ୍ଗୋତ୍କଳର ପଣ୍ଡିତମାନେ ଅଳଙ୍କାରଶାସ୍ତ୍ରରେ ଧୁରୀଣ ଥିଲେ (ତାହାର ପ୍ରମାଣସ୍ୱରୂପ ଏକାବଳୀ ଓ ସାହିତ୍ୟଦର୍ପଣର ରଚୟିତା ଉତ୍କଳୀୟ), ଯେଉଁ କଳିଙ୍ଗୋତ୍କଳରେ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭକରି ମହାକାବ୍ୟମାନ ରଚିତ ହୋଇ ରାମବିଭା, ଉଷାଭିଳାଷ, ରହସ୍ୟମଞ୍ଜରୀ, ଶଶିସେଣା, ପ୍ରେମଲୋଚନା, ସର୍ବାଙ୍ଗସୁନ୍ଦରୀ, ଲୀଳାବତୀ ଓ ରସକଲ୍ଲୋଳ ରଚିତ ହୋଇଥିଲା- ସେ ଦେଶରେ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁ ଜନ୍ମିବା କିଛି ବିସ୍ମୟର ବିଷୟ ନୁହେଁ ।

ଉପର୍ଯ୍ୟୁକ୍ତ ବାକ୍ୟରେ ସେ କେବଳ ତାଙ୍କ ଭୂମିର କଥା ହିଁ କହିଛନ୍ତି । କହିଛନ୍ତି- ତାଙ୍କ ଉତ୍କଳ ବିଶ୍ୱର ରାଜନୀତି, ଭାଷା, ସାହିତ୍ୟ, ଧର୍ମ, ସଂଗୀତ, ସ୍ଥାପତ୍ୟ, ଦର୍ଶନ ଆଦି ନାନା କ୍ଷେତ୍ରରେ ସ୍ୱତନ୍ତ୍ର । ଏତେ ସ୍ୱତନ୍ତ୍ର ଯେ, ଅନ୍ୟ କେହି ତାହା ପରି ଆଦୌ ହେଇପାରିବେନାହିଁ । ଏବଂ, ତାଙ୍କ ଦୃଷ୍ଟିରେ ଯିଏ ସ୍ୱତନ୍ତ୍ର, ଅନ୍ୟ ଅବବୋଧରେ ସେ ସ୍ୱତନ୍ତ୍ର ହେବାକୁ ବାଧ । ଏକ କିମ୍ଭୂତ ମାନସିକତା । ଏହି ମାନସିକତା ଆତ୍ମରତି ଓ ଅପରିମିତ ଉତ୍ସାହର ଲକ୍ଷଣ । ଥରେ ବ୍ୟକ୍ତି ଆତ୍ମରତିମଗ୍ନ ହୋଇଗଲେ, ତା'ର ମେଧା, 'ଜୀବନ-ଦୃଷ୍ଟି', ଅନ୍ତର୍ବୋଧ ଓ ଅଧ୍ୟୟନ; ସକଳ 'ଜଡ଼'ରେ ରୂପାନ୍ତରିତ ହୋଇଯାଏ । 'ସତ୍ୟ' ବଡ଼ ଅସହାୟ ଭାବରେ ଆତ୍ମରକ୍ଷା ପାଇଁ ବିଳାପ କରୁଥାଏ । ଏବଂ, ବେଳେବେଳେ ହାରିଯିବାକୁ ବାଧ ହୁଏ । ପୃଥିବୀର ଇତିହାସ ଏହି ଅତିଉତ୍ସାହୀମାନଙ୍କ ଅହଂକାରରେ କେତେ ମାତ୍ରାରେ ଯେ ଆହତ ହୋଇଛି, ତାହାର ଚର୍ଚ୍ଚା ଏଠାରେ ଅନାବଶ୍ୟକ, ମାତ୍ର ଏହି ଅତିଉତ୍ସାହ ଭବିଷ୍ୟତକୁ ମଧ୍ୟ ବିକଳାଙ୍ଗ କରିଦିଏ । ସେମାନେ କୋଳାହଳ ପ୍ରମତ୍ତ ହୁଅନ୍ତି, କର୍ତ୍ତବ୍ୟ ଓ ସାଧନା ମାର୍ଗକୁ ପ୍ରାୟତଃ ଭୁଲିଯାନ୍ତି । ଅନ୍ୟର ଅନ୍ତର୍ଦୃଷ୍ଟି ଗ୍ରହଣ-ବିମୁଖ ହୁଅନ୍ତି । ଏକଥା କହିବାର କାରଣ, ଆର୍ତ୍ତବଲ୍ଲଭଙ୍କ ଚେତନାରେ, ଓଡ଼ିଆ ଜାତୀୟତାବୋଧଜନିତ ଉତ୍ସାହ ଥିଲା । ଥିଲା ବୋଲି ସତ୍ୟ ପ୍ରତିଷ୍ଠାପାଇଁ ସେ ଆମୃତ୍ୟୁ ସାଧନାନିଷ୍ଠ ରହିଛନ୍ତି । ଧ୍ୱଂସକାରୀ

ହୋଇନାହାନ୍ତି । ମାତ୍ର ଉତ୍ସାହ ଓ ଆସକ୍ତି ବେଳେବେଳେ ଯେ ବ୍ୟକ୍ତିକୁ ସଚେତନ ଭାବରେ ଅପବାଦଆକ୍ରାନ୍ତ କରିଦିଏ- ଏହି ସତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଓଡ଼ିଆ ସାହିତ୍ୟର ଇତିହାସର ସୂଚନାପତ୍ରରେ ଅନୁଭବ କରିହୁଏ । ଉପର୍ଯ୍ୟୁକ୍ତ ମାନସିକତାକୁ ଆମେ ସମକାଳୀନ ଆବଶ୍ୟକତା ବୋଲି ଗ୍ରହଣ କରିପାରିବା । ଗ୍ରହଣ କରିପାରି ନ ପାରିଲେ, ତାଙ୍କ ପରି ଜଣେ ପ୍ରତିଭାକୁ ବୁଝିପାରିବାନାହିଁ ।

ଏ ସଂକ୍ରାନ୍ତରେ ଗୋଟିଏ ମାତ୍ର ଉଦାହରଣ ଯଥେଷ୍ଟ ହେବ । ତାହା ମଧ୍ୟକାଳୀନ ସାହିତ୍ୟ ସମ୍ପର୍କରେ ତାଙ୍କ ବିଚାରର କଥା । ଚର୍ଚ୍ଚାପ୍ରସଙ୍ଗରେ ସେ ଭାଷାର 'ସହଜା' ଓ 'ପ୍ରାକୃତିକ' ଶକ୍ତି ଉପରେ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ସାରଳା ଓ କୁନ୍ତଳା ଉପର୍ଯ୍ୟୁକ୍ତ ବିଚାରର ସର୍ବଶ୍ରେଷ୍ଠ ଉଦାହରଣ । ମାତ୍ର ମଧ୍ୟକାଳୀନ ସାହିତ୍ୟ ଓ ଉପେନ୍ଦ୍ର ଚର୍ଚ୍ଚାକାଳରେ ସେ କବିଙ୍କୁ 'ସହଜା' ଓ 'ପ୍ରାକୃତିକ' କହିଛନ୍ତି । ଏହି ବିଚାର ତାଙ୍କ ମୋହମୁକ୍ତ ମାନସିକତାକୁ ପ୍ରଶ୍ନକରେ । ଯେ କହିବାକୁ ଚାହୁଁଛନ୍ତି, ମଧ୍ୟକାଳୀନ ସାହିତ୍ୟ ଭାବବୈଚିତ୍ର୍ୟ ଓ ବିଷୟବୈଚିତ୍ର୍ୟହୀନ ନୁହେଁ । ଏହା ସଂସ୍କୃତ ସମସରି ମାନସିକତା ଓ ସର୍ବଭାରତୀୟ ଧାରା । ପୁଣି, ଓଡ଼ିଆ ସାହିତ୍ୟରେ ବୈଷ୍ଣବ କାବ୍ୟ ପରମ୍ପରା ଅନ୍ୟ ସକଳ ଭୂମିଠାରୁ ସ୍ୱତନ୍ତ୍ର । ଏବଂ, ଶବ୍ଦାଳଂକାର ଓ ଅର୍ଥାଳଂକାର ପ୍ରୟୋଗ କ୍ଷେତ୍ରରେ ମାଘ, ଭାରବୀ ଓ ଶ୍ରୀହର୍ଷଙ୍କଠାରୁ ଉପେନ୍ଦ୍ର ଶ୍ରେଷ୍ଠତର । ଅନ୍ୟ ଭାରତୀୟ ଭାଷାରେ ମଧ୍ୟ ଏହିପରି ସାହିତ୍ୟ ନାହିଁ । ତାଙ୍କ ଶବ୍ଦରେ" ମଧ୍ୟ ଯୁଗୀୟ କାବ୍ୟରେ ଭାଷାର ସହଜ ଭାବଚାତୁର୍ଯ୍ୟ ବୈଚିତ୍ର୍ୟମୟ କଳାବିଭବ ଭିତରେ ଅନ୍ତଃସଲିଳା ଫଲ୍‌ଗୁପରି ଅବାଧରେ ଗତିଶୀଳ"(ମୁଖବନ୍ଧ: କବିତାକୁମୁଦ) । କୌଣସି ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ମୂଲ୍ୟାୟନ କାଳରେ 'ସହଜା' ଶବ୍ଦ ପ୍ରୟୋଗ ତାଙ୍କ 'ପ୍ରତିଭା' ପ୍ରତି ଇଙ୍ଗିତ କରିଥାଏ । ମାତ୍ର ପାଣ୍ଡିତ୍ୟ, ତାଙ୍କ ମେଧା ଓ ଅଧ୍ୟୟନର ପ୍ରସଙ୍ଗ । 'ସହଜା ଶକ୍ତି' ଓ 'ପାଣ୍ଡିତ୍ୟ'ର ସମୀକରଣ ଜଣେ ବ୍ୟକ୍ତିକୁ ଅନେକଙ୍କ ଗହଣରେ ସ୍ୱତନ୍ତ୍ର ପରିଚିତି ଦିଏ । ଉପେନ୍ଦ୍ରଙ୍କୁ ଆମେ ଅବଶ୍ୟ ଜଣେ ସମୀକୃତ ବ୍ୟକ୍ତିତ୍ୱ କହିପାରିବା । ମାତ୍ର ଶବ୍ଦଶକ୍ତି ଅବବୋଧରେ ତାଙ୍କୁ 'ସହଜା' ଏବଂ ମାଘ, ଭାରବୀ ଓ ଶ୍ରୀହର୍ଷଙ୍କଠାରୁ ଶ୍ରେଷ୍ଠତର କହିବା, କଥକର ଅତି ଉତ୍ସାହ ମାନସିକତାର ଲକ୍ଷଣ । ଆର୍ତ୍ତବଲ୍ଲଭ ଏହି ମାନସିକତାର ଜାଲରେ ଛନ୍ଦି ହୋଇ ଯାଇନାହାନ୍ତି ତ ?

ଏକଥା ସ୍ୱୀକାର ନ କଲେ ଆମେ ଅପରାଧୀ ହେବା ଯେ, ଆର୍ତ୍ତବଲ୍ଲଭ ପୂର୍ବ ଗବେଷକମାନଙ୍କ ରଚିତ ଓ ଆପଣା ରତ୍ନଖୋଜା-ଯାତ୍ରା-ଲବ୍ଧ ବହୁ ଗ୍ରନ୍ଥ ଏ ଜାତି ହାତରେ ଟେକି ଦେଇଛନ୍ତି । ସେଗୁଡ଼ିକର ଚର୍ଚ୍ଚା ମାଧ୍ୟମରେ ଇତିହାସ ପୁନଃସର୍ଜ୍ଜନର ସୁଯୋଗ ଦେଇଛନ୍ତି । ଆପେ ଇତିହାସର କ୍ରମ ତିଆରି କରୁଛନ୍ତି । କ୍ରମ ତିଆରି କାଳରେ ଭାଷା, ଧର୍ମ,ରାଜନୀତିର ଇତିହାସକୁ ମଧ୍ୟ ଉପାଦାନ କରୁଛନ୍ତି । ଏହା ନିଶ୍ଚିତଭାବରେ ତାଙ୍କ ଦୃଷ୍ଟିଗତ ସ୍ୱାତନ୍ତ୍ର୍ୟ । କାରଣ ସେ ଅନୁଭବ କରୁଛନ୍ତି , କୌଣସି ରଚନା ଶୂନ୍ୟସମ୍ଭୂତ ବା ବାୟବୀୟ ନୁହେଁ, ତାହା ସମକାଳର ରାଜନୀତିକ ଓ ସାଂସ୍କୃତିକ ସର୍ଜ୍ଜନ । ଆମେ ଗ୍ରନ୍ଥ ଅଧ୍ୟୟନ ମାଧ୍ୟମରେ ସମକାଳର ରାଜନୀତି, ସଂସ୍କୃତି ଅଥବା କୌଣସି କାଳର ରାଜନୀତି ଓ ସଂସ୍କୃତି ଅଧ୍ୟୟନ ମାଧ୍ୟମରେ ଗ୍ରନ୍ଥକୁ ବୁଝିପାରିବା । ଏହି ବିଚାରର ଅନୁଭବ

ବଡ଼କଥା । ମାତ୍ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଅନୁଭବରେ ବିଜ୍ଞାନଦୃଷ୍ଟି । ଆର୍ତ୍ତବଲ୍ଲଭ ଆପଣା ଅନୁଭବରେ ଅତୀତକୁ ପ୍ରଶ୍ନ କରିଚାଲିଛନ୍ତି । ପ୍ରଶ୍ନ ମାଧ୍ୟମରେ ବିକଳ୍ପ-ବର୍ତ୍ତମାନ ମଧ୍ୟ ତିଆରି କରୁଛନ୍ତି । ମାତ୍ର ତାଙ୍କ ବିକଳ୍ପ-ବର୍ତ୍ତମାନ ଭବିଷ୍ୟତକୁ ବହୁ ପ୍ରଶ୍ନର ରଣଭୂମି କରିଦେଉଛି । ଆଜି ମଧ୍ୟ ଭୂମି ଅଶାନ୍ତ ଓ ବିତର୍କିତ ।

ଆର୍ତ୍ତବଲ୍ଲଭ ପ୍ରାୟ ୧୯୨୫ ମସିହାବେଳକୁ ଓଡ଼ିଆ ସାହିତ୍ୟର ପୁନଃନିର୍ମାଣ ପ୍ରୟାସୀ ହୋଇଛନ୍ତି । ସେ ପ୍ରଶ୍ନ କରୁଛନ୍ତି ହଣ୍ଟର, ମନମୋହନ ଚକ୍ରବର୍ତ୍ତୀ, ମଧୁସୂଦନ ଦାଶ, ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦଶର୍ମା, ମୃତ୍ୟୁଞ୍ଜୟ ରଥ, ତାରିଣୀ ଚରଣ ରଥ, ବିଜୟ ଚନ୍ଦ୍ର ମଜୁମ୍ଦାର ଓ ପଣ୍ଡିତ ବିନାୟକ ମିଶ୍ର ପ୍ରମୁଖଙ୍କୁ ।[୫] ହଣ୍ଟର୍ ଆପଣା ବହିରେ, ୧୮୭୨ ମସିହାରେ, ଓଡ଼ିଆ ସାହିତ୍ୟିକମାନଙ୍କ ପରିଚୟ ଦେଇଛନ୍ତି । ଏକ ତାଲିକା । ତାଲିକା ତିଆରିରେ ଜଣେ ଇଂରେଜଙ୍କୁ ଓଡ଼ିଆ ପଣ୍ଡିତମାନେ ସାହାଯ୍ୟ କରିଥିବେ ନିଶ୍ଚୟ । ସେ ସେମାନଙ୍କ ନାଁ କହିନାହାନ୍ତି । ତାହା ଇତିହାସ ରଚନାର ଉଷାକାଳ । ମନମୋହନ, ବାସ୍ତବତଃ, ସାହିତ୍ୟ ଇତିହାସ ରଚନାରେ ଆମକୁ ନୂଆ ଆଖି ଦେଇଛନ୍ତି । ଅନ୍ତର୍ଭେଦୀ ଆଖି । ତାଙ୍କ ଭେଦନ ମାନସିକତାକୁ ପରିପୁଷ୍ଟ କରିଛନ୍ତି ଶ୍ୟାମସୁନ୍ଦର, ମଧୁସୂଦନ ଓ ମୃତ୍ୟୁଞ୍ଜୟ ।[୬] ଏମାନେ ମୁଖ୍ୟତଃ ଛପାବହି ନୁହେଁ, ପୋଥିନିର୍ଭର । ୧୯୨୧-୨୪ ମସିହା ମଧ୍ୟରେ ଆମ ଗହଣକୁ ଆସିଛନ୍ତି ବିଜୟ ଚନ୍ଦ୍ର ଓ ବିନାୟକ ମିଶ୍ର । ଏବେ ଏମାନଙ୍କ ପାଖରେ ପୋଥି ଓ ଛପାବହି, ଉଭୟ । ଏମାନେ ମଧ୍ୟ ଇତିହାସକୁ ପ୍ରଶ୍ନ କରିଛନ୍ତି । ପ୍ରଶ୍ନ- ଉଭୟ ପୋଥି ଓ ମୁଦ୍ରିତ ଉପାଦାନକୁ । ପ୍ରଶ୍ନ-ମନ୍ଥନ ଭିତରୁ ନୂଆ ଇତିହାସ ଆତ୍ମପ୍ରକାଶ କରିଛି । ଏହି ନୂଆ ଇତିହାସର ଭୂମି ଉପରେ ଏବେ ଆର୍ତ୍ତବଲ୍ଲଭ ।

ସେ କେଜାଣି କାହିଁକି ପୂର୍ବ ସିଦ୍ଧାନ୍ତକୁ ଗ୍ରହଣ କରିପାରୁନାହାନ୍ତି । ଜଣେ, ହଣ୍ଟର, ଇଂରେଜ । ତାଙ୍କ ଚାରିପାଖରେ ଊନବିଂଶ ଶତାବ୍ଦୀର ପଣ୍ଡିତ । ମନମୋହନ, ବିଜୟ ଚନ୍ଦ୍ର, ବଙ୍ଗାଳୀ । ଗୋପୀନାଥ ଓ ଶ୍ୟାମସୁନ୍ଦର, ଦକ୍ଷିଣୀ । ବିନାୟକ(ନୟାଗଡ଼) ଗଡ଼ଜାତି ବ୍ରାହ୍ମଣ; ମାତ୍ର, ବିଜୟ-ସେବକ ଓ ବଙ୍ଗଳା-ପ୍ରବାସୀ । କଲିକତା ବିଶ୍ୱବିଦ୍ୟାଳୟ ସହ ସମ୍ପୃକ୍ତ । ବିଦେଶୀମାନଙ୍କ ଗହଣରେ ମୃତ୍ୟୁଞ୍ଜୟ ଓ ମଧୁସୂଦନ ଯାହା କଟକୀ । ଆର୍ତ୍ତବଲ୍ଲଭ , ସମ୍ଭବତଃ, ଏକ ଜାତିର ଭାଷା ଓ ଇତିହାସ ନିର୍ମାଣରେ ବିଦେଶୀ ଆଖିର ସମ୍ପୃକ୍ତିକୁ ସ୍ୱୀକାର କରିପାରୁନାହାନ୍ତି । ଆମେ ଆମ ଇତିହାସ ତିଆରି କରିବୁ । ଆମ ପୋଥି ଭିତରେ ଆମତ୍ୱ ଅଛି । ପୋଥି ଈଶ୍ୱରବତ୍ । ତାଙ୍କ ସ୍ଥିତିକୁ ପ୍ରଶ୍ନ କରିବାର ଅଧିକାର ଅନ୍ୟମାନଙ୍କର ନାହିଁ । ଔପନିବେଶିକ ଅଭିଜାତମନସ୍କ ଦୃଷ୍ଟି କୌଣସି କାଳରେ ଦେଶୀ ଓ ଶାସିତମାନଙ୍କ ପ୍ରଜ୍ଞା ଓ ଶ୍ରୀକୁ ସମ୍ମାନ ଦେଇପାରିବନାହିଁ । ଛୋଟ ମଣିବ । କାଂଚନକୁ କାଚ ଜ୍ଞାନ କରିବ । ଆମେ କାଂଚନକୁ ଆଚ୍ଛାଦିଥିବା ମଳଗୁଡ଼ିକୁ ପରିମଳ କରିବୁ । ପରିମଳୀକରଣ ପ୍ରକ୍ରିୟା ଭିତରୁ କାଂଚନର ଔଜ୍ଜ୍ୱଲ୍ୟ ଝଟକି ଉଠିବ । ଉପର୍ଯ୍ୟୁକ୍ତ ମାନସିକତାରେ ଆର୍ତ୍ତବଲ୍ଲଭଙ୍କ ନୂଆ ଇତିହାସ ସର୍ଜନ-ଯାତ୍ରାର ଶୁଭାରମ୍ଭ । ଉଦ୍ଦେଶ୍ୟ- ଯଥାଶୀଘ୍ର ନବସର୍ଜନ ପ୍ରକ୍ରିୟାକୁ ପ୍ରତିଷ୍ଠା କରିବାକୁ ହେବ । ଏଥିପାଇଁ ତାଙ୍କୁ ଅଧିକ ସମୟ ଲାଗିନାହିଁ । ବିଜୟ ଚନ୍ଦ୍ରଙ୍କ ଓଡ଼ିଆ ସାହିତ୍ୟ ପରିଚୟ (Typical

Selections from Oriya Litreature) ପ୍ରକାଶକାଳରୁ ଆରମ୍ଭ । ୧୯୨୪ ମସିହାରେ । ପ୍ରାୟ ସାତ/ଆଠ ବର୍ଷ ଅବଧି(ବିଦଗ୍ଧଚିନ୍ତାମଣିରୁ ପ୍ରାଚୀନଗଦ୍ୟାପଦ୍ୟାଦର୍ଶ:୧୯୩୨)ରେ ଇତିହାସ ତିଆରି ହୋଇଯାଇଛି । ମଝିରେ ଯାହା ବିନାୟକ ମିଶ୍ରଙ୍କ **ଓଡ଼ିଆ ସାହିତ୍ୟର ଇତିହାସ**(୧୯୨୭) । ୧୯୩୨ରୁ ୫୩ ମସିହା ଭିତରେ ପ୍ରାଚୀ ସମିତି ତରଫରୁ ଏବଂ ତାଙ୍କ ଉଦ୍ୟମରେ ଯେଉଁ ବହିଗୁଡ଼ିକ ପ୍ରକାଶପାଇଛି, ସେଗୁଡ଼ିକ ପୂର୍ବ-ପ୍ରସ୍ତୁତ ମାନସିକତାର ପ୍ରତିରୂପ ।

ଆର୍ତ୍ତବଲ୍ଲଭଙ୍କ ବିଚାରରେ, ଏବେ ବତ୍ସା ଦାସ ଓଡ଼ିଆ ସାହିତ୍ୟର ଆଦିକବି । ଆଦ୍ୟରଚନା **କଳସାଚଉତିଶା**, ତ୍ରୟୋଦଶ ଶତାବ୍ଦୀ; ଆଦିଗଦ୍ୟ **ମାଦଳାପାଞ୍ଜି**, ଦ୍ୱାଦଶରୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ । **ସୋମନାଥବ୍ରତକଥା** ଓ ନାରାୟଣନନ୍ଦ ଅବଧୂତ ସ୍ୱାମୀଙ୍କ **ରୁଦ୍ରସୁଧାନିଧି**, ସାରଳାଙ୍କ ପ୍ରାୟ ସମକାଳୀନ ସୃଷ୍ଟି । ଏବଂ, ସ୍ୱୟଂ ସାରଳା ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବ ନୁହନ୍ତି, ଗଙ୍ଗବଂଶୀ ରାଜା କପିଳ ନରସିଂହ ଦ୍ୱିତୀୟ(୧୩୨୮-୫୨)ଙ୍କ ସମକାଳୀନ, ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗ । ପ୍ରଥମ ଆଳଙ୍କାରିକ କବି ଅର୍ଜୁନ ଦାସ(୧୪୨୦-୩୦) । ସେ ବଳରାମ ଦାସଙ୍କ ପୂର୍ବବର୍ତ୍ତୀ । କେବଳ ସେତିକି ନୁହେଁ; ଦାମୋଦର ଦାସ (ରସକୂଲ୍ୟାଚଉତିଶା) ନୀଳାମ୍ବର ଦାସ(ଜଇମିନିଭାରତ, ପଦ୍ମପୁରାଣ, ଦେଉଳତୋଳା ଇତ୍ୟାଦି), ଚୈତନ୍ୟ ଦାସ(ବିଷ୍ଣୁଗର୍ଭପୁରାଣ, ନିର୍ଗୁଣମାହାତ୍ମ୍ୟ), ବୀରସିଂହ, ବାଳିଙ୍ଗା ଦାସ, ଶିଶୁଶଙ୍କର- ଏମାନେ ବି କପିଳେନ୍ଦ୍ରଦେବଙ୍କ ସମକାଳୀନ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ପଂଚସଖା(ପଂଚଶାଖା)ବି ଆବିର୍ଭୂତ ହୋଇଛନ୍ତି । ଏମାନେ ପଂଚମହାପୁରଷ । ଜନ୍ମ ୧୪୭୨(ବଳରାମଦାସ)ରୁ ୧୪୯୩(ଅନନ୍ତ ଦାସ)ମଧ୍ୟରେ । କିଏ ଷୋହଳ(ଜଗନ୍ନାଥ ଦାସ, କିଏ ଏଗାର(ଅଚ୍ୟୁତାନନ୍ଦ), କିଏ ବାର(ଯଶୋବନ୍ତ) ବର୍ଷ ବୟସରେ ଜ୍ଞାନଲାଭ କରିଛନ୍ତି । ସମସ୍ତେ ଶ୍ରୀଚୈତନ୍ୟଙ୍କ ସଖା । ଏମାନେ ଶୁଦ୍ଧାଭକ୍ତି ଧାରାର ଉପାସକ; ମାତ୍ର ପ୍ରେମଭକ୍ତି ଧାରାର ବିରୋଧୀ ନୁହନ୍ତି, ସ୍ୱତନ୍ତ୍ର ଓ ପ୍ରତିଭାଦୀପ୍ତ । ଏତେ ସ୍ୱତନ୍ତ୍ର ଯେ ଅଚ୍ୟୁତାନନ୍ଦଙ୍କ ପରି ଜଣେ ବ୍ୟକ୍ତିତ୍ୱ ଲକ୍ଷାଧିକ ସଂଖ୍ୟକ ବହି ଲେଖିପାରନ୍ତି । ଉପର୍ଯ୍ୟୁକ୍ତ କବିମାନଙ୍କ ନାଁ ଭଣିତା ଥାଇ ଯେତେ ଗ୍ରନ୍ଥ ପୋଥିରେ ମିଳୁଛି, ସେମାନେ ସକଳର ସ୍ରଷ୍ଟା । ପୋଥିର ଲେଖା କେବେ ମିଛ ହେବନାହିଁ । ସେହି ନ୍ୟାୟରେ, ଦିବାକର ଦାସଙ୍କ **ଜଗନ୍ନାଥଚରିତାମୃତ**, ରାମଦାସଙ୍କର **ଦାର୍ଢ୍ୟତାଭକ୍ତି**ରେ ଯେତେ ଯାହା ଲେଖାଯାଇଛି, ସବୁ ଅକ୍ଷରେ ଅକ୍ଷରେ ସତ ହେବ ହିଁ ହେବ । ଗୁରୁତ୍ୱପୂର୍ଣ୍ଣ କଥା- ଆପଣା ସମ୍ପର୍କରେ ଗ୍ରନ୍ଥସ୍ଥ କବିଙ୍କ ଉକ୍ତିକୁ ଆର୍ତ୍ତବଲ୍ଲଭ ବିନା ପ୍ରଶ୍ନରେ ଗ୍ରହଣ କରିନେଉଛନ୍ତି । ସାରଳା ଦାସ ସଂସ୍କୃତ ଜାଣି ନ ଥିଲେ, ମହାମୂର୍ଖ ଥିଲେ । ତାଙ୍କର ପ୍ରତିଭା ଥିଲା । ଦେବୀ ସାରଳା ପ୍ରସନ୍ନ ହେଲେ ତାଙ୍କ ଉପରେ । ପ୍ରତିଭା ଓ ଦୈବୀଶକ୍ତିର ଆଶୀର୍ବାଦରୁ ମହାଭାରତପରି ମହାକାବ୍ୟ ଓ ଅନ୍ୟ ଗ୍ରନ୍ଥଗୁଡ଼ିକ ଜନ୍ମନେଲା । ନିଜ ଯୁକ୍ତିକୁ ନିରାଧାର ପ୍ରମାଣ ପାଇଁ ଆର୍ତ୍ତବଲ୍ଲଭ ମହମ୍ମଦ ଓ ରାମକୃଷ୍ଣଙ୍କ ଉଦାହରଣ ମଧ୍ୟ ଦେଇଛନ୍ତି । ଏ ଦୁହେଁ ନିରକ୍ଷର ଓ ଈଶ୍ୱରଦୂତ ଥିଲେ । ପୁନଶ୍ଚ ପୂର୍ବର ଗବେଷକମାନଙ୍କ ଏକାଧିକ ଅଚ୍ୟୁତାନନ୍ଦ, ଦୀନକୃଷ୍ଣ, ଜଗନ୍ନାଥଙ୍କ ସିଦ୍ଧାନ୍ତକୁ ସେ ଆଦୌ

ସ୍ୱୀକାର କରୁନାହାନ୍ତି । ଦୁଇଜଣ ବଳରାମଙ୍କ କଥା ଅବଶ୍ୟ କହୁଛନ୍ତି, ଜଣେ ପଂଚସଖାମାନଙ୍କ ମଧ୍ୟରେ ବୟସ୍କ ଓ ମତ୍ତ ଏବଂ ଅନ୍ୟ ଜଣେ ରାମଲୀଳା ଓ କୃଷ୍ଣଲୀଳାର କବି(୧୫୯୧-୫୯ ମଧ୍ୟରେ ଜନ୍ମ) ।୧୯୩୨ (ପ୍ରାଚୀନ ଗଦ୍ୟାପଦ୍ୟାଦର୍ଶ), ୧୯୩୬(ଅଭିଭାଷଣ: ଉତ୍କଳ ସାହିତ୍ୟ ସମାଜ)ମସିହାରେ ପ୍ରକାଶିତ ଦୁଇଗୋଟି ଗ୍ରନ୍ଥରେ ସେ ନିଜ ସିଦ୍ଧାନ୍ତକୁ ପ୍ରତିଷ୍ଠା କରିଛନ୍ତି । ଏବଂ, ତାଙ୍କ ସିଦ୍ଧାନ୍ତ ପରବର୍ତ୍ତୀକାଳରେ ବହୁ ପ୍ରଶ୍ନର କାରଣ ହୋଇଛି । ପ୍ରଶ୍ନକର୍ତ୍ତାମାନଙ୍କ ଗହଣରେ ଗୌରୀକୁମାର ବ୍ରହ୍ମା ଅନ୍ୟତମ , ତରୁଣ ତୁର୍କୀ । ୧୯୫୨ରୁ ୧୯୫୪ ମସିହା ମଧ୍ୟରେ ଝଙ୍କାର ଓ ଡଗର ପତ୍ରିକାରେ ଲାବଣ୍ୟବତୀର ପାଠଶୁଦ୍ଧି ପରୀକ୍ଷା ଓଡ଼ିଆ ସାହିତ୍ୟର ଦୁଇଟି କାଳ ନିରୂପଣ, ମଥୁରାମଙ୍ଗଳ ଓ ମଧୁମଙ୍ଗଳ, ମଥୁରାମଙ୍ଗଳର ରଚନାକାଳ ନିରୂପଣ, କଳସା ଚଉତିଶା କ'ଣ ପ୍ରଥମ ଓଡ଼ିଆ ରଚନା, ଦଶପୋଇର ଲେଖକ କିଏ ?, ଶୀର୍ଷକ ଆଲୋଚନାଗୁଡ଼ିକ ଉପର୍ଯ୍ୟୁକ୍ତ ପର୍ଯ୍ୟାୟର । ପରବର୍ତ୍ତୀକାଳରେ ସଚ୍ଚିଦାନନ୍ଦ ମିଶ୍ର ମଧ୍ୟ କଳସା ଚଉତିଶାର କାଳନିରୂପଣକୁ ନେଇ ପ୍ରଶ୍ନ କରିଛନ୍ତି । [୭] ମାତ୍ର ଆର୍ତ୍ତବଲ୍ଲଭ ତାଙ୍କ ବିଚାର-ବିରୋଧୀମାନଙ୍କୁ ଆଡ଼କୁ ଚାହୁଁନାହାନ୍ତି, ନିଜ ବିଚାର ପ୍ରତି ବିଶ୍ୱସ୍ତ ରହିଛନ୍ତି । ୧୯୫୮ ମସିହାରେ ରାଷ୍ଟ୍ରଭାଷା ରଜତଜୟନ୍ତୀ ଅବସରରେ ପ୍ରକାଶିତ ସ୍ମାରକୀ ଗ୍ରନ୍ଥର ପ୍ରବନ୍ଧ ତାହାର ଚମତ୍କାର ଉଦାହରଣ ।

ଆର୍ତ୍ତବଲ୍ଲଭଙ୍କ ପ୍ରିୟତମ କବି ସାରଳା ଦାସ । ଦାଣ୍ଡିବୃତ୍ତରେ ରଚିତ କବିଙ୍କ ଗ୍ରନ୍ଥର ଚଉଦଅକ୍ଷରି ରୂପାନ୍ତରକୁ ସେ ଆଦୌ ଗ୍ରହଣ କରିପାରିନାହାନ୍ତି । ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ପ୍ରକାଶିତ ହୋଇ ନ ଥିବାରୁ ସେ ଓଡ଼ିଆମାନଙ୍କୁ କାପୁରୁଷ କହିଛନ୍ତି । ଦିନେ ନା ଦିନେ ଏହି କାର୍ଯ୍ୟ ସମ୍ପାଦନ କରିବେ ବୋଲି ସ୍ୱପ୍ନ ଦେଖିଛନ୍ତି । ଏବଂ, ତାହା ସଫଳ ହୋଇଛି । ଭାରତ ସରକାର ମହାଭାରତର ଶୁଦ୍ଧ ସଂସ୍କରଣ ପାଇଁ ଅର୍ଥ ଯୋଗାଇ ଦେଇଛନ୍ତି । ଆର୍ତ୍ତବଲ୍ଲଭ ସମ୍ପାଦନାର ନେତୃତ୍ୱ ନେଇଛନ୍ତି , ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ୨୧ ଖଣ୍ଡ ପୋଥିର ସାହାଯ୍ୟ ନେଇଛନ୍ତି । ୧୯୫୯ ମସିହାରେ କାମ ଆରମ୍ଭ ହୋଇଛି । ଏଗାର ଜଣ ବିଦ୍ୱାନ ତାଙ୍କ ସହଯୋଗୀ ଭାବରେ ନିଯୁକ୍ତି ପାଇଛନ୍ତି । ୧୯୬୩ ମସିହା ବେଳକୁ ସମ୍ପାଦନ ଓ ମୁଦ୍ରଣ- ଉଭୟ କାମ ଏକ ସମୟରେ ଚାଲିଛି । ଏବଂ, ସ୍ୱର୍ଗାରୋହଣ ପର୍ବର ସମ୍ପାଦନା ପରେ ଆର୍ତ୍ତବଲ୍ଲଭଙ୍କ ମହାପ୍ରୟାଣ ଘଟିଛି । ଗ୍ରନ୍ଥ ପ୍ରକାଶ ପାଇଛି ୧୯୬୪(?) ମସିହାରେ । ଏହି ଦୁଃସାଧ୍ୟ କାର୍ଯ୍ୟ ସମ୍ପାଦିତ ହୋଇଛି; ମାତ୍ର ଚାରି ବର୍ଷ ଅବଧିରେ । ସେ ଯେ କାପୁରୁଷ ନୁହନ୍ତି, ବୀର- ଏହା ପ୍ରମାଣିତ ହୋଇଛି ।

ଏଠାରେ ଆର୍ତ୍ତବଲ୍ଲଭଙ୍କ ମହାଭାରତର ସମ୍ପାଦନା ସମ୍ପର୍କରେ କିଛି କହିବି ନାହିଁ । ସଚ୍ଚିଦାନନ୍ଦ ମିଶ୍ର, କୃଷ୍ଣଚରଣ ସାହୁ ଏ ସମ୍ପର୍କରେ ବିଶଦ ଚର୍ଚ୍ଚା କରିଛନ୍ତି । [୮] ମାତ୍ର ମହାଭାରତକୁ କେନ୍ଦ୍ରକରି ଏଠାରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ସୂଚନା ଦେବାର ଆବଶ୍ୟକତା ରହିଛି । ପ୍ରଜାତନ୍ତ୍ର ପ୍ରଚାର ସମିତି ଉଦ୍ୟମରେ ୧୯୫୪ ମସିହାରେ ସାରଳା ସ୍ମରଣିକା ପ୍ରକାଶପାଇଛି । ଆର୍ତ୍ତବଲ୍ଲଭ ଏଥିରେ ସାରଳା ଦାସ ଶୀର୍ଷକ ଆଲୋଚନା ଲେଖିଛନ୍ତି । ଏହା ପୂର୍ବ-ବକ୍ତବ୍ୟର ବିସ୍ତାରଣ । ମାତ୍ର ୧୯୫୬ମସିହାରେ,

ସାରଳାଙ୍କ କବି-ବ୍ୟକ୍ତିତ୍ୱ କେନ୍ଦ୍ରକରି ନୂଆ ବିତର୍କ ଆରମ୍ଭ ହୋଇଛି । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ସାରଳା ସାହିତ୍ୟର ରଚନାକାଳ ଓ ଐତିହାସିକ ଚିତ୍ର ଶୀର୍ଷକରେ, ଝଙ୍କାର ପୃଷ୍ଠା(ଅଷ୍ଟମବର୍ଷ, ନବମ ସଂଖ୍ୟା)ରେ ଧାରାବାହିକ ଲେଖା ଆରମ୍ଭ କରିଛନ୍ତି । ୧୯୭୬ ମସିହାରେ ଏଗୁଡ଼ିକ ସାରଳା ସାହିତ୍ୟରେ ଐତିହାସିକ ଚିତ୍ର ଶୀର୍ଷକ ଗ୍ରନ୍ଥରେ ପ୍ରକାଶପାଇଛି । ଆଲୋଚନା ପ୍ରସ୍ତୁତି ପାଇଁ ସେ ୧୯୫୬ ମସିହାରେ ପ୍ରକାଶିତ ରାଧାରମଣ ପ୍ରେସ୍ କର୍ତ୍ତୃକ ପ୍ରକାଶିତ ମହାଭାରତର ସାହାଯ୍ୟ ନେଇଛନ୍ତି । ମାତ୍ର ତାଙ୍କ ମାନସିକତାକୁ ତୀବ୍ର ସମାଲୋଚନା କରିଛନ୍ତି ଗୋପୀନାଥ ମହାନ୍ତି । ଝଙ୍କାର ନବମ ବର୍ଷ, ଚତୁର୍ଥ, ପଂଚମ ଓ ଷଷ୍ଠ ସଂଖ୍ୟାରେ ସାରଳାଦାସଙ୍କ ସମୟ ଓ ସଭା ପର୍ବ ଶୀର୍ଷକ ଲେଖା ପ୍ରକାଶପାଇଛି । ସାରଳା ଦାସଙ୍କୁ ସେ ନବମ, ଦଶମ ଶତାବ୍ଦୀର ବ୍ୟକ୍ତି ଏବଂ ତାଙ୍କ ଘର ପୁରୀ ଜିଲ୍ଲା କାକଟପୁର ପାଖ କଣିଆ ବୋଲି ପ୍ରମାଣ କରିଛନ୍ତି ପ୍ରାପ୍ତପୋଥି ଆଧାରରେ ।[୯] ମାତ୍ର ଆଶ୍ଚର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ ମହାନ୍ତିଙ୍କ ବକ୍ତବ୍ୟର ପ୍ରତିଉତ୍ତର ଦେଇଛନ୍ତି । କହିଛନ୍ତି- 'ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ଚଉଦ ଅକ୍ଷରରେ ହେବା ଉଚିତ୍ । କାରଣ ଦାଣ୍ଡିବୃତ୍ତିକୁ ଲୋକେ ଗାଇବା ଭୁଲି ଗଲେଣି । ଏହା ପାଠାଗାରରେ ରହିବ । କପିଳ ନରସିଂହ ଏକ ମନଗଢ଼ା ବା ଜାଲ୍ ନାମ ଏବଂ ଏହି ନାମଧେୟ କୌଣସି ରାଜା ଓଡ଼ିଶାରେ ନ ଥିଲେ ।'[୧୦] ଅଧିକ ମଜାକଥା, ବଂଶୀଧର ମହାନ୍ତି, ସାରଳା ଦାସ୍ ନାମ ଭଣିତା ଥାଇ ଅନ୍ୟ ଏକ ଛୋଟ ଲେଖା **ଲକ୍ଷ୍ମୀନାରାୟଣୀ** ବଚନିକା ନାମରେ ଝଙ୍କାର, ନବମବର୍ଷ, ପ୍ରଥମସଂଖ୍ୟାରେ ପ୍ରକାଶ କରିଛନ୍ତି ।[୧୧] ପୁନଶ୍ଚ, ୧୯୬୦ ମସିହା ମଧ୍ୟରେ ପ୍ରକାଶିତ ଗୌରୀକୁମାର ବ୍ରହ୍ମାଙ୍କ ସାରଳା ସାହିତ୍ୟ ଆଲୋଚନା (ଝଙ୍କାର, ନବମବର୍ଷ, ଦ୍ୱାଦଶସଂଖ୍ୟା)-ସାରଳା ସାହିତ୍ୟ ସଂକ୍ରାନ୍ତରେ ଏକ ଗୁରୁତ୍ୱପୂର୍ଣ୍ଣ ଚର୍ଚ୍ଚା ।

ଉପର୍ଯ୍ୟୁକ୍ତ ଆଲୋଚନାଗୁଡ଼ିକ ସମ୍ପର୍କରେ ସୂଚନା ଦେବାର କାରଣ, ଆର୍ତ୍ତବଲ୍ଲଭ ନିଶ୍ଚିତ ଭାବରେ ଏଗୁଡ଼ିକୁ ଭଲଭାବରେ ପଢ଼ିଥିବେ । ଆହତ ଅଥବା ଆନନ୍ଦିତ ହୋଇଥିବେ । ଆନନ୍ଦିତ ଏଇଥି ପାଇଁ, ତାଙ୍କ ପ୍ରିୟ କବି ଏବେ ବହୁ ଚର୍ଚ୍ଚିତ, ଏବଂ, ଆହତ ହେବାର କାରଣ- ପ୍ରିୟକବିଙ୍କ ବ୍ୟକ୍ତିତ୍ୱ ତାଙ୍କ ଜାତି(ଶୂଦ୍ର, ଚଷା, କ୍ଷତ୍ରିୟ) ଧର୍ମ ଓ ବିଦ୍ୟାକୁ କେନ୍ଦ୍ରକରି ଏବେ କ୍ଷତାକ୍ତ । ମହାଭାରତର ଶୁଦ୍ଧ ସମ୍ପାଦନା କାଳରେ, ପ୍ରିୟ କବିଙ୍କୁ ସେ ନିଶ୍ଚିତ ଭାବରେ ଅଧିକ ପାଖରୁ ଦେଖିଥିବେ, ଆତ୍ମାରେ ଅନୁଭବ କରିଥିବେ, ଗ୍ରନ୍ଥର ମୁଖବନ୍ଧରେ ସବୁକଥା ଲେଖିଥିବେ । ମାତ୍ର ତାଙ୍କ ଅନୁଭବର ଅକ୍ଷର ରୂପ ଏବେ ଆମ ପାଖରେ ନାହିଁ । ଥିଲେ, ତାଙ୍କ ଚେତନାରେ ସାରଳାଙ୍କ କେଉଁ ରୂପ ଉଦ୍‌ଭାସିତ ହେଉଥିଲା, ତାହା ଆମେ ଜାଣି ପାରିଥାନ୍ତୁ । ଆର୍ତ୍ତବଲ୍ଲଭଙ୍କ ସାରଳା ସବୁ କାଳ ପାଇଁ ଗୋପ୍ୟ ରହିଗଲେ ।

**ଛଅ**

ଆର୍ତ୍ତବଲ୍ଲଭଙ୍କ ପାଖରୁ ଆମେ କାହିଁ କେତେ ଦୂର ଚାଲି ଆସିଲୁଣି । ତାଙ୍କୁ ସ୍ୱୀକାର କରୁଛୁ, ପ୍ରଶ୍ନ ବି କରିଛୁ । ସ୍ୱୀକୃତି ଓ ପ୍ରଶ୍ନ- ଉଭୟ ସ୍ୱଭାବିକ । କୌଣସି ବ୍ୟକ୍ତିଙ୍କ

ଚର୍ଯ୍ୟା ବା ବିଚାରକୁ ପ୍ରଶ୍ନ କରୁଥିବା ମଣିଷ(ମାନଙ୍କ), ଗ୍ରହଣ କରିନେଉଥିବା ମଣିଷ(ମାନଙ୍କ)ଠାରୁ ଅଧିକ ସହୃଦୟ । ସ୍ୱୀକୃତିରେ ଅନ୍ଧତ୍ୱ ଥାଏ, ପ୍ରୀତି ନୁହେଁ । ପ୍ରଶ୍ନ କରୁଥିବା ମଣିଷମାନେ ତାଙ୍କର ପ୍ରିୟତମ । ପ୍ରିୟତମ ଏଇଥି ପାଇଁ ଯେ, ସେମାନେ ତାଙ୍କୁ କେନ୍ଦ୍ରକରି ନୂଆ ଇତିହାସ ତିଆରି କରନ୍ତି । 'କେନ୍ଦ୍ର', ଯଥାର୍ଥତଃ, ଏକ ପ୍ରଚୋଦକରେ ରୂପାନ୍ତରିତ ହୋଇଯାଏ । ଆର୍ତ୍ତବଲ୍ଲଭଙ୍କୁ ଗୌରୀକୁମାର ବ୍ରହ୍ମା, କୃଷ୍ଣଚରଣ ସାହୁ, କେଦାର ନାଥ ମହାପାତ୍ର, ସଚ୍ଚିଦାନନ୍ଦ ମିଶ୍ର, ନଟବର ସାମନ୍ତରାୟ ଓ ଅନ୍ୟମାନେ ପ୍ରଶ୍ନ କରିଛନ୍ତି । ଏହି ପ୍ରଶ୍ନକର୍ତ୍ତାମାନେ ହିଁ ଆପଣା ଆପଣା ବିଜ୍ଞାନ ଦୃଷ୍ଟି ଆଧାରରେ ନୂଆ ଇତିହାସ ତିଆରି କରିଛନ୍ତି । ଆର୍ତ୍ତବଲ୍ଲଭ ଦିନେ ଆପଣା କାଳରେ, ଅପଣା ବିଚାରରେ ଏହି ମାର୍ଗର ଯାତ୍ରୀ ଥିଲେ ।

ଅନ୍ୟପକ୍ଷରେ, ଆର୍ତ୍ତବଲ୍ଲଭଙ୍କ ମୁଗ୍ଧ-ଅନୁଗାମୀମାନଙ୍କ ସମ୍ପର୍କରେ ଏତିକି କୁହାଯାଇପାରେ, ସେମାନେ ଗୁରୁଙ୍କ ଉଚ୍ଚତା ଓ ତେଜ ପାଖରେ ଭାରି ଅସହାୟ ହୋଇପଡ଼ିଛନ୍ତି । ଗୁରୁଙ୍କ ସିଦ୍ଧାନ୍ତର ବିକଳ୍ପ ଅନୁଭବ କରିଛନ୍ତି । ମାତ୍ର କହି ପାରିନାହାନ୍ତି । ଅଥବା ସେମାନଙ୍କ ଭିତରେ ପୋଥିପଢା କୌଶଳ, ଗ୍ରନ୍ଥ-ନିର୍ମାଣ ଓ ତଥ୍ୟବିଶ୍ଳେଷଣଜନିତ ଅନ୍ତର୍ଦୃଷ୍ଟିର ଘୋର ଅଭାବ ରହିଛି । ଏକ ବଡ଼ ଗଛ ଛାଇରେ ଅଙ୍କୁରିତ ବୀଜର ଅସହାୟତା ସତେଯେପରି ସେମାନଙ୍କ ଭାଗ୍ୟ ହୋଇଛି । ଏବଂ, ଆଶ୍ରୟଦାତା ଗଛଟି ଅବର୍ତ୍ତମାନ ହୋଇଗଲା ପରେ ମଧ୍ୟ ପରାଧୀନତାବୋଧରୁ ସେମାନେ ମୁକ୍ତ ହୋଇ ପାରିନାହାନ୍ତି, ସାମର୍ଥ୍ୟ ଓ ସ୍ୱପ୍ନହୀନ ବାମନରେ ରୂପାନ୍ତରିତ ହୋଇଯାଇଛନ୍ତି ।

ଆର୍ତ୍ତବଲ୍ଲଭ ବାମନ ନ ଥିଲେ, ଥିଲେ ଏକ ସ୍ପର୍ଦ୍ଧା । ଆପଣା ବିଚାର ଓ ବିଶ୍ୱାସ ପ୍ରତି ଅଙ୍ଗୀକାରବଦ୍ଧ ବ୍ୟକ୍ତିସତ୍ତା ।

**ପ୍ରାନ୍ତସୂଚୀ**

୧. କ. ନଟବର ସାମନ୍ତରାୟ: ୧୯୭୦, ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ, ଭୁବନେଶ୍ୱର, ଗନ୍ଧର୍ବ ଶତପଥୀ । ଖ. ବଂଶୀଧର ମହାନ୍ତି, ୧୯୭୨, ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ, କଟକ, ଫ୍ରେଣ୍ଡସ୍‌ପବ୍ଲିସର୍ସ ।

୨. ପୁସ୍ତକସୂଚୀ-୧.କ, ପୃଷ୍ଠା-୨୨୪ ।

୩. ଚକ୍ରଧର ମହାପାତ୍ର: **କୁନ୍ତଳା କୁମାରୀ ଜୀବନଚରିତ**, କଟକ, ଗ୍ରନ୍ଥମନ୍ଦିର, ପୃଷ୍ଠା- ୨୪୫-୪୮, ୩୧୮-୨୪ ।

୪. କେଦାର ନାଥ ମହାପାତ୍ର: ୧୯୬୯, ଏକାବଳୀ ବର୍ଣ୍ଣିତ ନରସିଂହଦେବ, ଝଙ୍କାର, ୧୧ଶ ବର୍ଷ, ୧୧ଶ ସଂଖ୍ୟା, ପୃଷ୍ଠା-୧୧୧-୧୬ ।

୫. କ. W.W. Hunter: 1872, **Orissa**- Vol-I & II, London, Smith Elder & Company.

ଖ. Monamohan Chakravarty: 1897-98, **Notes on the language and Literature of Orissa**, in, Journal of Asiatic Society of Bengal, Vol-LXVI & XVIII.

ଗ. ମଧୁସୂଦନ ଦାଶ: ୧୯୦୩, **ଓଡ଼ିଆ ଭାଷା ଓ ପ୍ରାଚୀନ ସାହିତ୍ୟ**, ଉତ୍କଳ ସାହିତ୍ୟ, ସପ୍ତମଭାଗ, ଷଷ୍ଠ ଓ ସପ୍ତମ ସଂଖ୍ୟା।
ଘ. ତାରିଣୀଚରଣ ରଥ: ୧୯୧୬, **ଉତ୍କଳ ସାହିତ୍ୟର ଇତିହାସ**, ବ୍ରହ୍ମପୁର
ଙ. B.C. Mazumdar: 1921, 23, 24: **Typical Selections from Oriya Litreature** (Three Volums), Calcutta, Calcutta University Press.
ଚ. ବିନାୟକ ମିଶ୍ର: ୧୯୨୭, **ଓଡ଼ିଆ ସାହିତ୍ୟର ଇତିହାସ** ।
୬. ଶ୍ୟାମସୁନ୍ଦର ରାଜଗୁରୁ: ୧୯୬୪, ୧୯୧୭, ପ୍ରବନ୍ଧାବଳୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

୭. ଗୌରୀ କୁମାର ବ୍ରହ୍ମା:
୧୯୫୨, **ଓଡ଼ିଆ ସାହିତ୍ୟରେ ଦୁଇଟି କାଳ ନିରୂପଣ**, ଝଙ୍କାର, ଚତୁର୍ଥ ବର୍ଷ, ଚତୁର୍ଥ ସଂଖ୍ୟା ।
୧୯୫୪, ସମସ୍ୟାର ସମାଧାନ, ଗୋବରା, ଚନ୍ଦ୍ରକୁମାର ପାଠାଗାର ।
୧୯୫୮, ସାରଳାସାହିତ୍ୟ ଆଲୋଚନା, ଝଙ୍କାର ନବମବର୍ଷ, ଦ୍ୱାଦଶ ସଂଖ୍ୟା ।
ସଚ୍ଚିଦାନନ୍ଦ ମିଶ୍ର: ୨୦୦୨, **କଳସା ବିଚାର**, ଅନ୍ତର୍ଭୁକ୍ତ, **ଅତୀତର ବର୍ଣ୍ଣବୋଧ**, କଟକ, ଆର୍ଯ୍ୟପ୍ରକାଶନ, ପୃଷ୍ଠା-୧୪-୨୭ ।

୮. କୃଷ୍ଣ ଚରଣ ସାହୁ:
**ଶୁଦ୍ଧପାଠ ନିର୍ଣ୍ଣୟ ସମସ୍ୟା- ପ୍ରାମାଣିକ ସାରଳାମହାଭାରତ**, ଅନ୍ତର୍ଭୁକ୍ତ, କୃଷ୍ଣ ଚରଣ ରଚନା ସମ୍ଭାର(ପଞ୍ଚମଭାଗ), ଭୁବନେଶ୍ୱର ।
ସଚ୍ଚିଦାନନ୍ଦ ମିଶ୍ର: ସାରଳାମହାଭାରତ ସମ୍ପାଦନାରେ ତ୍ରୁଟି, ଅନ୍ତର୍ଭୁକ୍ତ, ସରଳାଦାସ ଏକ ଅଧ୍ୟୟନ, ୨୦୦୬, କଟକ, ଗ୍ରନ୍ଥମନ୍ଦିର, ପୃଷ୍ଠା-୨୯୪-୩୦୫ ।

୯. ଗୋପୀନାଥ ମହାନ୍ତି:
କ. **ସାରଳା ଦାସଙ୍କ ଘର କେଉଁଠି**, ଝଙ୍କାର, ଅଷ୍ଟମ ବର୍ଷ, ଦ୍ୱିତୀୟ ସଂଖ୍ୟା ।
**ସାରଳା ଦାସଙ୍କ ସମୟ ଓ ସଭାପର୍ବ**, ଝଙ୍କାର, ନବମ ବର୍ଷ, ଚତୁର୍ଥ, ପଂଚମ ଓ ଷଷ୍ଠସଂଖ୍ୟା ।
ଖ. ସଚ୍ଚିଦାନନ୍ଦ ମିଶ୍ର: **ସାରଳା ଦାସଙ୍କ ବାସସ୍ଥାନ ନିରୂପଣ, ସାରଳା ଦାସଙ୍କ ସମୟ, ସାରଳା ମହାଭାରତର ଐତିହାସିକ ଭୌଗୋଳିକ ବିମର୍ଶ**, ଅନ୍ତର୍ଭୁକ୍ତ, ସରଳା ଦାସ: ଏକ ଅଧ୍ୟୟନ, ୨୦୦୬, କଟକ, ଗ୍ରନ୍ଥମନ୍ଦିର, ପୃଷ୍ଠା-ଯଥାକ୍ରମେ ୨୦-୩୮,୩୮-୫୬, ୨୬୦-୨୮୦ ।

୧୦. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ:
**ସାରଳା ମହାଭାରତର ରଚନାକାଳ ଓ ଐତିହାସିକ ଚିତ୍ର**, ଝଙ୍କାର: ଅଷ୍ଟମ ବର୍ଷ ନବମ ସଂଖ୍ୟାରୁ ଆରମ୍ଭ।

--- ୧୯୭୬, ସାରଳା ମହାଭାରତରେ ଐତିହାସିକ ଚିତ୍ର, କଟକ, ପ୍ରଜାତନ୍ତ୍ର ପ୍ରଚାର ସମିତି ।

---୨୦୦୩, ସାରଳା ଦାସଙ୍କ ଘର କେଉଁଠି, ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ନିର୍ବାଚିତ ପ୍ରବନ୍ଧ, କଟକ, କିତାବ ମହଲ, ପୃଷ୍ଠା-୧୯-୪୧ ।

୧୧. ବଂଶୀଧର ମହାନ୍ତି: ଲକ୍ଷ୍ମୀନାରାୟଣୀ ବଚନିକା, ଝଙ୍କାର, ନବମ ବର୍ଷ, ପ୍ରଥମ ସଂଖ୍ୟା, ପୃଷ୍ଠା-୧୬୦-୬୨ ।

ଗୌରାଙ୍ଗ ଚରଣ ଦାଶ

# ସଭାପତିଙ୍କ ଅଭିଭାଷଣ

**ଭାଇ ଓ ଭଉଣୀମାନେ,**

ଆଜି ଏହି ମନ୍ଦିରରେ ଦେବୀ ଭାରତୀଙ୍କର ପୂଜା କରିବାକୁ ଆମ୍ଭେମାନେ ଏକାଠି ହୋଇଅଛୁଁ । ପୂଜା କରିବା ନିମନ୍ତେ ଉପଯୁକ୍ତ ପୂଜକ ଦରକାର । ପୂଜକ ଠିକ ହୋଇଥିଲେ; ଅସୁବିଧା ହେତୁରୁ ଆସି ପାରିଲେ ନାହିଁ । ପୂଜା ତ ବନ୍ଦ ହେବାର ନୁହେଁ, ଲୋକ ନିକଟରେ ନାହିଁ, ଅଗତିକଗତି ଜଣଙ୍କୁ ଧରିଆଣି ବସାଇ ଆଣି ବସାଇ ଦିଅ । ବାଟରେ ହାବୁଡ଼ିଲି ମୁଁ, ମୋତେ ଆଣି ତ ବସେଇ ଦେଲେ; କାମ ଚଳୁଛି କିପରି ? ଅରକ୍ଷିତକୁ ଦଇବ ସାହା ଅର୍ଥାତ, ହରି ସାହା । ହରିଙ୍କି ଡାକି ପଞ୍ଚମୁଖେ ହରି । ପଞ୍ଚ ପରମେଶ୍ୱର । ଆପଣମାନଙ୍କ ଉପରେ ଭରସା ରଖି ଯାହା କରିବି ତାହା ଅନୁଗ୍ରହ କରି ବସିପଡ଼ି ସମୟଟା କଟାଇ ଦେଲେ- ଦେବୀଙ୍କ ପୂଜାଟା ଯେନତେନ ପ୍ରକାରେଣ ସରିଯିବ ।

**ସାହିତ୍ୟ ସମାଜର ବାର୍ଷିକ ଅଧିବେଶନ :**

**ସାହିତ୍ୟ:** ସାହିତ୍ୟ ସଙ୍କୀର୍ଣ୍ଣ ଅର୍ଥରେ କାବ୍ୟ ବୁଝାଏ । କାବ୍ୟ ସଂସ୍କୃତ ବିଦ୍ୟାରେ ବିସ୍ତୃତ ଅର୍ଥରେ ଗଦ୍ୟ, ପଦ୍ୟ ଓ ମିଶ୍ର- ଏହି ତିନି ଭାଗରେ ବିଭକ୍ତ । ଗଦ୍ୟ – କଥା, ଆଖ୍ୟାୟିକା(ଉପନ୍ୟାସ ପ୍ରଭୃତି), ପଦ୍ୟ-କାବ୍ୟ, ମିଶ୍ର-ନାଟକ । ସ୍ତୋତ୍ର, ଶତକ, ଚମ୍ପୂ, ଗୀତ ପ୍ରଭୃତି ମଧ କାବ୍ୟର ଅନ୍ତର୍ଗତ । ଓଡ଼ିଆ, ବଙ୍ଗଳା ଓ ଅନ୍ୟ ଭାଷାମାନଙ୍କରେ ମଧ ସାହିତ୍ୟ ଏହି ସଂକୀର୍ଣ୍ଣ ଅର୍ଥରେ ଗୃହୀତ ।

କିନ୍ତୁ ବିସ୍ତୃତ ଅର୍ଥରେ ଧରିବାକୁ ଗଲେ ଜାତିର ସମସ୍ତ ଜ୍ଞାନ ଓ ଭାବସଂପ୍ରଦାୟକୁ ଯାହା ଭାଷା ପ୍ରକାଶ କରେ ତାହା ସାହିତ୍ୟ; ମାନବର କର୍ମମୟ ଜୀବନର ପ୍ରତିବିମ୍ବ ହିଁ ସାହିତ୍ୟ। ସାହିତ୍ୟର ପରିସର କର୍ମର ପରିସରଠାରୁ ଅତି ଅଧିକ, ଏହା ସର୍ବବାଦୀସମ୍ମତ । ଲୋକେ କହି ପାରନ୍ତି, ଭାବର ବିଷୟ । ଏହି ଉକ୍ତି ସତ୍ୟ; କିନ୍ତୁ ଭାବ ଓ ଜ୍ଞାନକୁ ପୃଥକ ମଣି ଉଭୟର ସୀମା ନିରୂପଣ କରି ହୁଏନାହିଁ । ଭାବର ବିଚିତ୍ରତା, ଜ୍ଞାନର ବିଶାଳତା ତଥା ଗମ୍ଭୀରତା ଉପରେ ନିର୍ଭର କରେ । ଭାବର ପ୍ରଧାନ୍ୟ

ଓ ଜ୍ଞାନର ଅପ୍ରାଧାନ୍ୟରେ ସାହିତ୍ୟ କାବ୍ୟ ନାଟକାଦି ରୂପରେ ଗୃହୀତ; କିନ୍ତୁ ଯେ ସାହିତ୍ୟ ବହୁବିଧ ଜ୍ଞାନ ଓ ବିଚିତ୍ର ଭାବ ପ୍ରକାଶ ନ କରେ, ସେ ସାହିତ୍ୟ ଉନ୍ନତ ନୁହେଁ । ତେଣୁ ସାହିତ୍ୟ ଜାତିର ସମସ୍ତ ଚିନ୍ତା ଓ ଭାବ ସମୁଦାୟର ପ୍ରତିଚିତ୍ର ।

ଧର୍ମ, ଅର୍ଥ, କାମ, ମୋକ୍ଷ- ଏହି ଉଦ୍ଦେଶ୍ୟ ଚତୁଷ୍ଟୟ ପ୍ରାପ୍ତି ନିମିତ୍ତ ମାନବ ମାନସ ସଦା ଉନ୍ମୁଖ । ଏହି ବିଷୟମାନ ଅବଲମ୍ବନ କରି ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, କାମଶାସ୍ତ୍ର ଓ ମୋକ୍ଷଶାସ୍ତ୍ର ଲିଖିତ ହୋଇଅଛି । ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦ, ନିରୁକ୍ତ, ଜ୍ୟୋତିଷ ସହିତ ଚାରି ବେଦ, ମନୁ, ଯାଜ୍ଞବଲ୍କ୍ୟାଦି ସ୍ମୃତି, ଅଷ୍ଟାଦଶ ପୁରାଣ ଓ ଉପପୁରାଣ, ପୂର୍ବ ମୀମାଂସା ଓ ଉତ୍ତର ମୀମାଂସା(ବେଦାନ୍ତ) ଏବଂ ନ୍ୟାୟଶାନ୍ତ୍ର ପ୍ରଭୃତି ବିଦ୍ୟା ଚତୁର୍ଦ୍ଦଶ ପ୍ରକାଚ । ଏହା ସଂସ୍କୃତ ଶାସ୍ତ୍ର ସ୍ୱୀକାର କରେ । ବିସ୍ତୃତ ଅର୍ଥରେ କଳା ଓ ବିଜ୍ଞାନ ଉଭୟକୁ ସାହିତ୍ୟ ଗ୍ରହଣ କରିଥାଏ । ଉଦାହରଣସ୍ୱରୂପ ମହାଭାରତକୁ ନିଆଯାଉ । ତହିଁରେ ସର୍ବବିଦ୍ୟା ସମନ୍ୱୟ ଘଟିଅଛି, ତଥାପି ତାହାକୁ ଶାସ୍ତ୍ରକାର କାବ୍ୟରୂପରେ ଗ୍ରହଣ କରିଅଛନ୍ତି ।

**ସଂସ୍କୃତ ନୀତିଶାସ୍ତ୍ର ମତରେ**

ଆନ୍ୱିକ୍ଷିକୀ, ବେଦ, ବାର୍ତ୍ତା ଓ ଦଣ୍ଡନୀତି ଭେଦରେ ବିଦ୍ୟା ଚତୁର୍ବିଧ । ପୂର୍ବୋକ୍ତ ଚତୁର୍ଦ୍ଦଶ ବିଦ୍ୟା ଏ ମତରେ ତ୍ରୟୀ ଓ ଆନ୍ୱିକ୍ଷିକୀର ଅନ୍ତର୍ଭୁକ୍ତ । ନୀତିଶାସ୍ତ୍ରକାର ବାର୍ତ୍ତା ଓ ଦଣ୍ଡନୀତି- ଏ ଦୁହିଙ୍କୁ ମଧ୍ୟ ବିଦ୍ୟାରୂପରେ ଗ୍ରହଣ କରିଅଛନ୍ତି । (ସଂସ୍କୃତ ଶାସ୍ତ୍ର ମତରେ) ଗୀତ, ବାଦ୍ୟ ଓ ନୃତ୍ୟାଦି ଭେଦରେ କଳାବିଦ୍ୟା ଚତୁଃଷଷ୍ଟି । କଳାବିଦ୍ୟା ମଧ୍ୟ ଶିଳ୍ପକଳା, ଲଳିତାକଳାଦି ଭେଦରେ ବିଭକ୍ତ ହୋଇପାରେ ।

ଆମ୍ଭମାନଙ୍କର 'ଓଡ଼ିଆ ସାହିତ୍ୟ' ଅତି ପ୍ରାଚୀନ । ଗଦ୍ୟକାବ୍ୟ ଠାରୁ ପଦ୍ୟକାବ୍ୟ ପ୍ରାଚୀନ । ଏହା ସର୍ବତ୍ର ପରିଦୃଷ୍ଟି ହୋଇଥାଏ । ଓଡ଼ିଆ ଭାଷାରେ ତାହା ସତ୍ୟ । ଉତ୍କଳ ସାହିତ୍ୟର ଇତିହାସ ଲେଖକଙ୍କ ମତରେ- ସାରଳାଦାସ, ମାର୍କଣ୍ଡ ଦାସ ଆଦି ଉତ୍କଳ ସାହିତ୍ୟର ପ୍ରାଥମିକ ଯୁଗର କବି । ସାରଳା ଦାସ ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବଙ୍କ ସମସାମୟିକ ରୂପରେ ସାଧାରଣତଃ ଗୃହୀତ ହୋଇଅଛନ୍ତି । କିନ୍ତୁ ବର୍ତ୍ତମାନ ଅନୁସନ୍ଧାନ ଫଳରେ ଜଣାପଡିଛି, ସେ ଗଙ୍ଗବଂଶୀ କପିଳ ୨ୟ ଭାନୁଦେବଙ୍କ ସମସାମୟିକ ଥିଲେ । ସୂର୍ଯ୍ୟବଂଶୀଙ୍କ ରାଜତ୍ୱ କାଳ ୧୪୩୫ ଖ୍ରୀଷ୍ଟାବ୍ଦରୁ ୧୪୬୫ ପର୍ଯ୍ୟନ୍ତ; ଗଙ୍ଗବଂଶୀଙ୍କ ରାଜତ୍ୱକାଳ ୧୩୨୮ ଖ୍ରୀଷ୍ଟାବ୍ଦରୁ ୧୩୫୨ ପର୍ଯ୍ୟନ୍ତ । ତେଣୁ ସାରଳା ଦାସ ୧୪ଶ ଶତାବ୍ଦୀର ଲୋକ । ଏ ଗଣନା ଅନୁସାରେ ତାଙ୍କର ସମୟ ପୂର୍ବ ନିର୍ଦ୍ଧାରଣଠାରୁ ୧୦୦ ବର୍ଷ ପଛେଇଗଲା । ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ରାମାୟଣ ପ୍ରଭୃତି ଦାଣ୍ଡିବୃତ୍ତରେ ରଚିତ । କିନ୍ତୁ ଦୁଃଖର କଥା, ଯେଉଁ ମହାଭାରତ ପ୍ରକାଶିତ ହୋଇଅଛି, ସେଥିରେ ସାରଳା ଦାସ କେତେ ଅଣାରେ ଅଛନ୍ତି, ତାହା ବୁଝିବା ବଡ଼ କଠିନ । ସାରଳା ମହାଭାରତତର ବିଶୁଦ୍ଧ ସଂସ୍କରଣ ଏ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରକାଶିତ ହୋଇ ନାହିଁ । ଏହାଠାରୁ ଦୁଃଖର ବିଷୟ ଆଉ କ'ଣ ହୋଇପାରେ? ଏପରି ବିଶାଳ ପ୍ରାଚୀନ ଗ୍ରନ୍ଥ ଅନ୍ୟ ପ୍ରାଦେଶିକ ଭାଷାରେ ଅଛି କି? ସୁବିଶୁଦ୍ଧ ସଂସ୍କରଣ ହେଲେ

ଭାଷାତତ୍ତ୍ୱ ବିଷୟରେ ସାରଳା ମହାଭାରତର ଯେ ଦାନ ହେବ, ତାହା ଅକଳ୍ପନୀୟ । ଏହି ଅମୂଲ୍ୟ ରତ୍ନର ଉପଯୁକ୍ତ ପରିଚୟ ନ ଦେଇ ଆମ୍ଭେମାନେ କାପୁରୁଷତାର ପରିଚୟ ଦେଉ ନାହୁଁ କି? ପ୍ରାଚୀନ 'ଗଦ୍ୟପଦ୍ୟାଦର୍ଶ'ରେ 'ଢାରାଶବର' ଉପାଖ୍ୟାନଟି ଦାଣ୍ଡିବୃତ୍ତରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି । ସାରଳା ମହାଭାରତଠାରୁ କଳସା ଚଉତିଶା ଯେ ପ୍ରାଚୀନ, ଏହା ପ୍ରମାଣିତ ହୋଇଅଛି । କଳାସା ଚଉତିଶାର ଭାଷାରେ ଯେ ସାମୟିକ ପରିବର୍ତ୍ତନ ହୋଇ ନାହିଁ, ତାହା କିଏ କହିବ ? କଳସା ଚଉତିଶାର କବି ବତ୍ସା ଦାସ ୧୩ଶ ଶତାବ୍ଦୀର ଲୋକ; ଏହା ନିଃସନ୍ଦେହରେ କୁହାଯାଇପାରେ । ମୁନିବର ବାଣୀ, ସଙ୍ଗମତିଆରି ବାଣୀ ମଧ୍ୟ କଳସା ବାଣୀ ସଦୃଶ ପ୍ରାଚୀନ । ଦୁଃଖର କଥା ଯେ ସେ ଚଉତିଶାମାନ ଏପର୍ଯ୍ୟନ୍ତ କାହାରିକୁ ଜଣା ହୋଇନାହିଁ । କଳସା ଚଉତିଶା ଓ ସାରଳା ମହାଭାରତ ପାଠ କଲେ ସ୍ପଷ୍ଟ ଜଣାଯାଏ ଯେ ସେ ଭାଷା ଉନ୍ନତ ଏବଂ ପ୍ରାୟ ସର୍ବପ୍ରକାର ଭାବ ପ୍ରକାଶ କରିବାରେ ସମର୍ଥ । ଭାଷାକୁ ଏପରି ଅବସ୍ଥାକୁ ଆସିବାକୁ ଅନ୍ତତଃ ୨୦୦/୩୦୦ ବର୍ଷ ଲାଗିଥିବ । ତହୁଁ ମହାଭାରତର ଭାଷା ୨୦୦/୩୦୦ ବର୍ଷ ପୂର୍ବର; ଏହା କହିବାରେ ସତ୍ୟର ଅପଳାପ ହେଉନାହିଁ । କେତେକ ସାହିତ୍ୟବିତ୍ କହନ୍ତି ୧୩ଶ ଶତାବ୍ଦୀର ଭୁବନେଶ୍ୱର ଶିଳାଲିପିର ଓଡ଼ିଆ ଭାଷା ସାହିତ୍ୟର ସମ୍ପୂର୍ଣ୍ଣ ଅନୁପଯୋଗୀ । ଏପରି କହିବା ସମୀଚୀନ ହେଉନାହିଁ; କାରଣ ଉକ୍ତ ଶିଳାଲିପିର ପାଠ ସେମାନେ ଯାହା ପାଇଥିଲେ, ତାହା ଅବିଶୁଦ୍ଧଭାବରେ ହରପ୍ରସାଦ ଶାସ୍ତ୍ରୀ ପ୍ରଭୃତିଙ୍କ ଦ୍ୱାରା ପଠିତ ହୋଇଥିଲା । ତହିଁର କେତେକ ଶବ୍ଦର ଅର୍ଥ ନିର୍ଣ୍ଣିତ ହେବା କଠିନ । ତାହାର ଅପେକ୍ଷାକୃତ ଶୁଦ୍ଧପାଠ ଗଦ୍ୟପଦ୍ୟାଦର୍ଶରେ ପ୍ରଦତ୍ତ ହୋଇଅଛି । ସେ ଭାଷା ତେତେ ପ୍ରାଥମିକ ନୁହେଁ, ଆହୁରି ମଧ୍ୟ ଶିଳାଲିପିର ଓ ତାମ୍ରଶାସନର ଭାଷା ସାହିତ୍ୟ ଭାଷାଠାରୁ ସମ୍ପୂର୍ଣ୍ଣ ପୃଥକ । ଆକାଶ ପାତାଳ ପ୍ରଭେଦ । ଯେଉଁମାନେ ତାମ୍ରଶାସନ ପଞ୍ଚାଦିର ସମସାମୟିକ ଉତ୍କଳ ସାହିତ୍ୟିକ ପାଠ କରିଅଛନ୍ତି, ସେମାନଙ୍କୁ ଏ ବିଷୟରେ କହିବା ନିଷ୍ପ୍ରୟୋଜନ । ପ୍ରାଚୀନ ଉତ୍କଳ ଭାଷାର ନିଦର୍ଶନ ଆମ୍ଭେମାନେ ବୌଦ୍ଧଗାନ ଓ ଦୋହାରେ ଦେଖିବାକୁ ପାଉଁ । ହରପ୍ରସାଦ ଏହି ଗ୍ରନ୍ଥ ସଙ୍କଳନ କରି ବଙ୍ଗର ତଥା ଉତ୍କଳର ପ୍ରଭୂତ କଲ୍ୟାଣ ସାଧନ କରିଅଛନ୍ତି । ସେହି ସିଦ୍ଧାଚାର୍ଯ୍ୟମାନଙ୍କ ଗୀତ ସବୁ ୮ମ ବା ୯ମ ଶତାବ୍ଦୀର ଲେଖା । ସେ ଭାଷା ଅବିକୃତ; କାରଣ ତାହାର ସଂସ୍କୃତ ଟୀକା ଥିବାରୁ ବିଶେଷ ଭ୍ରମ ବା ପରିବର୍ତ୍ତନ ସମ୍ଭବି ନାହିଁ । ତେବେ ବଙ୍ଗଳା ଓ ଓଡ଼ିଆର ପ୍ରଭୂତ ସାମ୍ୟ ହେତୁରୁ ଓ ହରପ୍ରସାଦଙ୍କ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନଭିଜ୍ଞତବଶତଃ କେତେକ ଓଡ଼ିଆ ଶବ୍ଦ ଅଜ୍ଞାତଭାବରେ ବଙ୍ଗଳା ଶବ୍ଦର ରୂପ ପାଇ ପାରିଥିବ । ଏଥିରେ ହରପ୍ରସାଦଙ୍କୁ ଆକ୍ଷେପ କରାଯାଉ ନାହିଁ । ଏହା ସାଧାରଣତଃ ହୋଇଥାଏ । ଲୁଇପାଦ, କୃଷ୍ଣଚାର୍ଯ୍ୟ, ସବରପାଦ, ତେଲିପି, ମତ୍ସ୍ୟେନ୍ଦ୍ରନାଥ ବା ମୀନନାଥ ଉତ୍କଳର ସିଦ୍ଧଚାର୍ଯ୍ୟ ଥିଲେ । ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତାରେ ଲୁଇଦାସ ଓ ମୀନନାଥଙ୍କ ମଠ ପ୍ରାଚୀ କୂଳରେ ଥିଲା ବୋଲି ଲିଖିତ ଅଛି । ମୀନନାଥ ବା ମତ୍ସ୍ୟେନ୍ଦ୍ରନାଥଙ୍କ ଗାଦି ସେଠାରେ ଅଛି ଓ ତାଙ୍କର ଶିଷ୍ୟପରମ୍ପରା ଉତ୍କଳରେ ଆଜି ପର୍ଯ୍ୟନ୍ତ ଚାଲି ଆସୁଅଛି । ସାରଳା ଦାସଙ୍କ

ମହାଭାରତ ସଂସ୍କୃତର ଅନୁବାଦ ନୁହେଁ । ଏହି ଗ୍ରନ୍ଥ ଉପଯୁକ୍ତ ଭାବରେ ସଂକଳିତ ହେଲେ ଓ ଏହି ବିଶାଳ ଗ୍ରନ୍ଥ ଉପଯୁକ୍ତରୂପେ ପର୍ଯ୍ୟାଲୋଚନା କଲେ ଅନେକ ପ୍ରାଚୀନ କିମ୍ବଦନ୍ତୀ, ବୌଦ୍ଧ ଓ ଜୈନ ପୁରାଣମାନଙ୍କର କଥା, ନାନା ବିଦ୍ୟା (ଗୋବିଦ୍ୟା, ଯୁଦ୍ଧବିଦ୍ୟା ପଭୃତି)ର ପରିଚୟ ମିଳିବ ।

୧୫ଶ ଶତାବ୍ଦୀର ଶେଷ ଭାଗ ଓ ୧୬ଶ ଶତାବ୍ଦୀର ଆଦ୍ୟ ଭାଗର ବୃଦ୍ଧ ଚମ୍ପତିରାୟଙ୍କର ସଙ୍ଗୀତ, ଦାମୋଦର ଦାସଙ୍କ କୃତ ରସକୁଲ୍ୟା ଚଉତିଶା ଓ ଅର୍ଜୁନ ଦାସଙ୍କ କୃତ ରାମବିଭା ସାରଳା ଦାସଙ୍କ ପରବର୍ତ୍ତୀ ଓ ଜଗନ୍ନାଥ ଦାସଙ୍କ ପୂର୍ବବର୍ତ୍ତୀ । ଆମ୍ଭେମାନେ 'ରାମବିଭା'କୁ ବର୍ତ୍ତମାନ ପ୍ରାଥମିକ କାବ୍ୟରୂପେ ଗ୍ରହଣ କରିଅଛୁଁ ।

୧୬ଶ ଶତାବ୍ଦୀର ଶିଶୁଶଙ୍କରଙ୍କ 'ଉଷାଭିଳାଷ' ଓ 'ଦେବଦୁର୍ଲ୍ଲଭ'ଙ୍କ 'ରହସ୍ୟ ମଞ୍ଜରୀ' 'ରାମବିଭା' ର ପରବର୍ତ୍ତୀ ଏବଂ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କ **ରଘୁନାଥବିଳାସ**ର ପୂର୍ବବର୍ତ୍ତୀ; କାରଣ **ଉଷାଭିଳାଷ ଓ ରହସ୍ୟମଞ୍ଜରୀ**ରେ ରାମବିଭାର ଛାୟା ଓ **ଉଷାଭିଳାଷ** ଏବଂ **ରହସ୍ୟମଞ୍ଜରୀ**ର ପ୍ରଭାବ ଧନଞ୍ଜୟଙ୍କ 'ରତ୍ନମଞ୍ଜରୀ' ଓ ରଘୁନାଥ ବିଳାସରେ ପରିଦୃଷ୍ଟ ହୋଇଥାଏ । ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ବହୁତ ବିଶିଷ୍ଟ କବି ସେମାନଙ୍କର ଶକ୍ତି ସ୍ୱକାବ୍ୟମାନଙ୍କରେ ପ୍ରଦର୍ଶନ କରିଅଛନ୍ତି । କାର୍ତ୍ତିକ ଦାସ, ରଘୁନାଥ ହରିଚନ୍ଦନ, ଲୋକନାଥ, ନରସିଂହ, ଧନଞ୍ଜୟ ଭଞ୍ଜ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

**ଉପେନ୍ଦ୍ର ଭଞ୍ଜଙ୍କ ଯୁଗ**: ଦୀନକୃଷ୍ଣ, ଉପେନ୍ଦ୍ର, ଭୂପତି, ବୃନ୍ଦାବତୀ ଦାସୀ, ବିଶ୍ୱନାଥ ଖୁଂଟିଆ, ଦାଶରଥି, ସଦାନନ୍ଦ, କୃପାସିନ୍ଧୁ, ସଦାନନ୍ଦ,ଅଭିମନ୍ୟୁ, ପଦ୍ମନାଭ, ଦନାଇ ଦାସ, ଭକ୍ତଚରଣ, ଯଦୁମଣି, କବିସୂର୍ଯ୍ୟ, ଗୋପାଳକୃଷ୍ଣ ପ୍ରମୁଖ ସେମାନଙ୍କ କୃତିରେ ଉତ୍କଳର କାବ୍ୟଭଣ୍ଡାରକୁ ସମୁଜ୍ଜ୍ୱଳ କରିଅଛନ୍ତି । ଉତ୍କଳର କାବ୍ୟସମ୍ପଦ ବିପୁଳ । ଅନେକ ପୁରାଣ ଓ ମାହାତ୍ମ୍ୟ ଓଡ଼ିଆ ଭାଷାରେ ପଦ୍ୟରେ ଲିଖିତ । ଏହା ଅନ୍ୟ ପ୍ରାଚୀନ ସାହିତ୍ୟରେ ବିରଳ । କିନ୍ତୁ ସେ ସବୁ ଅବିକଳ ସଂସ୍କୃତରୁ ଅନୂଦିତ ନୁହନ୍ତି । ସାରଳା ଓ ବଳରାମଙ୍କ ପରେ ଅନେକ କବି ମହାଭାରତ ଓ ରାମାୟଣ ପୁରାଣ ଗୀତରେ ଓ ଛାନ୍ଦବଳିରେ ଲେଖିଅଛନ୍ତି । ଚମ୍ପୂ, ଗୀତ, ଚଉତିଶା, ଚଉପଦୀ, ଗୀତା, ଭଜନ, ସଂହିତା, ପୋଇ, ବୋଲି, ଢଗଢମାଳି, ଚିଟାଉ, ପଢ଼ି ପ୍ରଭୃତି ମଧ କାବ୍ୟର ଅନ୍ତର୍ଭୁକ୍ତ । ଗଣିତ, ଜ୍ୟୋତିଷ, ଆୟୁର୍ବେଦ, କାମସୂତ୍ର ପ୍ରଭୃତିର ଗ୍ରନ୍ଥ ଉତ୍କଳ ଭାଷାରେ ପଦ୍ୟରେ ପରିଦୃଷ୍ଟ ହୁଏ ।

ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କ ଉପରେ ପୂର୍ବତନ କବିମାନଙ୍କର ପ୍ରଭାବ ପରିଦୃଷ୍ଟ ହୁଏ । **ରଘୁନାଥବିଳାସ** ଓ **ରତ୍ନମଞ୍ଜରୀ**ର ଛାୟା ସମ୍ପୂର୍ଣ୍ଣରୂପେ **ବୈଦେହୀଶବିଳାସ** ଓ **ଲାବଣ୍ୟବତୀ** ଉପରେ ପଡ଼ିଅଛି । ଭକ୍ତଚରଣ ଓ ଦନାଇ ଦାସ ମଧ ଦୀନକୃଷ୍ଣଙ୍କ ପ୍ରଭାବରୁ ରକ୍ଷା ପାଇନାହାନ୍ତି । ସଂସ୍କୃତ, ବୈଷ୍ଣବ ଗ୍ରନ୍ଥମାନ ଓ ଚଣ୍ଡିଦାସ, ବିଦ୍ୟାପତି ତଥା ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ସଦାନନ୍ଦଙ୍କ ଉପରେ ଏବଂ ଉପେନ୍ଦ୍ର ଓ ସଦାନନ୍ଦଙ୍କ ପ୍ରଭାବ ଅଭିମନ୍ୟୁଙ୍କ ଉପରେ ପଡ଼ିଅଛି ।

ଯେଉଁମାନେ ଆକ୍ଷେପ କରି କହନ୍ତି ଯେ, ପ୍ରାଚୀନ ସାହିତ୍ୟରେ ବିଷୟବୈଚିତ୍ର୍ୟ ଓ ଭାବବୈଚିତ୍ର୍ୟର ଅଭାବ ହେତୁରୁ ବର୍ଣ୍ଣନାରେ ବୈଚିତ୍ର୍ୟ ନାହିଁ ଏବଂ

ଏହିସବୁ କାବ୍ୟମାନ ଏକ ରୀତିସମ୍ପନ୍ନ, ସେମାନଙ୍କୁ କୁହାଯାଇ ପାରେ ସଂସ୍କୃତ କାବ୍ୟମାନଙ୍କରେ ଏବଂ ଅନ୍ୟାନ୍ୟ ପ୍ରାଚୀନ ପ୍ରାଦେଶିକ ଭାଷାର କାବ୍ୟମାନଙ୍କରେ ମଧ୍ୟ ସେହି କଥା ଦେଖିବାକୁ ମିଳେ ।

ସଂସ୍କୃତ ସାହିତ୍ୟ ଅବଲମ୍ବନରେ ଉତ୍କଳର କାବ୍ୟମାନ ଲିଖିତ । ରାମ ଓ କୃଷ୍ଣଙ୍କ ଚରିତ, ଇତିହାସ ପୁରାଣର ଚରିତ, କଥାର ବିଷୟ ଅବଲମ୍ବନ କରି ପ୍ରାଚୀନ ଉତ୍କଳର କାବ୍ୟରାଜି ଲିଖିତ । ଆଧୁନିକ କବିମାନଙ୍କ ସଦୃଶ ସେମାନଙ୍କ ସମ୍ମୁଖରେ ବିଶ୍ୱସାହିତ୍ୟ ଉନ୍ମୁକ୍ତ ନ ଥିଲା; ତେଣୁ ସେମାନଙ୍କ କୃତି ସଂସ୍କୃତ କାବ୍ୟ ଓ ବୈଷ୍ଣବ କାବ୍ୟମାନଙ୍କରେ ଯେଉଁ ମଧୁର ସଙ୍ଗୀତମୟ ସ୍ରୋତ ପ୍ରବାହିତ, ତାହା ଅନ୍ୟ ପ୍ରାଦେଶିକ ସାହିତ୍ୟମାନଙ୍କରେ ପରିଦୃଷ୍ଟ ହୁଏ ନାହିଁ । ବୈଷ୍ଣବ ସାହିତ୍ୟ ଓ ସଂସ୍କୃତ ସାହିତ୍ୟର ସମସ୍ତ ବିଭବ ଦୀନକୃଷ୍ଣ, ଉପେନ୍ଦ୍ର, ସଦାନନ୍ଦ, ଅଭିମନ୍ୟୁ ପ୍ରଭୃତିଙ୍କ କୃତିମାନଙ୍କରେ ବିଦ୍ୟମାନ । ଅଧିକନ୍ତୁ ଉପେନ୍ଦ୍ର ଭଞ୍ଜ ଯେପରି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ଦୃଷ୍ଟାନ୍ତ ସ୍ୱକାବ୍ୟମାନଙ୍କରେ ଦର୍ଶାଇଅଛନ୍ତି, ତାହା ମାଘ, ଶ୍ରୀହର୍ଷ, ଭାରବି ପ୍ରଭୃତିଙ୍କ ମଧ୍ୟରେ କୌଣସି କବିଙ୍କ କୃତିରେ ପରିଦୃଷ୍ଟ ହୁଏ ନାହିଁ ।

ଇଂରାଜି ଶିକ୍ଷା ପରେ ଆମ୍ଭମାନଙ୍କ କାବ୍ୟର ରୀତି ପରିବର୍ତ୍ତିତ ହୋଇଅଛି । ତାହା ରାଧାନାଥଙ୍କ କାବ୍ୟମାନଙ୍କରେ ପରିଦୃଷ୍ଟ ହୁଏ । ରାଧାନାଥଙ୍କ 'ଚିଲିକା', 'ମହାଯାତ୍ରା' ପ୍ରଭୃତିରେ ପାଶ୍ଚାତ୍ୟ ସଭ୍ୟତାର ଛାପ ପଡ଼ିଅଛି । ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟର କାବ୍ୟମାନଙ୍କର ସୁନ୍ଦର ଭାବରାଜିକୁ ନିଜର ପ୍ରତିଭାବଳରେ ନିଜ କାବ୍ୟରେ ଉତ୍କଳ ଭାଷାରେ ବିନ୍ୟାସ କରି ସମସ୍ତଙ୍କର ପ୍ରଶଂସାଭାଜନ ହୋଇଅଛନ୍ତି । ଆଧୁନିକ ଯୁଗର ପ୍ରାଥମିକ କବିଦ୍ୱୟ ରାଧାନାଥ ଓ ମଧୁସୂଦନ ପୃଥକ ଆସନ ଅଳଂକୃତ କରିଅଛନ୍ତି । ମଧୁସୂଦନଙ୍କ ଭାବ ରାଧାନାଥଙ୍କ ଭାବଠାରୁ ଅପେକ୍ଷାକୃତ ସଂଯତ; ରାଧାନାଥଙ୍କ କାବ୍ୟ ଭାବ ପ୍ରଧାନ, ଚିନ୍ତା ଅପ୍ରଧାନ । ପାର୍ଥିବ ସରସତା ହେତୁରୁ କବିତ୍ୱର ପରିସ୍ଫୁର୍ତ୍ତି ରାଧାନାଥଙ୍କ କୃତିରେ ସହଜ ଭାବରେ ଗତି କରୁଅଛି । ଜ୍ଞାନର ଗାମ୍ଭୀର୍ଯ୍ୟରେ ଭାବର ବୈଚିତ୍ର୍ୟ ପରିସ୍ଫୁଟ ହୁଏ ସତ୍ୟ, କିନ୍ତୁ ସ୍ଥଳବିଶେଷରେ ତାହାର ସହଜ ଧର୍ମ ବାଧାପ୍ରାପ୍ତ ହୁଏ । ଏହା ମଧୁସୂଦନଙ୍କ କୃତିରେ ପରିଦୃଷ୍ଟ । ସେ ଭକ୍ତକବି, ତାଙ୍କର ଲେଖା ପ୍ରାଣରେ ବିରାମ ଆଣେ, ଶାନ୍ତି ସୁଖ ପ୍ରଦାନ କରେ; କିନ୍ତୁ ପ୍ରାଣରେ ତାଦୃଶ ଉନ୍ମାଦନା ଆଣେ ନାହିଁ । ଚରିତ୍ରଚିତ୍ରଣରେ ରାଧାନାଥ ସିଦ୍ଧହସ୍ତ ନ ଥିଲେ, ତଥାପି ଉତ୍କଳ ପ୍ରକୃତିର ବର୍ଣ୍ଣନାରେ ସେ ଉତ୍କଳ ଜାତୀୟ ପ୍ରାଣ ସ୍ୱକବିତ୍ୱରେ ପରିସ୍ଫୁଟ କରିଅଛନ୍ତି । ଉଭୟେ କବିଗୁରୁ । ଉଭୟଙ୍କୁ ଆଦର୍ଶ କରି ବର୍ତ୍ତମାନ ଉତ୍କଳରେ କାବ୍ୟ ଲିଖିତ ହେଉଅଛି । ଗଙ୍ଗାଧର ଓ ଚିନ୍ତାମଣି ପ୍ରମୁଖ ରାଧାନାଥଙ୍କୁ ଓ ଖଣ୍ଡ କବିତା ଲେଖକମାନେ ମଧୁସୂଦନଙ୍କୁ ଅନୁକରଣ କରି ନିଜର କୃତିତ୍ୱ ଦେଖାଉଅଛନ୍ତି ।

ନନ୍ଦକିଶୋର, ନୀଳକଣ୍ଠ, ବଳଭଦ୍ର, କୁନ୍ତଳା, ଅପର୍ଣ୍ଣା, ମଧୁସୂଦନ ଦାସ, ପଦ୍ମଚରଣ, ଚନ୍ଦ୍ରମଣି ଦାସ ପ୍ରମୁଖ ଆଧୁନିକ ଧରଣର କାବ୍ୟ ଲେଖି କାବ୍ୟକୁଞ୍ଜର ଶୋଭା ବଢାଇଅଛନ୍ତି । ଉପରିଲିଖିତ ଆଧୁନିକ କବିମାନଙ୍କ କୃତିମାନ ଅଳ୍ପ ବିଶେଷ

ଭାବରେ ପ୍ରାଣରେ ସରସତା ଆଣେ ଓ ଉପଯୁକ୍ତ ଶିକ୍ଷା ପ୍ରଦାନ କରେ । ଦୁଃଖର କଥା, କେତେକ କାବ୍ୟରେ ଅସାର କୁତ୍ସିତ ପ୍ରେମର ଚିତ୍ରଣ ପରିଲକ୍ଷିତ ହୁଏ, ତଦ୍ଦ୍ୱାରା କୁରୁଚି ଦେଶରେ ପ୍ରବର୍ତ୍ତିତ ହୋଇ ଘୋର ଅନିଷ୍ଟ ସାଧିତ ହେବ ।

ବତ୍ସାଦାସଙ୍କର ହାସ୍ୟରସମୟୀ ଚଉତିଶା, ସାରଳା ଦାସଙ୍କ ଅଦ୍ଭୁତ କଳ୍ପନାଚାତୁରୀ, ବଳରାମ ଦାସଙ୍କ ସରଳ ପ୍ରାଣର ଭାବପ୍ରବଣତା, ଅର୍ଜୁନ ଦାସଙ୍କ ସରଳ ତରଳ ଛନ୍ଦୋମୟୀ କବିତା, ଦେବଦୁର୍ଲଭଙ୍କର ମଧୁର ସଙ୍ଗୀତମୟ ପଦ୍ୟାବଳି, ଶିଶୁଶଙ୍କରଙ୍କର ବୈଚିତ୍ର୍ୟମୟୀ କଳାକୁଶଳତା, ବନମାଳୀଙ୍କ ଚିତ୍ତୋନ୍ମାଦକାରୀ ମାଧୁରୀମୟୀ ଚତୁଷ୍ପଦୀ, ଜଗନ୍ନାଥ ଦାସଙ୍କର ମଧୁରଭାବମୟୀ ପଦର ଝଙ୍କାର, ଧନଞ୍ଜୟ ଭଞ୍ଜଙ୍କ ଚିତ୍ରନିପଣତା, ରଘୁନାଥ ଭଞ୍ଜଙ୍କ ଶୋଭନ ପଦସଂହତି ଓ ଔଚିତ୍ୟ ବିଳାସ, ଲୋକନାଥଙ୍କ ଚିତ୍ତରଞ୍ଜନ ପଦଯୋଜନା, ନରସିଂହଙ୍କ ପରିମଳା କାବ୍ୟର ସହଜ ସରଳ ଭାବବିନ୍ୟାସ, ଚକ୍ରପାଣିଙ୍କ କୃଷ୍ଣବିଳାସରେ ଚାତୁର୍ଯ୍ୟମୟ ବର୍ଣ୍ଣନାପାଟବ, ଉପେନ୍ଦ୍ର ଭଞ୍ଜଙ୍କ ଶବ୍ଦ ଓ ଅର୍ଥାଳଙ୍କାର ବହୁଳ ଆଶୟାର୍ଥଯୁକ୍ତ ଅଦ୍ଭୁତ ରଚନାଚାତୁରୀ, ଦୀନକୃଷ୍ଣଙ୍କ କାନ୍ତକୋମଳ ପଦ୍ୟାବଳି, ଅଭିମନ୍ୟୁଙ୍କର ମଧୁର-କରୁଣ ରସମୟୀ ମୂର୍ଚ୍ଛନା, ଭକ୍ତଚରଣଙ୍କ ବିରହୀ ଭକ୍ତପ୍ରାଣର ଆକୁଳ-ମଧୁର କ୍ରନ୍ଦନ, କବିସୂର୍ଯ୍ୟଙ୍କ ମଧୁରରସାଶ୍ରିତ ଗୀତମୟ ଆଳାପ, ଗୋପାଳକୃଷ୍ଣଙ୍କ ସୁଧାମୟ ସଙ୍ଗୀତଲହରୀ, ଭୀମ ଭୋଇଙ୍କ ପ୍ରାଣର ଔଦାର୍ଯ୍ୟ, ରାଧାନାଥଙ୍କ ପ୍ରକୃତି ସହ ଏକପ୍ରାଣତା, ମଧୁସୂଦନଙ୍କ ସତ୍ୟ ଓ ଭକ୍ତିପ୍ରବଣତା, ଫକୀରମୋହନଙ୍କ ସହଜ ସରଳ ଉତ୍କଳପ୍ରାଣର ଆବେଗମୟ ପ୍ରବାଦ, ନନ୍ଦକିଶୋରଙ୍କ ଗ୍ରାମ୍ୟ ଜୀବନର ଜୀବନ୍ତ ସରଳ ଚିତ୍ର, ଗଙ୍ଗାଧରଙ୍କ ସୌନ୍ଦର୍ଯ୍ୟପିପାସୁ ହୃଦୟର ସୁଧାମୟ ବିକାଶ, ବଳଭଦ୍ରଙ୍କ ବହୁଦର୍ଶିତା, ଚିନ୍ତାମଣିଙ୍କର ଦେଶୈକିପ୍ରାଣତାର ତାନ, ଚନ୍ଦ୍ରମଣିଙ୍କ ବର୍ଣ୍ଣନାବୈଚିତ୍ର୍ୟ, ପଦ୍ମଚରଣ ଓ ଲକ୍ଷ୍ମୀକାନ୍ତ ଦୁଇଜଣଙ୍କ ପ୍ରାଣସ୍ପର୍ଶୀ ଗୀତିଲହରୀ, କାଳିନ୍ଦୀ, ବୈକୁଣ୍ଠ ପ୍ରଭୃତିଙ୍କ ଗୂଢ଼ ଭାବମୟୀ କବିତା ଓ ଅପର ନବୀନ କବିମାନଙ୍କର ଆବେଗମୟ ହୃଦୟର ଉଦ୍ଦାମ ବିଳାସ ଉତ୍କଳ ଭାରତୀଙ୍କ କୁଞ୍ଜ ଅଳଙ୍କୃତ କରି ଭାବୁକ ଚିତ୍ତରେ ଚମତ୍କାର ଭାବ ପ୍ରତିପାଦନ କରୁଅଛି ।

ଆଜିକାଲି ଖଣ୍ଡ କବିତା ବା ଟିକି କବିତା ବହୁଳ ପରିମାଣରେ ଲିଖିତ ହେଉଅଛି । ଏହି କବିତା ଅତି ପ୍ରାଚୀନକାଳରୁ ଅଛି ଓ ରହିବ । ଏହାଦ୍ୱାରା ସାହିତ୍ୟର ଶ୍ରୀବୃଦ୍ଧି ହୁଏ । ଯଦି ଏହି ଟିକି କବିତାରେ ଉତ୍କଳର କାବ୍ୟ ପର୍ଯ୍ୟବସିତ ହୁଏ, ତେବେ ବିପୁଳ ସାଧନାର ଅଭାବ ତଥା ଚିନ୍ତାବିମୁଖତା ଜାତୀୟ ସାହିତ୍ୟରେ ପରିଲକ୍ଷିତ ହେବ ।

ଗଦ୍ୟ: ଦୁଃଖର କଥା, ଆମ ଦେଶର ଶିକ୍ଷିତ ସମ୍ପ୍ରଦାୟର ଧାରଣା ଯେ, ପୂର୍ବେ ଓଡ଼ିଆମାନେ ଗଦ୍ୟ ସାହିତ୍ୟର ବ୍ୟବହାର ଜାଣି ନ ଥିଲେ । ଅନୁସନ୍ଧାନ ଫଳରେ ଜଣାଗଲାଣି, ପଦ୍ୟ ସାହିତ୍ୟ ସଙ୍ଗେସଙ୍ଗେ ଗଦ୍ୟ ସାହିତ୍ୟ ଗତି କରୁଅଛି । ଏହି ଗଦ୍ୟସମ୍ପଦ ତୁଳନାରେ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ପ୍ରାଚୀନ ଗଦ୍ୟ ଅତି ନଗଣ୍ୟ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରେ ୧୨ଶ ଶତାବ୍ଦୀଠାରୁ ୧୮୧୨ ମସିହା ପର୍ଯ୍ୟନ୍ତ ପ୍ରାଚୀନ ଓଡ଼ିଆ ଗଦ୍ୟର ନିଦର୍ଶନ ପ୍ରଦତ୍ତ ହୋଇଅଛି । ୧୨ଶ ଶତାବ୍ଦୀର ମାଦଳାପାଞ୍ଜିରୁ

ଉଦ୍ଧୃତାଂଶ, ୧୨୪୯ ଖ୍ରୀଷ୍ଟାବ୍ଦର ଭୁବନେଶ୍ୱର ଶିଳାଲିପି, ୧୪ଶ ଶତାବ୍ଦୀର କୋଣାର୍କ ଶିଳାଲିପି, ୧୫ଶ ଶତାବ୍ଦୀର ଜଗନ୍ନାଥ ଦେଉଳ ଲିପି ଓ ପୁରୁଷୋତ୍ତମ ଦେବଙ୍କ ଦାନଶାସନ, ୧୬ଶ ଶତାବ୍ଦୀର ପ୍ରତାପରୁଦ୍ର ଦେବଙ୍କ ସମୟର ମନ୍ଦିରଲିପି, ଜଗନ୍ନାଥ ଓ ବଳରାମଙ୍କ ତୁଳାଭିଣା ଓ ବ୍ରହ୍ମଗୀତାର ଗଦ୍ୟ, ୧୭ଶ ଶତାବ୍ଦୀର ଶେଷ ଏବଂ ୧୮ଶ ଶତାବ୍ଦୀର ଆଦି ଭାଗରେ ମୟୂରଭଞ୍ଜ ମହାରାଜା ସର୍ବେଶ୍ୱର ଭଞ୍ଜଙ୍କ ସନନ୍ଦ, ୧୮ଶ ଶତାବ୍ଦୀର ମଧ୍ୟ ଭାଗରେ ପାରଳା ଗଜପତି ଜଗନ୍ନାଥ ଦେବଙ୍କ ତାମ୍ରଶାସନ, ସର୍ବଶେଷରେ ଊନବିଂଶ ଶତାବ୍ଦୀର ଆଦିଭାଗର ଜୟପୁର ମହାରାଜାଙ୍କ ତାମ୍ରଶାସନ-ଏହିପରି ୧୨ଶ ଶତାବ୍ଦୀଠାରୁ ଆରମ୍ଭ କରି ୧୯ଶ ଶତାବ୍ଦୀର ପ୍ରଥମ ପାଦ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଗଦ୍ୟ ସାହିତ୍ୟ ଆମ୍ଭେମାନେ ପାଉଅଛୁ । ରାଜବଂଶାବଳି, ଓଷାବାର ଓ ବ୍ରତକଥା, ବତ୍ରିଶ ସିଂହାସନରେ ମଧ୍ୟ ସଙ୍କେତ ପ୍ରଦତ୍ତ ହୋଇଅଛି । ଏତଦ୍‌ବ୍ୟତୀତ ଓଡ଼ିଆ ଗଦ୍ୟରେ ଗୀତଗୋବିନ୍ଦ, ହିତୋପଦେଶ, ବେତାଳପଂଚବିଂଶତି, ଲୀଳାବତୀ, ଅର୍ଥଶାସ୍ତ୍ର ପ୍ରଭୃତିର ଅନୁବାଦ, ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାନଙ୍କର ଟୀକା, ରୁଦ୍ରସୁଧାନିଧି ପରି ଅମୂଲ୍ୟ ଗଦ୍ୟ କାବ୍ୟ ଓ ବ୍ରଜନାଥ ଜେନାଙ୍କ ଚତୁରବିନୋଦ ଉଲ୍ଲେଖଯୋଗ୍ୟ ।

ଗଳ୍ପ-ଉପନ୍ୟାସ: ଆମ ଦେଶରେ ଲୋକମୁଖରେ ଅନେକ କଥା ପ୍ରଚଳିତ ଥିଲା । ତହିଁରୁ କେତେକ ସଙ୍କଳିତ ହୋଇ ମୁଦ୍ରିତ ହୋଇଅଛି । ଏହି କଥାମାନଙ୍କୁ ଅବଲମ୍ବନ କରି କାବ୍ୟମାନ ମଧ୍ୟ ଲିଖିତ ହୋଇଅଛି । 'ଶଶିସେଣା' କାବ୍ୟ ତାହାର ଜ୍ୱଳନ୍ତ ନିଦର୍ଶନ । କଥା, ଗଳ୍ପ, ଉପନ୍ୟାସ ଅଧୁନା ବହୁଳଭାବରେ ଲିଖିତ ହେଉଅଛି । ମାନବର ଚରିତ୍ର ଚିତ୍ରଣ ଓ ପ୍ରକୃତିର ଗୂଢ଼ ରହସ୍ୟକୁ ଜୀବନ୍ତ କରି ଫୁଟାଇବାରେ ଅତି ଅଳ୍ପ ଲେଖକ ଚେଷ୍ଟା କରୁଅଛନ୍ତି । ଗଳ୍ପ ଉପନ୍ୟାସ ଯେପରି ଭାବରେ ଲେଖା ଚାଲିଅଛି, ଅବଶ୍ୟ ସେ ଅଭାବ ଅଳ୍ପକାଳ ମଧ୍ୟରେ ପରିପୂରଣ ହେବ । କେତେକ ଉପନ୍ୟାସ ମଧ୍ୟ ଏକ ରୀତିର ହୋଇପଡ଼ିଛି । ଲେଖକଙ୍କର ତଦ୍‌ପ୍ରତି ଦୃଷ୍ଟି ଦେବା ଉଚିତ । ପ୍ରକୃତିର ସୂକ୍ଷ୍ମତତ୍ତ୍ୱର ପରିକଳ୍ପନାରେ ଉପନ୍ୟାସର ସୌନ୍ଦର୍ଯ୍ୟ ବଢେ । ରାମଶଙ୍କର, ଫକୀରମୋହନ ଏହି କଥାସାହିତ୍ୟର ପଥପ୍ରଦର୍ଶକ । ଫକୀରମୋହନଙ୍କ ପ୍ରତିଭା ଏପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଅଛି । ଗୋପାଳଚନ୍ଦ୍ର ମଧ୍ୟ ଉତ୍କଳ-ଭାରତୀଙ୍କ ଅନ୍ୟତମ କୃତି-ସନ୍ତାନ । ତାଙ୍କର ଉତ୍କଳ କାହାଣୀ ମଧ୍ୟ ହୃଦୟସ୍ପର୍ଶୀ । ଉତ୍କଳଭାଷାର ସହଜ ଅର୍ଥାତ ଅକୃତ୍ରିମ ପ୍ରାଣ ପ୍ରବର୍ତ୍ତାଇବାରେ ଫକୀରମୋହନ ଓ ଗୋପାଳଚନ୍ଦ୍ର ଅନ୍ୟତମ ସାରଥି । ପାଶ୍ଚାତ୍ୟ ଦେଶ ତଥା ବଙ୍ଗଦେଶର ଉପନ୍ୟାସଗୁଡ଼ିକର ଅନୁକରଣରେ ଉପନ୍ୟାସ ଓ ଗଳ୍ପରେ କୁତ୍ସିତ ପ୍ରେମର ଚିତ୍ର ପ୍ରବେଶ କରିବାକୁ ଲାଗିଲାଣି । ଏହା ପରିହାର କରିବା ନିତାନ୍ତ ବିଧେୟ । ଔଚିତ୍ୟ ଲଙ୍ଘନରେ ସମାଜରେ ବିପ୍ଳବ ଉପସ୍ଥିତ ହେବ ।

ପ୍ରବନ୍ଧ: ପ୍ରବନ୍ଧ ରଚନାର ସଂଖ୍ୟା ବଡ଼ କମ୍ । ଯାହା ଦେଖାଯାଏ, ତନ୍ମଧ୍ୟରେ ଅନୁବାଦ ସଂଖ୍ୟା ବେଶି । ବିବିଧ ପ୍ରବନ୍ଧ, ପ୍ରବନ୍ଧ ପ୍ରକାଶ, ପ୍ରବନ୍ଧ ପାଠ, ଆର୍ଯ୍ୟଜୀବନ, ଶାନ୍ତିଧାରା, ବୀରପୂଜା ଓ ସାହିତ୍ୟସନ୍ଦର୍ଭ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ପ୍ରବନ୍ଧ ଲେଖା ପ୍ରତି ଦେଶବାସୀଙ୍କ ଦୃଷ୍ଟି ବିଶେଷ ଭାବରେ ପଡ଼ିବା ଉଚିତ । ପାଶ୍ଚାତ୍ୟ

ପଣ୍ଡିତମାନଙ୍କର ଉତ୍କୃଷ୍ଟ ପ୍ରବନ୍ଧମାନ ଅନୂଦିତ ହେଲେ ସେ ସରଣୀ ସୁଗମ ହେବ, ତଦନୁକରଣରେ ଲୋକେ ମୌଳିକ ପ୍ରବନ୍ଧ ଲେଖିବାରେ ଚେଷ୍ଟା କରିବେ ।

**ଜୀବନ ଚରିତ:** ଆଜିକାଲି ବହୁତ ଜୀବନଚରିତ ବାହାରି ପଡୁଛି । ସେସବୁ ଅନୁବାଦ କହିଲେ ଚଳେ । ତନ୍ମଧ୍ୟରୁ ପ୍ରାୟ ୧୫ ପଣ ୧୯ଗଣ୍ଡା ବିନା ଚିନ୍ତାରେ ବିନା ଯତ୍ନରେ କେବଳ ନାମ ଓ ଦୁଇ ପଇସା ଲାଭ କରିବା ଉଦ୍ଦେଶ୍ୟରେ ବେଦମ୍ ଭାବରେ ଲେଖା ହେଉଅଛି । ଯେ ଦୁଇ ଚାରି ଖଣ୍ଡ ମିଳେ, ସେଥିରେ କେବଳ ଜୀବନର ଘଟନାବଳି ସନ୍ନିତ ହୋଇ ରଖାହୋଇଅଛି । କେବଳ ଘଟନାବଳିର ଉଲ୍ଲେଖରେ ଜୀବନଚରିତ ହୁଏ ନାହିଁ । ବ୍ୟକ୍ତିବିଶେଷଙ୍କଦ୍ୱାରା ସମାଜରେ, ସାହିତ୍ୟରେ, ବ୍ୟବସାୟ ବାଣିଜ୍ୟରେ ତଥା ଅନ୍ୟାନ୍ୟ କ୍ଷେତ୍ରରେ କି ପରିବର୍ତ୍ତନ ଘଟିଅଛି ଓ ସେ କି ଦୁଃଖ ସୁଖ ଦେଇ ଜୀବନ ସଂଗ୍ରାମରେ ସମୟ ଅତିବାହନ କରିଅଛନ୍ତି, ନିଜର ଦୋଷ ଉପଲବ୍ଧିରେ ତାହାର ପରିଶୁଦ୍ଧି ନିମନ୍ତେ କିପରି ପ୍ରଗାଢ଼ ଯତ୍ନ କରିଅଛନ୍ତି ଇତ୍ୟାଦି ଇତ୍ୟାଦି କାର୍ଯ୍ୟ କାରଣଭାବ ଦର୍ଶାଇ ଜୀବନଚରିତ ଲେଖି ପାରିଲେ ଏ କାର୍ଯ୍ୟ ସୁନ୍ଦର ସମାହିତ ହେବ । ମୃତ୍ୟୁଞ୍ଜୟ, ଗୋପବନ୍ଧୁ, ଶଶିଭୂଷଣ, ଦୟାନିଧି, ଜଗବନ୍ଧୁ, ବ୍ରଜସୁନ୍ଦର, କୁଳମଣି, ମୋହିନୀମୋହନ ପ୍ରମୁଖ ଯଥାଶକ୍ତି ଗଦ୍ୟ ସାହିତ୍ୟର ଶ୍ରୀବୃଦ୍ଧି ସମ୍ପାଦନ କରିଅଛନ୍ତି ।

**ନାଟକ:** ଇଂରାଜୀ ଶିକ୍ଷା ପ୍ରବର୍ତ୍ତନ ପରେ ଓଡ଼ିଆ ଭାଷାରେ ନାଟକର ସୃଷ୍ଟି ହେଲା । ଯାତ୍ରା, ପାଲା ପ୍ରାୟ ଏ ଦେଶରେ ସର୍ବତ୍ର ପ୍ରଚଳିତ ଥିଲା । ସତ୍ୟନାରାୟଣ ପୂଜା ସମୟରେ ଯେଉଁ ପାଲା ହୁଏ, ସେଥି ସଙ୍ଗେ ଛାନ୍ଦ ଓ ଚଉପଦୀର ଆଲୋଚନା ହେବା ଫଳରେ ଉତ୍କଳ ସାହିତ୍ୟ ଜୀବନ୍ତ ଥିଲା ଓ ଜନସାଧାରଣରେ ତାହାର ଆଦର ବଢୁଥିଲା । ପାଲା ସଙ୍ଗରେ ସାହିତ୍ୟର ଆଲୋଚନା ଦେଶର କଳାକୁଶଳତାର ପରିଚୟ ପ୍ରଦାନ କରେ । ବର୍ତ୍ତମାନ ମଧ୍ୟ ପାଲାବାଲା ପାଲା ସଙ୍ଗରେ ଏପରି ସାହିତ୍ୟ ଆଲୋଚନା କରୁଅଛନ୍ତି । ପୋଷକତା ଅଭାବରୁ ଏହା କ୍ରମଶଃ ମ୍ରିୟମାଣ ହେଉଅଛି । ଉତ୍କଳର ସାହିତ୍ୟସେବୀମାନଙ୍କର ତତ୍‌ପ୍ରତି ଦୃଷ୍ଟି ଦେବା ବାଞ୍ଛନୀୟ । ଯେଉଁ ଯାତ୍ରା ଆମ ଦେଶରେ ପ୍ରଚଳିତ ଥିଲା, ତାହା ବର୍ତ୍ତମାନ ସଂସ୍କୃତ ହୋଇ ନାଟକ ଆକୃତି ଧାରଣ କଲାଣି । କାଲା ମିଆଁ, ଗୋପାଳ ଦାସ, ବୈଷ୍ଣବ ପାଣି ପ୍ରମୁଖ ଏହି ଯାତ୍ରାରେ କ୍ରମଶଃ ସଂସ୍କାର ଆଣିଅଛନ୍ତି ।

ରାମଶଙ୍କର, ଭିକାରୀଚରଣ ପଟ୍ଟନାୟକ, କାମପାଳ ମିଶ୍ର, ଅଶ୍ୱିନୀକୁମାର, କୃପାସିନ୍ଧୁ ପଟ୍ଟଦେବ, ଯତୀନ୍ଦ୍ରମୋହନ, ରାମଚନ୍ଦ୍ର ମହାପାତ୍ର, ରାମାରଞ୍ଜନ, ଧନେଶ୍ୱର, ମାୟାଧର, କାଳିନ୍ଦୀ, ବୈକୁଣ୍ଠ, ହରିଶ୍ଚନ୍ଦ୍ର ପ୍ରମୁଖ ନାଟକ ଲେଖିଅଛନ୍ତି । ନାଟକର ଗତି ବଡ଼ ଶିଥିଳ । ଆଧୁନିକ କେତେକ ନାଟକ ଏକ ରୀତିର ହୋଇପଡ଼ିଛି । ବୈଚିତ୍ର୍ୟ ପରିଲକ୍ଷିତ ହେଉନାହିଁ କି ଆଧୁନିକ ଯୁଗାନୁଯାୟୀ ହେଉନାହିଁ । ପୋଷକତାର ଅଭାବରୁ ଏହି ଦଶା । ସ୍ଥାୟୀ ରଙ୍ଗମଞ୍ଚ ନଥିବାରୁ ନାଟକ ପ୍ରତି ଲୋକଙ୍କର ଆଦର ବଢୁ ନାହିଁ । ନାଟ୍ୟକାରଙ୍କ ନାଟକ ଲେଖାରେ ପ୍ରତିଦ୍ୱନ୍ଦ୍ୱିତା ଅଭାବରୁ ସୂକ୍ଷ୍ମ କଳାକୌଶଳ ହାସଲ

କରିବା ନିମନ୍ତେ ପ୍ରୟାସ ହେଉନାହିଁ । ନାଟକୀୟ କଳାଦୃଷ୍ଟିରେ ଅଶ୍ୱିନୀକୁମାର ସିଦ୍ଧିର ସୋପାନରେ ଅବସ୍ଥିତ ।

ମାସିକପତ୍ର: ମାସିକ ପତ୍ରାଦିର ପ୍ରଚାର ଦ୍ୱାରା ଦେଶର ପ୍ରଭୂତ କଲ୍ୟାଣ ସାଧିତ ହୁଏ । ଅନେକ ମାସିକ ପତ୍ର ଆବିର୍ଭୂତ ହୋଇ ଅଳ୍ପ ସମୟ ଜୀବନଧାରଣ କରି କାଳର ଅତଳ ଗର୍ଭରେ ବିଲୀନ ହୋଇଗଲେ । ଉତ୍କଳସାହିତ୍ୟର ସୁଯୋଗ୍ୟ ସମ୍ପାଦକଙ୍କ ନିଷ୍ଠାପରତା ହେତୁରୁ ଜୀବିତ ଅଛି । ପ୍ରବୀଣ ସାହିତ୍ୟପ୍ରାଣ ବିଶ୍ୱନାଥ ସମ୍ପ୍ରତି ଆମ୍ଭମାନଙ୍କ ମଧ୍ୟରେ ନାହାନ୍ତି । ସେ ସାହିତ୍ୟ-ସମାଜର ପ୍ରଧାନ ମେରୁଦଣ୍ଡ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ନାୟକତ୍ୱରେ ଅନେକ ସୁସଂବଦ୍ଧ ଚିନ୍ତାପୂର୍ଣ୍ଣ ପ୍ରବନ୍ଧ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଅଛି । ମୁକୁର ମଧ୍ୟ କେତେକ କାଳ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ପ୍ରକାଶ କରିଥିଲା । ବର୍ତ୍ତମାନ କିଶୋର 'ସହକାର' ଓ ଶିଶୁ 'ନବଭାରତ' ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଆଶାର ସଂଚାର କରିଅଛନ୍ତି । ଭଲଭଲ ପ୍ରବନ୍ଧମାନ ମଧ୍ୟ ଲିଖିତ ହେଉଅଛି । କିନ୍ତୁ ସେମାନଙ୍କର ସଂଖ୍ୟା ଅତିଅଳ୍ପ । ଅଧିକାଂଶ ପ୍ରବନ୍ଧମାନଙ୍କରେ ଚପଳତା, ପରିହାସପ୍ରିୟତା, ଉଚ୍ଛୃଙ୍ଖଳତା ପରିଦୃଷ୍ଟ ହେଉଅଛି । ରଚନାର ସଂଯମ ଓ ଗାମ୍ଭୀର୍ଯ୍ୟ ବିରଳ କହିଲେ ଚଳେ । ଭାଷାର ସହଜ ଓ ସରଳତା ପ୍ରତି ବା ପକ୍ଷାନ୍ତରେ ମାର୍ଜିତ ସୌନ୍ଦର୍ଯ୍ୟ ପ୍ରତି ଲେଖକମାନେ ଦୃଷ୍ଟି ଦେଉନାହାନ୍ତି । ସ୍ଥଳବିଶେଷରେ ଆତ୍ମବଡ଼ିମା ପ୍ରକାଶ କରି ଅନ୍ୟଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରୁଅଛନ୍ତି ।

ସମାଲୋଚନା: ସମାଲୋଚନା ଯାହା ଆମ୍ଭେମାନେ ଅଧିକାଂଶ ଦେଖିବାକୁ ପାଉଁ, ତାହାର ଧର୍ମ ହେଉଛି କେବଳ ନିନ୍ଦା ବା ପ୍ରଶଂସା । କିପରି ସମାଲୋଚନା କଲେ ଲୋକେ ବନ୍ଧୁଭାବରେ ନିଜର ଦୋଷ ଗ୍ରହଣ କରିବେ ଏବଂ ସୁପ୍ରଶଂସାଦ୍ୱାରା ଆଶ୍ୱସ୍ତ ହୋଇ ଉତ୍ତରୋତ୍ତର କାର୍ଯ୍ୟ କରିବାରେ ବ୍ରତୀ ହେବେ, ସେଥିପ୍ରତି ସମାଲୋଚକଙ୍କର ଦୃଷ୍ଟିଦେବା ଉଚିତ । ପ୍ରକୃତ ସମାଲୋଚନା ନିମନ୍ତେ ପାଣ୍ଡିତ୍ୟ, ଚିନ୍ତାଶୀଳତା, ବହୁଦର୍ଶିତା ଓ ବିଚକ୍ଷଣ ବୁଦ୍ଧିମତ୍ତାର ଯେ ପ୍ରୟୋଜନ, ତାହା ଜାଣି ରଖିବା ଦରକାର । ମାସିକ ପତ୍ରର ପ୍ରବନ୍ଧମାନଙ୍କରେ କେତେକ ପ୍ରବନ୍ଧକାରଙ୍କ ବିଷୟରେ ଯାହା କୁହାଯାଇଅଛି, ତାହା ଏ କ୍ଷେତ୍ରରେ ମଧ୍ୟ ଦେଖାଯାଏ । ଆଶ୍ଚର୍ଯ୍ୟର କଥା, ସ୍ଥଳ ବିଶେଷରେ ଶାସ୍ତ୍ରଜ୍ଞାନଶୂନ୍ୟତା ଓ ଅନୁସନ୍ଧାନବିମୁଖତାର ନିଦର୍ଶନ ମିଳେ । ନିମ୍ନରେ ଆଧୁନିକ ସମାଲୋଚନା ଶୈଳୀର କେତେକ ଉଦାହରଣ ସଂଖ୍ୟା କ୍ରମରେ ପ୍ରଦତ୍ତ ହେଲା ।

୧. "ପ୍ରାଚୀନ ସାହିତ୍ୟର ପଛା, ହାଥ, ପାଦାନ୍ତି ପ୍ରଭୃତି ଶବ୍ଦମାନଙ୍କର ପ୍ରୟୋଗ ଅଶୁଦ୍ଧ ।"
୨. "ଉପେନ୍ଦ୍ର ଭଞ୍ଜଙ୍କର ବ୍ୟାକରଣ ଜ୍ଞାନ ନ ଥିଲା ।"
୩. "ଉପେନ୍ଦ୍ର ଭଞ୍ଜଙ୍କଠାରୁ ଓଡ଼ିଆରେ ସଙ୍ଗୀତର ସୃଷ୍ଟି ।"
୪. "ବଳଦେବ କବିସୂର୍ଯ୍ୟଙ୍କ କାଳରେ ଓଡ଼ିଆ ଗଦ୍ୟର ପ୍ରଚଳନ ନ ଥିବାରୁ ସେ ସ୍ୱଚମ୍ପୂରେ ସଂସ୍କୃତରେ ଗଦ୍ୟ ଲେଖିଲେ ।"
୫. "ରାମବିଭାର କବି ବଳରାମ ଦାସ" ।

୬. "ରାଧାନାଥ କବିତାରେ ଉପଧାସ୍ୱର ମିଳାଇ କାବ୍ୟର ସହଜ ଭାବ ନଷ୍ଟ କରିଦେଲେ ।"

୭. ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର ଅଶ୍ଳୀଳତା ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ କୃତିରେ ପରିଦୃଷ୍ଟ ହୁଏନାହିଁ ।"

୮. "ପଞ୍ଚଦଶ ଶତାବ୍ଦୀରେ ଚୈତନ୍ୟ ଦେବଙ୍କ ଆବିର୍ଭାବ ପୂର୍ବେ କେତେଜଣ ଓଡ଼ିଆ ବଙ୍ଗ ଦେଶରେ ପଦ୍ୟ ରଚନା କରି ଭୂୟସୀ ପ୍ରଶଂସା କରିଥିଲେ । ସେମାନଙ୍କ ମଧ୍ୟରେ ବଙ୍ଗଳା ଟପ୍ପା ଓ କାହାଣୀର ପ୍ରଣେତା ଗୋପାଳ, ରସିକମଙ୍ଗଳ ନାମକ ବଙ୍ଗଳା ପୁସ୍ତକ ରଚୟିତା ଗୋପୀବଲ୍ଲଭ ଓ ସଦାନନ୍ଦ କବିଙ୍କ ନାମ ଆମ୍ଭେମାନେ ସେହି ବଙ୍ଗବାସୀମାନଙ୍କଠାରୁ ପାଇଅଛୁଁ ।"

**ଇତିହାସ:** ଇତିହାସ ଲେଖା ଆମ ଦେଶରେ ଖୁବ ବିରଳ । ଏ ଦିଗରେ କର୍ମୀ ସଂଖ୍ୟା ଖୁବ ଅଳ୍ପ । ପ୍ୟାରୀମୋହନ, କୃପାସିନ୍ଧୁ, ଚିନ୍ତାମଣି, ଜଗବନ୍ଧୁ, ବିରୂପାକ୍ଷ କର, ବିନାୟକ ମିଶ୍ର, କେଦାରନାଥ, ନାରାୟଣ ତ୍ରିପାଠୀ, ସତ୍ୟନାରାୟଣ ରାଜଗୁରୁ ପ୍ରମୁଖ ଇତିହାସର ଉପାଦାନ ସଂଗ୍ରହରେ ଲାଗି ଅଛନ୍ତି । ଏପରି ବ୍ୟକ୍ତିବିଶେଷଙ୍କ ଚେଷ୍ଟାଦ୍ୱାରା ବା କି କାର୍ଯ୍ୟ ସାଧିତ ହେବ? ଭଲ ପୁସ୍ତକାଗାର (Library) ଓ ଚିତ୍ରଶାଳା (Museum)ର ଅଭାବରୁ ଏ ଦେଶରେ ଇତିହାସ ଲେଖିବା କଠିନ ହେଉଅଛି । ଧନୀ ଲୋକଙ୍କ ବିନା ପୋଷକତାରେ ଇତିହାସ ଲେଖା କଠିନ ବ୍ୟାପାର । ଯେଉଁ ଲୋକେ ଦରିଦ୍ର, ନିଜର ଉଦରଜ୍ୱାଳାରେ ବ୍ୟତିବ୍ୟସ୍ତ, ସେମାନଙ୍କଠାରୁ ଏ କାର୍ଯ୍ୟ ଆଶା କରିବା ବିଡ଼ମ୍ବନା ମାତ୍ର । ନିଜର ଜାତୀୟ ସାହିତ୍ୟର ଇତିହାସ ଓ ନିଜର ଜାତିର ଇତିହାସ ଲେଖିବାକୁ ଗଲେ ଅଜସ୍ର ଅର୍ଥ ବ୍ୟୟ ହେବ, ବହୁ ବିଦ୍ୱାନ୍ ଲୋକଙ୍କର ସହଯୋଗିତାରେ କାର୍ଯ୍ୟ ଚଳାଇବାକୁ ହେବ । ବଙ୍ଗ, ଆନ୍ଧ୍ର, ନାଗପୁର, ସିଂହଭୂମି, ବିହାରର ଦକ୍ଷିଣାଂଶର ଇତିହାସ, କିମ୍ବଦନ୍ତୀ, ପ୍ରାଚୀନ ଶିଳାଲିପି, ତାମ୍ରପଟ୍ଟା ଓ ସାହିତ୍ୟ ପାଠକଲେ ଓ ଉତ୍କଳଖଣ୍ଡର ବିଷୟ ଅବଗତ ହେଲେ, ସାହିତ୍ୟର ତଥା ଜାତିର ଇତିହାସ ଲେଖା ଯାଇପାରିବ । ଏଥିପାଇଁ ପ୍ରଭୂତ ସାଧନା ଆବଶ୍ୟକ ଓ ବିଶିଷ୍ଟ ଲୋକଙ୍କର ଚାଳକତ୍ୱ ମଧ୍ୟ ପ୍ରୟୋଜନ । ବର୍ତ୍ତମାନ କ୍ଷେତ୍ରରେ ପୃଥିବୀର ବିଭିନ୍ନ ଦେଶର ଇତିହାସର ସାର ସଂଗ୍ରହ କରି ଉତ୍କଳ ଭାଷାରେ ଯଦି ସେହି ସେହି ଦେଶର ବା ଜାତିବିଶେଷର ଉତ୍ଥାନ, ପତନ, କାର୍ଯ୍ୟ-କାରଣ ସହ ପ୍ରକାଶିତ ହୁଅନ୍ତା, ତେବେ ଜାତିର ପ୍ରଭୂତ କଲ୍ୟାଣ ସାଧିତ ହୁଅନ୍ତା । ଏ ଦିଗରେ ଲୋକଙ୍କ ଦୃଷ୍ଟି ପଡୁ ନାହିଁ । ଯାହା କିଛି ବାହାରୁଛି ତାହା ସ୍କୁଲରେ ପାଠ୍ୟପୁସ୍ତକରୂପେ ପୁରସ୍କାର ଓ ପାଠାଗାର ଚଳାଇବାକୁ । ଇତିହାସର ସୀମା ଖୁବ୍ ବଡ଼ । ଦେଶର ଇତିହାସ କହିଲେ ଜାତିର ଯାବତୀୟ ଚେଷ୍ଟା ଅର୍ଥାତ ବିଜ୍ଞାନ ଓ ସାହିତ୍ୟ ସମ୍ବନ୍ଧୀୟ ସମସ୍ତ ବିଷୟର ଇତିହାସ ଲେଖିବାକୁ ହେବ । ଶିଳ୍ପ,ବାଣିଜ୍ୟ, ଦର୍ଶନ, ଧର୍ମ, ସ୍ମୃତି ପ୍ରଭୃତିର ଇତିହାସ ମଧ୍ୟ ଆବଶ୍ୟକ । ଇତିହାସ ବିଭାଗରେ ଅନୁସନ୍ଧାନ ଶାଖା ରଖିବାକୁ ହେବ । ସାହିତ୍ୟର ଇତିହାସ ଲେଖିବାକୁ ଗଲେ ଚିନ୍ତାଶୀଳ ସାହିତ୍ୟସେବୀଙ୍କର ଗୋଟିଏ ସଂଘ ହେବା ଲୋଡ଼ା । ସେମାନେ ପ୍ରାଚୀନ ସାହିତ୍ୟ

ଉଦ୍ଧାର କରିବାରେ ବ୍ରତୀ ହେବେ, କେବଳ ଉପାଦେୟ ଗ୍ରନ୍ଥମାନ ପ୍ରକାଶ କରିବେ । ଶିଳ୍ପ, ଜ୍ୟୋତିଷ, ଗଣିତ, ଆୟୁର୍ବେଦ, ସଙ୍ଗୀତ ପ୍ରଭୃତିର ସାରବାନ ଗ୍ରନ୍ଥ ପ୍ରକାଶିତ ନ ହେଲେ କିପରି ବା ଏ କାର୍ଯ୍ୟ ସମାହିତ ହେବ ?

**ସଙ୍ଗୀତ:** ଆମ ଦେଶରେ ବହୁତ ଚଉତିଶା, ଚଉପଦୀ ଅଛି, ତାହାର ଉଦ୍ଧାର କରିବାକୁ ହେବ । ଓଡ଼ିଶୀ ରୀତିର ପରିଚୟ ଦେବାକୁ ହେବ । ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ସଙ୍ଗୀତକୁ ଗଣ୍ଠିଧନ କଲେ ଚଳିବନାହିଁ । ଏଥିରେ ଜାତୀୟ ପ୍ରାଣର ପ୍ରାୟୋପବେଶନ । ନିଜର ଧନରେ ପୂର୍ଣ୍ଣ ଅଧିକାରୀ ହୋଇ ଜଗତର ରତ୍ନରାଜି ଗ୍ରହଣକରିବା ଶ୍ରେୟସ୍କର- ସୁଖର କଥା, ଏଥିପ୍ରତି ଲୋକଙ୍କ ଦୃଷ୍ଟି ଆକୃଷ୍ଟ ହେଲାଣି । ଆଜିକାଲି ଲୋକେ ପ୍ରାଚୀନ ସାହିତ୍ୟ ପ୍ରତି ବିଗତସ୍ପୃହ- କାରଣ ତାହା ଅଶ୍ଳୀଳତା ପୂର୍ଣ୍ଣ । ଭାରତର ସେ ସମୟର କୃତିମାନ ଅଳ୍ପ ବିଶେଷ ପରିମାଣରେ ତଦ୍‌ଲକ୍ଷଣ-ଲକ୍ଷିତ । ଏଥିରେ ଗଡ୍ଡାଳିକା ପ୍ରବାହ ରୀତି ପରିଦୃଷ୍ଟ ହୁଏ । ଲୋକେ ଶ୍ରମ ସ୍ୱୀକାର କରି ପଢିଲେ ପ୍ରାଚୀନ ସାହିତ୍ୟରେ ଯେ ସୌନ୍ଦର୍ଯ୍ୟ ଓ କଳା ଚାତୁରୀ ଦେଖିବେ, ସେଥିରେ ନିଶ୍ଚୟ ମୁଗ୍ଧ ହେବେ । ସେଥିରେ ସ୍ଥଳେ ସ୍ଥଳେ ଏପରି ସୁନ୍ଦର ବାକ୍ୟାବଳି ଅଛି ଯେ, ତାହା ଜଗତରେ ଯେ କୌଣସି ସାହିତ୍ୟରେ ଉଚ୍ଚ ଆସନ ଅଧିକାର କରିବ ।

କୁମୁଦ ବିକାଶ ତୁଟି ତୁଟି ଯାଇ
ପଦ୍ମ ଫୁଟି ଫୁଟି ଆସେ
ହରଷ ବିରସ ପାଲଟା ପାଲଟି
ମଧୁଲିଟ ବିଟ କି ସେ । (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)
କି ବିଚାରି ପଦ୍ମଯୋନି ସୁଧା ଅନୁରାଗ ଘେନି
ବିଶ୍ୱ ତୁଳନାରେ ତୁଳି ତୁଳନା କରେ
ଉଶ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା,
ଉଚ୍ଚନୀଚ ନୀଚଉଚ୍ଚ ଜାଣ ବିଧିରେ । (ବିଦଗ୍ଧଚିନ୍ତାମଣି)

**ଭାଷା-** ଭାଷାର ସୃଷ୍ଟିକାଳ ନିର୍ଦ୍ଧାରଣ କରିବା ସୁକଠିନ । ବୈଦିକ ଭାଷା ଅତି ପ୍ରାଚୀନ- ପ୍ରାୟ ୪/୫ ହଜାର ବର୍ଷର କଥା । ଉକ୍ତ ଭାଷା ତଦ୍‌କାଳରେ ଲୋକମୁଖର ଭାଷା ଥିଲା । ପରେ ତାହା ଅପଭ୍ରଷ୍ଟ ହେବାକୁ ଲାଗିଲା । ବୈଦିକ ସୂକ୍ତମାନଙ୍କରେ ମଧ ଋଷି ସମ୍ପ୍ରଦାୟର ତାରତମ୍ୟ ଭାଷାର ପାର୍ଥକ୍ୟରେ ପରିଲକ୍ଷିତ ହୁଏ । ଏକ ଶବ୍ଦ ଭିନ୍ନଭିନ୍ନ ଆକାର ଧାରଣ କରିଥିବା ଦୃଷ୍ଟିଗୋଚର ହୁଏ । ମହ୍ନା, ମହିନା, ମହିମ୍ନା ଏପରି ଭାଷାରେ ଶବ୍ଦମାନଙ୍କର ବିଭିନ୍ନ ରୂପ ପ୍ରାପ୍ତି ହେବା ଦେଖି ବୈୟାକରଣମାନେ ଭାଷାରେ ସମତା ଆଣିବା ନିମନ୍ତେ କେତେକ ନିୟମ ବାନ୍ଧିଦେଲେ । ତହୁଁ ସଂସ୍କୃତ ଭାଷାର ସୃଷ୍ଟି ହେଲା । ପାଣିନି ନିଜ ବ୍ୟାକରଣରେ ପ୍ରାୟ ୧୭ଜଣ ବ୍ୟାକରଣକାରଙ୍କ ନାମ ଉଲ୍ଲେଖ କରିଅଛନ୍ତି । ପାଣିନିଙ୍କ କାଳ ପ୍ରାୟ ଖ୍ରୀଷ୍ଟପୂର୍ବ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀ ହେବ । ପାଣିନିଙ୍କ ସମୟରେ ସଂସ୍କୃତ ଭାଷା କଥିତ ହେଉଥିଲା । ତହୁଁ ସେ ସଂସ୍କୃତକୁ ଭାଷା ଓ

ବୈଦିକ ଭାଷାକୁ ଛନ୍ଦସ୍ କହିଅଛନ୍ତି । ଏଥିରୁ ଜଣାପଡ଼େ, ପାଣିନିଙ୍କ ସମୟରେ ବୈଦିକ ଭାଷା କଥିତ ହେଉ ନଥିଲା । ବୈଦିକ ଭାଷା ସଙ୍ଗେସଙ୍ଗେ ତଦ୍‌ବିକୃତ ଭାଷା ଜନସାଧାରଣଙ୍କ ମୁଖରେ ପ୍ରଚଳିତ ହେବା ସମ୍ଭବପର । ପାଣିନିଙ୍କ ସମୟକୁ ପ୍ରାକୃତ ଭାଷା ସୃଷ୍ଟ ହୋଇ ସାରିଲାଣି, ସେ ତାକୁ ଭାଷାରୂପେ ସ୍ୱୀକାର କରିନାହାନ୍ତି ।

ବୁଦ୍ଧଦେବଙ୍କ ସମୟରେ ପ୍ରାକୃତ ଭାଷା ବହୁଳ ଭାବରେ ପ୍ରଚଳିତ ହେଉଥିଲା । ତହୁଁ ସେ ସ୍ୱଧର୍ମକୁ ପ୍ରାକୃତ ଭାଷାରେ ପ୍ରଚାର କରିବାକୁ ଆଦେଶ ଦେଇଥିଲେ । କ୍ରମାନ୍ୱୟରେ ଆମ୍ଭେମାନେ ଅଶୋକଙ୍କ ଶିଳାଲିପି ଓ ଖାରବେଳଙ୍କ ଶିଳାଲିପିର ଭାଷା ଉତ୍କଳରେ ପ୍ରଚଳିତ ହୋଇଥିବାର ଅନୁମାନ କରୁଅଛୁ । ମାଗଧୀ, ଓଡ୍ର ମାଗଧୀ, ଅବନ୍ତୀ ଭାଷା ଓ ଶାବରୀ ଭାଷାର ସଂମିଶ୍ରଣରେ ଉତ୍କଳରେ ଏକ ସ୍ୱତନ୍ତ୍ର ପ୍ରାକୃତ ଭାଷା ସୃଷ୍ଟ ହେବା ସମ୍ଭବପର । ଏହି ପ୍ରାକୃତ ଭାଷା ଷଷ୍ଠ ଓ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳରେ ପ୍ରଚଳିତ ହେଲା । ତତ୍ପରେ ଆମ୍ଭେମାନେ ବୌଦ୍ଧଗାନ ଓ ଦୋହାରେ ଉତ୍କଳର ସିଦ୍ଧାଚାର୍ଯ୍ୟମାନଙ୍କ ଭାଷା ଦେଖିବାକୁ ପାଉ । ତାହା ପ୍ରାୟ ଅଷ୍ଟମ ଶତାବ୍ଦୀର ଭାଷା । ସେହି ଭାଷା କ୍ରମଶଃ ସଂସ୍କୃତ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ସଂଘର୍ଷରେ ଆସି ଯେଉଁ ଭାଷା ସୃଷ୍ଟିକଲା, ତାହା ଆମ୍ଭେମାନେ ମାଦଳାପାଞ୍ଜି, ଭୁବନେଶ୍ୱର ଶିଳାଲିପି ଓ ସାରଳା ମହାଭାରତାଦିରେ ଦେଖିବାକୁ ପାଉ । ସେହି କାଳରୁ ଭାଷାର ଗତି ସ୍ୱାଭାବିକ ଭାବରେ ଚାଲି ଆସିଲା । ଇତି ମଧ୍ୟରେ ପ୍ରାଦେଶିକ ଭାଷା ବଙ୍ଗଳା ଭାଷା, ମୁସଲମାନ ଭାଷା ଓ ମରହଟ୍ଟା ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଯେଉଁ ଭାଷା ସୃଷ୍ଟ ହୋଇଥିଲା, ତାହା ଇଂରେଜ ରାଜତ୍ୱର ପୂର୍ବାବସ୍ଥାରେ ଆମ୍ଭେମାନେ ଦେଖିବାକୁ ପାଉ ।

ଇଂରେଜି ଶିକ୍ଷାର ପ୍ରବର୍ତ୍ତନ ପରେ ଭାଷାରେ ବୈଦେଶିକ ଶବ୍ଦ ପ୍ରବେଶ ଲାଭ କଲା । ତହୁଁ ଆମ୍ଭମାନଙ୍କ ଭାଷାରେ ନାନା ଦେଶୀୟ ଭାଷାର ଶବ୍ଦମାନଙ୍କ ଉପସ୍ଥିତି ଦେଖୁ । ଯଦିଚ ଆମ୍ଭେମାନେ ସାହିତ୍ୟର ମଧ୍ୟଯୁଗରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ହେତୁ ସ୍ୱକାବ୍ୟରେ ଅପ୍ରାକୃତିକତା ଦେଖୁ, ତେବେ ଭାଷାର ସହଜ ଧର୍ମ ନଷ୍ଟ ହେବାର ନ ଥିଲା ବୋଲି ଧରିବାକୁ ହେବ । କାବ୍ୟ ବ୍ୟତୀତ ଧର୍ମ ଓ ପୁରାଣ ସାହିତ୍ୟର ଭାଷା ତାହାର ପ୍ରମାଣ ପ୍ରଦର୍ଶନ କରେ । ଇଂରାଜି ଶିକ୍ଷାର ପ୍ରବର୍ତ୍ତନ ପରେ ନୂତନ ଯୁଗର ବଙ୍ଗଳାଭାଷା ଅନୁକରଣରେ ସଂସ୍କୃତ ବ୍ୟାକରଣର ନିର୍ଦ୍ଦେଶ ଅନୁସାରେ ଉତ୍କଳ ଭାଷା ଲିଖିତ ହେବାକୁ ଲାଗିଲା । ଉତ୍କଳର ପ୍ରାଚୀନ ଗଦ୍ୟ ଓ ପଦ୍ୟକୁ ଆଦର୍ଶ କରି ଗ୍ରନ୍ଥାଦି ଲିଖିତ ହୋଇଥିଲେ ଭାଷାର ସହଜାତ ଗୁଣ ପ୍ରାୟ ଅକ୍ଷୁଣ୍ଣ ରହିଥାନ୍ତା । ସଂସ୍କୃତ ମାପ କାଠିରେ ଉତ୍କଳ ଭାଷାକୁ ମାପି ପ୍ରାଚୀନ ଲେଖକମାନଙ୍କର ଭାଷା ଦୋଷଯୁକ୍ତ ବୋଲି ଗଣା ହେଲା । ଏହି ନବସଂସ୍କୃତ ଭାଷା ଆଜିକାଲି ଆମ୍ଭମାନଙ୍କର ଭାଷା । ଯଦିଚ ଉକ୍ତ ଦୋଷମାନ ସାରଳା ଦାସଙ୍କ କାଳରୁ ଇଂରାଜୀ ଶିକ୍ଷାର ପ୍ରବର୍ତ୍ତନ ପର୍ଯ୍ୟନ୍ତ ୫୦୦ ବର୍ଷ ଧରି ପରମ୍ପରାକ୍ରମେ ପରିଲକ୍ଷିତ ହୁଏ, ସେ ସବୁକୁ ଅଶୁଦ୍ଧ କହିବା ସମୀଚୀନ କି? ସଂସ୍କୃତ ଓ ଅନ୍ୟାନ୍ୟ ଭାଷାରେ ଅନେକ ଶବ୍ଦ ଦେଖୁ, ଯାହା ବ୍ୟାକରଣ ଅନୁସାରେ ଅଶୁଦ୍ଧ, କିନ୍ତୁ ପ୍ରୟୋଗବଳରେ ଶୁଦ୍ଧ(ସଂସ୍କୃତ-ଶାଶ୍ୱତ, ଗବାକ୍ଷମ୍ ପ୍ରଭୃତି) ।

ବ୍ରହ୍ମବୈବର୍ତ୍ତାଦି ପୁରାଣରେ 'ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତମ୍' ଓ ଅନ୍ୟାନ୍ୟ ଏପରି ଶବ୍ଦ ପରିଦୃଷ୍ଟ ହୁଏ । ପୁରାଣଯୁକ୍ତ ଅନେକ ଶବ୍ଦ ବ୍ୟାକରଣ ସୂତ୍ରଦ୍ୱାରା ସିଦ୍ଧ ନୁହେଁ । ପ୍ରୟୋଗ ବଳବାନ । ମୁଖ୍ୟ ବ୍ୟାକରଣକାର ପାଣିନି ମଧ୍ୟ ଏ ବଳକୁ ଏଡ଼ି ନପାରି ନିଜ ସୂତ୍ରମାନଙ୍କରେ ଅଶୁଦ୍ଧ ବ୍ୟବହାର କରିଅଛନ୍ତି 'ଲକ୍ଷଣହେତୋଃ କ୍ରିୟାୟାଃ, ଆଦେଶ ଉପଦେଶଽଣିଚି' ଇତ୍ୟାଦି । ଅନ୍ୟଙ୍କ କଥା ତ କହିବାର ନୁହେଁ; କିନ୍ତୁ ଆମ ଓଡ଼ିଶାରେ ପ୍ରୟୋଗସିଦ୍ଧ ସନମାନ, ସନମତି, ମନାନ୍ତର, ସଧୀରେ, ବୃଥାରେ, ଲୋଭିତ ପ୍ରଭୃତି ଶବ୍ଦ ବର୍ଜନୀୟ, ଏହା ଆମ୍ଭମାନଙ୍କ ଭଳି ପଣ୍ଡିତଙ୍କ ମତ । ଏସବୁ ବିଷୟରେ ପ୍ରାଚୀନ ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟ ଦର୍ଶନୀୟ । କେତେକ ଶବ୍ଦ ଅଦ୍ଭୁତରୂପରେ ମଧ୍ୟ ଆମଦାନି ହେଉଅଛି- କହାଇବା, ବନାନୀ, ପୂଜାରିଣୀ, ପ୍ରାଣିତ ପ୍ରଭୃତି । ବର୍ତ୍ତମାନ ଆମେ ଅଜ୍ଞାତସାରରେ ହେଉ ବା ନିଜ ଦାମ୍ଭିକତାରେ ହେଉ, ଇଂରାଜୀ, ଓଡ଼ିଆ ଓ ବଙ୍ଗଳା ଓଡ଼ିଆ ଲେଖି ପକାଉଛୁ । ତଦ୍‌ପ୍ରତି ସାବଧାନ ନ ହେବା ଠିକ ନୁହେଁ । ଯଥା- 'ସେମାନେ କାଳରେ ବହୁଦୂରର କଥା', 'ତାଙ୍କ ଭିତରେ ଏ ଭାବ ଉଇଁଥିଲା ।' କେତେକ ବ୍ୟକ୍ତି ଭାଷାକୁ ସଂସ୍କୃତପ୍ରାୟ ଓ କେତେକ ଗ୍ରାମ୍ୟ କରିବାକୁ ପ୍ରୟାସୀ । ଉଭୟ ବିଷୟରେ ଦୋଷ ବା ଅସୁବିଧାର ସମ୍ଭାବନା ଅଛି । ତହୁଁ ଯାହା ସାଧାରଣରେ ଚଳୁଛି ଓ ଯାହା ଦେଶର ସବୁ ଅଞ୍ଚଳରେ ବୁଝାପଡ଼ିବ, ତାହାକୁ ହିଁ ଧରିବା ଉଚିତ । ଆଜିକାଲି ଜ୍ଞାନବିଜ୍ଞାନର ଯୁଗ । ଶାସ୍ତ୍ରମାନ ଲେଖିବାକୁ ହେବ । ଉପଯୁକ୍ତ ଶବ୍ଦ (ପାରିଭାଷିକ) ବା କଥା ଦରକାର । ଓଡ଼ିଶାର ଚଳନ୍ତି ଭାଷାରେ ନ ଥିବା ପ୍ରାଚୀନ ସାହିତ୍ୟ ପ୍ରାଦେଶିକ ସାହିତ୍ୟମାନଙ୍କରେ ଯେବେ ଉପଯୁକ୍ତ ଶବ୍ଦ ନ ମିଳେ, ତେବେ ତାହା ସୃଷ୍ଟି କରିବାକୁ ହେବ । ତାହା ଯଦି ଅଭୀଷ୍ଟ ଅର୍ଥ ପ୍ରଦାନ ନ କରେ ଏବଂ ଲୋକଗ୍ରାହ୍ୟ ନ ହୁଏ, ତେବେ ବିଦେଶୀ ଶବ୍ଦ ଗ୍ରହଣ କରିବାକୁ ହେବ । ଏଥି ନିମିତ୍ତ ଭାରତରେ ବିଶିଷ୍ଟ ଲୋକଙ୍କୁ ନେଇ ଗୋଟିଏ ସଂଘ କଲେ ସମସ୍ତ ଅଭାବ ଅଚିରେ ଦୂରୀଭୂତ ହେବ ।

ଭାଷାର ସହାୟତା ନିମିତ୍ତ ଅଭିଧାନ ବ୍ୟାକରଣ, ଛନ୍ଦ ଓ ଅଳଙ୍କାର ପ୍ରୟୋଜନ । ଅଭିଧାନ ଭାଷାକୁ ବା ସାହିତ୍ୟ ସୃଷ୍ଟି କରିନାହିଁ । ଉତ୍ତମ ଧରଣର ସାହିତ୍ୟ କରିବାରେ ଅଭିଧାନ ବହୁତ ପ୍ରକାରରେ ସାହିତ୍ୟକୁ ସାହାଯ୍ୟ ପ୍ରଦାନ କରେ । ଗୋପାଳଚନ୍ଦ୍ର ପ୍ରହରାଜ ମହାଶୟ ବହୁଶ୍ରମ ସ୍ୱୀକାରପୂର୍ବକ ଏକ ଅଭୂତପୂର୍ବ ବିରାଟ ଅଭିଧାନ ଗ୍ରନ୍ଥ ସଂକଳନ କରୁଅଛନ୍ତି- ତାହାର ମୂଲ୍ୟ ଅକଳନୀୟ । ସେଥିରେ ଅବଶ୍ୟ ଭ୍ରମପ୍ରମାଦ ଅଛି, ତାହା କେହି ଅସ୍ୱୀକାର କରିବ ନାହିଁ-ପରିଶିଷ୍ଟରେ ଶୁଦ୍ଧିକ୍ରିୟା ସମ୍ପାଦିତ ହେବାର ଆଶା । ତାଙ୍କର ନିଷ୍ଠା ଉତ୍କଳ ସାହିତ୍ୟସେବୀଙ୍କର ଅନୁକରଣୀୟ । ବ୍ୟାକରଣ ପ୍ରତି ଅବହେଳା କରି ଆଜିକାଲି ଲୋକେ ଲେଖି ପକାଉଅଛନ୍ତି- ସେଟା ଠିକ ନୁହେଁ । ବିଶୃଙ୍ଖଳା ଜାତ ହେବ । ତଦ୍‌ପ୍ରତି ସାବଧାନ ହେବା ଉଚିତ । ଭଲ ଓଡ଼ିଆ ବ୍ୟାକରଣ ଏପର୍ଯ୍ୟନ୍ତ ଲିଖିତ ହେଲା ନାହିଁ, ଏ ବଡ଼ ଦୁଃଖର ବିଷୟ । ଅଳଂକାର ପ୍ରତି ମଧ୍ୟ ଦୃଷ୍ଟି ଦେବା ଉଚିତ୍ । ବର୍ଣ୍ଣନାର ବୈଚିତ୍ର୍ୟ ଓ ସ୍ଥଳବିଶେଷରେ ବିଷୟର ଶୋଭନ ଅର୍ଥୋଦ୍‌ପତ୍ତି ନିମିତ୍ତ ଅଳଂକାର ଆବଶ୍ୟକ । ଶବ୍ଦାର୍ଥଜ୍ଞାନ ନିମିତ୍ତ ବ୍ୟାକରଣ, ଉପମାନ, କୋଷ,

ଆପ୍ତବାକ୍ୟ, ବ୍ୟବହାରସିଦ୍ଧ ପଦର ସମୀପ୍ୟ, ବାକ୍ୟର ଶେଷ ପ୍ରଭୃତି ଦରକାର । ଶବ୍ଦର ଶକ୍ତି ନିମିତ୍ତ ଭାଷାବିଜ୍ଞାନ, ବ୍ୟାକରଣ ଓ ଅଳଂକାରଶାସ୍ତ୍ର ପ୍ରତି ଦୃଷ୍ଟି ନ ଦେବାରୁ ବିଶୃଙ୍ଖଳା ସ୍ଥାନେସ୍ଥାନେ ଉପସ୍ଥିତ ହେଉଅଛି । ରସଗଙ୍ଗାଧରକାର କାବ୍ୟର ସଂଜ୍ଞା କରିଛନ୍ତି 'ଚମତ୍କାର ପ୍ରତିପାଦକଶବ୍ଦଃ କାବ୍ୟମ୍' । ଶବ୍ଦମାନେ ଏଠାରେ ପଦ, ବାକ୍ୟ ଓ ବାକ୍ୟର ସଂହତି । ଶବ୍ଦଟି ଅଭିପ୍ରେତାର୍ଥ ପ୍ରଦାନକରିବା ଦରକାର । ଶବ୍ଦର ଉଚିତ ପ୍ରୟୋଗ ନିମନ୍ତେ ଶାସ୍ତ୍ରପାଠ ବିଧେୟ । ଶାସ୍ତ୍ରପାଠ ସଙ୍ଗେ ସଙ୍ଗେ ପ୍ରତିଭାବାନ ଦେଶପ୍ରାଣ ଗୁରୁ ବା ଶିକ୍ଷକଙ୍କ ନିକଟରୁ ଶିକ୍ଷା ଗ୍ରହଣୀୟ । ଶିକ୍ଷା ଗ୍ରହଣ ସହିତ ଅନବରତ ଅଭ୍ୟାସ କରଣୀୟ । ପ୍ରତିଭାବାନ ଲୋକର ସାଧନାରେ ସିଦ୍ଧି ଅବଶ୍ୟମ୍ଭାବୀ । ଲୋକ ପ୍ରତିଭାବାନ୍ ହୋଇ ନ ଥିଲେ ମଧ୍ୟ ବିଷମ ସାଧନାବଳରେ ପ୍ରତିଭାଶାଳୀର କାର୍ଯ୍ୟ କରିପାରେ । ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ, ତାରିଣୀଚରଣ, ବିନାୟକ ମିଶ୍ର ପ୍ରମୁଖଙ୍କ ଭାଷା, ସାହିତ୍ୟ ଓ ବ୍ୟାକରଣ ସମ୍ବନ୍ଧୀୟ କୃତିମାନ ଉଲ୍ଲେଖଯୋଗ୍ୟ । ଉତ୍କଳ ସାହିତ୍ୟକୁ ଗୋପୀନାଥ ନନ୍ଦଙ୍କ ଦାନ ଅତୀବ ଅମୂଲ୍ୟ ।

**ଉପସଂହାର:** ସାହିତ୍ୟର ପ୍ରଚାର ନିମନ୍ତେ ଭାଗବତଟୁଙ୍ଗୀର ପୁନରୁଦ୍ଧାର କରିବାକୁ ହେବ । ସ୍ଥାନେ ସ୍ଥାନେ ପାଠାଗାର ସଂସ୍ଥାପନ କରିବାକୁ ହେବ । ଶାଖାସମିତି ସଂଗଠିତ ହେବା ଦରକାର । ଶିକ୍ଷାର ବୈଜ୍ଞାନିକ ଉନ୍ନତିକଳ୍ପେ ଉପଯୁକ୍ତ ଶିଶୁ ସାହିତ୍ୟ ପାଠ୍ୟପୁସ୍ତକ ଲେଖିବାକୁ ହେବ । ପଲ୍ଲୀର ସଂସ୍କାର ଆଣି ଶିକ୍ଷା ବିସ୍ତାର କରିବା ଦରକାର । ପଲ୍ଲୀରେ ମାସିକପତ୍ର ଓ ବିଜ୍ଞାନପତ୍ର ପ୍ରଚଳନଦ୍ୱାରା ଲୋକଙ୍କର ଅଜ୍ଞତା ଦୂର କରିବାକୁ ହେବ । ସାହିତ୍ୟର ପ୍ରବର୍ତ୍ତନ ନିମିତ୍ତ ଭିନ୍ନଭିନ୍ନ ବିଭାଗ ସୃଷ୍ଟି କରିବାକୁ ହେବ । ସାହିତ୍ୟ, ଇତିହାସ, ବିଜ୍ଞାନ, ସଙ୍ଗୀତ, ଶିଳ୍ପବିଦ୍ୟା ପ୍ରଭୃତିର ଉନ୍ନତି ନିମିତ୍ତ ଭିନ୍ନଭିନ୍ନ ଦଳ ସୃଷ୍ଟିକରି ସେମାନଙ୍କ ଉପରେ କାର୍ଯ୍ୟର ଭାର ଦେବାକୁ ହେବ । ଦେଶର ଧନୀ ଲୋକଙ୍କଠାରୁ ଅର୍ଥ ସଂଗ୍ରହ କରି ଉକ୍ତ ବିଭାଗମାନଙ୍କରେ ଉପଯୁକ୍ତ ଭାବରେ ବ୍ୟୟ କରିବାକୁ ହେବ । ଦେଶର ଉନ୍ନତି ଅର୍ଥସାପେକ୍ଷ । ଧନ ଓ ମନ ମିଳିଲେ ଦେଶର ଉନ୍ନତି ହାତମୁଠାରେ । ତହୁଁ ମୋର ଅନୁରୋଧ, ଆପଣମାନେ ନିଜର ମନପ୍ରାଣ ଢାଳିଦେଇ, ନିଜନିଜ ମଧ୍ୟରେ ଥିବା ବାଦ ବିସମ୍ବାଦ ଭୁଲିଯାଇ, ସରଳାନ୍ତଃକରଣରେ ଏ ପବିତ୍ର ଭାରତୀମନ୍ଦିରରେ ନିଜର ମାତୃଭୂମିର ଉନ୍ନତିକଳ୍ପେ ବ୍ରତୀ ହୋଇ ପ୍ରତିଜ୍ଞା କରନ୍ତୁ ଯେ, ଆପଣମାନେ ନିଜର ସାମର୍ଥ୍ୟ ଏହି ମହାଯଜ୍ଞରେ ନିୟୋଜିତ କରିବେ ।

# ଭାରତର ପ୍ରାଚୀନ ନୀତି

ପାଠକେ, ଭାରତର ନୀତି ସମ୍ବନ୍ଧରେ କିଛି କହିବା ପୂର୍ବରୁ ମୁଁ ଆପଣମାନଙ୍କୁ ଏତିକିମାତ୍ର କହି ରଖୁଅଛି ଯେ, ଭାରତ ସଭ୍ୟତାର ପ୍ରାକ୍‌କାଳରୁ ଭରତରେ ଧର୍ମପ୍ରାଣତା ସମସ୍ତ କାର୍ଯ୍ୟର ମୂଳମନ୍ତ୍ର ବୋଲି ଧରିବାକୁ ହେବ । ଏହା ହିନ୍ଦୁ ସମାଜ ସ୍ଥାୟିତ୍ୱର ପୃଷ୍ଟପୋଷକ, ଏହା ହିନ୍ଦୁ ପରିବାରରେ ଶାନ୍ତି ଦେଇଅଛି, ସମାଜରେ ଶାନ୍ତି ଦେଇଅଛି ଏବଂ ରାଜ୍ୟରେ ମଧ୍ୟ ଶାନ୍ତି ଦେଇଅଛି । ଭାରତର ସନାତନ ଧର୍ମ ସ୍ଥୂଳ ଓ ସୂକ୍ଷ୍ମ, ଜଟିଳ ଓ ସରଳ, ସୁବୋଧ ଓ ଦୁର୍ବୋଧ । ଏହାର ରାଜ୍ୟ ବିଶାଳ ଓ କ୍ଷୁଦ୍ର ଏବଂ ଏହାର ବିଶ୍ୱରୂପ ସର୍ବଜନସମ୍ମତ । ଆଧୁନିକ ପାଶ୍ଚାତ୍ୟ ସଭ୍ୟତାପ୍ରାପ୍ତ ଲୋକମାନଙ୍କ ମତରେ ଏହା ଯୁକ୍ତି ସଙ୍ଗତ ହେବ ନାହିଁ ବୋଲି ମୁଁ ଆଶଙ୍କା କରେ । କାରଣ ଆଧୁନିକ ଶିକ୍ଷିତ ଲୋକମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ମନ ବିଦେଶୀୟ ଚିନ୍ତା ଓ ବିଦେଶୀୟ ଭାବରେ ଅନୁପ୍ରାଣିତ ହେଉଥିବାରୁ ସେମାନଙ୍କ ମଧ୍ୟରୁ ଅତ୍ୟଳ୍ପ ଭାରତର ପୂର୍ବ ରୀତିନୀତି ବିଷୟର ଓ ଶାସ୍ତ୍ରୋକ୍ତ ବିଷୟର ସାରବତ୍ତା ଉପଲବ୍ଧି କରିବା ଏବଂ ପ୍ରକୃତ ତଥ୍ୟ ନିରୂପଣ କରିବାରେ ଚେଷ୍ଟା କରନ୍ତି ଓ ସ୍ଥଳ ବିଶେଷରେ ଅସଭ୍ୟଙ୍କର ଜଳ୍ପନା ମନେକରି ନିଜଠାରେ ସଭ୍ୟତାର ନୂତନତ୍ୱ ଦେଖାଇବାରେ କୁଣ୍ଠିତ ହୁଅନ୍ତିନାହିଁ । ହାୟ! ଏହା କି କମ କ୍ଷୋଭର ବିଷୟ ! ଘରେ ବହୁମୂଲ୍ୟ ରତ୍ନ ଅଛି, ତା' ଆମକୁ ଜଣାନାହିଁ । ତାର ଆଦର କରୁନାହୁଁ, ତେଣୁ ଦରିଦ୍ର ହୋଇ ଯାଉଅଛୁ । ବାସ୍ତବିକ ଦାରିଦ୍ର୍ୟ ନ ଥାଇ ନିଜକୁ ଦରିଦ୍ର ମନେକରିବା କି କାପୁରୁଷର କଥା ନୁହେଁ ? ଘୋର ଜଡ଼ତ୍ୱରେ ରହି ପରର ସାହାଯ୍ୟ ଅର୍ଥେ ପ୍ରାର୍ଥୀ ହେଲେ ସାହାଯ୍ୟଦାତା କି ଘୃଣାଚକ୍ଷୁରେ ଆମକୁ ଦେଖୁ ନାହିଁ?

ବେଦ ବେଦାଙ୍ଗାଦି ନେଇ ବିଦେଶରେ ଯେ ଚର୍ଚ୍ଚା ଲାଗିଅଛି, ତାହା ସମସ୍ତଙ୍କୁ ଜଣାଅଛି । କି ପରିଶ୍ରମ,କି ସ୍ୱାର୍ଥ ତ୍ୟାଗକରି ସେମାନେ ଭାରତର ଶାସ୍ତ୍ର ଅଧ୍ୟୟନ କରୁଅଛନ୍ତି । ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା । ଆମ୍ଭମାନଙ୍କର କେବଳ ଆଶ୍ଚର୍ଯ୍ୟ ହୋଇ ସେମାନଙ୍କୁ ଧନ୍ୟବାଦ ଦେବା କାର୍ଯ୍ୟ ନୁହେଁ । କାର୍ଯ୍ୟ ଏହାଠାରୁ ଅନେକ ବେଶି । ବିଦେଶୀୟ ପଣ୍ଡିତମାନେ ଭାରତର ବେଦ ବିଷୟରେ ଯାହା କହୁଅଛନ୍ତି, ତାହା ସାରସ୍ୱତ ବୋଲି ଧରା ହୋଇଅଛି । ଉପନିଷଦର ଅନୁବାଦ- ଯାହା ବିଦେଶୀୟମାନେ କରୁଅଛନ୍ତି, ତାହା ତଥ୍ୟ ବୋଲି ଆମ୍ଭେମାନେ ଧରୁଅଛୁ ଏବଂ ସେହି ଅନୁବାଦ ସାହାଯ୍ୟରେ ନିଜର

ଅମୂଲ୍ୟ ଧନର ଆଭାସ ପାଉଅଛୁଁ । ସେମାନେ ସତ୍ୟ କହିଅଛନ୍ତି କି ମିଥ୍ୟା କହିଅଛନ୍ତି, ସେମାନଙ୍କର କେତେ ଧଳା ବା କେତେ କଳା, ତାହା ବୁଝିବାକୁ ଚେଷ୍ଟା ପର୍ଯ୍ୟନ୍ତ ନାହିଁ । ଉପନିଷଦ ବିଷୟରେ ଡଏବ ଓ ଡୁସେନ, ବୌଦ୍ଧ ଶାସ୍ତ୍ରରେ ରିକ୍ ଡେଭିଜ୍ ପ୍ରଭୃତି ଯାହା କହିଅଛନ୍ତି, କେବଳ ତାହାକୁ ବେଦ ଜ୍ଞାନକରି ସେମାନଙ୍କ ଉକ୍ତିର ସତ୍ୟାସତ୍ୟ ପରୀକ୍ଷା ପର୍ଯ୍ୟନ୍ତ ଅପେକ୍ଷା ନ କରିବା ଆମ୍ଭମାନଙ୍କର ମୂଢ଼ତା ଓ ପରମୁଖାପେକ୍ଷିତାର ଅନ୍ୟତମ ପ୍ରମାଣ । ସେମାନେ ଯେ ଏକାବେଳକେ ଉପେକ୍ଷଣୀୟ, ଏହା କୁହାଯାଇ ନ ପାରେ । ସେମାନଙ୍କର ଲେଖାର ମଧ୍ୟ ମୂଲ୍ୟ ଅଛି ।

କିନ୍ତୁ ମୋର ବକ୍ତବ୍ୟ ଏହି ଯେ, ରିକ୍ ଓ ଡେରିକ୍ ପ୍ରଭୃତିଙ୍କଠାରୁ ଆମ୍ଭ ଶାସ୍ତ୍ର ଗ୍ରହଣକରି ପାଣ୍ଡିତ୍ୟର ଦ୍ୱାହି ଦେବା ପୂର୍ବରୁ ସେମାନଙ୍କର ଉକ୍ତିର ଯଥାର୍ଥ୍ୟ ନିରୂପଣ କରିବା ନିମନ୍ତେ ସେହି ସେହି ଯୁଗର ଶାସ୍ତ୍ରାଦିର ଆଲୋଚନା ଆବଶ୍ୟକ । ଆମ୍ଭେମାନେ ଯେବେ ଭାରତର ପୂର୍ବଗୌରବ ଆଡ଼କୁ ଦୃଷ୍ଟି ପକାଉଁ, ଦେଖିବୁଁ ଧର୍ମବୀର ଓ କର୍ମବୀରମାନେ ଆମ୍ଭମାନଙ୍କ ସ୍ମୃତିପଟ ସମ୍ମୁଖରେ ଉପସ୍ଥିତ । ଯାଜ୍ଞବଲ୍କ୍ୟ, ଜନକ, ବ୍ୟାସ, ବୁଦ୍ଧ, ଶଙ୍କର, ଚୈତନ୍ୟ, ରାମ, ଭୀଷ୍ମ, ପର୍ଶୁରାମ, ଯୁଧିଷ୍ଠିର, ପ୍ରତାପ, ଶିବାଜୀ, ନରସିଂହ ଆଦି ବୀରପୁରୁଷ କି ଆମ୍ଭମାନଙ୍କର ସ୍ମୃତିପଥରେ ନାହାନ୍ତି? ସେମାନେ ଆମ୍ଭମାନଙ୍କର ଆହ୍ୱାନରେ ଆଜି ଉପସ୍ଥିତ; କିନ୍ତୁ ସେମାନେ ଲଜ୍ଜିତ ଓ ଦୁଃଖିତ । କାରଣ ସେମାନେ ଆମ୍ଭମାନଙ୍କଦ୍ୱାରା ଅପମାନିତ ହେଉଅଛନ୍ତି । ଆମ୍ଭମାନଙ୍କ ମନରେ ଶକ୍ତି କାହିଁ ଯେ, ଶକ୍ତିଦ୍ୱାରା ସେମାନଙ୍କର ପୂଜା କରିବୁଁ? (ଶକ୍ତି ନାହିଁ ବୋଲି କହିପାରୁନାହୁଁ) ଭାରତର ଭାରତତ୍ୱ ରଖି ସେହି ପୁଣ୍ୟଶ୍ଳୋକ ମହାତ୍ମାମାନଙ୍କର ମାନସିକ ଶକ୍ତିର ପ୍ରସାଦ ପାଇବା ନିମନ୍ତେ ଆମ୍ଭମାନଙ୍କର ଚେଷ୍ଟା ନାହିଁ, ଉଦ୍ୟମ ନାହିଁ ଏବଂ ପଣ ନାହିଁ । ଆଶାକରେ, ଏହି ଅନ୍ଧକାର ଆଉ ବେଶିଦିନ ରହିବ ନାହିଁ- କ୍ରମଶଃ ଅପସାରିତ ହେବ । ଅପସାରିତ ହେବାର ଚିହ୍ନ ମଧ୍ୟ ଦେଖା ଗଲାଣି । କାରଣ ଆମ୍ଭମାନଙ୍କ ହୃଦୟରେ ଅନୁତାପର ତୀବ୍ରାଗ୍ନି ଜଳିବାକୁ ଆରମ୍ଭ କଲାଣି । ଯେତେବେଳେ ନିଜର ଧନରେ ଧନୀ ହୋଇ, ନିଜର ବିଦ୍ୟାରେ ବିଦ୍ୱାନ୍ ହୋଇ, ପରଠାରେ ବିଶେଷତ୍ୱ ଦେଖି ତାକୁ ନିଜ ଭଣ୍ଡାରରେ ଆଣି ମିଶାଇବା; ସେତେବେଳେ ପ୍ରକୃତ ଉନ୍ନତି, ପ୍ରକୃତ ଜାତୀୟତ୍ୱ ଏବଂ ପ୍ରକୃତ ଭାରତୀୟତ୍ୱ ହେବ ।

ଅତି ପ୍ରାଚୀନ କାଳରେ, ଭାରତୀୟ (ଶାସ୍ତ୍ରମତରେ) ସତ୍ୟଯୁଗର ଆଦି କାଳରେ, ଭାରତର ଅବସ୍ଥା କିପରି ଥିଲା- ତାହା ପ୍ରଥମରେ ଜାଣିବା ଉଚିତ୍ । ସେସମୟରେ କି ନୀତି ଅବଲମ୍ବନ କରି ଲୋକେ ସମୟ ଅତିବାହିତ କରୁଥିଲେ, ଏହା ଜାଣିବାକୁ ଗଲେ ଆମ୍ଭମାନଙ୍କୁ ପୁରାଣ ଓ ଇତିହାସ ଦେଖିବାକୁ ହୁଏ । ମହାଭାରତରେ ଲେଖାଅଛି ଯେ, ସେସମୟରେ ରାଜନୀତି ନ ଥିଲା, ଥିଲା କେବଳ ଧର୍ମନୀତି; ଧର୍ମ ସେସମୟରେ ରାଜା । ସମସ୍ତଙ୍କ ହୃଦୟରେ ତାହାର ପ୍ରଭୁତ୍ୱ ଥିଲା । ସେସମୟରେ ବିବାଦ ନ ଥିଲା, କଳହ ନ ଥିଲା; ବରଂ ପରସ୍ପରରେ ମୈତ୍ରୀଭାବ ଥିଲା; ଈର୍ଷ୍ୟା କପଟତାର ସ୍ଥାନ ନ ଥିଲା, କେବଳ ଥିଲା ଧର୍ମ । ସମସ୍ତେ ଧାର୍ମିକ ଥିଲେ । ରାଜା

ନଥିଲା, ରାଜା ନ ଥିଲେ; ଦଣ୍ଡ ନ ଥିଲା, ଦାଣ୍ଡିକ ନ ଥିଲେ । କିନ୍ତୁ ହାୟ, ସେହି ସୁଖ ଚିରଦିନ ରହିଲାନାହିଁ । କ୍ରମେ ଲୋକମାନେ ଲୋଭ ପରବଶ ହେଲେ, ପରସ୍ପର ମଧ୍ୟରେ କଳହ ଉପସ୍ଥିତ ହେଲା । ଶାସକ ନାହିଁ, କିଏ ଶାସନ କରିବ? ସର୍ବନାଶ ହେଲା, ମହାବିଭ୍ରାଟ ଉପସ୍ଥିତ ହେଲା, ଧର୍ମ ଲୋପହେଲା, । ସମାଜ ଆଉ ଚଳିଲା ନାହିଁ ।

ନିୟତସ୍ତ୍ୱଂ ନରବ୍ୟାଘ୍ର ଶୃଣୁ ସର୍ବମଶେଷତଃ
ଯଥା ରାଜ୍ୟଂ ସମୁତ୍ପନ୍ନମାଦୌ କୃତଯୁଗେଽଭବତ୍
ନୈବରାଜ୍ୟଂ ନ ରାଜାଽସୀତ୍ ନ ଚ ଦଣ୍ଡ ନ ଦାଣ୍ଡିକ
ଧର୍ମେଣୈବ ପ୍ରଜା ସର୍ବା ରକ୍ଷନ୍ତି ସ୍ମ ପରସ୍ପରଂ
ପାଲ୍ୟାମାନା ସ୍ତଥୋଽନ୍ୟୋନ୍ୟଂ ନରାଧର୍ମେଣ ଭାରତଃ
ଖେଦ ପରମୁପାଜଗ୍ମୁସ୍ତାନ୍ ମୋହ ଆବିଶତ୍

x x x x

ନାଶାଇ ରାଜନ୍ ଧର୍ମୋ ନାଶମଥାଗମତ୍ ।

ଏହି ଘୋର ବିଭ୍ରାଟ ଉପସ୍ଥିତ ହେବାର ଦେଖି ପ୍ରଜାମାନେ ସମବେତ ହୋଇ ବ୍ରହ୍ମାଙ୍କ ନିକଟକୁ ଗଲେ । ବ୍ରହ୍ମାଙ୍କୁ ମର୍ତ୍ତ୍ୟର ଦୁରବସ୍ଥା ଜଣାଇଲେ ଓ ଜଣେ ପ୍ରଜାପାଳକ ରାଜାଙ୍କ ନିମନ୍ତେ ପ୍ରାର୍ଥନା କଲେ । ବ୍ରହ୍ମା ପ୍ରଜାମାନଙ୍କ ପ୍ରାର୍ଥନା ଶୁଣି ମନୁଙ୍କୁ ରାଜା ହେବାକୁ ଆଦେଶ ଦେଲେ । ମନୁ ପ୍ରଥମେ ନାହିଁ କଲେ ସୁଦ୍ଧା ପରିଶେଷରେ ରାଜପଦ ଗ୍ରହଣ କଲେ ।

ସହିତା ସ୍ତଦା ଜଗ୍ମୁରସୁଖାର୍ତ୍ତ ପିତାମହଂ
ଅନୀଶ୍ୱର ବିନଶ୍ୟାମୋ ଭଗବନ୍ନୀଶ୍ୱରଂ ଦିଶ
ୟଂ ପୂଜୟେମ ସମ୍ଭୂୟ ଯଶ୍ଚ ନ ପ୍ରତିପାଳୟେତା । ମନୁଃ-
ତତୋମନୁଂବ୍ୟାଦିଦେଶ ମନୁନାଭିନନନ୍ଦତା

ପ୍ରଜାମାନଙ୍କର ପ୍ରଜାପତିଙ୍କ ନିକଟ ଯିବା ପୂର୍ବେ ଦେବତାମାନେ ମର୍ତ୍ତ୍ୟର ଦୁରବସ୍ଥା ବିଷ୍ଣୁଙ୍କୁ ଜଣାଇଲେ ଏବଂ ଜଣେ ଉପଯୁକ୍ତ ଶାସକ ପାଇଁ ପ୍ରାର୍ଥନା କରିଥିଲେ । ଭଗବାନ୍ ବିଷ୍ଣୁ କିଞ୍ଚିତକାଳ ଚିନ୍ତାକରି ନିଜର ମନରୁ ଏକ ମେଧାବୀ ପୁରୁଷ ସୃଷ୍ଟି କରିଥିଲେ । ସେହି ମେଧାବୀ ପୁରୁଷ ମନୁ ନାମରେ ଅଭିହିତ

ଅଥଦେବା ସମାଗମ୍ୟ ବିଷ୍ଣୁମୂଚୁ ପ୍ରଜାପତିଂ
ଏକୋଯୋଽର୍ହତି ବର୍ତ୍ତେଭ୍ୟ ଶ୍ରେଷ୍ଠଂ ବୈତଂ ସମାଦିଶ
ତତଃ ସଞ୍ଚନ୍ତ୍ୟ ଭଗବାନ୍ ଦେବୋନାରାୟଣଃ ପ୍ରଭୁ
ତୈଜସଂ ବୈ ବିରଜସଂ ସୋଽସୃଜନ୍ ମାନସଂସୃତଂ
ବିରଜାସ୍ତୁ ମହାଭାଗ ପ୍ରଭୁତ୍ୱଂ ଭୁବି ନୈଛତ
ନ୍ୟାସାୟୈବାଭବତ୍ ବୁଦ୍ଧିଃ ପ୍ରଣେତା ତସ୍ୟ ପାଣ୍ଡବ ।

ଏହି ମନୁଙ୍କର ଅନ୍ୟ ନାମ ବିରଜା । ଧର୍ମପ୍ରବଣତା ହେତୁ ବୋଧହୁଏ ମନୁ ବିରଜା ନାମରେ ପ୍ରସିଦ୍ଧ । ସେ ମଧ୍ୟ ଏକ ନୀତିଶାସ୍ତ୍ରର କର୍ତ୍ତା । ଅଳ୍ପ ସମୟ ରାଜା ହୋଇ

ପୁତ୍ର ଇକ୍ଷ୍ୱାକୁଙ୍କ ହସ୍ତରେ ରାଜ୍ୟଭାର ଦେଇ ତପସ୍ୟା କରିବାକୁ ଯିବାର ରାମାୟଣକାର ଲେଖିଅଛନ୍ତି (ଯାଜପୁର ଯେ ବିରଜାକ୍ଷେତ୍ର ବୋଲି ପ୍ରସିଦ୍ଧ, ସେ କି ହେତୁ, ବିରଜା ଦେବୀଙ୍କ ହେତୁ ବା ବିରଜା ମନୁଙ୍କ ହେତୁ?) ବ୍ରହ୍ମାଙ୍କ ନିକଟ ମର୍ତ୍ତ୍ୟବାସୀଏ ଯାଇ ଦେଶର ମନ୍ଦାବସ୍ଥା ଜଣାଇବା ଏବଂ ଜଣେ ସୁଶାସକ ପାଇବା ଯୁକ୍ତିସଙ୍ଗତ ହେଲା ପରି ବୋଧ ହେଉ ନାହିଁ । ତେବେ କି ହେତୁ ଏହିପରି ଉପାଖ୍ୟାନମାନ ଶାସ୍ତ୍ରକାରମାନେ ଲେଖିଛନ୍ତି, ଏହାର ଉତ୍ତର ସରଳ ଓ ସହଜ । ସମସ୍ତ ସଦ୍ ଅନୁଷ୍ଠାନ, ଶିକ୍ଷା ବା ଶାସ୍ତ୍ରାଦି ଯାହା କିଛି ଭାରତରେ ପ୍ରଚଳିତ ହୋଇଅଛି, ତାହା ସେହି ଜଗଦ୍‌କର୍ତ୍ତା ଓ ଜଗଦ୍‌ନିୟନ୍ତା ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କଠାରୁ ଆସିଥିବ ର ଶାସ୍ତ୍ରକାରମାନେ ଲେଖିଅଛନ୍ତି । ତାହାର ଉଦ୍ଦେଶ୍ୟ ଏହି ଯେ, ଏସବୁ ପ୍ରଭୁଙ୍କଦ୍ୱାରା ଆଦିଷ୍ଟ ହୋଇଅଛି । ଏହାକୁ ଅମାନ୍ୟ କରିବ ନାହିଁ, କଲେ ବିପଦରେ ପଡ଼ିବାକୁ ହେବ । ପ୍ରଭୁଙ୍କ ଦ୍ୱାହି ଦେଇ ଲୋକମାନଙ୍କୁ ସଦ୍‌ପଥରେ ପ୍ରବର୍ତ୍ତାଇବା ନିମନ୍ତେ ବୋଧହୁଏ ଏହିପରି ପୁରାଣାଦିରେ ଲେଖାଅଛି । ମନୁଙ୍କର ଉପାଖ୍ୟାନ ମହାଭାରତକାର ଓ ରାମାୟଣକାରଙ୍କର କପୋଳକଳ୍ପିତ ବୋଲି ଆମ୍ଭେମାନେ ମନେ କରିପାରୁ । କିନ୍ତୁ ତାହା ନୁହେଁ । ବେଦ ଓ ବ୍ରାହ୍ମଣରେ ତାହାର ମଧ୍ୟ ପ୍ରମାଣ ଅଛି । ଋକ୍‌ବେଦରେ ମନୁଙ୍କର ନାମ ପ୍ରଥମ, ଷଷ୍ଠ, ଅଷ୍ଟମ ମଣ୍ଡଳରେ ପ୍ରାୟ ୧୦/୧୨ ସୂକ୍ତରେ ମିଳେ । ବାହୁଲ୍ୟ ଭୟରୁ କେବଳ ଦୁଇଗୋଟି ଉଦାହରଣ ଦେଲି ।

ଯଂ ଆ ଦେବାସୋ ମନବେ ଦଧୁରିହ ଯଜିଷ୍ଟଂ ହବ୍ୟବାହନ ।୧ ।୩୬ ।୧୦

ହେ ହବ୍ୟବାହନ, ତୁମ୍ଭେ ମନୁଙ୍କ ନିମନ୍ତେ ଯଜ୍ଞସାଧନ ସମର୍ଥ ବୋଲି ଦେବତାମାନେ ତୁମ୍ଭଙ୍କୁ ଏହି ମର୍ତ୍ତ୍ୟରେ ପ୍ରତିଷ୍ଠିତ କରିଅଛନ୍ତି ।

ଇଳେଗିରା ମନୁର୍ହିତଂ ଯଂ ଦେବାଦୂତମରତିଂ ନ୍ୟେରିରେ ଯଜିଷ୍ଟଂ ହବ୍ୟବାହନଂ ୮ ।୧୬ ।୨୧

ମନୁ ଯେ ଅଗ୍ନିର ପ୍ରତିଷ୍ଠା କରିଅଛନ୍ତି, ଆମ୍ଭେମାନେ ସେହି ଅଗ୍ନିର ସ୍ତବ କରୁ, ସେ ଅଗ୍ନି ଦେବଦୂତ, ଯଜ୍ଞସାଧକ ଓ ଦେବଗଣଙ୍କର ହବ୍ୟବାହକ ।

ଶତପଥ ବ୍ରାହ୍ମଣରେ ମଧ୍ୟ ପ୍ରମାଣ ଅଛି ।

ମନୁର୍ବୈବସ୍ୱତୋ ରାଜା ଇତ୍ୟାହ ।ତସ୍ୟ ମନୁଷ୍ୟ ବିଶଃ ।

ବୈବସ୍ୱତମନୁ ରାଜ ଏବଂ ମନୁଷ୍ୟମାନେ ତାଙ୍କର ପ୍ରଜା ।

ଐତରେୟ ବ୍ରାହ୍ମଣ:

ଯାଭିଭିନ୍ଦ୍ର ମଭ୍ୟଷିଞ୍ଚଦ୍ ପ୍ରଜାପତିଃ

ସୋମଂ ରାଜାନାଂ ବରୁଣଂ ଯମଂ ମନୁଂ

ଯେ ଜଳରେ ପ୍ରଜାପତି, ଇନ୍ଦ୍ରାଦି ଦେବତାମାନଙ୍କୁ ଓ ମନୁଙ୍କୁ ଅଭିଷେକ କରିଥିଲେ- ମୁଁ ତୁମ୍ଭଙ୍କୁ ସେହି ଜଳରେ ଅଭିଷେକ କରୁଅଛି ।

ମନୁ ପ୍ରଥମ ରାଜା, ଏହା ସ୍ୱତଃସିଦ୍ଧ । କାରଣ ବେଦ, ବ୍ରାହ୍ମଣ, ରାମାୟଣ, ମହାଭାରତରେ ଏହାର ପ୍ରମାଣ ମିଳିଲା । ସ୍ମୃତିରେ ପ୍ରମାଣ ଅଛି । ଆଉ ପ୍ରମାଣ ଖୋଜିବା କେବଳ ବାହୁଲ୍ୟ ।

ମନୁ କେବେ ରାଜପଦରେ ଗୃହୀତ ହୋଇଥିଲେ, ତାହା କେହି ଠିକ୍ କରି କହିପାରିବନାହିଁ। ଆମ୍ଭେମାନେ ଋକ୍‌ବେଦର ସ୍ଥଳବିଶେଷରେ ମନୁଙ୍କର ନାମ ଦେଖିବାକୁ ପାଉଁ । ତେବେ ଋକ୍‌ବେଦ ରଚନାର ପ୍ରାକ୍‌କାଳରେ ବା ରଚନା କାଳରେ ମନୁ ରାଜା ହୋଇଥିଲେ, କି ଋକ୍‌ବେଦ ରଚନାର ପୂର୍ବେ ମନୁ ରାଜା ଥିଲେ, ଏହା ଦୃଢ଼ଭାବରେ କେହି କହିପାରିବ ନାହିଁ। ଅନୁମାନ ଜଗତରେ ଟିକିଏ ବୁଲି ଆସିଲେ ହାନି କଅଣ?

ଯେଉଁ ସମୟରେ ମଧ୍ୟଆସିଆ ବା କାସ୍‌ପିଆନ୍ ହ୍ରଦର ସମୀପବର୍ତ୍ତୀ ସ୍ଥାନରୁ ଆର୍ଯ୍ୟଗଣ ଭାରତକୁ ଆସିଲେ, ସେସମୟରେ ଯେ ସେମାନଙ୍କର କୌଣସି ରାଜା ଥିଲେ, ତାହା ଧରା ହୋଇପାରେନାହିଁ। କେତେଗୁଡ଼ିଏ ଆର୍ଯ୍ୟ ଦଳବଦ୍ଧ ହୋଇ ଆସିଥିବା ଖୁବ୍ ସମ୍ଭବ। ସେମାନେ ଭାରତର ଉତ୍ତର ପଶ୍ଚିମାଞ୍ଚଳ ଦେଇ କ୍ରମେ କ୍ରମେ ପଞ୍ଚନଦ ପ୍ରଦେଶରେ ଆସି ଉପସ୍ଥିତ ହେଲେ । ପ୍ରଥମତଃ ସେମାନଙ୍କୁ ବିଶେଷ କିଛି ପ୍ରବଳ ଶତ୍ରୁର ସଙ୍ଗରେ ଯୁଦ୍ଧାଦି କରିବାକୁ ହୋଇ ନ ଥିଲା । ଅନାର୍ଯ୍ୟଙ୍କ ସଙ୍ଗେ ଯେ କିଛି ଯୁଦ୍ଧ କରିବାକୁ ପଡ଼ିଥିଲା, ସେଥିରେ ସେମାନେ ମିଳିତ ହୋଇ ସାମୟିକ ନେତାଙ୍କ ଅଧୀନରେ ଯୁଦ୍ଧ କରୁଥିଲେ । ନିଜ ଜାତିର ଲୋକ କମ ଥିବାରୁ ଏବଂ ନୂତନ ଦେଶରେ ନିଜର ସ୍ଥାୟିତ୍ୱ ଦୃଢ଼ ହୋଇ ନ ଥିବାରୁ, ପରସ୍ପର ପରସ୍ପରବେ ମମତା ଥିଲା ଏବଂ ନିଜ ଜାତିର ଗୌରବ ରଖିବାକୁ ଓ ନିଜ ଜାତିର ଆଧିପତ୍ୟ ବିସ୍ତାର କରିବାକୁ ସେମାନଙ୍କ ମନରେ ଏକ ପ୍ରବଳଭାବ ଉଦୟ ହୋଇଥିଲା । ପରେ ଯେତେବେଳେ ସେମାନେ ଭାରତବର୍ଷକୁ ନିଜର ଦେଶ ବୋଲି ମଣିଲେ ଏବଂ ନିଜର ଆଧିପତ୍ୟ ବିସ୍ତୃତ ହେଲା, ସେତେବେଳେ ଭିନ୍ନଭିନ୍ନ ପରିବାରର ଲୋକେ ନିଜ ନିଜ ପରିବାରର ମାନ ବଢ଼ାଇବାକୁ ଲାଗିଲେ ଏବଂ ଅନ୍ୟାନ୍ୟମାନଙ୍କୁ ନିଜର ଅଧୀନରେ ରଖିବାକୁ ଇଚ୍ଛା କଲେ । ତହୁଁ ମହାବିଭ୍ରାଟ ଉପସ୍ଥିତ ହେଲା । ଶାନ୍ତି ରହିଲା ନାହିଁ, ଚାରିଆଡ଼େ ବିଶୃଙ୍ଖଳା ଦେଖାଗଲା । ଏହା ଦେଖି ସମସ୍ତ ପରିବାରର ଲୋକେ ମିଳିତ ହୋଇ କିପରି ରାଜ୍ୟରେ ଶାନ୍ତି ହେବ ଏବଂ ଏ ଅଶାନ୍ତି ଦୂରହେବ, ଏହା ବିଚାର କରିବାକୁ ଲାଗିଲେ । ସେହି ବିଚାରରେ ଜଣେ ପ୍ରଧାନ ବିଚାରପତି ଥିଲେ । ସେହି ବିଚାରପତି ବ୍ରହ୍ମା । ତାଙ୍କ ବିଚାରରେ ମନୁଙ୍କୁ ରାଜା କରିବାର ସିଦ୍ଧାନ୍ତ ହେଲା । ମନୁ ଜଣେ ମେଧାବୀ ଓ ସୁଦକ୍ଷ ପୁରୁଷ ଥିଲେ । ଋକ୍‌ବେଦ ରଚନା ପୂର୍ବେ ମନୁ ରାଜପଦରେ ଅଭିଷିକ୍ତ ବୋଲି ପ୍ରତୀତ ହେଉଅଛି । ଋକ୍‌ବେଦର ଭାଷାରୁ ଜଣାଯାଉଅଛି ଯେ, ଋକ୍‌ବେଦର ପୂର୍ବେ ଭାରତବର୍ଷରେ ଆର୍ଯ୍ୟମାନଙ୍କର ବୈଦିକ ସାହିତ୍ୟର ଆଲୋଚନା ଥିଲା । ଋକ୍‌ବେଦରେ ଅନେକ ସ୍ଥଳରେ ଲେଖାଅଛି, ପୂର୍ବର ଋଷିମାନଙ୍କ ପନ୍ଥା ଅନୁସରଣ କରି ଆମ୍ଭେମାନେ ଗାନ କରୁଅଛୁଁ । ଋକ୍‌ବେଦର ପୂର୍ବେ କୌଣସି ବେଦ ଥିବାର ବୋଧ ହେଉଅଛି । କାରଣ ଋକ୍‌ବେଦର ଋକ୍‌ଗୁଡ଼ିକ ଖୁବ୍ ଯତ୍ନରେ ରଚିତ ହୋଇଥିବା ଏବଂ ଗାନ ଉପଲକ୍ଷରେ ଉପଯୁକ୍ତ ପଦର ଯୋଜନା ଦେଖି କିଏ କହିବ ଯେ, ଏହା ଭାରତୀୟ ଆର୍ଯ୍ୟମାନଙ୍କର ପ୍ରଥମ ଭାବ ପ୍ରକାଶର ସମଷ୍ଟି ।

ଋକ୍‌ବେଦ ପୂର୍ବରେ ବେଦ ବା ବୈଦିକ ସାହିତ୍ୟରେ କାର୍ଯ୍ୟ ଏବଂ ସେଥିରେ ଆର୍ଯ୍ୟମାନଙ୍କର ପ୍ରଥମ ସରଳଭାବ ସ୍ଥାନ ପାଇଥିଲା ।

ଆର୍ଯ୍ୟମାନଙ୍କର ଭାରତକୁ ଆସିବାର ବହୁକାଳ ପରେ ଋକ୍‌ବେଦର ସୁଲଳିତ ଝଙ୍କାର ଋଷିକଣ୍ଠରୁ ବିନିର୍ଗତ ହୋଇଥିଲା । ଏହାର ପୂର୍ବେ ଯେ ସମୟରେ ଆର୍ଯ୍ୟମାନେ ଆହୁରି ସରଳଭାବରେ ଅଗ୍ନି ଓ ବରୁଣାଦିଙ୍କୁ ଆହ୍ୱାନ କରୁଥିଲେ, ସେହି କାଳରେ ମନୁ ରାଜପଦରେ ବରିତ ହୋଇଥିଲେ । ସେ ଯାହାହେଉ, ଉପରୋକ୍ତ କାରଣ ଦୃଷ୍ଟେ ଆମ୍ଭେମାନେ ମନୁଙ୍କୁ ଖ୍ରୀଷ୍ଟପୂର୍ବ ୧୦୦୦ ଅବ୍ଦର ପୂର୍ବ ସମୟର ରାଜା ବୋଲି ଧରିବାକୁ ବାଧ ।

ପୂର୍ବେ କୁହା ହୋଇଅଛି ଯେ, ମନୁଙ୍କର ରାଜା ହେବାର ଇଚ୍ଛା ନ ଥିଲା; କିନ୍ତୁ ରାଜା ହେଲେ । ମନୁ ରାଜା ହେଲାବେଳେ ପ୍ରଜାମାନେ ତାଙ୍କ ଆଗରେ ପ୍ରତିଜ୍ଞା କରି କହିଥିଲେ ଯେ, ସେମାନେ ରାଜାଙ୍କୁ ପଣ୍ୟ ଓ ପଶୁର ପଞ୍ଚାଶତ୍ ଭାଗ, ଧାନ୍ୟର ଦଶମଭାଗ କର ପ୍ରଦାନ କରିବେ । ସ୍ୱରୂପା କନ୍ୟା ପ୍ରଦାନ କରିବେ, ତାହାଙ୍କ ଶରୀର ରକ୍ଷା ନିମନ୍ତେ ଭଲ ଭଲ ଶସ୍ତ୍ରଧାରୀ ଯୋଦ୍ଧା ନିଯୁକ୍ତ କରିବେ ।

"ପଶୁନାମଧିପଞ୍ଚାଶତ୍ ହିରଣ୍ୟସ୍ୟ ତଥୈବ ଚ
ଧାନ୍ୟସ୍ୟ ଦଶମଂ ଭାଗଂ ଦାସ୍ୟମ କୋଷବର୍ଦ୍ଧନଂ
କନ୍ୟାଂ ଶୁଭେ ଚାରୁରୂପାଂ ବିବାହେଷୂଦ୍ୟତାସୁତ ।
। ମହାଭାରତ ଶାନ୍ତିପର୍ବ । ୪୦ ।

ଏହା ପରିବର୍ତ୍ତରେ ମନୁଙ୍କୁ କୌଣସି ପ୍ରତିଜ୍ଞା କରିବାକୁ ହୋଇ ନ ଥିଲା । ପ୍ରତିଜ୍ଞା ଏକତରଫିଆ ହେଲେସୁଦ୍ଧା, ରାଜା ଉତ୍ତମ ପଦ୍ଧତିରେ ପ୍ରଜାମାନଙ୍କୁ ପାଳନ କରିବେ- ଏହି କଥା ଯେ ଉହ୍ୟ ଥିଲା, ତାହା କହିବା ବାହୁଲ୍ୟ ମାତ୍ର । ମନୁଙ୍କ ପରେ ତାଙ୍କ ପୁତ୍ର କୀର୍ତ୍ତିମାନ (ରାମାୟଣକାରଙ୍କ ମତରେ ଇକ୍ଷ୍ୱାକୁ) ରାଜା ହେଲେ । କର୍ଦ୍ଦମ କୀର୍ତ୍ତିମାନଙ୍କ ଉତ୍ତରାଧିକାରୀ ଥିଲେ । କର୍ଦ୍ଦମଙ୍କ ପୁତ୍ର ଅନଙ୍ଗ ରାଜା ହୋଇଥିଲେ । ତାରପର ଅନଙ୍ଗଙ୍କ ପୁତ୍ର ଅତିବଳ । ଅତିବଳଙ୍କର ପୁତ୍ର ନ ଥିଲେ । ତାଙ୍କର ସୁନୀଥା ନାମରେ ଏକ କନ୍ୟା ଥିଲେ । ସୁନୀଥାଙ୍କର ପୁତ୍ର ବେଣ ରାଜପଦ ପ୍ରାପ୍ତ ହେଲେ । ଅଧର୍ମୀ, ଅଜିତେନ୍ଦ୍ରିୟ ଏବଂ ସ୍ୱେଚ୍ଛାଚାରୀ ଥିବାରୁ ସେ ପଦଚ୍ୟୁତ ହୋଇଥିଲେ । ମହର୍ଷିମାନେ ମନ୍ତ୍ରପୂତ କୁଶାଗ୍ରରେ ତାଙ୍କର ପ୍ରାଣ ନାଶ କରିଥିଲେ । ଭାରତ ଇତିହାସର ଅତି ପ୍ରାକ୍‌କାଳରେ ଦୁଷ୍ଟ ରାଜା ପ୍ରତି ପ୍ରଜାମାନଙ୍କର ଦଣ୍ଡବିଧାନ କରିବା କି ଆମ୍ଭମାନଙ୍କ ମନରେ ବିସ୍ମୟର ଛାଇ ପକାଉନାହିଁ?

ତଂ ପ୍ରଜାସୁ ବିଧର୍ମାଣଂ ରାଗଦ୍ୱେଷ ବଶାନୁଗଂ
ମନ୍ତ୍ରପୂତୈର୍କୁ ଶୈର୍ଜ୍ଜଘ୍ନୁର୍ଋଷୟୋ ବ୍ରହ୍ମବାଦିନଃ ।

ବେଣୁଙ୍କ ଶରୀରରୁ ଜାତ ପୁତ୍ର ପୃଥୁଙ୍କୁ ମହର୍ଷିମାନେ ରାଜା କଲେ । ମହାଭାରତକାର ଏହାଙ୍କର ଜନ୍ମ ବିଷୟରେ ଏକ ଅଦ୍ଭୁତ ଉପାଖ୍ୟାନ ଲେଖିଅଛନ୍ତି । (ବେଣୁଙ୍କ ମୃତ୍ୟୁ ପରେ ମହର୍ଷିମାନେ ମନ୍ତ୍ର ପ୍ରଭାବରେ ବେଣୁଙ୍କର ଦକ୍ଷିଣ ଉରୁ ଭେଦ

କରିବାରୁ ଏକ ହ୍ରସ୍ୱାଙ୍ଗ କୃଷ୍ଣବର୍ଣ୍ଣ ବିକୃତ ପୁରୁଷ ଜନ୍ମିଲା । ଋଷିମାନେ ତାହାର ନାମ ନିଷାଦ ରଖିଲେ । ଏହି ପୁରୁଷର ବଂଶସମ୍ଭୂତ ଶୈଳ, ବନ ଓ ବିନ୍ଧ୍ୟ ପର୍ବତବାସୀ କ୍ରୁର ସ୍ୱଭାବ ମ୍ଳେଛମାନେ ନିଷାଦ ନାମରେ ବିଖ୍ୟାତ ହୋଇଅଛନ୍ତି । ଅନନ୍ତର ମହର୍ଷିମାନେ ପୁନର୍ବାର ବେଣଙ୍କର ଦକ୍ଷିଣ ହସ୍ତ ଭେଦକଲେ । ଏହି ସ୍ଥଳରୁ ପୃଥୁ ଉତ୍ପନ୍ନ ହେଲେ ।) ଏହି ଉପାଖ୍ୟାନ ଆମ୍ଭମାନଙ୍କୁ ଅସମ୍ଭବ ବୋଲି ବୋଧ ହେଉଅଛି । ଏହା ଧରିନେବାକୁ ହେବ ଯେ, ପୃଥୁ ବେଣଙ୍କର ପୁତ୍ର ଏବଂ ନିଷାଦ ପ୍ରଭୃତି ଭାରତର ଅନାର୍ଯ୍ୟଜାତି । ଏହାର ଅନ୍ୟ କିଛି ଗୂଢ ରହସ୍ୟ ଥାଇପାରେ; କିନ୍ତୁ ଏତିକି ଅନୁମାନରେ ଆସୁଛି ଯେ, ବେଣଙ୍କର ଯେ କିଛି ସଦ୍‌ଗୁଣ ଥିଲା ସେହି ସମସ୍ତ ଗ୍ରହଣ କରି ପୃଥୁ ଜନ୍ମ ହୋଇଥିଲେ ଏବଂ ପରେ ସତ୍‌ପୁରୁଷଙ୍କଦ୍ୱାରା ଚାଳିତ ହେଲାରୁ ସେ ସବୁ ଗୁଣରେ ପୂର୍ଣ୍ଣହୋଇ ଠିଆହେଲେ । ଆଉ ଅନ୍ୟାନ୍ୟ ଯେ ସମସ୍ତ ମନ୍ଦଗୁଣ ଥିଲା, ତାହା ଅନାର୍ଯ୍ୟୋଚିତ । ଏହି ନିଷାଦାଦି ଅନାର୍ଯ୍ୟଙ୍କଠାରେ ତାହା ପରିଲକ୍ଷିତ ହୁଏ । ପୃଥୁ ରାଜପଦରେ ଅଭିଷିକ୍ତ ହୋଇ କୃତାଞ୍ଜଳିପୁଟରେ ମହର୍ଷିମାନଙ୍କୁ କହିଲେ, "ହେ ତପୋଧନ-ଗଣ, ମୋର ଧର୍ମ ଅର୍ଥ ଜାଣିବା ନିମନ୍ତେ ଅତି ସୂକ୍ଷ୍ମବୁଦ୍ଧି ଜାତ ହୋଇଅଛି । ମୁଁ ଏହି ବୁଦ୍ଧି ବଳରେ ଏହିକ୍ଷଣି କି କାର୍ଯ୍ୟ କରିବି ଆପଣମାନେ ତାହା ସବିଶେଷରେ ମୋତେ ନିର୍ଦ୍ଦେଶ କରିଦିଅନ୍ତୁ । ଆପଣମାନେ ମୋତେ ଯେପରି ଆଦେଶ ଦେବେ, ମୁଁ ଆଉ କିଛି ମାତ୍ର ନ ଭାବି ତାହା ପାଳନ କରିବି । ଏଥିରେ ଅନ୍ୟଥା ହେବ ନାହିଁ ।"

ତତସ୍ତୁ ପ୍ରାଞ୍ଜଳିର୍ବୈନ୍ୟ ମହର୍ଷୀନ୍ ତାନ୍ ଉବାଚହ ।
ସୁସୁକ୍ଷ୍ମା ମେ ସମୁତ୍ପନ୍ନାର୍ବୁଦ୍ଧି ଧର୍ମାର୍ଥଶଂସିନୀ
ଅନୟା କିଂ ମୟା କାର୍ଯ୍ୟଂ ତନ୍ମେ ତତ୍ତ୍ୱେନ ଶଂସତ
ଯନ୍ମାଂ ଭବନ୍ତୋ ବକ୍ଷ୍ୟନ୍ତି କାର୍ଯ୍ୟମର୍ଥ ସମନ୍ୱିତଂ
ତଦହଂ ବୈକରିଷ୍ୟାମି ନାତ୍ର କାର୍ଯ୍ୟ ବିଚାରଣା । ମହାଭାରତ ଶାନ୍ତି: ।୫୧

ଏହାରପର ଦେବତା ଓ ମହର୍ଷିମାନେ ପୃଥୁଙ୍କୁ ସମ୍ବୋଧନ କରି କହିଲେ " ଜିତେନ୍ଦ୍ରିୟ ହୋଇ ପ୍ରିୟାପ୍ରିୟ ତ୍ୟାଗକରି ବ୍ରାହ୍ମଣଙ୍କ ସହାୟତାରେ ରାଜଦଣ୍ଡ ଅବଲମ୍ବନ ପୂର୍ବକ ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ କର । ସ୍ୱେଚ୍ଛାଚାରରେ କୌଣସି କାର୍ଯ୍ୟର ଅନୁଷ୍ଠାନ କରିବନାହିଁ । ବେଦଧର୍ମ ରକ୍ଷାକର ।"

ତମୁଚୁସ୍ତତ୍ର ଦେବାସ୍ତେତେ ଚୈବ ପରମର୍ଷୟଃ
ନିୟତୋ ଯତ୍ର ଧର୍ମୋବୈ ତମଶଙ୍କ ସର୍ବେଷ ଜନ୍ତୁଷୁ
* * * *
ଯଶ୍ଚତ୍ର ଧର୍ମୋ ନିତ୍ୟୋକ୍ତୋ ଦଣ୍ଡନୀତି ବ୍ୟାପାଶ୍ରୟଃ
ତମଶଙ୍କଃ କରିଷ୍ୟାମି ପ୍ରବଶୋ ନ କଦାଚନ । ମହାଭା୬୮ ।୫୯

ପୃଥୁ ପ୍ରଥମ ରାଜା ବୋଲି ଅନେକ ସ୍ଥଳରେ ଲେଖାଅଛି । ଯଦ୍ୟାପି ମନୁ ପ୍ରଥମ, କିନ୍ତୁ କୌଣସି ପ୍ରତିଜ୍ଞାପାଶରେ ନିଜେ ବଦ୍ଧ ହୋଇ ନ ଥିଲେ ବୋଲି ସେ ଯେ ପ୍ରକୃତ ଅର୍ଥରେ ରାଜା, ତାହା ଧରା ହୋଇନାହିଁ । ଭାରତର ପ୍ରଥମ ରାଜାଙ୍କୁ କିପରି

ପ୍ରତିଜ୍ଞା ପାଶରେ ବଦ୍ଧ ହେବାକୁ ପଡ଼ିଥିଲା, ତାହା ଏଥିରୁ ଅନୁମେୟ । ଭାରତର ପୂର୍ବରାଜାମାନେ ଯେ ଏକବାରେ ସ୍ୱେଚ୍ଛାଚାରୀ ଥିଲେ, ତାହା କହିବା ଭ୍ରାନ୍ତିମୂଳକ ଅଟେ ।

ପୃଥୁର୍ବୈଣ୍ୟୋ ମନୁଷ୍ୟାଣାଂ ପ୍ରଥମୋଽଭିଷିକ୍ତିରେ । ଶତପଥ ବ୍ରାହ୍ମଣ ୫ ।୩ ।୫

ଆଦିରାଜା ପୃଥୁର୍ବୈଣ୍ୟ- ଅନୁଶାସନ ପର୍ବ

ପୂର୍ବଯୁଗରେ ବେଣରାଜା ଯେ କେବଳ ରାଜପଦରୁ ଚ୍ୟୁତ ହୋଇଥିଲେ- ଏପରି ନୁହେଁ । ବ୍ୟସନୀ ଆତତାୟୀ ରାଜାମାନେ ଏହି ଦଶା ପ୍ରାପ୍ତ ହେଉଥିଲେ ।

ଏତ ଗଲା ମହାଭାରତକାରଙ୍କର କଥା । ପୁରାଣ କବି ବାଲ୍ମୀକି ଅଶ୍ୱମେଧ ପର୍ବରେ ଖନିନେତ୍ର ରାଜା ରାଜପଦରୁ ବିତାଡ଼ିତ ହେବା ବିଷୟ ଲେଖିଅଛନ୍ତି ।

ଖନିନେତ୍ରସ୍ତୁ ବିକ୍ରାନ୍ତୋ ଜିତ୍ୱାରାଜ୍ୟମକଣ୍ଟକଂ
ନାଶକଦ୍ ରକ୍ଷିତୁଂ ରାଜ୍ୟଂ ନାନ୍ୱରଜ୍ୟନ୍ତତଂ ପ୍ରଜା
ତାମପସ୍ୟ ଚ ତଦ୍‌ରାଜ୍ୟେ ତସ୍ୟପୁତ୍ରଂ ସୁବର୍ଚସଂ
ଅଭ୍ୟଷିଞ୍ଚନ୍ତ ମୁଦିତା ହ୍ୟଭବନ୍ ସ୍ତଦା ।

ଶୁକ୍ରାଚାର୍ଯ୍ୟ ତାଙ୍କର ନୀତିଶାସ୍ତ୍ରରେ ଲେଖିଅଛନ୍ତି ଯେ ସଦ୍‌କୁଳଜାତ ହେଲେ ମଧ୍ୟ ଯଦ୍ୟପି ରାଜା ଗୁଣଦ୍ୱେଷୀ ନୀତିବିରୋଧୀ, ଦୁର୍ବଳ, ଅଧାର୍ମିକ ରାଜ୍ୟନାଶକାରୀ ହୁଅନ୍ତି, ତେବେ ପୁରୋହିତ ପ୍ରକୃତିପୁଞ୍ଜର ଅନୁମତି ଗ୍ରହଣ କରି ତାଙ୍କୁ ପଦଚ୍ୟୁତ କରିବେ ଏବଂ ତାଙ୍କ ସ୍ଥାନରେ ତାଙ୍କ ବଂଶଜ ଗୁଣବାନ ଲୋକଙ୍କୁ ରାଜ୍ୟଭାର ଦେବେ ।

ଗୁଣନୀତି ବଳଦ୍ୱେଷୀକୁ ଲଭୂତୋଽପ୍ୟଧାର୍ମିକ
ନୃପୋ ଯଦି ଭବେତ୍ତଂତୁ ତ୍ୟଜେଦ୍ରାଷ୍ଟ୍ର ବିନାଶକଂ
ତତ୍ପଦେ ତସ୍ୟକୁଳଜଂ ଗୁଣରକ୍ତଂ ପୁରୋହିତଃ
ପ୍ରକୃତ୍ୟନୁମତିଂକୃତ୍ୱା ସ୍ଥାପୟେ ଦ୍ରାଜ୍ୟଗୁପ୍ତୟେ । ଶୁକ୍ର ୨ ।୨୭୫ ।

ପୂର୍ବକାଳରେ ରାଜାମାନଙ୍କୁ କିପରି ସତର୍କ ଭାବରେ, ଚରିତ୍ର ଗୁଣରେ ଓ ନୀତିବଳରେ ରାଜକାର୍ଯ୍ୟ ପରିଚାଳନା କରିବାକୁ ହେଉଥିଲା ଓ ଅସମର୍ଥ ରାଜା କିପରି ପଦଚ୍ୟୁତ ହେଉଥିଲେ, ପୂର୍ବୋକ୍ତ ଦୃଷ୍ଟାନ୍ତଗୁଡ଼ିକ ତାର ମୂକସାକ୍ଷୀ ପ୍ରଦାନ କରୁଅଛି ।

ଆମ୍ଭମାନଙ୍କ ମନରେ ସ୍ୱତଃ ପ୍ରଶ୍ନ ଉଦିତ ହୁଏ, ବୈଦିକ ଯୁଗରେ କଣ ସତେ ରାଜନୀତିର ଚର୍ଚ୍ଚା ଥିଲା ? ବା ରାଜାଙ୍କର ସଭା, ପାରିଷଦବର୍ଗ ଏବଂ ଶାସନ ପ୍ରଭୃତି ଥିଲା । ପ୍ରକୃତରେ ଥିଲା । ରାଜନୀତି ବୈଦିକ ସାହିତ୍ୟର ଅଧିକାରର ବହିର୍ଭୂକ୍ତ । ରାଜନୀତି ବିଷୟ ଅପ୍ରାସଙ୍ଗିକ ବୋଲି ବେଦରେ ତାହାର ଆଲୋଚନା ନାହିଁ । ଯଦ୍ୟପି ବିଶଦ ଭାବରେ ତଦ୍‌ବିଷୟରେ ଉଲ୍ଲେଖ ନାହିଁ , ତଥାପି ଅନୁସନ୍ଧାନ କଲେ ଦେଖାଯାଏ ଯେ, ପ୍ରାଚୀନ ରାଜନୀତିର ଅନେକ ତତ୍ତ୍ୱ ତନ୍ମଧ୍ୟରେ ନିହିତ ଅଛି । ବେଦରେ ଅମାତ୍ୟର କଥା, ସଭା, ସମିତି ଓ ସଭାସଦଗଣଙ୍କର କଥା, ସୈନ୍ୟସାମନ୍ତ କଥା, କର୍ମଚାରିମାନଙ୍କର କଥା, ଚରମାନଙ୍କର କଥା, ଗ୍ରାମପାଳ ଓ ନଗରପାଳ କଥା ଦେଖିବାକୁ ମିଳେ:-

ଯାହି ରାଜେବାମାତା ଭଉେନ

ଯେପରି ରାଜା ଅମାତ୍ୟ ସହିତ ହସ୍ତୀ ପୃଷ୍ଠରେ ଆରୋହଣ କରି ଗମନ କରନ୍ତି ।

(୨) ନମଃ ସଭାଭ୍ୟଃ ସଭାପତି । ୧୬।୨୪। ଯର୍ଜୁ
ନମୋମନ୍ତ୍ରଣେ X X X ପତ୍ତିନାଂପତ୍ତୟେନମଃ । ୧୭।୨୭।
ଯର୍ଜୁବେଦ

ଏହି ରୂପରେ ସଭା, ସଭାପତି, ସେନା, ସେନାପତିର ଉଲ୍ଲେଖ ଯଜୁର୍ବେଦରେ ଅଛି ।

(୩) ବିଭ୍ରଦ୍ରାପି ହୀରଣ୍ମୟଂ ବରୁଣୋଽଦିସ୍ତୁ
ନିନିଂଦଂ ପରିସ୍ପଶୋଂ ନିଷେଦିରେ । ।।ଋକ୍‌ବେଦ ।।

ରାଜା ବରୁଣ ଶୁଦ୍ଧ କନକ ଖଚିତ କବଚରେ ଶରୀର ଆଚ୍ଛାଦନ କରି ଉପବେଶନ କରିଅଛନ୍ତି, ଚତୁର୍ଦ୍ଦିଗରେ ବିଶ୍ୱସ୍ତ ଚରମାନେ ମଧ୍ୟ ଉପବେଶନ କରିଅଛନ୍ତି ।

କିପରି ରାଜା ଗ୍ରାମମାନଙ୍କୁ ଦେଖିବାକୁ ଆସନ୍ତି ଏବଂ କିପରି ପ୍ରଜାମାନେ ତାଙ୍କୁ ସମାଦର କରନ୍ତି ଏବଂ କିପରି ତାଙ୍କୁ ବିଦାୟ ଦିଅନ୍ତି, ତାହା ବୃହଦାରଣ୍ୟକରେ ଦେଖିବାକୁ ମିଳେ । ତଳଲିଖିତ ଏହି କେତୋଟି ଧାଡ଼ିରୁ ତାହା ଜଣାଯିବ ।

ଯଥା ରାଜାନଂନମାୟିନ୍ତମୁଗ୍ରାଃ ପ୍ରତ୍ୟେନସା ସୂତଗ୍ରାମଣ୍ୟୋଽନ୍ନୈ ପାନୈରାରସଥୈଃ
ପରିକଳ୍ପନ୍ତେ ଆୟମାୟାତ୍ୟୟ ମାଛେତି x x x

ଯଥା ରାଜାନାଂ ପରିଶାନ୍ତି ମୁବାଃ ପ୍ରତ୍ୟେମିସଃସୂତ ଗ୍ରାମଣ୍ୟେଽଭି ସମାୟାନ୍ତି(୪ର୍ଥ), ତୃତୀୟ ବ୍ରାହ୍ମଣ ଯଥା- ମହାରାଜୋ ଜନପଦାନ୍ ଗୃହୀଶ୍ୱାସେ ଜନପଦେ ଯଥା- କାମଂ ପରିବର୍ତ୍ତତେ । ୨।୧।୧୫-

--ରାଜାନୋ ନ ପ୍ରଶସ୍ତିଭିଃ। ଋକ୍-୧।୧୭୩।୧୦

ରାଜନୀତି ତ୍ରୟୀବିଦ୍ୟାର ଅନ୍ତର୍ଗତ ନୁହେଁ ବୋଲି ତାହାର ସମାଲୋଚନା ବୈଦିକ ସାହିତ୍ୟରେ ନାହିଁ କିନ୍ତୁ ଲୋକମାନଙ୍କ ମଧ୍ୟରେ ଯେ ରାଜଧର୍ମ ପ୍ରଚଳିତ ଥିଲା ତାହାର ପ୍ରାଣ ଉପନିଷଦରେ ଅଛି। ସନତ୍‌କୁମାରଙ୍କ ପ୍ରତି ନାରଦ ଉକ୍ତି ପାଠ କଲେ ଜରାଯାଏ ଯେ ପୂର୍ବେ କ୍ଷତ୍ରବଦ୍ୟା ନାମରେ ନୀତିଶାସ୍ତ୍ରର କଥିତ ହେଉଥିଲା। ଛନ୍ଦୋ ଋଗ୍‌ବେଦଂ ଯର୍ଜୁବେଦଂ ସାମବେଦଂଥର୍ବଣଂ ଚତୁର୍ଥ----- ପୁରାଣଂ ପ୍ରଥମଂ +++++ ବ୍ରହ୍ମବିଦ୍ୟା, ଭୂତବିଦ୍ୟାଂ, କ୍ଷେତ୍ରବିଦ୍ୟାଂ, ନକ୍ଷତ୍ରବିଦ୍ୟାଂ-

ନାରଦ ଜଣେ ପ୍ରଧାନ ନୀତିଶାସ୍ତ୍ରକାର ଥିଲେ ଏହା ବାଣଭଟ୍ଟ, କାଦମ୍ବରୀରେ ସ୍ପଷ୍ଟ ଲେଖିଅଛନ୍ତି । ନାରଦୀୟମେବ ସମୁପର୍ଣ୍ୟମାନ ରାଜଧନଂ । ଋଗ୍ ବେଦରେ ଆମ୍ଭେମାନେ ପୁରୁ, ତୁର୍ବାସ, ଯଦୁ, ଅନଦୁହ୍ୟୁ ନାମରେ ପାଞ୍ଚଟି ପ୍ରଧାନ ଜାତି ଦେଖିବାକୁ ପାଉଁ । ଏହି ୫ ଜାତି ଛଡ଼ା ଆଉ ମଧ୍ୟ ବିଭନ୍ନଜାତୀୟ ଆର୍ଯ୍ୟ ଥିଲେ । ସେମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିଥିବାର କଥା ମଧ୍ୟ ଋଗ୍‌ବେଦରେ ମିଳେ । ପ୍ରତ୍ୟେକ ଜାତିରେ ଜଣେ ଜଣେ ରାଜା ଥିଲେ । ଅନ୍ତ ନରପତିମାନେ ସ୍ୱୟଂ ସେନାପତି ରୂପରେ ସଂଗ୍ରାମ କ୍ଷେତ୍ରରେ ସଂଗ୍ରାମ କରୁଥିଲେ । ଉପରୋକ୍ତ ପ୍ରଧାନ ୫ ଜାତିମାନଙ୍କ ମଧ୍ୟରୁ ଚାରିଜାତି ଅନ୍ୟ ୬ ଜାତୀୟ ଲୋକମାନଙ୍କ ସଙ୍ଗରେ ଯୋଗଦେଇ ଜ୧୦ଣ ରାଜାଙ୍କ ସେନାପତି ତୃତ୍ସୁରାଜା ସୁଦାସଙ୍କ ସଙ୍ଗରେ ପୁରୁଷ୍ଣି ନଦୀ କୂଳରେ ଯୁଦ୍ଧ କରିଥିଲେ । ଉକ୍ତ ଯୁଦ୍ଧରେ

ସୁଦାସ ଜୟୀ ହୋଇଥିଲେ । ଇକ୍ଷାକୁ ଜଣେ ଧନୀ ଓ କ୍ଷମତାଶାଳୀ ରାଜା ଥିବାର ଋଗ୍‌ବେଦରେ ଉଲ୍ଲେଖ ଅଛି । ଏହିପରି ଅନେକ ରାଜାଙ୍କର ନାମ ଋଗ୍‌ବେଦରେ ଦେଖିବାକୁ ମିଳେ । ରାଜାଙ୍କର ଯୁଦ୍ଧକାର୍ଯ୍ୟ ଓ ପ୍ରଜାପାଳନ କାର୍ଯ୍ୟ ବିଷୟରେ ଋଗ୍‌ବେଦରେ ପ୍ରମାଣ ମିଳିଲା । ବର୍ତ୍ତମାନ ରାଜକାର୍ଯ୍ୟ ପରିଚାଳନାର କିଞ୍ଚିତ ଆଭାସ ଦେଇ ଅନ୍ୟ ଯୁଗର ନୀତିର ଅବତାରଣା କରିବା । କେତେକ ଜଣ ମନୁଷ୍ୟର ସମଷ୍ଟି ଜନ ଓ କେତେକ ଜନମିଳି ଗ୍ରାମ ନାମ ଧାରଣ କରିଥିଲା । ପ୍ରତ୍ୟେକ ବିଭାଗରୁ ରାଜସ୍ୱ ଓ ଯୁଦ୍ଧଅର୍ଥେ ମନୁଷ୍ୟର ସଂଗୃହୀତ ହେବାର ବ୍ୟବସ୍ଥା ଥିଲା । ଶତ୍ରୁର ଆକ୍ରମଣରୁ ରକ୍ଷାପାଇବା ନିମନ୍ତେ ଉଚ୍ଚସ୍ଥାନରେ ପୁର ନିର୍ମାଣ କରାହେଉଥିଲା ଶାନ୍ତି ସମୟରେ ପ୍ରଜାପାଳନ କରିବା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ରାଜା ସ୍ୱେଚ୍ଛାଚାରୀ ନ ଥିଲେ । ତାଙ୍କର ସଭା ସମିତି ନିୟମିତ ହେଉଥିଲା । ରାଜାଙ୍କ ମୃତ୍ୟୁ ପରେ କ୍ଷତ୍ରୀୟ ସନ୍ତାନ ଓ ରାଜାଙ୍କର ଜ୍ୟେଷ୍ଠପୁତ୍ର ରାଜାଙ୍କର ଅଭିଷିକ୍ତ ହୁଅନ୍ତି । କିନ୍ତୁ ଉପଯୁକ୍ତ କ୍ଷତ୍ରୀୟ ଏବଂ ବୈଶ୍ୟ ଅଭାବ ହେଲେ ଗୁଣବାନ୍ ଶୂଦ୍ର ମଧ ରାଜା ହୋଇପାରେ କାରଣ ଗୁଣବାନ ଶୂଦ୍ର ପୈଜବନ ରାଜା ହୋଇଥିବା କଥା ମହାଭାରତକାର ଲେଖିଅଛନ୍ତି; ।

ଶୂଦ୍ରଃ ପୈଜବନୋ ନାମ ସହସ୍ରାଂଶ ଶତଂ ବଦୌ
ଐନ୍ଦ୍ରାଗ୍ନେନ ବିଧାନେନନ ଦକ୍ଷିଣାମି ନଃ ଶ୍ରୁତଂ; ।

ସୁଦାସ ଶୂଦ୍ରଥିଲେ ବୋଲି କେତେକ ଲୋକ କହନ୍ତି; କିନ୍ତୁ ପ୍ରମାଣ ଅଭାବରୁ ସେବିଷୟରେ କିଛି କୁହାଯାଇ ନ ପାରେ । ଚନ୍ଦ୍ରଗୁପ୍ତ ଦାସୀର ପୁତ୍ର ଥିଲେ, ମୁଦ୍ରାରାକ୍ଷସ ନାଟକରେ ଚାଣକ୍ୟଙ୍କ ମୁଖରେ ଚନ୍ଦ୍ରଗୁପ୍ତ ବୃଷଳ ନାମରେ ଅଭିହିତ ।

ଯୁଧିଷ୍ଠିର ଭୀଷ୍ମଙ୍କୁ ପଚାରିଥିଲେ- ହେ ପିତାମହ, ରାଜ୍ୟ ଦସ୍ୟୁଦ୍ୱାରା ଆକ୍ରାନ୍ତ ହେଲେ; କ୍ଷତ୍ରୀୟମାନେ ରାଜ୍ୟ ରକ୍ଷା କରିବାରେ ଅକ୍ଷମ ହେଲେ ଏବଂ ଲୋକମାନେ ଅଜ୍ଞାନ ଓ ପରଦାରରତ ହେଲେ ଯଦ୍ୟପି ବ୍ରାହ୍ମଣ, ବୈଶ୍ୟ, ଶୂଦ୍ର ଧର୍ମାନୁସାରେ ଦଣ୍ଡ ଧାରଣପୂର୍ବକ ଦସ୍ୟୁମାନଙ୍କଠାରୁ ରାଜ୍ୟ ରକ୍ଷାକରିବାକୁ ସମର୍ଥ ହୁଅନ୍ତି, ତାହାହେଲେ ତାହାଙ୍କୁ ସେ ବିଷୟରେ ଅନୁମୋଦନ ବା ନିବାରଣ କରାଯିବା କର୍ତ୍ତବ୍ୟ । ଭୀଷ୍ମ ଯୁଧିଷ୍ଠିରଙ୍କ ଉକ୍ତି ଶୁଣି କହିଲେ- ବତ୍ସ, ଯେ ଲୋକମାନଙ୍କୁ ବିପଦସାଗରରୁ ପରିତ୍ରାଣ କରନ୍ତି ସେ ଶୂଦ୍ର ହୁଅନ୍ତୁ ବା ଅନ୍ୟ କୌଣସି ବର୍ଣ୍ଣ ହୁଅନ୍ତୁ, ତାହାଙ୍କୁ ଅବଶ୍ୟ ସମ୍ମାନ କରିବା କର୍ତ୍ତବ୍ୟ ।

ଯ:- ଅଭିଥିତେ ଦସ୍ୟୁବଳେ............. ବ୍ରାହ୍ମଣୋ ଯଦିବା ବୈଶ୍ୟ; ଶୂଦ୍ରୋ ବା ରାଜସତ୍ତମଃ ଦସ୍ୟୁହେଽଥ ପ୍ରକାରକ୍ଷେଦ୍ ବର୍ଣ୍ଣଂ ଧର୍ମେଣ ଧରୟନ୍ x x x

ଭୀ:- ଅପାରେ ଯୋ ଭବେଦ୍ ପରମପ୍ଳବେ ଯୋପ୍ଳବୋ ଭବେଦ୍ ଶୂଦ୍ରୋ ବା ଯଦି ବାଽପ୍ୟନ୍ୟ ସର୍ବଥା ମାନମର୍ହତି

**କ୍ଷତ୍ରୀୟର ଉତ୍ପତ୍ତି:**

ବ୍ରହ୍ମଣୋ ମୁଖତୋ ସୃଷ୍ଟେ, ବ୍ରାହ୍ମଣୋ ରାଜପତ୍ତମଃ
ବାହୁଭ୍ୟାଂ କ୍ଷତ୍ରୀୟ ସୃଷ୍ଟଃ ଉରଭ୍ୟାଂ ବୈଶ୍ୟ ଏବ ଚ

ବର୍ଣ୍ଣାଂ ପରିଚର୍ଯ୍ୟାର୍ଥଂ ତ୍ରୟାଣାଂ ଭରତର୍ଷଭ
ବର୍ଣ୍ଣ ଚତୁର୍ଥ ସମ୍ଭତଃ ପଦ୍ଧା ଶୂଦ୍ରୋବିନିର୍ମିତଃ ।

ହେ ଧାଡସୋତ୍ତମ, ବ୍ରହ୍ମାଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରରୁ ବୈଶ୍ୟ ଏବଂ ଉପରୋକ୍ତ ତିନିବର୍ଣ୍ଣର ସେବା ନିମନ୍ତେ ବ୍ରହ୍ମାଙ୍କ ପାଦଦେଶରୁ ଶୂଦ୍ର ସୃଷ୍ଟି ହୋଇଅଛନ୍ତି ।

ମହାଭାରତରେ ଯେ ଏ ବର୍ଣ୍ଣ ବିଭାଗ କେବଳ ଆମ୍ଭେମାନେ ଦେଖିବାକୁ ପାଉଁ ତାହା ନୁହେଁ, ଯଜୁର୍ବେଦରେ ଏ ବିଭାଗର କଥା ଲେଖାଅଛି । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା, ଆମ୍ଭେମାନେ ଋକ୍‌ବେଦରେ ମଧ୍ୟ ଚାରିବର୍ଣ୍ଣର କଥା ଦେଖିବାକୁ ପାଉଁ । ୧୦ମ ମଣ୍ଡଳ ୯୦ ସୂକ୍ତରେ ଏହା ଦେଖୁଁ । ଏହି ସୂକ୍ତଟି ପୁରୁଷ ସୂକ୍ତ "ସହସ୍ରଶାର୍ଷା ପରୁଷ" । ପ୍ରଥମ ମଣ୍ଡଳରେ ମଧ୍ୟ ଏକ ସ୍ଥଳରେ ୫ବର୍ଣ୍ଣ ବୋଲି ଲିଖିତ ଅଛି ।

ଯ ଏକଶ୍ଚର୍ଷଣୀନାଂ ବସୂନାମିରଜ୍ୟତି ।
ଇନ୍ଦ୍ର ପଞ୍ଚକ୍ଷିତାନାଂ

ଏହି ପଞ୍ଚକ୍ଷିତିର ଅର୍ଥ- ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ନିଷାଦ ।

ବ୍ରାହ୍ମଣ ଶ୍ରେଷ୍ଠ ବର୍ଣ୍ଣର ଲୋକ- ଏହି ଅର୍ଥରେ କେବଳ ଆଠଟି ସ୍ଥାନରେ ଉଲ୍ଲେଖ ଅଛି । ଋକ୍‌ବେଦର ସାର ଦ୍ୱିତୀୟ ମଣ୍ଡଳଠାରୁ ସପ୍ତମଣ୍ଡଳର ଶେଷ ପର୍ଯ୍ୟନ୍ତ; ତତ୍ପରେ ପ୍ରଥମ, ଅଷ୍ଟମ, ନବମ, ଦଶମ ଯୁକ୍ତ ହୋଇଅଛି; ଏହା ପ୍ରକୃତରେ ଯୁକ୍ତିସଙ୍ଗତ ଯେ ୨ ।୭ ମଣ୍ଡଳର ରଚନା ପରେ ଉପରୋକ୍ତ ଚାରିମଣ୍ଡଳ ସାର ଋକ୍‌ବେଦ ସଙ୍ଗରେ ଯୁକ୍ତ ହୋଇଅଛି । ଏ ବିଷୟରେ ବିଶେଷ କହିବା ଏ ସ୍ଥଳେ ଯୁକ୍ତିସଙ୍ଗତ ନୁହେଁ । ମନୁଷ୍ୟମାନେ ସାଧାରଣତଃ ବିଶ ନାମରେ ଋଗ୍‌ବେଦରେ କଥିତ ହୋଇଅଛନ୍ତି ।.

ଅଗ୍ନିମଗ୍ନିଂ ହବାମଭିଃ ସଦା ହବଂତ ବିଶ୍‌ପତିଂ
ହବ୍ୟ ବାହଂ ପରପ୍ରିୟଂ; ।

ଏହିପରି ସର୍ବତ୍ର ବର୍ଣ୍ଣିତ ହୋଇଅଛି । ବ୍ରହ୍ମନ୍ ଶବ୍ଦଟି ପୁରୋହିତ ଅର୍ଥରେ ୪୮ ବାର ପ୍ରୟୋଗ ହୋଇଅଛି? ଅନାର୍ଯ୍ୟ ଜାତିମାନେ ଦାସ ବା ଦସ୍ୟୁ ନାମରେ ଅଭିହିତ ହେଉଥିଲେ ।

ଯେନେ ମା ବିଶ୍ୱା ଚ୍ୟବନା କୃତାନି
ଯ ଦାସ ବର୍ଣ୍ଣ ମଧରଂ ଗୁହାକଃ ।

ଏହି ଋଗ୍ ଇନ୍ଦ୍ରସୂକ୍ତର ଅନ୍ତର୍ଗତ । ଇନ୍ଦ୍ର ଆମ୍ଭମାନଙ୍କୁ ଅଭୀଷ୍ଟ ପ୍ରଦାନ କରନ୍ତି । ଇନ୍ଦ୍ର ଏହି ଚଞ୍ଚଳ ପୃଥିବୀକୁ ସ୍ଥିର କରିଅଛନ୍ତି ଏବଂ ନବଜାତି ଦାସମାନଙ୍କୁ ଗୁହଗାମୀ କରାଇ ଅଛନ୍ତି । ଏହି ଅନାର୍ଯ୍ୟ ଜାତି ଓ ପତିତ ଆର୍ଯ୍ୟ ଜାତି ଶୂଦ୍ର ନାମରେ ଅଭିହିତ ହେଲେ । ପୁରୋହିତାଦି କାର୍ଯ୍ୟରେ ବ୍ରାହ୍ମଣ, ଯୁଦ୍ଧାଦିରେ କ୍ଷତ୍ରିୟ, କୃଷି ଓ ମେଷପାଳାଦି କାର୍ଯ୍ୟରେ ବୈଶ୍ୟ ଓ ସେବା କାର୍ଯ୍ୟରେ ଶୂଦ୍ର- ବୁଦ୍ଧିବଳ ଓ କାର୍ଯ୍ୟକ୍ଷମତା ହେତୁ ଏବଂ ବିଭିନ୍ନ କାର୍ଯ୍ୟ 'ପରିଚାଳନାର ଆବଶ୍ୟକତା ହେତୁ ନିଯୁକ୍ତ ହେବା ସମ୍ଭବପର ବୋଲି ବୋଧ ହେଉଅଛି । ଯେତେବେଳେ ଦେଶରେ ମହାନ ବିପ୍ଳବ ଉପସ୍ଥିତ ହେଲା,

ଲୋକମାନେ ଭୟରେ ଏଣେତେଣେ ପଳାଇବାକୁ ଲାଗିଲେ, ସେହି ସମୟରେ ଭଗବାନ, ଇନ୍ଦ୍ର, ବାୟୁ, ଯମ, ସୂର୍ଯ୍ୟ, ଅଗ୍ନି, ବରୁଣ, ଚନ୍ଦ୍ର, କୁବେର ପ୍ରଭୃତିଙ୍କଠାରୁ ସାରଅଂଶ ଗ୍ରହଣକରି ରାଜା ସୃଷ୍ଟିକଲେ ।

ଅରାଜକେ ହି ସର୍ବସ୍ମିନ୍ ସର୍ବତୋ ବିଦ୍ରୁତେ ଭୟାତ୍
ରକ୍ଷାର୍ଥ ମସ୍ୟ ସର୍ବସ୍ୟ ରାଜାନମଂସୃଜତ୍ ପ୍ରଭୁଃ
ଇନ୍ଦ୍ରାନିଳ ଯମାର୍କାଣାମଗ୍ନେଶ୍ଚ ବାରୁଣସ୍ୟ
ଚନ୍ଦ୍ର ବିତେଶୟୋଶ୍ଚାପି ମାତ୍ରା ନିହୃତ୍ୟ ଶାଶ୍ୱତୀଃ ।

ଇନ୍ଦ୍ର ତପସ୍ୟାବଳରେ ଯେପରି ସ୍ଥାବର ଜଙ୍ଗମର ରାଜା ଓ ଭାବଗ୍ରାହୀ, ରାଜା ମଧ୍ୟ ସେହିପରି ସମସ୍ତ ସଂସାରର ରାଜା ଓ ଭାବଗ୍ରାହୀ । ବାୟୁ ଗନ୍ଧର ପ୍ରେରକ, ରାଜା ସତ୍ ଅସତ୍ କାର୍ଯ୍ୟର ପ୍ରବର୍ତ୍ତକ ଓ ନିବର୍ତ୍ତକ । ରାଜା ସୂର୍ଯ୍ୟଙ୍କ ପରି ଧର୍ମର ରକ୍ଷାକାରୀ ଓ ଅଧର୍ମର ନାଶକାରୀ,; ରାଜା ଯମ ସଦୃଶ ଦୁଷ୍କର୍ମଦଣ୍ଡକ, ଅଗ୍ନି ତୁଲ୍ୟ ସେ ଶୁଚି ଏବଂ ଭାବଗ୍ରାହୀ; ବରୁଣ ଜଳଦାନରେ, ରାଜା ଧନଦାନରେ ସୃଷ୍ଟି ରକ୍ଷାକରନ୍ତି । ଚନ୍ଦ୍ର ଯେପରି ଲୋକର ମନକୁ ପ୍ରଫୁଲ୍ଲିତ କରେ, ରାଜା ସେହିପରି ନିଜ ଚରିତ୍ର ଗୁଣରେ ଲୋକମାନଙ୍କର ଚିତ୍ତ ହରଣ କରନ୍ତି; କୁବେରଙ୍କ ତୁଲ୍ୟ ରାଜା କୋଷବର୍ଦ୍ଧକ । ରାଜାଙ୍କୁ ମନୁଷ୍ୟ କହିଲେ ଅବମାନନା କରାହୁଏ, ରାଜା ନରରୂପଧାରୀ ଜଣେ ପ୍ରଧାନ ଦେବତା ।

ନ ହି ଜାତୁ ଅବମନ୍ତବ୍ୟଃ ମନୁଷ୍ୟ ଇତିଂ ଭୂମିପଃ
ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି । ଶାନ୍ତିପର୍ବ- ୬୮ ।

**ରାଜା କାଳର କାରଣ**:- ରାଜା ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗର କାରଣ ବୋଲି କହିବାର ହେବ । ରାଜା ଯେତେବେଳେ ଦଣ୍ଡନୀତି ଅନୁସାରେ ସୂଚାରୂରୂପେ ରାଜ୍ୟ ପାଳନ କରନ୍ତି, ସେତେବେଳେ ସତ୍ୟଯୁଗ ନାମରେ ଶ୍ରେଷ୍ଠକାଳ ଉପସ୍ଥିତ ହୁଏ । ଏହି ଯୁଗରେ ସମସ୍ତ ବର୍ଣ୍ଣର ଅନ୍ତଃକରଣ ଧର୍ମ ବିଷୟରେ ଆସକ୍ତ ଥାଏ । ଏହି କାଳରେ ଧର୍ମର କେବଳ ପ୍ରାଦୁର୍ଭାବ ହୋଇଥାଏ, ଯେତେବେଳେ ରାଜା ଚତୁଷ୍ପାଦ ଦଣ୍ଡନୀତିର ତିନିପାଦ ଗ୍ରହଣ କରି ରାଜ୍ୟ ପାଳନ କରନ୍ତି, ସେକାଳକୁ ତ୍ରେତାଯୁଗ କୁହାଯାଏ । ପାପର ଏକପାଦ ମାତ୍ର ଏହି ଯୁଗରେ ସଞ୍ଚାରିତ ହୁଏ । ଯେତେବେଳେ ରାଜା ଦଣ୍ଡନୀତିର ଅର୍ଦ୍ଧାଂଶ ପରିତ୍ୟାଗ ପୂର୍ବକ ଅର୍ଦ୍ଧାଂଶ ଗ୍ରହଣ କରି ପ୍ରଜା ପାଳନକରନ୍ତି, ସେ କାଳ ଦ୍ୱାପରଯୁଗ ନାମରେ ଅଭିହିତ । ଅଧର୍ମର ଦୁଇପାଦ ସେତେବେଳେ ଭୂମଣ୍ଡଳରେ ସଞ୍ଚାରିତ ହୁଏ; ଯେ ସମୟରେ ନରପତି ତିନି ଅଂଶ ବା ଏକବାରେ ଦଣ୍ଡନୀତି ପରିତ୍ୟାଗ କରି ପ୍ରଜାମାନଙ୍କୁ ବିବିଧପ୍ରକାର କଷ୍ଟ ପ୍ରଦାନ କରନ୍ତି- ସେହି କାଳକୁ କଳିଯୁଗ କୁହାଯାଏ ।

"କାଳୋ ବା କାରଣଂ ରାଜ୍ଞୋ ରାଜା ବା କାଳ କାରଣଂ
ଇତି ବା ସଂଶୟୋ ମାଭୂଦ୍ରାଜା କାଳସ୍ୟ କାରଣଂ" ।

ପୂର୍ବକାଳରେ ଭାରତର ରାଜସିଂହାସନରେ ମୂର୍ଖରାଜାର ସ୍ଥାନ ନ ଥିଲା, ଯଦି ଥିଲା ତାହାର ପରିଣାମ ଅତିବ ବିଷମ । ଭାରତର ପୂର୍ବ ରାଜାମାନେ ସୁପଣ୍ଡିତ ଥିଲେ ।

ଅନ୍ୱିକ୍ଷିକୀ, ତ୍ରୟୀବାର୍ତ୍ତା, ଦଣ୍ଡନୀତିରେ ବ୍ୟୁତ୍ପତ୍ତି ଲାଭ କରିଥିବା ରାଜାଙ୍କର ରାଜ୍ୟ ସୁଖରେ ଶାସିତ ହେଉଥିଲା ।

ଆନ୍ୱିକ୍ଷିକୀ ତ୍ରୟୀବାର୍ତ୍ତା ଦଣ୍ଡନୀତି ଶାଶ୍ୱତୀ
ବିଦ୍ୟାଶ୍ଚୟ ଏବୈତାଃଭ୍ୟସେଦ୍ ନୃପତି ସଦା ।

ଆନ୍ୱିକ୍ଷିକୀ:- ତର୍କଶାସ୍ତ୍ର ଓ ବେଦାନ୍ତରେ ଆତ୍ମଜ୍ଞାନ ହୁଏ ଏବଂ ଆତ୍ମଜ୍ଞାନ ହେଲେ ହର୍ଷ ଓ ଶୋକରେ ଲୋକେ ସମଭାବ ଧାରଣ କରନ୍ତି ।

ତ୍ରୟୀବେଦ ପାଠରେ ଲୋକର ଧର୍ମ ଓ ଅଧର୍ମ ଜ୍ଞାନ ହୁଏ, କାମ ଓ ଅକାମ ମଧ୍ୟ ଜାଣିପାରେ ।

ବାର୍ତ୍ତା- ସୁଧାଦିଗ୍ରହଣ, କୃଷି, ବାଣିଜ୍ୟ, ଗୋରକ୍ଷାଦି କାର୍ଯ୍ୟ ବିଷୟକ ବିଚାର ବାର୍ତ୍ତାରୁ ଉପଲବ୍ଧି ହୁଏ । ଏହା ପାଠକଲେ ଅର୍ଥ ଓ ଅନର୍ଥ ବିଷୟକ ଜ୍ଞାନ ଜନ୍ମ ହୁଏ ।

ପ୍ରାଣୀମାନଙ୍କର ରକ୍ଷଣାବେକ୍ଷଣ କରିବା ରାଜାଙ୍କର ପ୍ରଧାନ କର୍ମ । ଯେ ରାଜା ଭୀମକାନ୍ତ ଗୁଣରେ ବିଭୂଷିତ, ଅର୍ଥାତ୍ କ୍ରୂରତା, କୁଟିଳତା, ଭୀଷଣତା, ସତ୍ୟ, ସରଳତା ଓ ତେଜ ପ୍ରଭୃତି ବିବିଧ ଗୁଣରେ ଭୂଷିତ ହୁଅନ୍ତି, ସେ ନିଶ୍ଚୟ ସୁଖଭୋଗ କରିପାରନ୍ତି । ଯେ କାର୍ଯ୍ୟ ସାଧନ ସମୟରେ ଯେପରି ରୂପ ଧାରଣ କଲେ ହିତ ହେବାର ସମ୍ଭାବନା, ସେହି କାର୍ଯ୍ୟସାଧନା ସମୟରେ ସେହିପରି ରୂପ ଧାରଣ କରିବା ରାଜାଙ୍କର କର୍ତ୍ତବ୍ୟ । ସାଧନ ସମୟରେ କେବଳ ଦୈବର ଉପରେ ନିର୍ଭର ନ କରି, ବିବିଧ ଉପାୟ ଅବଲମ୍ବନ କରିବା ଉଚିତ୍ । ଦୈବ ଓ ପୁରଷକାର ପରସ୍ପରର ଆଶ୍ରୟ ଗ୍ରହଣକରି ରହିଅଛି । କାର୍ଯ୍ୟଜ୍ଞ ଲୋକମାନେ ପୁରୁଷକାରକୁ ଶ୍ରେଷ୍ଠ ବୋଲି ଗଣନା କରନ୍ତି ଏବଂ ଅସାର ଲୋକମାନେ ଦୈବକୁ କେବଳ ବଳବାନ ଜ୍ଞାନକରି ସର୍ବଦା ତାହାର ଉପାସନା କରନ୍ତି । ରାଜା ଅର୍ଥ ସଂଗ୍ରହ କରିବାକୁ ବାସନା କଲେ, ଧର୍ମର ଚିହ୍ନ ପ୍ରକାଶ କରି ସ୍ୱୀୟ କ୍ରୂରତାଦି ଦୋଷ ଗୋପନ କରିବେ ଏବଂ ପ୍ରତିନିୟତ ଉଦ୍ୟତଦଣ୍ଡ ଓ ଅପ୍ରମତ୍ତ ହୋଇ ପ୍ରଜାମାନଙ୍କର ଆୟବ୍ୟୟ ବିବେଚନାପୂର୍ବକ କର ଗ୍ରହଣ କରିବେ । ରାଜା ଅର୍ଥ ଦାନକରି ଲୁବ୍ଧକୁ ଆୟତ୍ତ କରିବାରେ ଚେଷ୍ଟା କରିବେ । ଲୋଭାକ୍ରାନ୍ତ ଲୋକର ଅତ୍ୟଧିକ ଦୋଷ ଜନ୍ମିବାର ସମ୍ଭାବନା । ଅତଏବ ଲୁବ୍ଧବ୍ୟକ୍ତିକୁ କଦାଚ ପ୍ରଶ୍ରୟ ଦେବେନାହିଁ । ରାଜା ଦଣ୍ଡଧାରଣ ପୂର୍ବକ ଲୋକମାନଙ୍କର ହିତ ସାଧନ କରିବେ । ଇହଲୋକରେ ଯାହାଦ୍ୱାରା ସମସ୍ତେ ବଶବର୍ତ୍ତୀ ହୁଅନ୍ତି, ତାହାର ନାମ ଦଣ୍ଡ । ଯାହାଦ୍ୱାରା ଧର୍ମ ଲୋପ ନ ହୋଇ କେବଳ ଧର୍ମର ପ୍ରଚାର ହୋଇଥାଏ, ତାହାକୁ ବ୍ୟବହାର କରନ୍ତି । ଯେ ସୁବିହିତ ଦଣ୍ଡାଦିଦ୍ୱାରା ପ୍ରିୟ ଓ ଅପ୍ରିୟ ବ୍ୟକ୍ତିକୁ ସମଭାବରେ ରକ୍ଷଣାବେକ୍ଷଣ କରନ୍ତି, ଯେ ସାକ୍ଷାତ ଧର୍ମସ୍ୱରୂପ ବ୍ୟବହାର ଅର୍ଥ ଓ ପ୍ରତ୍ୟର୍ଥୀମାନଙ୍କଦ୍ୱାରା ଉତ୍ପନ୍ନ ହୋଇଥାଏ, ଅର୍ଥୀ ଓ ପ୍ରତ୍ୟର୍ଥୀ ମଧ୍ୟରେ ଜଣକର ପ୍ରତି ବିଶ୍ୱାସ କରି ଅନ୍ୟ ଜଣକୁ ଯେ ଦଣ୍ଡ ପ୍ରଦତ୍ତ ହୋଇଥାଏ, ତାହା ଭୂପାଳନିଷ୍ଠ; ସୁତରାଂ ଭୂପାଳଗଣଙ୍କର ତାହା ଅବଗତହେବା ନିତାନ୍ତ ଆବଶ୍ୟକ । ଏହି ବିଶ୍ୱ ସଂସାର ଦଣ୍ଡର ଅଧୀନ । ରାଜ୍ୟର ଶାନ୍ତି ସ୍ଥାପନାର୍ଥେ ପିତା, ମାତା, ଭ୍ରାତା, ଭାର୍ଯ୍ୟା

ଓ ପୁରୋହିତ ପ୍ରଭୃତି ଯେ କେହି ହେଉନ୍ତୁ ପଛକେ, ଅପରାଧୀ ହେଲେ, ରାଜା ତାଙ୍କ ପ୍ରତି ଦଣ୍ଡବିଧାନ କରିବେ । ରାଜାଙ୍କର ଅଦଣ୍ଡ୍ୟ କେହି ନାହିଁ ।

ମାତା ପିତା ଚ ଭ୍ରାତା ଚ ଭାର୍ଯ୍ୟା ଚୈବ ପୁରୋହିତଃ
ନା ଦାଣ୍ଡେ ବିଦ୍ୟତେ ରାଜ୍ଞୋ ଯ ସ୍ୱଧର୍ମେଣ ତଷ୍ଠତି । (ମହାଭାରତ: ଶାନ୍ତି)

ରାଜା କଦାଚ ନୀତି ପରିତ୍ୟାଗ କରିବେନାହିଁ । ଯେ ରାଜା ନୀତି ପରିତ୍ୟାଗକରି କେବଳ ଇଚ୍ଛାନୁରୂପ କାର୍ଯ୍ୟ କରନ୍ତି, ସେ ମନ୍ଦଦଶାକୁ ପାପ୍ତ ହୁଅନ୍ତି । ରାଜା ବୃଦ୍ଧ ସମୟଜ୍ଞ ଲୋକମାନଙ୍କ ଅନୁମତରେ କାର୍ଯ୍ୟ କଲେ, ରାଜ୍ୟ ସମୃଦ୍ଧିସମ୍ପନ୍ନ ହୁଏ । ଯେ ରାଜା ଇନ୍ଦ୍ରିୟମାନଙ୍କୁ ଦମନ କରିନାହାନ୍ତି, ସେ ରାଜା ବିନୟୀ ନୁହନ୍ତି; ଯେ ଶାସ୍ତ୍ରାଦି ଅଧ୍ୟୟନ କରିନାହାନ୍ତି, ସେ ଅବିନୟୀ ଏବଂ ଯେ ରାଜା ବିନୟୀ ନୁହନ୍ତି, ତାଙ୍କ ପକ୍ଷରେ ନୀତିମାନ୍ ହେବା ବିଡ଼ମ୍ବନା ।

ନୀତିକାରମାନେ ରାଜାଙ୍କର ଆଠଟି ପ୍ରଧାନ କାର୍ଯ୍ୟ ନିର୍ଦ୍ଧାରଣ କରିଅଛନ୍ତି । ଦୁଷ୍ଟଦମନ, ଦାନ, ପ୍ରଜାପାଳନ, ରାଜସୂୟାଦି ଯଜ୍ଞସାଧନ, ଅର୍ଥସଞ୍ଚୟ, ପ୍ରବଳ ଶତ୍ରୁକୁ କରଦାନ ବା ସାମନ୍ତ ରାଜାମାନଙ୍କଠାରୁ କର ଗ୍ରହଣ, ରିପୁବଳ ନାଶ ଓ ନୂତନ ଦେଶ ଅଧିକାର ।

ରାଜା ଅତ୍ୟନ୍ତ ଉଗ୍ର ହେଲେ, ପ୍ରଜାମାନେ ଉତ୍ତେଜିତ ହୁଅନ୍ତି ଏବଂ ରାଜ୍ୟରେ ଅଶାନ୍ତି ସ୍ଥାପନର କାରଣ ହୁଅନ୍ତି । ସର୍ବଦା କ୍ଷମାଶୀଳ ହେବା ରାଜାଙ୍କର କର୍ତ୍ତବ୍ୟ ନୁହେଁ, ନିତାନ୍ତ କ୍ଷମାଶୀଳ ରାଜା ଅଧମ ବୋଲି ପରିଗଣିତ ହୁଅନ୍ତି । ଅତଏବ ଅତ୍ୟନ୍ତ ମୃଦୁ ଓ ଅତ୍ୟନ୍ତ ତୀକ୍ଷ୍ଣ ହେବା ରାଜାଙ୍କର ଉଚିତ ନୁହେଁ । ବସନ୍ତ କାଳର ସୂର୍ଯ୍ୟପରି ଅଳ୍ପ ମୃଦୁ ଓ ତେଜସ୍ୱୀ ହେବା ବାଞ୍ଛନୀୟ ।

ତସ୍ମାନ୍ନୈବ ମୃଦୁର୍ନିତ୍ୟଂ ତୀକ୍ଷ୍ଣୋନୈବ ଭବେନ୍ନୃପଃ;
ବାସନ୍ତାର୍କଇବ ଶ୍ରୀମାନ୍ନ ଶୀତୋ ନଚ ଘର୍ମଦଃ । (ମହାଭାରତ: ଶାନ୍ତି)

ଭୃତ୍ୟମାନଙ୍କ ସହିତ ହାସ୍ୟ ପରିହାସ କରିବା ରାଜାଙ୍କର ବିଧେୟ ନୁହେଁ । କାରଣ ତାହା ହେଲେ, ଉପଜୀବୀମାନେ ପ୍ରଶ୍ରୟଯୁକ୍ତ ହୋଇ ସ୍ୱାମୀର ଅବମାନନା କରନ୍ତି, ଆପଣାର କର୍ତ୍ତବ୍ୟ କାର୍ଯ୍ୟରେ ମନୋଯୋଗ ଦିଅନ୍ତିନାହିଁ, ଗୋପନୀୟ ବିଷୟ ଜାଣିବାରେ ଚେଷ୍ଟା କରନ୍ତି, ଅନୁଚିତ ବିଷୟ ପ୍ରାର୍ଥନା କରନ୍ତି ଏବଂ ଅନେକ ସମୟରେ ମଧ୍ୟ ସ୍ୱାମୀଙ୍କ ପ୍ରତି କ୍ରୁଦ୍ଧ ହୋଇଉଠନ୍ତି । ଉତ୍କୋଚ ଗ୍ରହଣ ଏବଂ ବଞ୍ଚନାଦ୍ୱାରା କାର୍ଯ୍ୟହାନି କରିବାରେ ତ୍ରୁଟି କରନ୍ତିନାହିଁ । କୃତ୍ରିମ ପତ୍ରଦ୍ୱାରା ରାଜାଙ୍କୁ ବିନଷ୍ଟ କରନ୍ତି; ସ୍ୱାମୀଙ୍କୁ କ୍ରୁଦ୍ଧ ଦେଖିଲେ ପରିହାସ କରନ୍ତି । ବେତନରେ ସନ୍ତୁଷ୍ଟ ନ ହୋଇ ରାଜକର ଅପହରଣ କରନ୍ତି । ସୂତ୍ରବଦ୍ଧ ପକ୍ଷୀପରି ପ୍ରଭୁଙ୍କୁ ନେଇ କ୍ରୀଡ଼ା କରିବାରେ ଲାଗନ୍ତି ଏବଂ ଲୋକ ସମାଜରେ ରାଜା ଆମ୍ଭମାନଙ୍କର ବାଧ୍ୟ ବୋଲି ଗର୍ବ ପ୍ରକାଶ କରନ୍ତି । ନରପତି ଆମୋଦ-ପରାୟଣ ଏବଂ ମୃଦୁ ସ୍ୱଭାବ ହେଲେ, ଏହିରୂପ ନାନାପ୍ରକାର ଦୋଷ ପ୍ରାଦୁର୍ଭୂତ ହୋଇଥାଏ । ରାଜା ସମସ୍ତଙ୍କର ବିଶ୍ୱାସର ପାତ୍ର ହେବେ ଏବଂ ନିଜେ କାହାରିକୁ

ଅତ୍ୟଧିକ ବିଶ୍ୱାସ କରିବେନାହିଁ, ଏପରିକି ନିଜର ପତ୍ନୀ, ପୁତ୍ର ଓ ଭ୍ରାତାକୁ ମଧ୍ୟ ଅତ୍ୟଧିକ ବିଶ୍ୱାସ କରିବା ଅନୁଚିତ ବୋଲି ମହାଭାରତକାର ଏବଂ ଶୁକ୍ରାଚାର୍ଯ୍ୟ ଲେଖିଅଛନ୍ତି; ।

ନାତ୍ୟନ୍ତଂ ବିଶ୍ୱସେଦ୍ କିଞ୍ଚିତ ବିଶ୍ୱସ୍ତମପି ସର୍ବଦା
ପୁତ୍ରଂ ବା ଭ୍ରାତରଂ ଭାର୍ଯ୍ୟାମମାତ୍ୟ ମଧିକାରିଣଂ ।

ପ୍ରଜାମାନଙ୍କର ବିନାନୁମୋଦନରେ ରାଜା କୌଣସି କାର୍ଯ୍ୟ କରି ପାରିବେନାହିଁ । ସ୍ୱେଚ୍ଛାଚାରୀ ରାଜାଙ୍କ ପ୍ରତି ପ୍ରଜାମାନଙ୍କର ଭକ୍ତି କମିଯାଏ ଏବଂ ପ୍ରଜାମାନେ ନାନା ବିଦ୍ରୋହଜନକ କାର୍ଯ୍ୟ କରନ୍ତି । ରାଜା ଭୃତ୍ୟ ପକ୍ଷପାତୀ ନ ହୋଇ, ପ୍ରଜା ପକ୍ଷପାତୀ ହେବେ । ବହୁ ପ୍ରଜା କୌଣସି ରାଜପୁରୁଷର ଦୋଷ ଦେଖାଇଲେ, ରାଜା ତାକୁ କାର୍ଯ୍ୟରୁ ଅପସାରିତ କରିବେ (ଶୁକ୍ର) ।

ରାଜା ପ୍ରତିଦିନ ହସ୍ତୀ ପୃଷ୍ଠରେ ପୁର ଭ୍ରମଣକରି ପ୍ରଜାମାନଙ୍କର ମନହରଣ କରିବେ ଏବଂ ରାଜକର୍ମଚାରୀମାନଙ୍କ କାର୍ଯ୍ୟ ପରୀକ୍ଷା କରିବା ଉଦ୍ଦେଶ୍ୟରେ ପ୍ରତିବର୍ଷ ଗ୍ରାମ, ପୁର, ଦେଶ ଭ୍ରମଣ କରିବେ । (ଶୁକ୍ର)

ରାଜା ବାକ୍ୟରେ ବିନୟ ପ୍ରଦର୍ଶନ ଏବଂ କାମକ୍ରୋଧକୁ ବଶୀଭୂତ କରି ମୃଦୁଭାବରେ ଲୋକମାନଙ୍କ ସହିତ ସମ୍ଭାଷଣ କରିବେ ।

ରାଜା ଗୃହସ୍ଥ ଧର୍ମ ପରିତ୍ୟାଗ କରି ତପସ୍ୱୀ ହୋଇ ଆପଣାର ଜୀବନ ରକ୍ଷା ନିମନ୍ତେ ଭିକ୍ଷାବୃତ୍ତି ଅବଲମ୍ବନ କରିପାରନ୍ତି; କିନ୍ତୁ ଭିକ୍ଷାବୃତ୍ତି ଅବଲମ୍ବନ କରିବା କ୍ଷତ୍ରିୟାଦି ବର୍ଣ୍ଣର କାମ୍ୟଧର୍ମ ବା ନିତ୍ୟଧର୍ମ ନୁହେଁ । ଅନ୍ୟ ବର୍ଣ୍ଣମାନଙ୍କର ଯାବତୀୟ ଧର୍ମ ଓ ଉପଧର୍ମ ସମସ୍ତ ରାଜଧର୍ମର ଆୟତ୍ତ । ରାଜା ପ୍ରଜାମାନଙ୍କର ତ୍ରିବର୍ଗର ମୂଳ, ଅତଏବ ରାଜାଙ୍କର ରାଜ୍ୟ ଗ୍ରହଣରେ ବିଗତସ୍ପୃହ ହେବା ଉଚିତ ନୁହେଁ । ମାନବମଣ୍ଡଳୀ ମଧ୍ୟରେ କ୍ଷତ୍ରିୟମାନେ ଶ୍ରେଷ୍ଠଧର୍ମର ସେବା କରିଥାଆନ୍ତି । ଦଣ୍ଡନୀତି ନ ରହିଲେ, ସମୁଦାୟ ଧର୍ମ ଏକାବେଳକେ ନଷ୍ଟ ହୋଇଯିବ ।

**ରାଜାଙ୍କର ଦୈନିକକାର୍ଯ୍ୟ:**

ଶୁକ୍ରାଚାର୍ଯ୍ୟଙ୍କ ମତରେ- ରାଜା ରାତ୍ରର ଶେଷ ପ୍ରହରରେ ଉଠି ଗତଦିନର ଆୟବ୍ୟୟର ହିସାବ ନେବେ । ଭଣ୍ଡାରରେ କେତେ ଟଙ୍କା ରହିଲା ଓ କେତେ ଟଙ୍କା ଖର୍ଚ୍ଚହେଲା, ତାହା ନିଜ ସମ୍ମୁଖରେ ଲେଖାଇ ମୁଦ୍ରାଚିହ୍ନ ଦେବେ ଏବଂ ଉକ୍ତ ଦିବସରେ ନିଜ ରାଜ୍ୟରେ କେତେ ବ୍ୟୟହେବ, ତାହା ନିର୍ଦ୍ଧାରଣ କରି ନିଜ ଭଣ୍ଡାରରୁ ସ୍ୱ ସମକ୍ଷରେ ବାହାର କରାଇବେ । ଏ କାର୍ଯ୍ୟ କରିବା ନିମନ୍ତେ ଦୁଇ ମୁହୂର୍ତ୍ତ ଦେଇ ତପ୍ରେ ଏକ ମୁହୂର୍ତ୍ତ ମଧ୍ୟରେ ନିତ୍ୟକର୍ମ ଶେଷ କରିବେ । ତାର ପର ଦୁଇ ମୁହୂର୍ତ୍ତ ମଧ୍ୟରେ ସନ୍ଧ୍ୟା, ପୁରାଣପାଠ ଦାନାଦି କାର୍ଯ୍ୟ ସମାପନ କରିବେ । ପ୍ରାତଃକାଳ ମୁହୂର୍ତ୍ତକ ଆଶ୍ୱାଦିରେ ଗମନାଗମନ କରି ବ୍ୟାୟାମ କରିବେ । ଏ କାର୍ଯ୍ୟ ଶେଷକରି ରାଜା ଭୃତ୍ୟମାନଙ୍କୁ ପରସ୍କାର ବିତରଣ କରିବେ । ତପ୍ରେ ଚାରି ମୁହୂର୍ତ୍ତ ମଧ୍ୟରେ ଧାନ୍ୟାଦି ଏବଂ ସୈନ୍ୟ ସଂକ୍ରାନ୍ତ କାର୍ଯ୍ୟ ବୁଝିବେ ଏବଂ ରାଜ୍ୟର ଅବସ୍ଥା ମଧ୍ୟ ଅମାତ୍ୟଙ୍କ ଠାରୁ ଶୁଣିବେ । ତପ୍ରେ ଭୋଜନକରି ବିଶ୍ରାମ ନେବେ । କିଛିକ୍ଷଣ ପରେ ପ୍ରାଡ୍ ବିବାକ

(ବିଚାରପତି)ଙ୍କଦ୍ୱାରା ଆନୀତ ବା (ତାଙ୍କଦ୍ୱାରା ପ୍ରେରିତ) କାର୍ଯ୍ୟମାନଙ୍କର ବିଷୟ ଜାଣିବାରେ ଦୁଇ ମୁହୂର୍ତ୍ତ ଅତିବାହିତ କରିବେ। ମୃଗୟାରୁ ଫେରିଆସି ଏକ ମୁହୂର୍ତ୍ତ ବ୍ୟୁହ ଅଭ୍ୟାସରେ ବ୍ୟାପୃତ ହେବେ। ତତ୍ପରେ ସନ୍ଧ୍ୟାଦି କାର୍ଯ୍ୟରେ ମୁହୂର୍ତ୍ତେ ଦେଇ ଭୋଜନାଦି ପରମୁହୂର୍ତ୍ତରେ ସମାପନ କରିବେ। ଭୋଜନାନ୍ତେ ଦୁଇମୁହୂର୍ତ୍ତ ଦୂତ ବା ଗୁପ୍ତଚରମାନଙ୍କ ମୁଖରୁ ନିଜ ରାଜ୍ୟର ଓ ପରରାଜ୍ୟର ସମାଚାର ଶୁଣିବେ। ସର୍ବଶେଷରେ ନିଦ୍ରାଯିବେ।। ମନୁ ଏବଂ ଯାଜ୍ଞବଲ୍କ୍ୟ ଏ ପ୍ରତି ଅନ୍ୟ ବ୍ୟବସ୍ଥା କରିଅଛନ୍ତି।

ଉତ୍ଥାୟ ଚରମେ ଯାମେ କୃତଶୌଚ ସମାହିତଃ
ହୁତାଗ୍ନି ବ୍ରାହ୍ମଣାଂଶ୍ଚାର୍ଚ୍ଚ୍ୟ ପ୍ରବିଶେତ୍ସଃ ଶୁଭାଂ। (ମନୁ)

ପୁନଶ୍ଚ।

ଦିବସସ୍ୟଷ୍ଟମଂ ଭାଗଂ ମୁକ୍ତ୍ୱା ଭାଗତ୍ରିୟଂ ତୁ ଯତ୍
ସ କାଳ ବ୍ୟବହାରାଣାଂ ଶାସ୍ତ୍ର ଦୃଷ୍ଟଃ ପରଃ ସ୍ମୃତଃ। (ମନୁ)
ବ୍ୟବହାରାଂସ୍ତତୌ ଦୃଷ୍ଟ୍ୱା ସ୍ନାତା ଭୁଞ୍ଜୀବ କାମତଃ (ଯାଜ୍ଞବଲ୍କ)
ଭୁକ୍ତବାନ୍ ବିବହେର୍ବେବ ସ୍ତ୍ରୀଭିରନ୍ତ ପୁରେ ସହ
ବିହୃତ୍ୟ ତୁ ଯଥାକାଳଂ ପୁନଃ କାର୍ଯ୍ୟାଣି ଚିନ୍ତୟେତ୍ (ମନୁ)

**ରାଜାଙ୍କର ପ୍ରଧାନ କର୍ମଚାରୀ**

ରାଜାଙ୍କର ପ୍ରଧାନ କର୍ମଚାରୀମାନେ ପ୍ରକୃତି ନାମରେ ଅଭିହିତ। ଏହି ପ୍ରକୃତି ଦଶଜଣ ପ୍ରଧାନ କର୍ମଚାରୀମାନଙ୍କଦ୍ୱାରା ଗଠିତ। ଯଥା, ପୁରୋଧା, ପ୍ରତିନିଧି, ପ୍ରଧାନ, ସଚିବ, ମନ୍ତ୍ରୀ, ଅମାତ୍ୟ, ପଣ୍ଡିତ, ପ୍ରାଡ୍‌ବିବାକ, ସୁମନ୍ତ୍ରକ, ଦୂତ, ପୁରୋଧା (Priest)। ପୁରୋଧା ଯେ ବ୍ରାହ୍ମଣ ଏହା କହିବା ବାହୁଲ୍ୟ। ଏ ବେଦବିତ୍, ଧନୁର୍ବିଦ୍ୟାରେ ପ୍ରବୀଣ, ଧର୍ମବିତ୍, ନୀତିଶାସ୍ତ୍ର, ଅସ୍ତ୍ର ଓ ବ୍ୟୁହାଦିରେ ନିପୁଣ ଅଟନ୍ତି। ଏହାଙ୍କର କୋପଭୟରେ ରାଜା ଧର୍ମ ଓ ନୀତିପଥକୁ ସର୍ବଦା ଅବଲମ୍ବନ କରନ୍ତି (ପୂର୍ବକାଳରେ ରାଜାମାନେ ପୁରୋଧାଙ୍କୁ ମଧ୍ୟଯୁଗର Pope ପୋପ୍‌ଙ୍କ ତୁଲ୍ୟମାନ୍ୟ କରୁଥିଲେ)।

ପ୍ରତିନିଧି: ରାଜକାର୍ଯ୍ୟ ମଧ୍ୟରେ କେଉଁ କାର୍ଯ୍ୟ ହିତ ଏବଂ କେଉଁ କାର୍ଯ୍ୟ ଅହିତ, କେଉଁ କାର୍ଯ୍ୟ ଶୀଘ୍ର କରଣୀୟ ଏବଂ କେଉଁ କାର୍ଯ୍ୟ ବିଳମ୍ବରେ କରଣୀୟ- ଏହିସବୁ ବିଷୟ ନିଜର ସୁବିବେକଦ୍ୱାରା ନିର୍ଦ୍ଧାରଣ କରି ଯେ ରାଜାଙ୍କୁ ଜଣାନ୍ତି, ସେ ପ୍ରତିନିଧି ନାମରେ ଅଭିହିତ।

ପ୍ରଧାନ: ରାଜକାର୍ଯ୍ୟ ମଧ୍ୟରେ ସତ୍ ଓ ଅସତ୍ କାର୍ଯ୍ୟର ବିଚାରକ।

ସଚିବ: (Minister of War) ଗଜ, ଅଶ୍ୱ, ରଥ, ପଦାତି ଏବଂ ଅନ୍ୟାନ୍ୟ ସଂଗ୍ରାମ ଉପକରଣମାନଙ୍କର ଯେ ତତ୍ତ୍ୱ ନିଅନ୍ତି- ସେ ସଚିବ।

ମନ୍ତ୍ରୀ: (Diplomat) ସାମଦାନାଦି ଓ ସନ୍ଧିବିଗ୍ରହାଦିରେ ଯେ ନିପୁଣ, ସେ ମନ୍ତ୍ରୀ କାର୍ଯ୍ୟ କରନ୍ତି।

ଅମାତ୍ୟ: (Secreatary of State or Prime minister) ଦେଶୋଚିତ ଓ କାଳୋଚିତ ବ୍ୟବହାର ବିଷୟରେ ରାଜାଙ୍କର ଉପଦେଶକ ଏବଂ ଦେଶର ସମୁଦାୟ ଅବସ୍ଥା ରାଜାଙ୍କୁ ଜଣାନ୍ତି ।

ପଣ୍ଡିତ: (Law Member) କେଉଁ କେଉଁ ପ୍ରାଚୀନ ଧର୍ମ ଏବଂ କେଉଁ କେଉଁ ନବ୍ୟ ଧର୍ମ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ, କେଉଁ ଧର୍ମ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି, କିନ୍ତୁ ବର୍ତ୍ତମାନ ପ୍ରଚଳିତ ନାହିଁ ଏବଂ କେଉଁ ଧର୍ମ ଲୋକରେ ପ୍ରଚଳିତ, କିନ୍ତୁ ଶାସ୍ତ୍ରବିରୁଦ୍ଧ ଇତ୍ୟାଦି ଯେ ରାଜାଙ୍କୁ ଉତ୍ତମ ରୂପେ ଜଣାଇ ଦିଅନ୍ତି, ସେ ପଣ୍ଡିତ ।

ପ୍ରାଡ୍‌ବିବାକ: (Chief Justice) ପ୍ରଧାନ ବିଚାରପତି; ଲୋକ ଓ ନୀତିଶାସ୍ତ୍ର ଆଶ୍ରୟ କରି ଯେ ବିଚାର କରନ୍ତି, ସେ ପ୍ରାଡ୍‌ବିବାକ ନାମରେ ଅଭିହିତ ।

ସୁମନ୍ତ୍ରକ: (Finance Minister) ଯେ ରାଜ୍ୟର ଆୟବ୍ୟୟର ହିସାବ ରଖନ୍ତି, ସେ ସୁମନ୍ତ୍ରକ ନାମରେ କଥିତ ।

ଦୂତ:- (Resident) ଯେ ଲୋକମାନଙ୍କୁ ହୃଦୟଗତ ଭାବ, ଆକାର ଓ ଚେଷ୍ଟା ଜାଣିବାରେ ସମର୍ଥ ଏବଂ ଯେ ସ୍ମୃତିଶାଳୀ, ଦେଶକାଳଜ୍ଞ ଷଡ୍‌ଗୁଣବିଶିଷ୍ଟ, ମନ୍ତ୍ରବିଦ୍, ବକ୍ତା ଓ ନର୍ଭୀକ- ସେ ଦୂତ କାର୍ଯ୍ୟରେ ନିଯୁକ୍ତ ହେଉଥିଲେ । ଏହି ଦୂତଙ୍କଦ୍ୱାରା ରାଜାମାନଙ୍କ ମଧ୍ୟରେ ଯାବତୀୟ ତାବତୀୟ ବ୍ୟବହାର ଚଳୁଥିଲା । ଏହି ଦୂତଙ୍କଦ୍ୱାରା ରାଜା ନିଜରାଷ୍ଟ୍ର ଓ ପରରାଷ୍ଟ୍ରର ପ୍ରକୃତ ଅବସ୍ଥା ଜାଣନ୍ତି ।

ରାଜା ପୂର୍ବୋକ୍ତ ଦଶ ପ୍ରକୃତିଙ୍କର ମତ ଗ୍ରହଣ କରି ରାଜକାର୍ଯ୍ୟ ପରିଚାଳନ କରୁଥିଲେ । ପ୍ରକୃତିବର୍ଗ ନିଜର ମତକୁ ଲେଖାଦ୍ୱାରା ଜଣାଉଥିଲେ । କାରଣ ମୌଖିକ ମତକୁ ମତ ବୋଲି ଗ୍ରହଣ କରାଯାଉ ନ ଥିଲା ।

ପୂର୍ବୋକ୍ତ ପ୍ରକୃତିବର୍ଗଙ୍କୁ ରାଜା ଏ କାର୍ଯ୍ୟରେ ବହୁଦିନ ରଖିବେନାହିଁ । ଏକ କାର୍ଯ୍ୟର ଅଧିକାରୀକୁ ନେଇ ଅନ୍ୟ କାର୍ଯ୍ୟରେ ନିୟୋଜିତ କରିବେ । କାରଣ ଜଣେ ଗୋଟିଏ ଅଧିକାରରେ ବେଶି ଦିନ ରହିଲେ, ଅତ୍ୟଧିକ ଉତ୍କୋଚାଦି ଗ୍ରହଣ କରିବାରେ କୁଣ୍ଠିତ ହୁଏନାହିଁ । କାର୍ଯ୍ୟର ଗୁରୁତ୍ୱ ଦେଖି ପୂର୍ବୋକ୍ତ ଦଶ ପ୍ରକୃତିର ସାହାଯ୍ୟକାରୀ ନିଯୁକ୍ତ କରିବେ । ପ୍ରତ୍ୟେକ ଅଧିକାରରେ ଜ ୩ ଣ ପୁରୁଷ ରଖିବେ ଏବଂ ସେମାନଙ୍କ ମଧ୍ୟରେ ଯେ ମୁଖ୍ୟତମ, ତାକୁ ଚାଳକର କାର୍ଯ୍ୟ ଦେବେ ।

> ପରିବର୍ତ୍ତେ ନୃପୋ ହ୍ୟେତାନ୍ ଯଜ୍ଞ୍ୟାଦ୍ ଅନ୍ୟୋନ୍ୟ କର୍ମଣା
> ଏକସ୍ମିନ୍ନଧିକାରେ ତୁ ପୁରୁଷାଣାଂ ତ୍ରୟଂ ସଦା
> .....ନାଧିକାରଂ ଚିରଂ ଦଦ୍ୟାଦ୍ ଅସ୍ମୈ କସ୍ମୈ ସଦାନୃପଃ । । (ଶୁକ୍ର)

ପୂର୍ବୋକ୍ତ ଅଧିକାରୀଗଣଙ୍କର କାର୍ଯ୍ୟର ତତ୍ତ୍ୱ ବୁଝିବା ନିମନ୍ତେ ରାଜା ଗୁପ୍ତଚର ନିଯୁକ୍ତ କରୁଥିଲେ ଏବଂ ସେହି ଗୁପ୍ତଚରମାନଙ୍କ ମୁଖରୁ ଶୁଣି ଅଧିକାରୀବର୍ଗଙ୍କର ସତ୍ୟତା ବୁଝିପାରୁଥିଲେ । ଅମାତ୍ୟ ବାରେ ଅନ୍ୟାୟ କାର୍ଯ୍ୟ କଲେ, ରାଜା ତାଙ୍କୁ କାର୍ଯ୍ୟରୁ ବିଦାୟ ଦେବେ । କାର୍ଯ୍ୟ, ଗୁଣ ଏବଂ ବ୍ୟବହାର ଦେଖି ରାଜା ଭୃତ୍ୟମାନଙ୍କୁ ପରୀକ୍ଷା କରିବେ । ଜାତି ଓ କୁଳପ୍ରତି ଦୃଷ୍ଟି ନ ରଖି, ଗୁଣ ପ୍ରତି ବିଶେଷ ଦୃଷ୍ଟି ରଖିବେ ।

ଆଦିରାଜ ପୃଥୁ ପ୍ରଥମରେ ବ୍ରାହ୍ମଣ ମନ୍ତ୍ରୀଙ୍କ ସହିତ ରାଜ୍ୟ ଶାସନ କରବାକୁ ପ୍ରତିଜ୍ଞା କରିଥିଲେ । ଏତଦ୍‌ବ୍ୟତୀତ ଅନେକ ସମୟରେ ରାଜାମାନଙ୍କର ଅନ୍ୟାନ୍ୟ ଜାତିର ମନ୍ତ୍ରୀ ରହୁଥିଲେ । ଅନ୍ୟାନ୍ୟ ଜାତିର ଗୁଣବାନ୍ ଲୋକେ ମନ୍ତ୍ରୀତ୍ୱ ପାଇପାରନ୍ତି, ଏ ବିଷୟ ମନୁସ୍ମୃତିର ସପ୍ତମ ଅଧ୍ୟାୟରେ ଉଲ୍ଲେଖ ଅଛି । ରାଜା ଦଶରଥଙ୍କର ଧୃଷ୍ଟି, ଜୟନ୍ତ, ବିଜୟ, ସ୍ୱରାଷ୍ଟ୍ର, ସୁମନ୍ତ, ରାଷ୍ଟ୍ରବର୍ଦ୍ଧନ, ଅକୋପ, ଧର୍ମପାଳ- ଏହି ଆଠଜଣ ମନ୍ତ୍ରୀ ଥିଲେ । ଏମାନେ ସମସ୍ତେ ବ୍ରାହ୍ମଣ ନ ଥିଲେ । ଧର୍ମ ବିଷୟ ବିଚାରରେ -----ମନ୍ତ୍ରୀତ୍ୱ ସମ୍ପୂର୍ଣ୍ଣରୂପେ ନିଷିଦ୍ଧ ଅଛି । (ମନୁ, ମହାଭାରତ, ଶୁକ୍ର)

ସୁଶାସନ ନିମନ୍ତେ ରାଜ୍ୟ ନାନା ଭାଗରେ ବିଭକ୍ତ ହେଉଥିଲା ଏବଂ ପ୍ରତ୍ୟେକ ବିଭାଗର କାର୍ଯ୍ୟ ପରିଚାଳନ କରିବା ନିମନ୍ତେ ଜଣେ ଜଣେ ଅଧିକାରୀ ନିଯୁକ୍ତ ହେଉଥିଲେ । ଗ୍ରାମରେ ଗ୍ରାମାଧ୍ୟକ୍ଷ, ଦଶ ଗ୍ରାମରେ ଦିଶେଶ, ବିଂଶ ଗ୍ରାମରେ ବିଂଶତଶ, ଶତ ଗ୍ରାମରେ ଶତେଶ, ସହସ୍ର ଗ୍ରାମରେ ସହସ୍ରେଶ ଇତ୍ୟାଦି । ଏକ ଗ୍ରାମର ଅଧିପତି ଦଶ ଗ୍ରାମର ଅଧିପତିଙ୍କ ନିକଟରେ, ଦଶ ଗ୍ରାମାଧିପତି ବିଂଶ ଗ୍ରାମାଧିପତିଙ୍କ ନିକଟରେ ଏବଂ ବିଂଶ ଗ୍ରାମାଧିପତି ଶତ ଗ୍ରାମାଧିପତିଙ୍କ ନିକଟରେ ଏବଂ ଶତଗ୍ରାମାଧିପତି ସହସ୍ର ଗ୍ରାମାଧିପତିଙ୍କ ନିକଟରେ ନିଜ ନିଜ ଅଧିକାରର କାର୍ଯ୍ୟ ଜଣାଉଥିଲେ । ଏହିପରି ସମସ୍ତେ ସମସ୍ତଙ୍କର ଅପେକ୍ଷାକୃତ ଉଚ୍ଚ ପଦସ୍ଥ ଲୋକଙ୍କ ନିକଟରେ ନିଜ ନିଜ ଅଧିକାରସ୍ଥ କାର୍ଯ୍ୟ ଜଣାଉଥିଲେ ଏବଂ ପ୍ରତ୍ୟେକ ପ୍ରତ୍ୟେକର ଉଚ୍ଚପଦସ୍ଥ ଅଧିକାରଙ୍କୁ କର ପ୍ରଦାନ କରୁଥିଲେ । ଶତ ଗ୍ରାମାଧିପତି ଗୋଟିଏ ବହୁଜନପୂର୍ଣ୍ଣ ପ୍ରଧାନ ଗ୍ରାମ ଭୋଗ କରୁଥିଲେ । ସହସ୍ର ଗ୍ରାମାଧିପତି ଗୋଟିଏ କ୍ଷୁଦ୍ର ନଗର ଭୋଗ କରଥିଲେ । ଏହି ସମସ୍ତ ଗ୍ରାମପାଳମାନଙ୍କର ସଂଗ୍ରାମ ସମ୍ବନ୍ଧୀୟ ଓ ଗ୍ରାମ ସମ୍ବନ୍ଧୀୟ ଅନ୍ୟାନ୍ୟ କାର୍ଯ୍ୟ, ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ଜଣେ ବିଚକ୍ଷଣ ମନ୍ତ୍ରୀଙ୍କୁ ଏବଂ ପ୍ରତିନଗରର କାର୍ଯ୍ୟ ଦେଖିବା ନିମନ୍ତେ ଜଣେ ଜଣେ ସର୍ବାଧ୍ୟକ୍ଷଙ୍କୁ ରାଜା ନିଯୁକ୍ତ କରୁଥିଲେ । ସର୍ବୋପରି ରାଜା ସଭାସଦମାନଙ୍କ କାର୍ଯ୍ୟ ବୁଝୁଥିଲେ । ରାଜା ଗୁପ୍ତଚରମାନଙ୍କଦ୍ୱାରା ଗ୍ରାମଠାରୁ ଆରମ୍ଭ କରି ନଗର ପର୍ଯ୍ୟନ୍ତ ସମସ୍ତ ସ୍ଥାନର ଲୋକମାନଙ୍କର ଓ ରାଜକର୍ମଚାରୀମାନଙ୍କର ବ୍ୟବହାର ଜାଣୁଥିଲେ । ଉକ୍ତ ଗ୍ରାମାଦିର ଶାସନ ବିଧି ଅକ୍ଷୁଣ୍ଣ ରଖିବା ନିମନ୍ତେ ଗ୍ରାମାଧିପତିମାନଙ୍କ ଅଧୀନରେ ଗୁଳ୍ମ ବା ପୁଲିସ ଫଉଜର ବ୍ୟବସ୍ଥା ଥିଲା । (ମନୁ, ୭)

ରାଜା ଅନ୍ୟାନ୍ୟ କର୍ମକ୍ଷମ ଲୋକମାନଙ୍କୁ ନିମ୍ନଲିଖିତ କାର୍ଯ୍ୟମାନଙ୍କରେ ନିଯୁକ୍ତ କରୁଥିଲେ ।

**ଅଶ୍ୱପାଳ** :- ଯେ ଅଶ୍ୱର ଲକ୍ଷଣ ଜାଣେ ଓ ଅଶ୍ୱର ଚିକିତ୍ସା କରିପାରେ, ସେ ଏହି କାର୍ଯ୍ୟରେ ନିଯୁକ୍ତ ହେଉଥିଲା ।

**ରଥପାଳ** :- ରଥ ନିର୍ମାଣ କରିବାରେ ସମର୍ଥ ।

**ପତ୍ତିପାଳ** :- ୫ ବା ୬ ଜଣ ପଦାତି ସୈନ୍ୟର ଅଧ୍ୟକ୍ଷଙ୍କୁ ପତ୍ତିପାଳ କୁହାଯାଏ ଏବଂ ଏହାଙ୍କର ଉପରେ ପ୍ରହରୀମାନଙ୍କୁ ବଦଳା କରିବାର ଭାର ଦିଆଯାଇଥାଏ ।

**କୌଳିକ**:- ୩୦ ଜଣ ପଦାତକ ସୈନ୍ୟର ଅଧ୍ୟକ୍ଷ ।

ଶତାନିକ :  ଏକଶତ ପଦାତି ସୈନ୍ୟର ଅଧକ୍ଷ ।
ଅନୁଗତିକ : ଶତାନିକର ସହାୟକାରୀ ।
ସାହସ୍ରିକ :  ଏକ ସହସ୍ର ପଦାତିର ଅଧକ୍ଷ ।
ଆୟୁତିକ :  ଦଶ ସହସ୍ର ପଦାତିର ଅଧକ୍ଷ ।
ନାୟକ :  ୨୦ ଜଣ ଅଶ୍ୱାରୋହୀର ବା ଗଜାରୋହୀ ଅଧକ୍ଷ । ଲେଖକ, କୋଷାଧକ୍ଷ, ପାକନାୟକ (ଅତ୍ୟନ୍ତ ବିଶ୍ୱସ୍ତ ହେବା ଉଚିତ୍), ଆରାମାଧିପ, ଗୃହାଦ୍ୟଧିପ (ଇଞ୍ଜିନିୟର), ସଭାପଦ, ଶୌଲ୍କିକ, ବସ୍ତପ, ଧାନ୍ୟପ, ସମ୍ଭାରାଧିପ, ଶ୍ରୁତିଜ୍ଞ, ପୌରାଣିକ, ଶାସ୍ତ୍ରବିଦ୍, ଜ୍ୟୋତିର୍ବିଦ୍, ମନ୍ତ୍ରାଚାର୍ଯ୍ୟ, ବୈଦ୍ୟଗୁଢଚାର, ଦୁର୍ଗବାରୀ, ନାଳିକାସ୍ତ୍ର ପ୍ରୟୋଗକାରୀ (ବନ୍ଧୁକ ମାରିଲାବାଲା) ଇତ୍ୟାଦି । ଅନ୍ୟାନ୍ୟ ପାଟକଜାତିଙ୍କୁ ରାଜା ଜାତି ବିଶେଷର କାର୍ଯ୍ୟରେ ନିଯୁକ୍ତ କରନ୍ତି ।

ରାଜାଙ୍କର ଏବଂ ପ୍ରତ୍ୟେକ ଲୋକଙ୍କର ମନେରଖିବା ଉଚିତ ଯେ, ସଂସାରରେ କେହି ଲୋକ ଅକର୍ମଣ୍ୟ ନୁହେଁ । କିନ୍ତୁ ପ୍ରୟୋଜନ ଅଭାବରେ ଲୋକେ ଅକର୍ମଣ୍ୟ ବୋଲି କଥିତ ହୁଅନ୍ତି ଏବଂ ଯେଉଁ ରାଜ୍ୟରେ ଅଧିକାଂଶ ଲୋକେ ଅକର୍ମଣ୍ୟ ଭାବରେ ସମୟ ଅତିବାହିତ କରନ୍ତି, ସେହି ରାଜ୍ୟ ସେତେ ଅନୁନ୍ନତ ।

ସୈନ୍ୟ:- ମଧବୟସ୍କ, ବୀର, ଦୃଢଶରୀରଶାଳୀ, ସ୍ୱାମୀଭକ୍ତ, ରିପୁଦ୍ୱେଷୀ ଲୋକ ସୈନ୍ୟପଦରେ ଗୃହୀତ ହେଉଥିଲେ । କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ମ୍ଳେଚ୍ଛ ଆଦି ସୈନ୍ୟ ରୂପରେ ଗୃହୀତ ହେଉଥିଲେ । ବ୍ରାହ୍ମଣମାନେ ମଧ ଯୁଦ୍ଧ କାର୍ଯ୍ୟରେ ଯୋଗଦାନ କରୁଥିଲେ ।

ପଚ୍ଚନାୟକ ଓ ଖାଦ୍ୟ :- ଅତ୍ୟନ୍ତ ବିଶ୍ୱାସୀ ଲୋକ ହେବା ଉଚିତ । - ପୂର୍ବକାଳରେ ରାଜାମାନେ ସମସ୍ତ କାର୍ଯ୍ୟରେ ନିଜର ପ୍ରାଣ ବିଯୋଗର ଆଶଙ୍କା କରୁଥିଲେ । ଖାଦ୍ୟ ବିଷମିଶ୍ରିତ କି ନା ଏହା ପ୍ରଥମରେ ପରୀକ୍ଷା ନ କରାଇ ରାଜା ଭୋଜନ କରୁ ନ ଥିଲେ । ଖାଦ୍ୟ ପରୀକ୍ଷାର୍ଥେ କପି ଓ କୁକୁଟାଦିଙ୍କୁ ଅର୍ପଣ କରାହେଉଥିଲା ଏବଂ ଅଗ୍ନିରେ ପ୍ରଥମତଃ ଖାଦ୍ୟ ପରୀକ୍ଷା କରିବା ବିଧେୟ ବୋଲି କାମନ୍ଦକୀ ନୀତିସାରରେ ଲେଖାଅଛି । ରାଜାଙ୍କର ଜୀବନ ବି ବପଦସଙ୍କୁଳ । ରାଜା ପ୍ରତ୍ୟେକ ସ୍ଥଳରେ ନିଜ ଶତ୍ରୁର ଆଶଙ୍କା କରୁଥିଲେ । ପୂର୍ବକାଳରେ ବିଷଖାଦ୍ୟ ଯୋଗେ ଅନେକ ରାଜାଙ୍କର ପ୍ରାଣନାଶ ହୋଇଥିବା ବିଷୟ ଶାସ୍ତ୍ରକାର ଓ ଗ୍ରନ୍ଥାକାରମାନେ ଲେଖିଅଛନ୍ତି । ବାଣଭଟ୍ଟଙ୍କ ବିରଚିତ ହର୍ଷଚରିତରେ ସ୍କନ୍ଦଗୁପ୍ତଙ୍କର ହର୍ଷବର୍ଦ୍ଧନଙ୍କ ପ୍ରତି ଉପଦେଶର ମର୍ମ ଏହି ଯେ, ରାଜା ସରଳ ହୃଦୟରେ କୌଣସି ଲୋକଙ୍କୁ ଅତ୍ୟଧିକ ବିଶ୍ୱାସ କରିବେନାହିଁ । ଏହି ଉକ୍ତିର ସାରବତ୍ତା ଜଣାଇବା ନିମନ୍ତେ ସେ ଜ୩୦ଣ ରାଜାଙ୍କର ମୃତ୍ୟୁ ନିଜର ସ୍ତ୍ରୀ, ପୁତ୍ର, ଭୃତ୍ୟ, ପରିଚାରକ, ପରିଚାରିକା ଏବଂ ଅନ୍ୟାନ୍ୟ ଲୋକଙ୍କଦ୍ୱାରା ଘଟିଥିବା ବିଷୟ କହିଅଛନ୍ତି । ମହାଭାରତକାର, ଶୁକ୍ରାଚାର୍ଯ୍ୟ, ମନୁ, ଚାଣକ୍ୟ, କାମନ୍ଦନାଦି ପ୍ରଧାନ ପ୍ରଧାନ ନୀତିକାରମାନେ ଏହି ବିଷୟରେ ରାଜାମାନଙ୍କୁ ଉପଦେଶ ପ୍ରଦାନ କରିଅଛନ୍ତି । (ବାହୁଲ୍ୟ ଭୟରେ ଉଲ୍ଲେଖ କଲି ନାହିଁ)

**ଗୁପ୍ତଚର** : ରାଜା ଘରେ, ଦୁଆରେ, ବାହାରେ ରାଜ୍ୟରେ ଓ ପର ରାଜ୍ୟରେ ଗୁଢଚାର ରଖୁଥିଲେ । ନିଜର ଅନ୍ତଃପୁରରେ ମଧ୍ୟ ସ୍ତ୍ରୀମାନଙ୍କ ଉପରେ ସ୍ତ୍ରୀଚାର ରଖୁଥିଲେ । ଅନ୍ଧ, ଜଡ଼ ଓ ବଧିରାଦି ସଦୃଶ ଆକାରସମ୍ପନ୍ନ କ୍ଷୁତ୍, ପିପାସା ଓ ପରିଶ୍ରମୀ, ସହିଷ୍ଣୁ, ବୁଦ୍ଧିମାନ, ସମୁଦାୟ ସଂଗ୍ରହ କରି ସେମାନଙ୍କଦ୍ୱାରା ଗୁପ୍ତଭାବରେ ଅମାତ୍ୟ, ମିତ୍ର, ପୁତ୍ର, ସାମନ୍ତ, ଭୂପତି ଏବଂ ନଗର ଓ ଜନପଦବାସୀମାନଙ୍କର ଆଚାର ବ୍ୟବହାରାଦି ଅବଗତ ହେବା ରାଜାଙ୍କର ଅବଶ୍ୟ କର୍ତ୍ତବ୍ୟ । ଶତ୍ରୁରାଜ୍ୟ ମଧ୍ୟକୁ ଚର ପ୍ରେରଣ କରିଅଛି କି ନା; ତାହାର ତତ୍ତ୍ୱାବଧାରଣ କରିବା ନିମନ୍ତେ ହାଟ, ମଠ, ମହାଜନ, ସମାଜ, ଭିକ୍ଷୁ ସମାଜ, ପୁର, ବାଟିକା, ବହିର୍ବାଟିକା, ପଣ୍ଡିତମାନଙ୍କର ସମାଗମସ୍ଥାନ, ଦେଶ ଚତ୍ୱର, ସଭା, ଭଦ୍ରଲୋକମାନଙ୍କର ଆବାସ ସ୍ଥାନରେ ଅନ୍ୱେଷଣ କରିବା କର୍ତ୍ତବ୍ୟ । (ମହାଭାରତ ଶାନ୍ତି : ୬୯, ଅଧ୍ୟାୟ)

**ଶୁଳ୍କ ଓ ରାଜସ୍ୱ**:- ଶୌଳ୍କିକ ବ୍ୟବସାୟୀମାନଙ୍କଠାରୁ ଶୁଳ୍କ ଗ୍ରହଣ କରୁଥିଲା । ପୂର୍ବକାଳରେ ଲୋକମାନଙ୍କୁ ଲବଣରେ ଗୌଣଶୁଳ୍କ (Indirect) ଦେବାକୁ ହେଉଥିଲା । ମହାଭାରତରେ ଲିଖିତ ଅଛି ଯେ, ରାଜା ଖଣି, ଲବଣ, ଶୁଳ୍କ, ଘାଟ ଓ ହସ୍ତୀଯୁଥରେ ଅମାତ୍ୟ ବା ଅତ୍ୟନ୍ତ ବିଶ୍ୱାସୀ ଲୋକେ ନିଯୁକ୍ତ କରିବେ ।

"ଆକରେ ଲବଣେ ଶୁଳ୍କେ ତରେ ନାଗବଳେ ତଥା
ନ୍ୟସେ ଦମାତ୍ୟାନ୍ନୃପତି ସ୍ୱପ୍ତାନ ବା ପୁରଷାନ୍ ହିତାନ୍ ।

ପୁନଶ୍ଚ ମହାଭାରତରେ ଦେଖିବାକୁ ମିଳେ ଯେ "କ୍ଷରାର୍ଦ୍ଧଂହରେଦ୍‌ରାଜା"- ଲବଣାଦିର ଅର୍ଦ୍ଧେକ ରାଜା ଗ୍ରହଣ କରିବେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ, ଲବଣ ବ୍ୟବସାୟୀମାନେ ଲବଣ ବ୍ୟବହାର କରିବା ସମୟରେ ରାଜାଙ୍କୁ ଶୁଳ୍କ ପ୍ରଦାନ କରୁଥିଲେ । ରାଜା ଏକ ପଦାର୍ଥରେ ଏକବାର ଶୁଳ୍କ ଗ୍ରହଣକରି ଅନ୍ୟ ଏକବାର ଶୁଳ୍କ ଗ୍ରହଣ କରୁ ନ ଥିଲେ । କ୍ରେତା ବିକ୍ରେତାଙ୍କଠାରୁ ମୂଲ୍ୟର ଦ୍ୱାତ୍ରିଂଶାଂଶ, ବିଂଶାଂଶ ବା ଷୋଡଶାଂଶ ଶୁଳ୍କ ଗ୍ରହଣ କରାହେଉଥିଲା । ରାଜା ବର୍ଷକଠାରୁ ଅର୍ଦ୍ଧେକ ଭାର ଗ୍ରହଣ କରୁଥିଲେ । ନଦୀ, ପୁଷ୍କରିଣୀ ଓ ବୃଷ୍ଟିଜଳରେ ଫସଲ ହୋଇଥିବା ସ୍ଥାନର ଧାନ୍ୟରୁ ଏକ ଚତୁର୍ଥାଂଶ, ଏକ ତୃତୀୟାଂଶ ବା ଅର୍ଦ୍ଧାଂଶ, ଅନୁର୍ବର ଜମିର ଧାନରୁ ଏକ ଷଷ୍ଠାଂଶ ଗ୍ରହଣ କରୁଥିଲେ । (ଶୁକ୍ର ୪,୧୧)

ଖନିଜ ପଦାର୍ଥ ମଧ୍ୟରୁ ସ୍ୱର୍ଣ୍ଣରୁ ଅର୍ଦ୍ଧାଂଶ, ରୌପ୍ୟରୁ ଏକତୃତୀୟାଂଶ, ତାମ୍ରର ଏକଚତୁର୍ଥାଂଶ; ଲୌହ, ରଙ୍ଗ, ସୀସକ ଏବଂ ରତ୍ନାଦିରୁ ଏକଷଷ୍ଠାଂଶ ରାଜାଙ୍କର ପ୍ରାପ୍ୟ ଥିଲା । ତୃଣ ଏବଂ କାଷ୍ଠ ଆହରଣକାରୀକୁ ତାର ଆହରଣର ଏକବିଂଶଭାଗ ଦେବାକୁ ହେଉଥିଲା; ମେଷ, ଛାଗଳ, ଘୋଟକରୁ ଅଷ୍ଟମଭାଗ ଏବଂ ଗୋ, ମହିଷୀ, ଛାଗଳ, ମେଷର ଦୁଗ୍ଧର ଷୋଡ଼ଶାଂଶ ରାଜାଙ୍କର ପ୍ରାପ୍ୟଥିଲା ।

ରାଜ୍ୟର ଉନ୍ନତି କଳ୍ପେ ଯେଉଁମାନେ ପୁଷ୍କରିଣୀ, କୃତ୍ରିମ ନଦୀ ଖନନ କରୁଥିଲେ, ରାଜ୍ୟର ଅନାବାଦୀ ଜମି ଚାଷ କରୁଥିଲେ, ରାଜା ଉକ୍ତ ଲୋକମାନଙ୍କୁ ସେମାନଙ୍କ ବ୍ୟୟର ଦୁଇଗୁଣ ଲାଭ ଛାଡ଼ିଦେଇ ଅବଶିଷ୍ଟ ଲାଭରୁ ରାଜଭାଗ ଗ୍ରହଣ

କରୁଥିଲେ । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା, ପୂର୍ବକାଳରେ ଆମଦାନି ଓ ରପ୍ତାନି ହେଉଥିବା ପଦାର୍ଥରୁ ଶୁଳ୍କ ଗ୍ରହଣ କରା ହେଉଥିଲା (Import and Export)। ସ୍ୱଦେଶର ଦ୍ରବ୍ୟ ବିକ୍ରୟାର୍ଥେ ବିଦେଶରୁ ପ୍ରେରିତ ହେଲେ, ତାହାର ମୂଲ୍ୟର ଦଶମଭାଗ ମାସୁଲ ଏବଂ ବିଦେଶର ଦ୍ରବ୍ୟ ସ୍ୱଦେଶକୁ ବିକ୍ରୟାର୍ଥ ଆସିଲେ, ତାହାର ବିଂଶାଂଶ ମାସୁଲ ରାଜକୋଷକୁ ଯାଉଥିଲା । (ବିଷ୍ଣୁ)

ଶିଳ୍ପକାର, କାରୁକାର ଏବଂ ଶୂଦ୍ର କରାଦିର ପରିବର୍ତ୍ତନରେ ଦି ୧୫ ନରେ ଥରେ ବେଠି କରୁଥିଲେ । ଅନ୍ଧ, ଜଡ଼, କୁଜା, ଅତିବୃଦ୍ଧ, ଶ୍ରୋତ୍ରୀୟ ବ୍ରାହ୍ମଣ ଓ ସେବକଙ୍କ, ଉପରେ କରଧାର୍ଯ୍ୟ ହେଉ ନ ଥିଲା । କିନ୍ତୁ ଅଶ୍ରୋତ୍ରୀୟ, କର୍ମହୀନ ବ୍ରାହ୍ମଣଙ୍କଠାରୁ ରାଜା କର ଗ୍ରହଣ କରୁଥିଲେ ଏବଂ ସେମାନଙ୍କୁ ବିନାବେତନରେ କାର୍ଯ୍ୟରେ ନିଯୋଗ କରୁଥିଲେ । (ମହାଭାରତ: ଶାନ୍ତି, ୭୬)

ମହାଜନମାନଙ୍କ (ବାର୍ଦ୍ଧୁଷିକଙ୍କ) ଲାଭ, ଅର୍ଥାତ୍ ସୁଧ ଗ୍ରହଣର ୧/୩୨ ଅଂଶ ରାଜକୋଷକୁ ଯାଉଥିଲା; ଗୃହକର ଭୂମିକର ତୁଲ୍ୟ ଆଦାୟ ହେଉଥିଲା । ପଥକରରୁ ମଧ୍ୟ ଲୋକମାନେ ଅବ୍ୟାହତି ପାଇ ନ ଥିଲେ ।

ବାର୍ଦ୍ଧୁଷିକାବ କୌସୀଦାଦ୍ ଦ୍ୱାତ୍ରିଂଶାଂଶଂ ହରେନ୍ନୃଷଃ ଗୃହାଦ୍ୟାଧର ଭୂଶୁଳ୍କଂ କୃଷ୍ଣଭୂମେଦିବାହରେତ୍ ମାର୍ଗ ସଂସ୍କାର ରକ୍ଷାର୍ଥଂ ମାର୍ଗଗେଭ୍ୟଃ ହରେତଂ ଫଳଂ ।

ଧାନ୍ୟାଦି ସଂଗ୍ରହ ପ୍ରତି ରାଜାମାନେ ବିଶେଷ ଦୃଷ୍ଟି ରଖୁଥିଲେ । ନିଜର ହିତ ଓ ପ୍ରଜାମାନଙ୍କର ହିତ ନିମନ୍ତେ ତିନିବର୍ଷର ଖାଦ୍ୟୋପଯୋଗୀ ଧାନ୍ୟ ସଂଗ୍ରହକରି ରଖୁଥିଲେ । ବିପଦ ଉପସ୍ଥିତରେ, ଶତ୍ରୁଦ୍ୱାରା ଆକ୍ରାନ୍ତ ହେବା ସମୟରେ ଅର୍ଥାଭାବ ଯୋଗୁଁ ରାଜା ଅଧିକ କର ଗ୍ରହଣ କରୁଥିଲେ । ବିପଦରେ ଦେବୋତ୍ତର ମାହାଲରୁ ମଧ୍ୟ ଅର୍ଥବ୍ୟୟ କରାହେଉଥିଲା । (ଶୁକ୍ର: ୪ ।୨ ।୯) ରାଜା ଦ୍ୟୁତକ୍ରୀଡ଼ାରୁ ଶୁଳ୍କ ଗ୍ରହଣ କରଥିଲେ [ପୂର୍ବକାଳରେ ଦ୍ୟୁତକ୍ରୀଡ଼ାର ସ୍ଥାନ କିଞ୍ଚିତ ଆଭାସ ପ୍ରଦତ୍ତ ହେଲା । ଋକ୍‌ବେଦର ଦଶମ ମଣ୍ଡଳରେ ଦ୍ୟୁତକ୍ରୀଡ଼ାର କଥା ଉଲ୍ଲେଖ ଅଛି । ବିଶେଷତଃ ଦଶମ ମଣ୍ଡଳ, ୩୪ ସୂକ୍ତ, ପଞ୍ଚମ ଋକ୍‌ରେ ସ୍ପଷ୍ଟ ଭାବରେ ଏହା ଲିଖିତ ଅଛି । ଦ୍ୟୁତକ୍ରୀଡ଼ା ଗୃହର ରକ୍ଷକ ସଭିକ ନାମରେ କଥିତ । କ୍ରୀଡ଼ା କରାଇବା ଏବଂ କ୍ରୀଡ଼ାର ସାମଗ୍ରୀ ଯୋଗାଇବା ତାହାର ପ୍ରଧାନ କାର୍ଯ୍ୟ (ମିତାକ୍ଷରା) ।

ଏତଶତ ଟଙ୍କା ବାଜିର କ୍ରୀଡ଼ାରେ ସଭିକର ପାଞ୍ଚଟଙ୍କା ପ୍ରାପ୍ୟ ହେଉଥିଲା । ଏକଶତ ଟଙ୍କାର କାମ ବାଜିର ଖେଳାରେ ସଭିକ ଶତକରା ଦଶଟଙ୍କା ନେଉଥିଲା । ସଭିକ ନିଜ ଲାଭର ଏକ ନିର୍ଦ୍ଧାରିତାଂଶ ରାଜାଙ୍କୁ ପ୍ରଦାନ କରୁଥିଲା । କାରଣ ରାଜା ସଭିକର ପୃଷ୍ଠପୋଷକ ଥିଲେ । ଦର୍ଶକବୃନ୍ଦ ଭଲଲୋକ(ମଧ୍ୟସ୍ଥ)ର କାର୍ଯ୍ୟ କରୁଥିଲେ । ଖେଳାଳୀ କୁଟାକ୍ଷ ବ୍ୟବହାର କରିବାରେ ଧରାହେଲେ, ଦେଶରୁ ନିର୍ବାସିତ ହେଉଥିଲା । ଏହି ମନ୍ଦକାର୍ଯ୍ୟ ଏକବାର ସ୍ଥଗିତ କରିବା ନିମନ୍ତେ ମନୁ ରାଜାମାନଙ୍କୁ ଆଦେଶ ପ୍ରଦାନ କରିଅଛନ୍ତି ଏବଂ ଦ୍ୟୁତଜୀବୀ ଓ ଦ୍ୟୁତକ୍ରୀଡ଼ାର ପ୍ରବର୍ତ୍ତକକୁ ପ୍ରାଣଦଣ୍ଡ ଦେବାରେ ମଧ୍ୟ ଆଦେଶ ଦେଇଅଛନ୍ତି ।]

ରାଜା ବିଶିଷ୍ଟ କାରଣ ନ ଦେଖାଇ କର ଗ୍ରହଣ କରି ପାରିବେନାହିଁ, ନୋଚେତ୍ ପ୍ରଜାମାନେ ଅସନ୍ତୁଷ୍ଟ ହୋଇପଡ଼ିବେ । ନୂତନ କର ଗ୍ରହଣକରିବାକୁ ଇଚ୍ଛାକଲେ, ନୂତନ ନୂତନ ଉପାୟମାନ ଉଦ୍ଭାବନ କରିବେ । ମହାଭାରତକାର ନୂତନ କର ଗ୍ରହଣ କରିବାର ଗୋଟିଏ ଉପାୟ ରାଜାମାନଙ୍କୁ ଶିକ୍ଷା ଦେଇଅଛନ୍ତି । ବୋଧହୁଏ ମହାଭାରତକାରଙ୍କ ସମୟରେ ବା ତତ୍‌ପୂର୍ବେ ଏହି ତଳଲିଖିତ ଉପାୟ ଅବଲମ୍ବନ କରି ରାଜାମାନେ କର ଗ୍ରହଣ କରୁଥିଲେ । କିପରି ନୀତି, କିପରି ବୁଦ୍ଧିର ଚାତୁରୀ!! ଅମ୍ଭେମାନେ ଦେଖି ଆଶ୍ଚର୍ଯ୍ୟ ହେଉଁ ଯେ, ରାଜା କେତେକ ଦସ୍ୟୁଙ୍କୁ ନିଜ ହାତରେ ରଖିଥିଲେ, ଦସ୍ୟୁମାନଙ୍କଦ୍ୱାରା ଶତ୍ରୁର ରାଜ୍ୟ ଲୁଟପାଟ କରାଉଥିଲେ । ରାଜାଙ୍କର ଦସ୍ୟୁମାନଙ୍କୁ ପ୍ରଶ୍ରୟ ଦେବା ବିଷୟ ପ୍ରଜାପୁଞ୍ଜରେ ଅଗୋଚର ଥିଲା । ରାଜା ନୂତନ କର ଗ୍ରହଣ କରିବାକୁ ଇଚ୍ଛାକଲେ, ସେମାନଙ୍କୁ ନିଜ ରାଜ୍ୟର ସ୍ଥାନ ବିଶେଷରେ ଲୋକମାନଙ୍କୁ ଭୟ ଦେଖାଇବା ନିମନ୍ତେ ଓ ପ୍ରଜାମାନଙ୍କର ପଦାର୍ଥଗ୍ରହଣ କରିବା ନିମନ୍ତେ ଆଦେଶ ଦେବେ । ସମାନ ପରିମାଣରେ ସ୍ଥାନେ ସ୍ଥାନେ ଏପରି ଉପଦ୍ରବରେ ଉପକ୍ରମ ହେଲେ, ରାଜା ପ୍ରଜାମାନଙ୍କୁ ଭୟ ଦେଖାଇ କହିବେ- "ଦେଖ ମୋ ରାଜ୍ୟରେ ଦସ୍ୟୁଭୟ ଉପସ୍ଥିତ ହୋଇଅଛି, ଶତ୍ରୁ ମଧ୍ୟ ଦସ୍ୟୁମାନଙ୍କ ସଙ୍ଗେ ଯୋଗଦାନ କରିଅଛି । ଭୟର କାରଣ ନାହିଁ । ସେମାନେ ଫୁଲିଲା ବାଉଁଶ ପରି ନାଶଯିବେ । ଏହି ମହାବିପଦରୁ ରକ୍ଷା ପାଇବା ନିମନ୍ତେ ମୁଁ ତୁମ୍ଭମାନଙ୍କଠାରୁ ଅର୍ଥ ପ୍ରାର୍ଥନା କରୁଅଛି । ଉପସ୍ଥିତ ଭୟ ଦୂରୀଭୂତ ହେଲେ ତୁମ୍ଭମାନଙ୍କର ଅର୍ଥ ଫେରାଇ ଦେବି । ଶତ୍ରୁ ଓ ଦସ୍ୟୁବର୍ଗ ତୁମ୍ଭମାନଙ୍କର ସର୍ବସ୍ୱ ନେଇଗଲେ, ତୁମ୍ଭେମାନେ ଆଉ କିଛି ଫେରାଇ ପାରିବ କି? ପୁଣି ଶତ୍ରୁ ଆକ୍ରମଣ କଲେ ତୁମ୍ଭମାନଙ୍କ ସ୍ତ୍ରୀ ପୁତ୍ରଙ୍କର ପ୍ରାଣନାଶ ହେବା ଅବଶ୍ୟମ୍ଭାବୀ । ତେବେ ତୁମ୍ଭ ଅର୍ଥ କିଏ ଭୋଗ କରିବ? ତୁମ୍ଭେମାନେ ମୋ ପୁଅପରି । ମୁଁ ତୁମ୍ଭମାନଙ୍କର ସମୃଦ୍ଧି ଦର୍ଶନରେ ଅତ୍ୟଧିକ ସନ୍ତୁଷ୍ଟ ହୋଇ ଏହି ମହାବିପଦ ସମୟରେ ରାଜ୍ୟରକ୍ଷା ନିମନ୍ତେ ତୁମ୍ଭମାନଙ୍କୁ ଅର୍ଥ ପ୍ରାର୍ଥନା କରୁଅଛି । ତୁମ୍ଭେମାନେ ଯଥାଶକ୍ତି ଅର୍ଥ ପ୍ରଦାନ କରି ଏହି ଉପଦ୍ରବ ଦୂରକର । ବିପଦ କାଳରେ ଧନପ୍ରତି ଲୋଭ କରିବା ନିତାନ୍ତ ଅବିଧେୟ ।" ପ୍ରଜାମାନେ ରାଜାଙ୍କ ମୁଖରୁ ଏପରି ବାକ୍ୟଶୁଣି ସନ୍ତୁଷ୍ଟ ଓ ଅସନ୍ତୁଷ୍ଟ(?) ଅର୍ଥ ପ୍ରଦାନ କରୁଥିଲେ । କର ଆଦାୟ କରିବା ନିମନ୍ତେ ଦିନ ନିର୍ଦ୍ଧାରିତ ହେଉଥିଲା । କର ଗ୍ରହଣରେ ବିଳମ୍ବ ହେଉ ନ ଥିଲା ।

ରାଜା ଓ କର୍ମଚାରୀମାନେ କରାଦି ଗ୍ରହଣରେ ଓ ଅନ୍ୟାନ୍ୟ କାର୍ଯ୍ୟରେ ଲେଖାର ବ୍ୟବହାର କରୁଥିଲେ । ବିନା ଲେଖାରେ ରାଜା କୌଣସି ଆଜ୍ଞା ପ୍ରଦାନ କରିବେ ନାହିଁ ଏବଂ ବିନା ଲେଖାରେ ରାଜକର୍ମଚାରୀ କୌଣସି କାର୍ଯ୍ୟ କରିବେ ନାହିଁ । ଯେବେ କରନ୍ତି, ତେବେ ରାଜା ଓ ରାଜକର୍ମଚାରୀ ଉଭୟେ ଚୋର ।

ଅଲେଖ୍ୟମାଜ୍ଞାପୟତି ଅଲେଖଂଯତ୍ କରୋତି ଯଃ
ରାଜ୍ୟ କୃତମୁଭୌ ଚୋରୌ ତୌ ଭୃତ୍ୟନୃପତି ସଦା ।(ଶୁକ୍ର ୨ ।୨୯୧)

ଏଥିରୁ ଜଣା ହେଉଅଛି, ରାଜସ୍ୱ ଓ କରାଦିଗ୍ରହଣ କରିବା ସମୟରେ ପାଉତି ରକମ କୌଣସି ସ୍ୱୀକାରପତ୍ର ପ୍ରଜାମାନଙ୍କୁ ଦିଆ ଯାଉଥିଲା ।

ବ୍ୟୟ: ଯେଉଁ ରାଜାଙ୍କର ଆୟ ଏକଲମ କର୍ଷ ଅର୍ଥାତ୍ ଦଶଲକ୍ଷ ଟଙ୍କା, ସେ ତଳଲିଖିତ ହିସାବରେ ଖର୍ଚ୍ଚ କରିବେ ବୋଲି ଶୁକ୍ରାଚାର୍ଯ୍ୟ ଆଦେଶ କରିଅଛନ୍ତି: ।

| | |
|---|---|
| ରାଜାଙ୍କର ନିଜର ଭୋଗ ଏବଂ ଦାନ ନିମନ୍ତେ | ଟ. ୧୮୦,୦୦୦ |
| ଲେଖକମାନଙ୍କ ନିମନ୍ତେ | ଟ. ୧୨,୦୦୦ |
| ମନ୍ତ୍ରୀମାନଙ୍କ (ଅର୍ଥାତ୍ ରାଜପ୍ରକୃତିର) ଅର୍ଥେ | ଟ. ୩୦,୦୦୦ |
| ବିଦ୍ୱାନଲୋକଙ୍କ ସମ୍ମାନାର୍ଥେ | ଟ. ୨୪,୦୦୦ |
| ଅଶ୍ୱାରୋହୀ ସୈନ୍ୟ ଓ ପଦାତିଙ୍କ ନିମନ୍ତେ | ଟ. ୪୮୦,୦୦୦ |
| ଗଜ, ଉଷ୍ଟ୍ର, ବୃଷ ଓ ନାଳିକାସ୍ତ୍ର ବ୍ୟବହାରୀଙ୍କ ଅର୍ଥେ | ଟ. ୪୮,୦୦୦ |

ଅବଶିଷ୍ଟ ଟଙ୍କା ନିଜ କୋଷାଗାରରେ ଜମା ରଖିବେ । ରାଜା ଭୃତ୍ୟମାନଙ୍କୁ ବେତନ ଦେବାରେ ବିଳମ୍ବ କରିବେ ନାହିଁ ଏବଂ ଏକା ବେଳେକେ ବେତନ ମଧ୍ୟ ଲୋପ କରିବେନାହିଁ ।

"ନ କୁର୍ଯ୍ୟଦ୍ ଭୃତିଲୋପଂ ତୁ ତଥା ଭୃତିବିଳମ୍ବନଂ"

ଭୃତ୍ୟକୁ ଅତ୍ୟଳ୍ପ ବେତନ ଦେବା ଉଚିତ ନୁହେଁ । କାରଣ ଅଳ୍ପ ବେତନ ପ୍ରାପ୍ତହେଲେ ଭୃତ୍ୟମାନେ ରାଜାଙ୍କର ଶତ୍ରୁରୂପରେ ଦଣ୍ଡାୟମାନ ହୋଇ ଅନେକ ଅହିତ କାର୍ଯ୍ୟ ସଂପାଦନ କରିବାରେ ତ୍ରୁଟି କରନ୍ତି ନାହିଁ, ପ୍ରଭୁର କାର୍ଯ୍ୟ ଛାଡ଼ି ଅନ୍ୟର କାର୍ଯ୍ୟ କରନ୍ତି । ରାଜାଙ୍କର ଛିଦ୍ର ଅନ୍ୱେଷଣ କରନ୍ତି, ରାଜସ୍ୱ ଅପହରଣ କରନ୍ତି ଏବଂ ପ୍ରଜାମାନଙ୍କଠାରୁ ଉତ୍କୋଚାଦି ଗ୍ରହଣ କରି ସେମାନଙ୍କୁ ପୀଡ଼ା ଦିଅନ୍ତି ।

ଗୃହର ଭୃତ୍ୟମାନଙ୍କୁ ଦିନରେ ପ୍ରହରେ ଏବଂ ରାତିରେ ତିନିପ୍ରହର ଛୁଟି ଦେବା ବିଧେୟ । ଭୃତ୍ୟର ଶ୍ରାଦ୍ଧ ଏବଂ ଉତ୍ସବ ଦିନରେ ତାକୁ ଏକାବେଳେ ଛୁଟି ଦେବା ଉଚିତ୍ । ଉତ୍ସବ ଦିବସରେ ଭୃତ୍ୟ ହସ୍ତରେ କାର୍ଯ୍ୟ କରାଇଯାଇପାରେ, କିନ୍ତୁ ଶ୍ରାଦ୍ଧ ଦିବସରେ ଛୁଟିଦେବା ଆଦୌ କର୍ତ୍ତବ୍ୟ । ପାଞ୍ଚବର୍ଷର ଭୃତ୍ୟ ଏକବର୍ଷରୁ କମ୍ ପୀଡ଼ିତ ହେଲେ, ତାକୁ ତାହାର ବେତନର ତୃତୀୟାଂଶ, ଏକବର୍ଷ ପୀଡ଼ିତ ହେଲେ ବେତନର ଚତୁର୍ଥାଂଶ ଏବଂ ଏକବର୍ଷରୁ ଉର୍ଦ୍ଧ୍ୱ ପୀଡ଼ିତ ହେଲେ ରାଜା ଷଷ୍ଠାଂଶ ବେତନ ପ୍ରଦାନ କରିବେ । ଏଥିରୁ କଦାଚ ବେଶି ଦେବେନାହିଁ । ଏକସପ୍ତାହ ପୀଡ଼ିତ ଲୋକର ବେତନ କେତେବେଳେ କାଟିବେ ନାହିଁ । ଏହିପରି ବିଚାର କରି ଭୃତ୍ୟମାନଙ୍କୁ ବେତନ ଦେବା ବିଧେୟ । ଏକବର୍ଷ ପୀଡ଼ିତ ଭୃତ୍ୟର ଜଣେ ପ୍ରତିନିଧି ନିଯୁକ୍ତ କରିବେ । ଅତ୍ୟନ୍ତ ଗୁଣଶାଳୀ ଭୃତ୍ୟ ବର୍ଷାବଧି ପୀଡ଼ିତ ହେଲେ ତାକୁ ଅର୍ଦ୍ଧ ବେତନ ନିଶ୍ଚୟ ପ୍ରଦତ୍ତ ହେବ । ଏକବର୍ଷ କାର୍ଯ୍ୟ କରିଥିବା ଲୋକ ଚାକିରି ଛାଡ଼ିଗଲେ, ରାଜା ତାକୁ ବର୍ଷରେ ତାର ଦି ୧୫ ନର ଦରମା ଦେବେ । ସୁଚାରୁରୂପେ ବ ୪୦ ର୍ଷ ଚାକିରି କରିଥିବା ଭୃତ୍ୟ କାର୍ଯ୍ୟ ପରିତ୍ୟାଗ କଲେ, ତାକୁ ତାହାର ବେତନର ଅର୍ଦ୍ଧେକ ତାହାର ମୃତ୍ୟୁ ପର୍ଯ୍ୟନ୍ତ ପେନ୍‌ସେନ୍ ଦେବେ । ଏପରି ଭୃତ୍ୟର ମୃତ୍ୟୁପରେ ତାହାର ଅକ୍ଷମ ପୁତ୍ର ବା ତାହାର ସୁଚରିତ୍ରା ସ୍ତ୍ରୀ ବା ତାହାର

ଅବିବାହିତା କନ୍ୟାକୁ ଉକ୍ତ ପେନ୍‌ସନ୍‌ର ଅର୍ଦ୍ଧେକ ପ୍ରଦାନ କରିବେ । ପ୍ରତିବର୍ଷ ଭୃତ୍ୟମାନଙ୍କୁ ବାର୍ଷିକ ଦରମାର ଅଷ୍ଟମାଂସ ପୁରସ୍କାର ଦେବେ । ଯେଉଁ ଭୃତ୍ୟ ସ୍ୱାମୀ କାର୍ଯ୍ୟରେ ମୃତହୁଏ, ରାଜା ତାହାର ଅକ୍ଷମ ପୁତ୍ରକୁ ପିତାର ବେତନ ପ୍ରଦାନ କରିବେ ଏବଂ ପୁତ୍ର ବୟସ୍କ ହେଲେ ତାକୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବେ ଏବଂ ତାର ଗୁଣାନୁସାରେ ତାକୁ ବେତନ ଦେବେ । ଭୃତ୍ୟ ବେତନର ଚତୁର୍ଥାଂଶ ବା ଷଷ୍ଠାଂଶ ରାଜା ନିଜ କୋଷରେ ରଖିବେ । କାରଣ ଯେତେବେଳେ ଭୃତ୍ୟ ଅତ୍ୟନ୍ତ ବିପଦରେ ପଡ଼ିବ ଅଥବା ବା ୨ ।୪ ବର୍ଷ ରୋଗରେ ଭୋଗିବ, ରାଜା ସେହି ସମୟରେ ଉକ୍ତ ଗଚ୍ଛିତ ଧନର ଅର୍ଦ୍ଧେକ ବା ସମୁଦାୟ ପ୍ରଦାନ କରିବେ (Insurance fund) । ରାଜା ଭୃତ୍ୟମାନଙ୍କୁ ଅତ୍ୟଧିକ ଭର୍ତ୍ସନା, ଅତ୍ୟଧିକ ଦଣ୍ଡ ବା ଅତ୍ୟଧିକ ଅପମାନ ଦେବେନାହିଁ । ବେତନ ଦାନ, ମାନରକ୍ଷା, ମୃତ୍ୟୁବାକ୍ୟ ପ୍ରତି ଦୃଷ୍ଟି ରଖିଲେ, ଭୃତ୍ୟ କେତେବେଳେ ପରିତ୍ୟାଗ କରେନାହିଁ ।

**ରାଜାଙ୍କ ଶାସନ:-** ରାଜ୍ୟରେ ରାଜାଙ୍କର ଶାସନାଜ୍ଞା ବାଦ୍ୟ ସହିତ ପ୍ରଚାର କରିବା ନିମନ୍ତେ କେତେକ ଲୋକ ନିଯୁକ୍ତ ଥିଲେ । ରାଜା ଏହି ଶାସନଦ୍ୱାରା ପ୍ରଜାମାନଙ୍କୁ ଅନ୍ୟାୟ କାର୍ଯ୍ୟରୁ ରହିତ କରାଉଥିଲେ ।

ରାଜ୍ୟରେ କେହି କାହାପ୍ରତି କୁବାକ୍ୟ ପ୍ରୟୋଗ ନ କରନ୍ତୁ; ପରିଣାମ ଦ୍ରବ୍ୟ ଓ ମୁଦ୍ରାଦିରେ କୂଟ ପ୍ରୟୋଗ, ସୁନା ରୂପାଦିରେ ଭେଳ ଏବଂ ଘିଅଦୁଧ ପ୍ରଭୃତିରେ ସଜାତୀୟ ଦ୍ରବ୍ୟ ମିଶ୍ରିତ ନ ହେଉ । ବଳପ୍ରୟୋଗ କରି କୌଣସି ଲୋକଠାରୁ କିଛି ଲେଖାଇ ଆଣିବା, ଉତ୍କୋଚ୍ ଗ୍ରହଣ କରିବା ଓ ସ୍ୱାମୀ କାର୍ଯ୍ୟରେ ଲୋଭ କରିବାରୁ ଲୋକେ ରହିତ ହୁଅ । ଦୁରାଚାରୀ, ଚୋର, ଜାର, ରାଜଦ୍ୱେଷୀ ଓ ଶତ୍ରୁମାନଙ୍କୁ ଅପ୍ରକାଶରେ କେହି ପ୍ରଶ୍ରୟ ନ ଦେଉନ୍ତୁ । କେହି କାହାରିକୁ ଅବମାନନା ନ କରୁ ଏବଂ ପରସ୍ପର ମଧ୍ୟରେ ଯେପରି କଳଜାତ ନ ହୁଏ; ନଦୀ ପୁଷ୍କରିଣୀ, ବାମ୍ପି, କୂଅ, ବଗିଚା, ସୀମା, ଧର୍ମଶାଳା ଯେପରି ଅପରିଷ୍କୃତ ନ ହୁଏ । ଦେବତା ଓ ପିତୃଗଣ ପ୍ରଜାଗଣଙ୍କୁ ପ୍ରଶ୍ନ କଲେ, ହେ ପ୍ରମଥଗଣ ତୁମ୍ଭମାନଙ୍କର କିଏ ଦଣ୍ଡ୍ୟ? ପ୍ରମଥଗଣ ଉତ୍ତର କରି କହିଲେ-

ଉଦକେ ଚାପ୍ୟମେଧ୍ୟାନି ଶ୍ଳେଷ୍ମାଣଞ୍ଚ ପ୍ରମୁଞ୍ଚତି
ଏତେ ଭକ୍ଷ୍ୟାଶ୍ଚ ବଧ୍ୟାଶ୍ଚ ମାନୁଷାଃ ନାତ୍ର ସଂଶୟଃ

ଯେଉଁମାନେ ଜଳରେ ଖରାପ ପଦାର୍ଥ ପକାନ୍ତି, ସେହି ମନୁଷ୍ୟମାନେ ଆମ୍ଭମାନଙ୍କର ଭକ୍ଷ୍ୟ ଓ ଦଣ୍ଡ୍ୟ । (ମହାଭାରତ: ଅନୁଶାସନ ୧୩୧)

ପୁନଶ୍ଚ-

ନୋତ୍‌ସୃଜେତ ପୁରୀଷଂ ଚ କ୍ଷେତ୍ରେ ଗ୍ରାମସ୍ୟ ଚାନ୍ତିକେ
ଜଭେ ମୂତ୍ରପୁରୀଷେ ତୁ ନା... କୁର୍ଯ୍ୟାଦ୍ କଦାଚନ"(ଅନୁଶାସନ)

ଗ୍ରାମ ସନ୍ନିହିତ କ୍ଷେତ୍ରରେ ପୁରୀଷତ୍ୟାଗ ଏବଂ ଜଳରେ ମଳମୂତ୍ର ପରିତ୍ୟାଗ କରିବାକୁ ନିଷେଧ କରିଅଛନ୍ତି ।

ରାଜାଜ୍ଞା ବିନା ଲୋକେ ଦ୍ୟୁତକ୍ରୀଡ଼ା, ମଦ୍ୟପାନ, ମୃଗୟା, ଶସ୍ତ୍ରଧାରଣ କରି ପାରିବେ ନାହିଁ (କେବଳ ସୈନ୍ୟମାନଙ୍କୁ ଯୁଦ୍ଧ ସମୟରେ ମଦ୍ୟ ପାନାର୍ଥେ ପ୍ରଦତ୍ତ ହେଉଥିଲା;)

ପାୟୟିତ୍ୱା ମଦଂ ସମ୍ୟକ୍ ସୈନିକାନ୍.... ଯୁଦ୍ଧେ ନିୟୋର୍ଜୟେତ୍ । (ଶୁକ୍ର ୭, ୩୫୨)

ରାଜାନୁମତି ବିନା ଗୋରୁ, ଜମିବାଡ଼ି, ସୁନାରୁପା ଓ ମାଦକଦ୍ରବ୍ୟ ବିକ୍ରୟ କରି ପାରିବେ ନାହିଁ । ରାଜାଜ୍ଞା ବିନା ମଦ ତିଆରି, କ୍ରୟପତ୍ର, ବିକ୍ରୟପତ୍ର ପ୍ରଭୃତି ଚିକିତ୍ସା ବ୍ୟବସାୟ ଲୋକେ ନ କରନ୍ତୁ । ଯେପରି କେହି ଓ୍ୱାରସ୍‌ଶୂନ୍ୟ ଲୋକର ପଦାର୍ଥ ଗ୍ରହଣ ନ କରେ । ପ୍ରଜାମାନେ ସମାଜରେ ନୂତନ ନିୟମ ନ କରନ୍ତୁ । ରାଜାଙ୍କ ଦୁର୍ଗୁଣ ବାଦରୁ ଲୋକେ କ୍ଷାନ୍ତ ହେଉନ୍ତୁ । ସ୍ୱଧର୍ମହାନି, ମିଥ୍ୟାବାକ୍ୟ, ପରଦାରାଗମନ, କୂଟସାକ୍ଷୀ, କୂଟଲେଖା, ଅଧିକ କର ଗ୍ରହଣ, ଚୋରି, ସ୍ୱାମୀଦ୍ରୋହୀ ଲୋକମାନେ ମନରେ ନ ଭାବନ୍ତୁ । ଯେ ଲୋକ ଶାସନକୁ ଅବଜ୍ଞା କରି ଅନ୍ୟଥା କରିବ, ତାକୁ ଗୁରୁତର ଦଣ୍ଡ ଦିଆଯିବ ।

ବିଚାରାଳୟ: ଧର୍ମସଭାରେ ବା ଧର୍ମାଧିକରଣରେ ଯେ ସମସ୍ତ ବିବାଦ ବିଷୟ ବିଚାର କରା ହେଉଥିଲା, ମନୁ ପ୍ରଭୃତି ଧର୍ମଶାସ୍ତ୍ରକାର ତାହା ଅଷ୍ଟାଦଶ ଭାଗରେ ବିଭକ୍ତ କରିଅଛନ୍ତି ।

୧) ଋଣ ଦାନ : ଟଙ୍କା କଉଡ଼ି ଦେବା ନେବା ବିଷୟକ ବିବାଦ
୨) ନିକ୍ଷେପ : ଗଚ୍ଛିତ ପଦାର୍ଥର ଫେରସ୍ତ ବିଷୟକ ବିବାଦ
୩) ଅସ୍ୱାଦିବିକ୍ରୟ: ଯେଉଁଥିରେ ସ୍ୱତ୍ୱ ନାହିଁ ତାହାର ବିକ୍ରୀଜନିତ ବିବାଦ
୪) ଦତ୍ତପ୍ରଦାନିକ: କାହାକୁ କିଛି ଦେଇ ପୁନର୍ବାର ଫେରାଇ ଆଣିବା ଜନିତ ବିବାଦ
୫) ସମ୍ଭୂୟ ସମୁଥିନ୍ : ଯୌଥ କାରବାରରେ କୌଣସି ବିବାଦ
୬) କ୍ରୟ ବିକ୍ରୟାନଶୟ : କ୍ରୟ ବିକ୍ରୟ ଜନିତ ବିବାଦ
୭) ବେତନାଦାନ : ବେତନ ବିଷୟକ ବିବାଦ
୮) ସଂବିଦ୍ୟତିକ୍ରମ: ଚୁକ୍ତିରୂପ କାର୍ଯ୍ୟ ନ କରିବା ହେତୁ ଯେ ବିବାଦ
୯) ସ୍ୱାମୀପାଳକ ବିବାଦ: ପଶୁର ଅଧିକାରୀ ଓ ପଶୁ ପାଳକ ମଧ୍ୟରେ ଯେ ବିବାଦ
୧୦) ସୀମା ବିଚାର: ଜମିବାଡ଼ିର ସୀମାଜନିତ ବିବାଦ
୧୧) ବାକ୍ ପାରୁଷ୍ୟ: ଗାଳି ଗୁଲଜ ହେତୁ ଯେ ବିବାଦ
୧୨) ଦଣ୍ଡ ପାରୁଷ୍ୟ: ମାରପିଟ ଜନିତ ବିବାଦ
୧୩) ସ୍ତେୟ : ଚୋରିହେତୁ ବିବାଦ
୧୪) ସାହସ : ବଳପୂର୍ବକ କୌଣସି ଅନ୍ୟାୟ କରିବା ହେତୁ ଯେ ବିବାଦ
୧୫) ସ୍ତ୍ରୀସଂଗ୍ରହଣ: ପରସ୍ତ୍ରୀ ହରଣ ଜନିତ ବିବାଦ

୧୬) ସ୍ତ୍ରୀ ପୁରୁଷ ଧର୍ମ ବିଭାଗ  ସ୍ତ୍ରୀର କି କର୍ତ୍ତବ୍ୟ ଓ ପୁରୁଷର କି କର୍ତ୍ତବ୍ୟ ଏତଜ୍ଜନିତ  ବିବାଦ

୧୭) ଦ୍ୟୂତକ୍ରୀଡ଼ା ଜନିତ ବିବାଦ

୧୮) ପକ୍ଷ ପ୍ରଭୃତିର ଯୁଦ୍ଧ ବିଷୟକ ବିବାଦ

ଅର୍ଥୀ ଓ ପ୍ରତ୍ୟର୍ଥି ବା ବାଦୀ ଓ ପ୍ରତିବାଦୀକୁ ଶପଥ କରାଇ ଉପଯୁକ୍ତ ସାକ୍ଷ୍ୟ ଗ୍ରହଣ ପୂର୍ବକ ବିଚାର କରାହେଉଥିଲା । ପ୍ରାଚୀନ ବିଚାର ବର୍ଣ୍ଣନା ଆମ୍ଭେମାନେ **ମୃଚ୍ଛକଟିକ** ନାଟକରେ ଦେଖିବାକୁ ପାଉଁ, ବର୍ଣ୍ଣନାବାହୁଲ୍ୟ ଭୟରେ ଉପେକ୍ଷିତ ହେଲା ।

ଦାନ: ଯେ ନରପତି ପଞ୍ଚପ୍ରକାର ଦାନ କରନ୍ତି, ସେ  ପରମସୁଖ ଉପଭୋଗ କରନ୍ତି- ଧର୍ମ୍ମ, ଅର୍ଥ, ଭୟ, କାମ ଓ କାରୁଣ୍ୟ- ଏହି ପଞ୍ଚବିଧ କାରଣନିବନ୍ଧନ ଦାନ ଅଭିହିତ ହୋଇଅଛି ।

**ଦଣ୍ଡ:** ତିରସ୍କାର, ଅପମାନ, ବନ୍ଧନ, ପ୍ରହାର, ଅନାହାରରେ ସ୍ଥାପନ, ମସ୍ତକମୁଣ୍ଡନ, ଅଙ୍ଗାଦିଚ୍ଛେଦନ, ନିର୍ବାସନ, ଶରୀରରେ ଚିହ୍ନାଦି ପ୍ରଦାନ ଓ ବଧ ପ୍ରଭୃତି ଦଣ୍ଡ ଅପରାଧୀ ପ୍ରତି ବିହିତ ହେଉଥିଲା । ଉଦ୍ଧତ, କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟରେ ମୂଢ଼ ବିପଥଗାମୀ ଗୁରୁ ମଧ ଦଣ୍ଡ୍ୟ । ଯେ ରାଜା ଦୋଷୀକୁ ଦଣ୍ଡ ନ ଦିଅନ୍ତି ବା ଅତ୍ୟଧିକ ଦଣ୍ଡ ଦିଅନ୍ତି, ଉକ୍ତ ରାଜାଙ୍କୁ ଗୁଣବାନ୍ ଲୋକେ ପରିତ୍ୟାଗ କରନ୍ତି ଏବଂ ସେ ରାଜା ଜଣେ ମହାନ୍ ପାପୀ ।

ଦଣ୍ଡ୍ୟାସ୍ୟାଂଦଣ୍ଡାନ୍ନିତ୍ୟମ ଦଣ୍ଡ୍ୟସ୍ୟ ଚ ଦଣ୍ଡନାତ୍
ଅତି ଦଣ୍ଡଶ୍ଚ ଗୁଣିଭିସ୍ତ୍ୟଜ୍ୟତେ ପାତକୀ ଭବେତ୍ ।

ବ୍ରାହ୍ମଣଙ୍କୁ ଦୈହିକ ଦଣ୍ଡ ଦିଆଯାଉ ନ ଥିଲା; ଅପରାଧୀ ବ୍ରାହ୍ମଣର ମସ୍ତକ ମୁଣ୍ଡନ କରି ଦେଉଥିଲେ, ତାହାର ଧନ ହରଣ କରୁଥିଲେ ଏବଂ ରାଜ୍ୟରୁ ନିର୍ବାସନ କରି ଦେଉଥିଲେ ।

ବପନଂ ଦ୍ରବିଣାଦାନଂ ସ୍ଥାନାନ୍ନିର୍ବାସନଂ ତଥା
ଏଷ ହି ବ୍ରହ୍ମ ବନ୍ଧୂନାଂ ବଧୋ ଯନୋଽସ୍ତିଦୈହିକଃ ।

ପୁନଶ୍ଚ: ରାଜଦ୍ୱିଷ୍ଟେ ବିପ୍ରସ୍ୟ ବିଷୟାତ୍ତ ବିବାସନଂ । (ମହାଭାରତ)
ଗୁଣବାନ୍ ଲୋକ ଅପରାଧୀ ହେଲେ ତାକୁ ଦେଶରୁ ନିର୍ବାସନ କରିଦେବା ଉଚିତ୍ ।

ଗୁଣବତାଞ୍ଚ ଦୁଷ୍ଟାନାଂ ହିତଂ ନିର୍ବାସନଂ ସଦା

**ମନ୍ତ୍ର:** ମନ୍ତ୍ର ପଞ୍ଚବିଧ, ସହାୟ, ସାଧନୋପାୟ, ଦେଶ ଓ କାଳ ସମ୍ବନ୍ଧରେ ବିପତ୍ତିର ପ୍ରତିକାର ।

ମଣ୍ଡଳାଧିପତିଙ୍କର କୋଷ, ଦଣ୍ଡ, ଅମାତ୍ୟ ଓ ସୁଦୃଢ଼ ଦୁର୍ଗଯୁକ୍ତ ହେବା ଉଚିତ୍ ।

ରାଜା ସପ୍ତାଙ୍ଗବିଶିଷ୍ଟ: ସ୍ୱାମୀ, ଅମାତ୍ୟ, ରାଷ୍ଟ୍ର, ଦୁର୍ଗ, କୋଷ, ବଳ ଓ ସୁହୃଦ୍ । ସପ୍ତପ୍ରକୃତିକ ରାଜା ବୃହସ୍ପତିଙ୍କଦ୍ୱାରା କଥିତ ।

ବିଜିଗୀଷୁ ନିଜ ଦୃଷ୍ଟିରେ ଶତ୍ରୁ, ମିତ୍ର, ମିତ୍ରର ମିତ୍ର, ଅରିର ମିତ୍ରର ମିତ୍ରଙ୍କୁ ରଖିବେ । ମଧ୍ୟମ ଓ ଉଦାସୀନଙ୍କର ଅବସ୍ଥା ଅବଲୋକନ କରିବେ । ପାର୍ଷ୍ଣିଗ୍ରାହ: ଦୁଇ

ଆମ୍ଭାର(ଅର୍ଥାତ୍ ଶତ୍ରୁର ଓ ନିଜର) ଓ ଅନ୍ତ୍ରନ୍ଦ- ଏହିରୂପ ବିଜିଗୀଷୁ ଦ୍ୱାଦଶମଣ୍ଡଳକୁ ନିଜ ଦୃଷ୍ଟିପଥରେ ରଖିବେ ।

ନୀତିକାରମାନେ କହିଅଛନ୍ତି, ଯେ ରାଜା ଅଷ୍ଟଶାଖା, ଚତୁର୍ମୂଳ, ଷଷ୍ଟିପତ୍ର, ଉଭୟପାର୍ଶ୍ୱରେ ସ୍ଥିତ, ଷଟ୍‌ପୁଷ୍ପ ଓ ତ୍ରିଫଳବିଶିଷ୍ଟ ବୃକ୍ଷ ଜାଣନ୍ତି, ସେ ନୀତିବିଦ୍ ।

**ଅଷ୍ଟଶାଖା:** ବିଜିଗୀଷୁ, ଶତ୍ରୁ, ମିତ୍ର, ଶତ୍ରୁର ମିତ୍ର, ମିତ୍ରର ମିତ୍ର, ଅରିର ମିତ୍ରର ମିତ୍ର, ମଧ୍ୟମ, ଉଦାସୀନ

**ଚତୁର୍ମୂଳ:** ଦୁଇ ଆମ୍ଭାର, ଆନ୍ତ୍ରନ୍ଦ ଓ ପାର୍ଷ୍ଣିଗ୍ରାହ ।

**ଉଭୟ ପାର୍ଶ୍ୱରେ ସ୍ଥିତ:** ଚିତ୍ରପକ୍ଷ, ନିଜପକ୍ଷ ।

**ଷଷ୍ଟିପତ୍ର:** ଏହି ଦ୍ୱାଦଶ ମଣ୍ଡଳର ଅମାତ୍ୟ, ରାଷ୍ଟ୍ର, ଦୁର୍ଗ, କୋଷ, ଦଣ୍ଡ ।

**ଷଟ୍‌ପୁଷ୍ପ:** ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱେଧୀଭାବ, ସଂଶ୍ରୟ ।

**ତ୍ରିଫଳ:** ବୃଦ୍ଧି, କ୍ଷୟ, ସ୍ଥାନ

ଅଷ୍ଟଶାଖଂ ଚତୁର୍ମୂଳଂ ଷଷ୍ଟିପତ୍ରଂ ଦ୍ୱୟେସ୍ଥିତଂ
ଷଟ୍‌ପୁଷ୍ପଂ ତ୍ରିଫଳଂ ବୃକ୍ଷଂ ଯୋ ଜାନାତି ସ ନୀତିବତ୍ ।
(କାମନ୍ଦକ, ଅଷ୍ଟମସର୍ଗ-୪୨)

**ଶତ୍ରୁଦ୍ୱିବିଧ:** ସହଜ ଓ କାର୍ଯ୍ୟଜ:- ରାଜା ସାମ, ଦାନ ମାନରେ ନିଜ ପ୍ରକୃତିକୁ ବଶ କରିବେ ଏବଂ ଶତ୍ରୁକୁ ଭେଦ ଓ ଦଣ୍ଡଦ୍ୱାରା ନାଶ କରିବେ:-

ସନ୍ଧି: ସନ୍ଧି ୧୬ ପ୍ରକାର ଯଥା- କପାଳ, ଉପହାର, ସନ୍ତାନ, ସଙ୍ଗତ, ଉପନ୍ୟାସ, ପ୍ରତିକାର ଇତ୍ୟାଦି । (କାମପାଳ, ନବମ ସର୍ଗ) ଭୀରୁ, ଲୁବ୍ଧ, ବାଳକ, ବୃଦ୍ଧ, ବ୍ୟସନୀ ପ୍ରଭୃତି ୨୦ ପ୍ରକାର ରାଜାଙ୍କ ସଙ୍ଗେ ସନ୍ଧି କରିବା କର୍ତ୍ତବ୍ୟ ନୁହେଁ ।

ଅନେକ କାରଣରୁ ବିଗ୍ରହ ଜାତ ହୁଏ । ବନ୍ଧୁ ବିନାଶରେ, ମଣ୍ଡଳ ଭେଦରେ, ଅପହାର, ରାଜ୍ୟ, ସ୍ତ୍ରୀ, ସ୍ଥାନ, ଦେଶ ନେଇ ବିଗ୍ରହ, କି ରକମ ଉପଶମ - ତାହାର ବିଧାନ କାମନ୍ଦକନୀତିସାରରେ ବିଜିଗୀଷୁ, କୌଶଳରେ ଶତ୍ରୁର ମିତ୍ରକୁ ବଶ କରିବେ, ପାର୍ଷ୍ଣିଗ୍ରାହକୁ ନିଜ ଆକ୍ରନ୍ଦଦ୍ୱାରା ବଶ କରାଇବେ । ମଧ୍ୟମ ଓ ଉଦାସୀନ ସଙ୍ଗରେ ମିତ୍ରତା ସ୍ଥାପନ କରି ଶତ୍ରୁ ପ୍ରକୃତିରେ ଭେଦ ପ୍ରୟୋଗକୁ ଆକ୍ରମଣ କରିବେ ।

ଓ ଆସନ ପ୍ରତ୍ୟେକେ ପଞ୍ଚବିଧ:- (୧) ସମସ୍ତ ଶତ୍ରୁଙ୍କୁ ପରାସ୍ତ କରି ଯାନ ଓ ଆସନ; (୨) ପାର୍ଷ୍ଣିଗ୍ରାହଙ୍କ ସହ ସନ୍ଧିକରି ଯାନ ଓ ଆସନ (୩) ସଂଗ୍ରାମନିପୁବର୍ଗଙ୍କ ସହିତ ମିଳିତ ହୋଇ ଯାନ ଓ ଆସନ (୪) ଅବଲମ୍ବନ ପୂର୍ବକ ମିଳିତ ହୋଇ ଯାନ ଓ ଆସନ (୫) ଶତ୍ରୁକୁ ପରାସ୍ତ କରି ଯେ ଯାନ ଓ ଆସନ ।

ଦ୍ୱୈଧୀଭାବ:- ଦୁଇ ପ୍ରବଳ ଶକ୍ତିର ବିଗ୍ରହାବସ୍ଥାରେ ଯେ ତାଙ୍କ ଠାରେ ଆପଣାକୁ କେବଳ ବାକ୍ୟ ଦ୍ୱାରା ବଶକରି କାକାକ୍ଷି ତୁଲ୍ୟ ଅଲକ୍ଷିତ ଭାବରେ ରହେ, ସମୟରେ ବଳବାନକୁ ଆଶ୍ରୟ କରେ, ସେ ଦ୍ୱେଧୀଭାବ ଅବଲମ୍ବନ କରେ । ଦ୍ୱେଧୀଭାବ ଦୁଇଭାଗରେ ବିଭକ୍ତ ସ୍ୱତନ୍ତ୍ର ଯଥା ପରତନ୍ତ୍ର ।

**ସଂଶ୍ରୟ**:- ଯେ ରାଜା ବଳବାନ୍ ରଜାଦ୍ୱାରା ପ୍ରପୀଡ଼ିତ ଓ ନଷ୍ଟ ପ୍ରାୟ- ସେ ରଜା ଯଦ୍ୟପି ନିଜ ରାଜ୍ୟର ଆଭ୍ୟନ୍ତରୀଣ ଉନ୍ନତି କର୍ତ୍ତେ ବ୍ରତୀ ହୋଇ ଧର୍ମ ଅବଲମ୍ବନ ପୂର୍ବକ ବଳବାନ୍ ହେବାକୁ ଚେଷ୍ଟା କରନ୍ତି, ସେ ସଂଶ୍ରୟ ଉପାୟ ଅବଲମ୍ବନ କରନ୍ତି । ଶରତ, ହେମନ୍ତ, ଶିଶିର- ଯୁଦ୍ଧକୁ ଉତ୍ତମ ସମୟ । ବସନ୍ତ ମଧ୍ୟମ, ଗ୍ରୀଷ୍ମ ଅଧମ, କିନ୍ତୁ ବର୍ଷା ସମୟରେ ଯୁଦ୍ଧ କରିବା ଉଚିତ୍ ନୁହେଁ । ସେସମୟରେ ସନ୍ଧି କରି ରଖିବା ଉଚିତ୍ ।

ଧର୍ମଯୁଦ୍ଧରେ ସ୍ଥଳାରୂଢ଼, କ୍ଲୀବ, ମୁକ୍ତକେଶ, ଶରଣାଗତ, ସୁପ୍ତ, ଅନୁଦ୍ୟତ, ନଗ୍ନ, ଆୟୁଧହୀନ, ଦ୍ରଷ୍ଟା, ପିଉଥିବା ଓ ଆହାର କରୁଥିବା ଲୋକ, ଅନ୍ୟ କାର୍ଯ୍ୟରେ ବ୍ୟସ୍ତ, ଭୀତ, ବୃଦ୍ଧ, ବାଳକ ପ୍ରଭୃତିଙ୍କୁ ହତ୍ୟା କରିବାରେ ନିଷେଧ ଅଛି ।     ।ଶୁକ୍ର ୩୫୫ - ୩୫୭ ।

କିନ୍ତୁ କୂଟଯୁଦ୍ଧରେ ଏହିସବୁ ନିୟମ ପାଳନ କରାଯାଏନାହିଁ । କୌଟିଲ୍ୟ (ଚାଣକ୍ୟ)ଙ୍କ ପୂର୍ବରେ ଭାରତର ରାଜନୀତି ଧର୍ମନୀତି ଉପରେ ସ୍ଥାପିତ ଥିଲା, କିନ୍ତୁ ଚାଣକ୍ୟ ରାଜନୀତିକୁ ଧର୍ମନୀତିରୁ ବିଚ୍ଛିନ୍ନ କରିଦେଲେ । ବିଷପ୍ରୟୋଗ, ଉପାଂଶୁ ଓ ବଧାଦି ଚାଣକ୍ୟ ନୀତିରେ ଅନୁମୋଦିତ ।

କାଦମ୍ବରୀପ୍ରଣେତା ବଡ଼ ଦୁଃଖର ସହିତ କହିଅଛନ୍ତି; । "ଯେଷାମତି ନୃଶଂସପ୍ରାୟୋପଦେଶନିର୍ଘୃଣଂ କୌଟିଲ୍ୟ ଶାସ୍ତ୍ର ପ୍ରମାଣଂ"

ଯୁଦ୍ଧ ସମ୍ବନ୍ଧୀୟ ଅନେକ ବିଷୟ ଏହି ପ୍ରବନ୍ଧରେ ଉପେକ୍ଷିତ ହେଲା । ଦେଶ କାଳ ଓ ପାତ୍ରପ୍ରତି ବିବେଚନା କରି ଉକ୍ତ କାର୍ଯ୍ୟରୁ ବଞ୍ଚିତ ହେଲି ।

# ସାରିପୁତ୍ର ଓ ମୋଗ୍‌ଗଲ୍ଲାନ

ମହାମହିମ ଭଗବାନ୍ ବୁଦ୍ଧଦେବଙ୍କ ଶିଷ୍ୟମାନଙ୍କ ମଧ୍ୟରେ ସାରିପୁତ୍ର (ସାରିପୁତ୍ର) ଓ ମୋଗ୍‌ଗଲ୍ଲାନ୍(ମୋଗଲାୟନ) ସର୍ବଶ୍ରେଷ୍ଠ ଥିଲେ । ସାରିପୁତ୍ର ଉପତିସ୍‌ସ ଉପତିଷ୍ୟ ନାମକ ଗ୍ରାମରେ ଏବଂ ମୋଗ୍‌ଗଲାନ କୋଲିତ ଗ୍ରାମରେ ଜାତ ହୋଇଥିବାରୁ ଉଭୟେ ଯଥାକ୍ରମେ ହୋତିସମ୍ ଓ କୋଲିତ ନାମରେ ଆହୂତ ହେଉଥିଲେ । ଉଭୟେ ପ୍ରସିଦ୍ଧ ବ୍ରାହ୍ମଣ କୁଳ ଦ୍ୱୟରେ ଏକ ଦିବସରେ ଜାତ ହୋଇଥିଲେ ଏବଂ ବାଲ୍ୟକାଳରେ ଦୁହେଁ କ୍ରୀଡ଼ା ସଙ୍ଗୀଥିଲେ । ଉଭୟଙ୍କ ମାତାଙ୍କ ନାମ ରୂପସାରୀ ଓ ମୋଗ୍‌ଗଲ୍ଲୀ ଥିବାରୁ ତାଙ୍କର ସ୍ନେହର ନାମ ଯଥାକ୍ରମେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ ହୋଇଥିଲା । ବାଲ୍ୟକାଳରେ ସେ ଦୁହେଁ ମହାସୌଖ୍ୟରେ ପରିବର୍ଦ୍ଧିତ ହୋଇଥିଲେ ହେଁ ସେମାନେ ସର୍ବଦା ସଦ୍‌ଗୁଣାବଳିରେ ଭୂଷିତ ହୋଇପାରିଥିଲେ । ଉଭୟଙ୍କ ପରିବାର ବହୁ କାଳରୁ ବନ୍ଧୁତା ସୂତ୍ରରେ ଆବଦ୍ଧ ଥିଲେ । ସେ ଦୁଇ ଯୁବକ ସଞ୍ଜୟ ନାମଧାରୀ ଜଣେ ପଣ୍ଡିତଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏକଦା ଏକତ୍ର ନାଟକାଭିନୟ ଦର୍ଶନ କରିବା ନିମିତ୍ତ ଯାଇଥିଲେ । ସେ ଦୁହିଁଙ୍କ ଦାର୍ଶନିକ ଚିତ୍ତରେ ଉକ୍ତ ନାଟକର ଅଭିନୟ ଗଭୀର ଭାବରେ ପ୍ରଭାବ ବିସ୍ତାର କରିଥିଲା ଏବଂ ଉଭୟଙ୍କ ସରଳ କୋମଳ ପ୍ରାଣରେ ସଂସାରର ନଶ୍ୱରତାର ବାଣୀ ଆତ୍ମପ୍ରକାଶ କଲା । ସେହି ନାଟକର ଅଭିନୟ ମିଥ୍ୟା ନୁହେଁ- ସମଗ୍ର ବିଶ୍ୱ ସଂସାର ହିଁ ଅଭିନୟ । ବିଶ୍ୱ ସଂସାରର ଅଭିନୟରେ ମାନବ ଭାନ୍ତ ପଥରେ ପଥିକ ହୁଏ, କିନ୍ତୁ ତରୁଣ ମିତ୍ର ଦ୍ୱୟଙ୍କ ଚିତ୍ତରେ ସନ୍ନ୍ୟାସ ଭାବ ସ୍ୱତଃ ଜାତ ହେଲା । ପ୍ରଥମେ ସାରିପୁତ୍ର ମୁକ୍ତିପଥ ଅନ୍ୱେଷଣାର୍ଥେ ସଂସାର ତ୍ୟାଗ କରିବାର ସଂକଳ୍ପ କରି ମୋଗ୍‌ଗଲ୍ଲାନଙ୍କୁ ସନିର୍ବନ୍ଧ ଅନୁରୋଧ କଲେ । 'ଭାଇ ମୁଁ ସନ୍ନ୍ୟାସ ପଥ ଆଶ୍ରୟ କରୁଛି, ତୁମ୍ଭେ ମଧ୍ୟ ଏହି ମାର୍ଗ ଅନ୍ୱେଷଣ କର' । ମୋଗ୍‌ଗଲ୍ଲାନ ଉକ୍ତ ଭାବ ହୃଦରେ ପୋଷଣ କରିଥିବାରୁ ଉଭୟେ ଏକଚିତ୍ତ ହୋଇ ସଂସାର ତ୍ୟାଗ କଲେ । ଗୁରୁ ସଞ୍ଜୟଙ୍କ ଶିକ୍ଷାରେ ମିତ୍ରଦ୍ୱୟ ଅଭୀଷ୍ଟ ବିଷୟ ପ୍ରାପ୍ତିର ପ୍ରକୃଷ୍ଟ ପନ୍ଥା ଲାଭ ନ କରିବା ହେତୁ ଭାରତର ପ୍ରଧାନ ପ୍ରଧାନ ସ୍ଥାନ ଭ୍ରମଣ କରି ବିଶିଷ୍ଟ ବିଶିଷ୍ଟ ଧାର୍ମିକ ପଣ୍ଡିତଙ୍କ ସହ ଧର୍ମର ଗୂଢ ବିଷୟମାନ ବିଚାର କରିଥିଲେ । କିନ୍ତୁ କୁତ୍ରାପି ଚିତ୍ତରେ ସନ୍ତୋଷ ଲାଭକରି ପାରି ନ ଥିଲେ । ବିଫଳ ମନୋରଥ ହୋଇ ଉଭୟେ ସ୍ୱସ୍ୱ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ । ଜିଜ୍ଞାସୁର ହୃଦୟ କି ସ୍ଥିର ହୋଇ ରହିପାରେ । ହୃଦୟର ଆକୁଳ ସ୍ପନ୍ଦନ ଦୁଇ ମିତ୍ରଙ୍କୁ ସ୍ଥିରକରି ରଖିପାରିଲା ନାହିଁ । କିଛି କାଳ ପରେ ଉଭୟେ ବିଚାର କରି ସ୍ଥିର କଲେ- ଅଭୀଷ୍ଟ ପ୍ରାପ୍ତିର ପନ୍ଥା ଯେ ପ୍ରଥମେ ଲାଭ କରବାରେ ସମର୍ଥ ହେବ, ସେ ଅପରକୁ ଅନତି ବିଳମ୍ବେ ଜଣାଇବେ । ଏରୂପ ପ୍ରତିଜ୍ଞାବଦ୍ଧ ହୋଇ ପରସ୍ପର ପରସ୍ପରଠାରୁ ବିଦାୟ ଗ୍ରହଣ ପୂର୍ବକ ଭିନ୍ନଭିନ୍ନ ପଥ

ଅବଲମ୍ବନ କଲେ ଓ ଦେଶ ବିଦେଶ ପର୍ଯ୍ୟଟନରେ ପ୍ରବୃତ୍ତ ହେଲେ । ଏହି ସମୟରେ ଭଗବାନ ବୁଦ୍ଧଦେବ ସ୍ୱଧର୍ମ ପ୍ରଚାର ନିମିତ୍ତ ଦେଶବିଦେଶକୁ ନିଜର ୬୦ଜଣ ଶିଷ୍ୟ ପ୍ରେରଣ କରିଥିଲେ । ତନ୍ମଧ୍ୟରୁ ଅର୍ହତ ଅସ୍‌ସଜି(ଅଶ୍ୱଜିତ୍) ଧର୍ମ ପ୍ରଚାର କରିବା ନିମିତ୍ତ ରାଜଗୃହ ଅଞ୍ଚଳକୁ ଆସିଥିଲେ । ଦିନେ ପୂର୍ବାହ୍ନ କାଳରେ ପାତ୍ର-ଚୀବର ଧାରୀ ଆୟୁଷ୍ମାନ୍ ଅସ୍‌ସଜି ସୁଆଚ୍ଛାଦିତ ଭାବେ ଅତି ସୁନ୍ଦର ଆଲୋକନ ବିଲୋକନ ସହ ଭୂତଳ ଦୃଷ୍ଟିରେ, ସଂଯମୀ ଭାବରେ, ରାଜଗୃହରେ ଭିକ୍ଷା ନିମିତ୍ତ ବିଚରଣ କରିବା ଦେଖି ସାରିପୁତ୍ତ ମନେମନେ ଭାବିଲେ, ସଂସାରରେ ଅର୍ହତ ମାର୍ଗରେ ଯେଉଁମାନେ ପଥିକ, ଏହି ଭିକ୍ଷୁକ ତନ୍ମଧ୍ୟରୁ ଅନ୍ୟତମ । ସାରିପୁତ୍ତ ଭାବି ଠିକ କଲେ ଯେ, ଭିକ୍ଷାବାସରରେ ଏହାଙ୍କୁ ପ୍ରଶ୍ନ କରିବା ଆଦୌ ସମୀଚୀନ ନୁହେଁ । ଆୟୁଷ୍ମାନ୍ ଅସ୍‌ସଜି ଭିକ୍ଷାଟନ ସାରି ସ୍ୱ ଅବସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । କିଞ୍ଚିତ କାଳ ପରେ ସାରିପୁତ୍ତ ଅସ୍‌ସଜିଙ୍କ ବାସସ୍ଥାନରେ ଉପସ୍ଥିତ ହୋଇ ତାଙ୍କୁ ଯଥା-ଯୋଗ୍ୟ କୁଶଳ ପ୍ରଶ୍ନ ପୁଚ୍ଛାକରି ଏକ ପାର୍ଶ୍ୱରେ ଦଣ୍ଡାୟମାନ ହେଲେ ଓ ତାଙ୍କୁ କହିଲେ, 'ମହାଭାଗ! ଆପଣଙ୍କ ଇନ୍ଦ୍ରିୟଗଣ ପ୍ରସନ୍ନ ଓ କାନ୍ତି ଶୁଦ୍ଧ ତଥା ଉଜ୍ଜ୍ୱଳ । ଆପଣ କେଉଁ ମହାତ୍ମାଙ୍କୁ ଗୁରୁ କରି ସାଧୁ ହୋଇଅଛନ୍ତି । ଆପଣଙ୍କ ଗୁରୁଦେବ କିଏ ଓ ଆପଣ କାହାର ଧର୍ମ ପ୍ରତିପାଳନ କରନ୍ତି ।' ତହୁଁ ଅସ୍‌ସଜି କହିଲେ- 'ମହାଶୟ' ଶାକ୍ୟକୁଳର ପ୍ରବ୍ରଜିତ ଶାକ୍ୟପୁତ୍ର ଯେ ମହାଶ୍ରମଣ, ସେହି ଭଗବାନଙ୍କୁ ଗୁରୁ କରି ମୁଁ ସାଧୁ ହୋଇଅଛି । ସେହି ଭଗବାନ ମୋର ଗୁରୁ-ସେହି ଭଗବାନଙ୍କ ଧର୍ମ ପ୍ରତିପାଳନ କରେ ।' ତହୁଁ ସାରିପୁତ୍ତ ପ୍ରଶ୍ନକଲେ, ଆୟୁଷ୍ମନ୍ତଙ୍କ ଗୁରୁଙ୍କର କି ମତ ଏବଂ କେଉଁ ସିଦ୍ଧାନ୍ତକୁ ସେ ବିଶେଷଭାବରେ ମାନନ୍ତି । ଉତ୍ତରରେ ଅସ୍‌ସଜି କହିଲେ "ମୁଁ ବର୍ତ୍ତମାନ ଏହି ଧର୍ମରେ ନୂତନ ହୋଇ ସାଧୁ ହୋଇଅଛି । ବିସ୍ତୃତଭାବେ ମୁଁ ଆପଣଙ୍କୁ ଧର୍ମ ବିଷୟ କହି ପାରିବିନାହିଁ- ତେଣୁ ସଂକ୍ଷେପରେ ମୁଁ ଆପଣଙ୍କୁ ଧର୍ମ କହୁଅଛି ।" ତାହା ଶୁଣି ସାରିପୁତ୍ତ କହିଲେ, 'ଆଚ୍ଛା ଆପଣ ଅଳ୍ପ ବହୁତ ଯାହା ହେଉ କହନ୍ତୁ- ସାର ବିଷୟକୁ ହିଁ ମୋତେ କହନ୍ତୁ । ତହୁଁ ଆୟୁଷ୍ମନ୍ତ ଅସ୍‌ସଜି ପରିବ୍ରାଜକ ସାରିପୁତ୍ତଙ୍କୁ ଏହି ଧର୍ମ ଉପଦେଶ କହିଲେ ।

"ଯେ ଧମ୍ମା ହେତୁ ପ୍ପଭବା । ତେସଂ ହେତୁଂ ତଥାଂ ଗତୋ ଆହ ' ତେସଂ ଚ ଯୋ ନିରୋଧା । ଏବଂ ବାଦି ମହା ସ୍‌ସମନୋ ।" "କାରଣରୁ ଜାତହେବା ଯେତେ ବସ୍ତୁ ବିଦ୍ୟମାନ, ସେହି ସବୁର କୌଣସି ନା କୌଣସି କାରଣ ଅଛି- ଏପରି ତଥାଗତ(ବୁଦ୍ଧଦେବ) କହିଅଛନ୍ତି । ସେସବୁର (ସେହି କାରଣମାନଙ୍କର)କି ରୂପେ ନିରୋଧ ହୋଇପାରେ, ସେକଥା ମଧ୍ୟ ସେହି ମହାଶ୍ରମଣ କହି ଅଛନ୍ତି ।" ସାରିପୁତ୍ତ ଅସ୍‌ସଜିଙ୍କ ଠାରୁ ଯାହା ଶୁଣିଲେ, ସେଠାରେ ତାଙ୍କ ଚିତ୍ତରେ ପରମ ସନ୍ତୋଷ ଲାଭହେଲା । ଅସ୍‌ସଜିଙ୍କ ବାଣୀ ତାଙ୍କ ଜ୍ଞାନ ପିପାସାକୁ ଉଦ୍ରେକ କଲା । ହେତୁ ବିନା କୌଣସି କର୍ମ ସମ୍ଭବେ ନାହିଁ । ବୀଜ ବିନା ବୃକ୍ଷର ଜନ୍ମ ନାହିଁ । କାମନା ହିଁ ସଂସାରରେ ଅସନ୍ତୋଷର କାରଣ । ଯାହାର ଆଶା ନାହିଁ, ତାହାର ନିରାଶାର ସମ୍ଭାବନା କେଉଁଠାରେ ? ଯେ ଆଶାକୁ ବଶୀଭୂତ କରିଅଛି, ସେ ଜଗତକୁ ବଶୀଭୂତ କରେ- "ଆଶା

ଦାସୀ କୃତା ଯେସ ତେନ ଦାସୀ କୃତଂ ଜଗଦ୍" । ସାରିପୁତ୍ର ଏହି ସାଧୁଙ୍କର ମହାଶ୍ରମଣ ଅଟନ୍ତି । ଯେ ମହାତ୍ମା ମୂଳ ହେତୁ ନିରୋଧକ ଉପାୟ ନିର୍ଦ୍ଧାରଣ କରି ଅଛନ୍ତି, ତାଙ୍କର ଦର୍ଶନ ବହୁ ପୁଣ୍ୟ ସାପେକ୍ଷ । ମୂଳ ହେତୁ ନିରୋଧ ମୁକ୍ତିର ମୂଳ ଉପାୟ-ମୁକ୍ତିଦ୍ୱାରର ଉଦ୍ଘୋଟକ । "ତୀକ୍ଷ୍ଣବୁଦ୍ଧି ସାରିପୁତ୍ର ଉକ୍ତ ଶ୍ଳୋକର- ଶିକ୍ଷାମୂଳକ ଉପଦେଶ ବାଣୀର ମର୍ମ ହୃଦୟଙ୍ଗମ କଲେ । ସେହି ପରମ ସତ୍ୟ ପ୍ରାପ୍ତି ନିମିତ୍ତ କେବଳ ସେ ସାମାନ୍ୟ ସଙ୍କେତ ଚାହୁଁଥିଲେ । ଶ୍ଳୋକର ପ୍ରଥମ ପାଦ ଶୁଣିବା ମାତ୍ରେ ସେ 'ସୋତାପତ୍ତି' ଦଶା ପ୍ରାପ୍ତ ହୋଇଥିଲେ ବୋଲି କଥିତ ଅଛି । ପୁଣ୍ୟାତ୍ମା ଅସ୍‌ସଜି ତାଙ୍କ ଜ୍ଞାନଚକ୍ଷୁ ଉନ୍ମୀଳିତ କରି ଦେବାରୁ ତାଙ୍କର ହୃଦୟ ତାଙ୍କଠାରେ ଗଭୀର କୃତଜ୍ଞତା ପାଶରେ ଆବଦ୍ଧ ହେଲା । ତତ୍‌ପରେ ସେ ଅନ୍ୟ ଯତ୍‌କିଞ୍ଚିତ ଧର୍ମତତ୍ତ୍ୱ ଶ୍ରବଣକରି ମହାକରୁଣାମୟ ବୁଦ୍ଧଦେବଙ୍କ ସମ୍ବନ୍ଧରେ ପ୍ରୟୋଜନ ସମ୍ବାଦ ଲାଭକଲେ । ତତ୍‌ପରେ ସେ ଉକ୍ତ ସତ୍‌ପୁରୁଷଙ୍କ ଅନୁମତି ଗ୍ରହଣକରି ତାଙ୍କ ପୂର୍ବ ପ୍ରତିଶ୍ରୁତି ଅନୁସାରେ ଅତି କ୍ଷିପ୍ର ଗତିରେ ମୋଗ୍‌ଗଲ୍ଲାନଙ୍କ ସନ୍ଧାନ ପାଇଲେ ।

ମୋଗ୍‌ଗଲ୍ଲାନ ଦୂରରୁ ସାରିପୁତ୍ରଙ୍କୁ ଆସିବାର ଦେଖିଲେ । ପରେ ସେ ତାଙ୍କୁ ଭେଟି କହିଲେ, "ମିତ୍ର, ତୁମ୍ଭର ଇନ୍ଦ୍ରିୟଗଣ ପ୍ରସନ୍ନ- ତୁମ୍ଭର କାନ୍ତି ଶୁଦ୍ଧ ଓ ଉଜ୍ଜ୍ୱଳ । ମିତ୍ର ତୁମେ କ'ଣ ଅମୃତ ପାଇନାହଁ ।" ସାରିପୁତ୍ର କହିଲେ- "ହଁ ମିତ୍ର, ଅମୃତ ପାଇଗଲି ।" "କିପରି ତୁମ୍ଭେ ଅମୃତ ପାଇଲ ?" ଏହା ମୋଗ୍‌ଗଲ୍ଲାନ ପଚାରନ୍ତେ- ସେ ପୁଣ୍ୟାତ୍ମା ଅସ୍‌ସଜିଙ୍କ ଦର୍ଶନଲାଭ ଓ ତାଙ୍କଠାରୁ ଯେ ଧର୍ମୋପଦେଶ- "ଯେ ଧମ୍ମ ହେତୁ ପ୍ପଭାବା-ପ୍ରଭୃତି" ପାଇଥିଲେ- ତାହା କହିଲେ । ତହୁଁ ମୋଗ୍‌ଗଲ୍ଲାନ ଏହି ଧର୍ମୋପଦେଶ ଶୁଣିବା ସଙ୍ଗେସଙ୍ଗେ ତନ୍ନିହିତ ମହାଶିକ୍ଷା ଉପଲବ୍ଧି କଲେ । ସେ ମଧ ସାରିପୁତ୍ରଙ୍କ ମୁଖରୁ ସମଗ୍ର ଶ୍ଳୋକ ଶୁଣି ସ୍ରୋତପତ୍ତି ଅବସ୍ଥା ପ୍ରାପ୍ତ ହୋଇଥିଲେ । ମିତ୍ରଦ୍ୱୟ ସ୍ୱ ଜିଜ୍ଞାସାର ସଫଳ ପରିଣତିରେ ଆନନ୍ଦସାଗରରେ ଭାସମାନ ହେଲେ । ମୋଗ୍‌ଗଲ୍ଲାନ ସାରିପୁତ୍ରଙ୍କୁ କହିଲେ- "ଚାଲ, ଭାଇ ଚାଲ, ଭଗବାନଙ୍କ ସମୀପକୁ- ସେ ଆମର ଗୁରୁ ।" ପୁନଶ୍ଚ ଯେଉଁ ଅଡାଇଶ ପରିବ୍ରାଜକ ଗୁରୁ ସଞ୍ଜୟଙ୍କ ପାଖରେ ଅଛନ୍ତି- ଏବଂ ଯେଉଁମାନେ ଆମ୍ଭମାନଙ୍କୁ ଦେଖି ସେଠାରେ ବିହାର କରନ୍ତି, ତାଙ୍କୁ ସମସ୍ତ ବିଷୟ କହିବୁ ଏବଂ ତାଙ୍କର ମତାନୁସାରେ କାର୍ଯ୍ୟ କରିବାକୁ ମଧ ତାଙ୍କୁ କହିଦେବୁ । ତହୁଁ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ ସେହି ପରିବ୍ରାଜକମାନଙ୍କ ନିକଟକୁ ଗଲେ;- ଯାଇ ସେମାନଙ୍କୁ କହିଲେ- 'ମିତ୍ରଗଣ'! ଆମେ ଦୁହେଁ ଭଗବାନ୍ ବୁଦ୍ଧଙ୍କ ନିକଟକୁ ଯାଉଅଛୁଁ- ସେ ଆମର ଗୁରୁ' । ସେମାନେ ସମସ୍ୱରରେ କହିଲେ, ଆମେ ଆପଣଙ୍କ ଆଶ୍ରୟରେ- ଅର୍ଥାତ୍ ଆପଣଙ୍କୁ ଦେଖି ଏଠାରେ ବିହାର କରୁଅଛୁଁ । ଯଦି ଆପଣ ଦୁହେଁ ମହାଶ୍ରମଣଙ୍କ ଶିଷ୍ୟ ହେବେ, ତେବେ ଆମେ ମଧ ତାଙ୍କ ଶିଷ୍ୟ ହେବୁ । ତହୁଁ ଦୁଇ ମିତ୍ର ତାଙ୍କ ପୂର୍ବ ଗୁରୁ ସଞ୍ଜୟଙ୍କ ସମୀପକୁ ଯାଇ ତାଙ୍କୁ କହିଲେ- "ମହାଶୟ! ଆମ୍ଭେମାନେ ଭଗବାନ ବୁଦ୍ଧଙ୍କ ନିକଟକୁ ଯାଉଅଛୁ । ସେ ଆମର ଗୁରୁ ଅଟନ୍ତି ।" ତହୁଁ ଦାମ୍ଭିକ ସଞ୍ଜୟ କହିଲେ- ଯାଅ ନାହିଁ- ଯାଅ ନାହିଁ । ଆମେ ତିନିଜଣ ଏହି ଜାମାତର (ପରିବ୍ରାଜକ ସଙ୍ଘର) ମହନ୍ତାରଇ କରିବୁ । ଏହିପରି ତ୍ରିବାର

ବାକ୍ୟ ବିନିମୟ ପରେ ଉକ୍ତ ଅଡାଇଶ ପରିବ୍ରାଜକଙ୍କ ସହିତ ସାରିପୁତ୍ର ଓ ମୋଗ୍‌ଗଲ୍ଲାନ ଭଗବାନ ଗୌତମଙ୍କ ଦର୍ଶନ ନିମିତ୍ତ ବେଲୁବନକୁ(ବେଣୁବଣକୁ) ଯାତ୍ରାକଲେ । ଏଥିରେ ସଞ୍ଜୟଙ୍କ ଗର୍ବ ଖର୍ବ ହେଲା । (କେତେକଙ୍କ ମତରେ ସଞ୍ଜୟ ତାଙ୍କ ପଞ୍ଚଶତ ଶିଷ୍ୟଙ୍କୁ ଏହି ଦୁଇ ମିତ୍ରଙ୍କ ସହ ବୁଦ୍ଧଙ୍କ ସାକ୍ଷାତ କରିବାକୁ ଅନୁମତି ଦେଇଥିଲେ ଓ ନିଜର ବର୍ତ୍ତମାନ ଶିକ୍ଷାର ସମୟ ନୁହେଁ- ସେ ବୃଦ୍ଧ ଇତ୍ୟାଦି କହି ବୁଦ୍ଧଦେବଙ୍କ ସମୀପକୁ ଯିବାକୁ ନାସ୍ତି କରିଥିଲେ) ।

ଭଗବାନ ଗୌତମ ଦୂରରୁ ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କୁ ଆସିବାର ଦେଖି ଉପସ୍ଥିତ ଭିକ୍ଷୁକମାନଙ୍କୁ କହିଲେ- "ହେ ଭିକ୍ଷୁଗଣ, ଯେ ଦୁଇ ମିତ୍ର ଆସୁଅଛନ୍ତି- ସେହି ଭଦ୍ର ଯୁଗଳ(ଭଲ ଯୋଡ଼ି) ମୋର ସର୍ବପ୍ରଧାନ ଶିଷ୍ୟ ହେବେ ।" ସେହି ଭଦ୍ର ଯୁଗଳ ଭଗବାନ ଗୌତମଙ୍କ ସମୀପରେ ଉପସ୍ଥିତ ହୋଇ ତାଙ୍କ ଚରଣ ତଳେ ମସ୍ତକ ଅବନତ କରି କହିଲେ- 'ଭଗବାନ-ଆମକୁ ପ୍ରବଜ୍ୟା ଦିଅନ୍ତୁ । ଉପସମ୍ପାଦା ଦିଅନ୍ତୁ" (ଭିକ୍ଷୁରୂପେ ଗ୍ରହଣ କରନ୍ତୁ) । ତହୁଁ ଭଗବାନ ବୁଦ୍ଧ କହିଲେ- "ଭିକ୍ଷୁକେ ଆସ, ଏଠାରେ ଧର୍ମ ସୁବ୍ୟାଖ୍ୟାନ । ତେଣୁ ନିଃଶେଷ ଭାବରେ ଦୁଃଖର କ୍ଷୟ ନିମିତ୍ତ ବ୍ରହ୍ମଚର୍ଯ୍ୟ ପାଳନ କର"(ମହାବଗ୍‌ଗ) । ସେହିଠାରେ ସେହି ଦୁଇଜଣଙ୍କର ଉପସମ୍ପାଦା ହେଲା । ଭଗବାନ ଗୌତମଙ୍କ ନିକଟରେ ପହଞ୍ଚି ସେମାନେ ଅମୃତ ପାଇଲେ, ପୁଣି 'ବୁଦ୍ଧଂ ଶରଣଂ ଗଚ୍ଛାମି, ଧମ୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି" ଏହି ତ୍ରିଶରଣ ପ୍ରାପ୍ତ ହେଲେ । ଭଗବାନ ବୁଦ୍ଧ ଅନ୍ୟ ସମସ୍ତଙ୍କର ଭିକ୍ଷୁକତ୍ୱ ସ୍ୱୀକାର କଲେ । ଅନ୍ୟତ୍ର ଲିଖିତ ଅଛି- ବୁଦ୍ଧଦେବଙ୍କଦ୍ୱାରା ସଞ୍ଜୟଙ୍କ ପଞ୍ଚଶତ ଶିଷ୍ୟଙ୍କ ସହ ସାରିପୁତ୍ତ ଓ ମୋଗ୍‌ଗଲ୍ଲାନ ଭିକ୍ଷୁକ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହେଲେ । ଭଗବାନ ବୁଦ୍ଧଙ୍କ ମୁଖରୁ ଧର୍ମର ବ୍ୟାଖ୍ୟା ଶ୍ରବଣ କରି ସାରିପୁତ୍ତ ଓ ମୋଗ୍‌ଗଲ୍ଲାନଙ୍କ ବ୍ୟତୀତ ଉକ୍ତ ପଞ୍ଚଶତ ଶିଷ୍ୟ ଅର୍ହତତ୍ତ୍ୱ ପ୍ରାପ୍ତ ହେଲେ । ଏକ ସପ୍ତାହ ପରେ ମୋଗ୍‌ଗଲ୍ଲାନ ଧ୍ୟାନମଗ୍ନ ଥିବା ସମୟରେ ବୁଦ୍ଧଦେବ ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ସେପରି ଧ୍ୟାନ ନିରତ ହେବା ନିମିତ୍ତ ଆଦେଶ କଲେ । ସେହିଦିନରୁ ସେ ଅର୍ହତତ୍ତ୍ୱ ପ୍ରାପ୍ତ ହେଲେ । ତାହାର ଏକ ସପ୍ତାହ ପରେ ସାରିପୁତ୍ତ ମଧ୍ୟ ଅର୍ହତ ହେଲେ । କିଛି ସମୟ ପରେ ଦିନେ ବୁଦ୍ଧେଦବ ବୌଦ୍ଧ ଭିକ୍ଷୁକମାନଙ୍କର ଏକ ମହାସଭା ଆହ୍ୱାନ କରି ସେଥିରେ ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କୁ ପ୍ରଧାନ ଶିଷ୍ୟତ୍ୱ ପ୍ରଦାନ କଲେ ଏବଂ କହିଲେ-

ଏତଦଗ୍‌ଗମ୍ ଭିକ୍ଷବେ ମମ ସଶକ୍‌କା ନାମ ମହାପଞ୍ଞାନାମ୍
ଯଦିଦମ ସାରିପୁତ୍ତୋ ।
ଏତଦଗଗମ୍ ଭିକ୍ଷବେ ମମ ସବକ୍‌କା ନାମ ଋଦ୍ଧି ମନ୍ତାନାମ୍
ଯଦଦମ୍ ମହାମୋଗ୍‌ଗଲ୍ଲାନୋ ।

ହେ ଭିକ୍ଷୁଗଣ ! ମୁଁ ମୋର ପ୍ରଜ୍ଞାବନ୍ତ ଶିଷ୍ୟମାନଙ୍କ ମଧ୍ୟରେ ଏହି ସାରିପୁତ୍ତଙ୍କୁ ଓ ମୋର ଋଦ୍ଧିମନ୍ତ ଶିଷ୍ୟମାନଙ୍କ ମଧ୍ୟରେ ମହାମୋଗ୍‌ଗଲ୍ଲାନଙ୍କୁ ଅଗ୍ରଣୀ କଲି ।

ଏହା ଆଶ୍ଚର୍ଯ୍ୟର କଥା, କି ନିମିତ୍ତ ବୁଦ୍ଧଦେବ ପଶ୍ଚାତ ଆଗତ ଏହି ଦୁଇଜଣଙ୍କୁ ପୂର୍ବାଗତ ପ୍ରାଚୀନ ଶିଷ୍ୟମାନଙ୍କଠାରୁ ଉଚ୍ଚ ଆସନ ପ୍ରଦାନ କଲେ । ଶିଷ୍ୟମାନଙ୍କ ମଧ୍ୟରେ ସାରିପୁତ୍ର ହିଁ ବୁଦ୍ଧଦେବଙ୍କ ତୁଲ୍ୟ ରୀତିରେ, ତୁଲ୍ୟ ସ୍ୱରରେ ଓ ତୁଲ୍ୟ ଭାବ ଗାମ୍ଭୀର୍ଯ୍ୟରେ ଧର୍ମତତ୍ତ୍ୱ ବ୍ୟାଖ୍ୟା କରୁଥିଲେ । ସେ ଅତୀବ ବୁଦ୍ଧିମାନ ଥିବାରୁ ବୁଦ୍ଧଦେବଙ୍କ ପ୍ରଦତ୍ତ ଧର୍ମର ଗୂଢ଼ତତ୍ତ୍ୱମାନ ଅତିଶୀଘ୍ର ହୃଦୟଙ୍ଗମ କରିପାରୁଥିଲେ ଓ ସେହିସେହି ବିଷୟରେ ଭିକ୍ଷୁ ସମ୍ପ୍ରଦାୟରେ ସୁନ୍ଦର ବ୍ୟାଖ୍ୟା ପ୍ରଦାନ ପୂର୍ବକ ସମସ୍ତଙ୍କ ସନ୍ଦେହମାନ ଦୂରକରି ଭକ୍ତିଭାଜନ ହୋଇଥିଲେ । ବୁଦ୍ଧଦେବଙ୍କ ଆଦେଶରେ ସାରିପୁତ୍ର ବୁଦ୍ଧଦେବଙ୍କ ପୁତ୍ର ରାହୁଳଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ । କୁମାରୀ ପଟାଚାରୀ ପ୍ରତିଜ୍ଞା କରି କହିଥିଲେ, ଯେବେ ତର୍କରେ କୌଣସି ଗୃହସ୍ଥ ଯୁବକ ମୋତେ ପରାଜିତ କରନ୍ତି, ତେବେ ମୁଁ ତାଙ୍କୁ ବିବାହ କରିବି ଏବଂ ଯେବେ କେହି ସନ୍ନ୍ୟାସୀ ପରାସ୍ତ କରିବେ, ତେବେ ମୁଁ ସନ୍ନ୍ୟାସିନୀ ହେବି । ସାରିପୁତ୍ର ତାଙ୍କୁ ପରାସ୍ତ କରିଥିଲେ ଓ ସେ ସନ୍ନ୍ୟାସିନୀ ମଧ୍ୟ ହୋଇଥିଲେ । ସଂଘର ଶିଷ୍ୟମାନଙ୍କୁ ଉପଦେଶ ଦେବା ନିମିତ୍ତ ଭଗବାନ, ବୁଦ୍ଧଦେବ ସାରିପୁତ୍ରଙ୍କୁ ହିଁ ଆଦେଶ ଦେଇଥିଲେ । ସାରିପୁତ୍ରଙ୍କର ବୁଦ୍ଧଦେବଙ୍କଠାରେ ଭକ୍ତି ଅତୁଳନୀୟ । ତାଙ୍କର ସିଂହନାଦ ଇତିହାସ ପ୍ରସିଦ୍ଧ । ସେ ସିଂହନାଦରେ କହୁଥିଲେ- 'ହେ ପ୍ରଭୁ, ପ୍ରଭୁଙ୍କ ପ୍ରତି ମୋର ପ୍ରଗାଢ଼ ଓ ପ୍ରଭୂତ ଭକ୍ତି । ଏପରି କେହି ନଥିଲେ, ନାହାନ୍ତି ବା ଭବିଷ୍ୟତରେ ହେବେ ନାହିଁ, ଯେ ମୋର ପ୍ରଭୁଙ୍କଠାରୁ ଅଧିକ ଜ୍ଞାନୀ ।' କେଉଁକେଉଁ ସତ୍‌କାର୍ଯ୍ୟର ଅନୁଷ୍ଠାନରେ କିପରି ସ୍ୱର୍ଗଲାଭ ହୁଏ, ସାରିପୁତ୍ର ସେ ବିଷୟ ଭିକ୍ଷୁମାନଙ୍କୁ କହୁଥିଲେ ଏବଂ କହୁଥିଲେ ଯେଉଁମାନେ ବୁଦ୍ଧ, ଧର୍ମ ତଥା ସଂଘଠାରେ ଶରଣ ପଶନ୍ତି, ଅର୍ଥାତ ପୂର୍ଣ୍ଣ ଅହେତୁକୀ ଭକ୍ତି ପୋଷଣ କରନ୍ତି, ସେହିମାନେ ହିଁ ହେବେ ସମ୍ବୋଧିର ଅଧିକାରୀ ।

ଜଣେ ଭିକ୍ଷୁ ବ୍ରାହ୍ମଣ ବୁଦ୍ଧଦେବଙ୍କ ସମୀପକୁ ଯାଇ ଭିକ୍ଷୁ ହେବା ନିମନ୍ତେ ପ୍ରାର୍ଥନା କରନ୍ତେ ବୁଦ୍ଧଦେବଙ୍କ ଗହଣରେ ଥିବା ଭିକ୍ଷୁମାନେ ବିରୋଧ କଲେ । ବୁଦ୍ଧଦେବ ସମସ୍ତ ଭିକ୍ଷୁଙ୍କୁ କହିଲେ- 'ଭିକ୍ଷୁମାନେ- କହ ଦେଖି, ଏହି ବ୍ରାହ୍ମଣମାନେ କାହା ପ୍ରତି କିଛି ଉପକାର କରିବା ତୁମମାନଙ୍କର ମନେପଡ଼େ । ତାହା ଶୁଣି ସାରିପୁତ୍ର ଉଠି କହିଲେ 'ହଁ ଆଜ୍ଞା- ଥରେ ରାଜଗୃହରେ ଭିକ୍ଷା ନିମିତ୍ତ ଭ୍ରମଣ କରିବା ସମୟରେ ଏହି ବ୍ୟକ୍ତି ମୋତେ କରଚୁଲିଏ ଭାତ ଦେଇଥିଲେ । ଏ ଉପକାର ମୁଁ ସଦାସର୍ବଦା ସ୍ମରଣ ରଖେ ।' ସାରିପୁତ୍ରଙ୍କ ଏହି କୃତଜ୍ଞଭାବ ବ୍ୟକ୍ତ ହୁଅନ୍ତେ ଭଗବାନ ବୁଦ୍ଧଦେବ ବିଶେଷ ପ୍ରସନ୍ନ ହୋଇ କହିଲେ- 'ସାଧୁ ସାରିପୁତ୍ର, ସାଧୁ- ସତ୍‌ପୁରୁଷ ହିଁ କୃତଜ୍ଞ । ଏଥିହେତୁ ତୁମ୍ଭେ ଏହି ବ୍ରାହ୍ମଣଙ୍କୁ ଭିକ୍ଷୁକର ଏବଂ ଉପସମ୍ପାଦିତ କର ।' ଉପସମ୍ପଦାର ଦୀକ୍ଷା ଦେବା ଅଧିକାର ଇତିପୂର୍ବେ ବୁଦ୍ଧଦେବ ଆଉ କାହାରିକୁ ଦେଇନଥିଲେ । ଭିକ୍ଷୁଙ୍କଦ୍ୱାରା ଭିକ୍ଷୁଙ୍କୁ ଉପସମ୍ପଦା ଦେବା ସାରିପୁତ୍ରଙ୍କଠାରୁ ଆରମ୍ଭ ହେଲା । ଧର୍ମାଧର୍ମର ଲକ୍ଷଣ ଆମିଷ ଉପଯୋଗର ସମାନ ବ୍ୟବସ୍ଥା ସ୍ପଷ୍ଟ ଭାବରେ ବୁଦ୍ଧଦେବ ସାରିପୁତ୍ରଙ୍କୁ ବୁଝାଇ ଥିଲେ ଏବଂ ସେ ମଧ୍ୟ ତାହା ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିଥିଲେ ।

ଭଗବାନ ବୁଦ୍ଧଦେବ ଭିକ୍ଷୁମାନଙ୍କୁ ଶ୍ରାବସ୍ତୀର ଜେତବନରେ କହିଥିଲେ- "ଭିକ୍ଷୁଗଣ- ସାରିପୁତ୍ତ ପଣ୍ଡିତ, ମହାପ୍ରଜ୍ଞ, ନାନାପ୍ରଜ୍ଞ, ଭାସ୍ୱରପ୍ରଜ୍ଞ, ତୀକ୍ଷ୍ଣପ୍ରଜ୍ଞ, ନିର୍ବୋଧକ (ଦେଶ ସୀମା ପର୍ଯ୍ୟନ୍ତ ଯିବା) ପ୍ରଜ୍ଞ ଅଟନ୍ତି ଏବଂ ତଥାଗତଙ୍କ ଧର୍ମଚକ୍ର ପାଳନରେ ସେ ସର୍ବଥା ଯୋଗ୍ୟ । ସାରିପୁତ୍ତଙ୍କ ହୃଦୟ ଅତୀବ ଦୀନ ଓ ସରଳ ଥିଲା । ନିଜର ଦେହ ପ୍ରତି ତାଙ୍କର ଆଦୌ ଆସ୍ଥା ନ ଥିଲା । ସେ ଜଳ ତୁଲ୍ୟ ସମସ୍ତଙ୍କୁ ଜ୍ଞାନ କରୁଥିଲେ । ବାୟୁତୁଲ୍ୟ ସେ ସମସ୍ତଙ୍କୁ ସମ ଭାବରେ ସେବା କରୁଥିଲେ । ତାଙ୍କର ହୃଦୟ ଅସୀମ କରୁଣାରେ ଆଧାର ଥିଲା । ରାଜଗୃହ ସ୍ଥିତ ଧନଞ୍ଜାନି ବ୍ରାହ୍ମଣର କର୍ମରେ ପ୍ରବୃତ୍ତ ଥିବା ବିଷୟ ଜଣେ ଭିକ୍ଷୁ ସାରିପୁତ୍ତଙ୍କୁ କହନ୍ତେ, ସାରିପୁତ୍ତ ଅବିଳମ୍ବେ ରାଜଗୃହକୁ ଗମନ କଲେ, ଧନଞ୍ଜାନି ବିପ୍ରକୁ ଉପଦେଶ ଦେଲେ ଏବଂ ବ୍ରହ୍ମ ସାଯୁଜ୍ୟ ପଥ ଦର୍ଶାଇଲେ । ଧନଞ୍ଜାନିର ବ୍ରହ୍ମସାଯୁଜ୍ୟ ପ୍ରାପ୍ତ ବୁଦ୍ଧଦେବ ସାରିପୁତ୍ତଙ୍କୁ ପଚାରନ୍ତେ ସାରିପୁତ୍ତ ଉତ୍ତର କହିଲେ- "ଭଗବାନ ବ୍ରାହ୍ମଣର ବ୍ରହ୍ମଲୋକ ପ୍ରାପ୍ତି ହିଁ ଲକ୍ଷ୍ୟ- ତହୁଁ ତତ୍‌ପ୍ରାପ୍ତିର ଉପଦେଶ ମୁଁ ବ୍ରାହ୍ମଣଙ୍କୁ ଦେଲି । ଏହା ଶୁଣି ପ୍ରସନ୍ନ ହୋଇ ବୁଦ୍ଧଦେବ କହିଲେ- ସେ ବ୍ରାହ୍ମଣ, ବ୍ରହ୍ମାଲାକ ପ୍ରାପ୍ତ ହେଲା । ଏହାଦ୍ୱାରା ସାରିପୁତ୍ତଙ୍କ ମହତ୍ତ୍ୱ ଓ ଉଦାରତା ପ୍ରକାଶ ପାଇଲା । ଭଗବାନ ତଥାଗତ(ବୁଦ୍ଧଦେବ) ସାରିପୁତ୍ତଙ୍କୁ ହିଁ ସଂଘରେ ଶିଷ୍ୟମାନଙ୍କୁ କି ରୂପେ ପୂର୍ଣ୍ଣ ଜ୍ଞାନ ସମ୍ବନ୍ଧରେ ଶିକ୍ଷା ପ୍ରଦତ୍ତ ହେବ, ତାହା ଉପଦେଶ ଦେଇଥିଲେ । ସାରିପୁତ୍ତ ଯେପରି ସରଳ ସେପରି ଧର୍ମପ୍ରାଣ ଓ ତାହାଙ୍କର ହୃଦୟ ଅହଂକାର ବର୍ଜିତ ଥିଲା । ପୁନଶ୍ଚ ସାରିପୁତ୍ତ ଅତ୍ୟାଧିକ ବିଶ୍ୱାସୀ ତଥା ଅନ୍ତରଙ୍ଗ ଭକ୍ତ ଥିବାରୁ ବୁଦ୍ଧଦେବ ନିଜର ପୂର୍ବ ୨୪ବୁଦ୍ଧଙ୍କ ବିଷୟ ତାଙ୍କୁ କହିଥିଲେ । ଏହିସବୁ ଗୁଣ ହେତୁ ସେ ଶିଷ୍ୟମାନଙ୍କ ମଧ୍ୟରେ ଅଗ୍ରଣୀ ହୋଇଥିଲେ ।

ମୋଗ୍‌ଗଲ୍ଲାନ: ମୋଗ୍‌ଗଲ୍ଲାନ ଋଦ୍ଧିପତି ଥିଲେ । ସେ ନିଜର ଯୋଗଶକ୍ତି ବଳରେ ଅଘଟନ ଘଟାଇ ପାରୁଥିଲେ । ସେ ଅଷ୍ଟାଦଶ ସିଦ୍ଧିରେ ଅଧିକାରୀ ଥିବାରୁ ନିଜକୁ ଅଦୃଶ୍ୟ କରିପାରୁଥିଲେ, ଘଟପରିବର୍ତ୍ତନ କରିପାରୁଥିଲେ । ହିଂସ୍ରଜନ୍ତୁଙ୍କୁ ବଶୀଭୂତ କରୁଥିଲେ ଏବଂ ଇଚ୍ଛାନୁସାରେ ସ୍ଥାନାନ୍ତରକୁ ଯାଇପାରୁଥିଲେ । ସେ ସାଧନା ବଳରେ ଅଲୌକିକ ଶକ୍ତି ଅର୍ଜନ କରିଥିଲେ । ଥରେ ଦୁର୍ଭିକ୍ଷ କାଳରେ ମୋଗ୍‌ଗଲ୍ଲାନ ନିଜର ଯୋଗ ବଳରେ ଖାଦ୍ୟଦ୍ରବ୍ୟ ସଂଗ୍ରହର ପ୍ରସ୍ତାବ କରିଥିଲେ- ତହିଁରେ ବୁଦ୍ଧଦେବ ନିଷେଧ କଲେ । ସେ ଥରେ ନିଜର ଯୋଗ ପ୍ରଭାବରେ ଇନ୍ଦ୍ରଙ୍କ ରାଜ୍ୟରେ ଉପସ୍ଥିତି ହୋଇ ତାଙ୍କ ବୈଜୟନ୍ତ ନାମକ ପ୍ରସାଦକୁ କମ୍ପିତ କରି ଇନ୍ଦ୍ରଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରାଇଥିଲେ ଏବଂ ଦେବଗଣ ସେଥିରେ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ଇନ୍ଦ୍ରଙ୍କୁ ଗର୍ବଖର୍ବକାରୀ ବିଷୟ କହି ନିଜର ଅପୂର୍ବ ଯୋଗୈଶ୍ୱର୍ଯ୍ୟର ପରିଚୟ ପ୍ରଦାନ କରିଥିଲେ । ଏଥି ସଙ୍ଗେସଙ୍ଗେ ସେ ସୁଧର୍ମା ସଭାରେ ବ୍ରହ୍ମାଙ୍କ ସଙ୍ଗରେ ମଧ୍ୟ ଶାସ୍ତ୍ରାର୍ଥ ବିଚାର କଲେ ଏବଂ ଫଳତଃ ତାଙ୍କ ଜ୍ଞାନରେ ସମସ୍ତେ ପ୍ରଭାବିତ ହେଲେ । ମୋଗ୍‌ଗଲ୍ଲାନଙ୍କର ନିୟମ ଓ ଶୃଙ୍ଖଳା ପ୍ରତି ତୀକ୍ଷ୍ଣ ଦୃଷ୍ଟିଥିଲା । ଶୃଙ୍ଖଳା ଓ ସଂଯମ ବ୍ୟତୀତ ଶାନ୍ତି ଅସମ୍ଭବ । ପୁନଶ୍ଚ ସଂଯମ ହିଁ କେବଳ ଶାନ୍ତିର ପ୍ରଧାନ କାରଣ । ମୋଗ୍‌ଗଲ୍ଲାନ ଜଣେ କଠୋର ଶାସକ ଥିଲେ । ଧାମାର୍ଯ୍ୟ

ଶିଥିଳତା ସେ ସହ୍ୟ କରିପାରୁ ନଥିଲେ । ତେଣୁ ବୁଦ୍ଧଦେବ ତାଙ୍କୁ ଉଚ୍ଚପଦ ଦେଇଥିଲେ । ଭଗବାନ ବୁଦ୍ଧଦେବଙ୍କ ଉପଦେଶ ଦିବାରାତ୍ର ଚାଲିଥାଏ । ସେ ଅସୁସ୍ଥ ହେଲେ ଉପଦେଶ କାର୍ଯ୍ୟ ସାରିପୁତ୍ର ଓ ମୋଗ୍‌ଗଲ୍ଲାନଙ୍କଦ୍ୱାରା ସମ୍ପନ୍ନ ହେଉଥିଲା । ଥରେ ଭିକ୍ଷୁସଂଘକୁ ଉପଦେଶ ଦେବାରେ ବିଳମ୍ବ ହେବା ବିଷୟ ଆନନ୍ଦ ବୁଦ୍ଧ ଦେବଙ୍କୁ କହନ୍ତେ, ବୁଦ୍ଧଦେବ କହିଲେ- "ଏ ପରିଷଦ ଶୁଦ୍ଧ ନୁହେ" ତହୁଁ ମୋଗ୍‌ଗଲ୍ଲାନ ଜଣେ ଦୁଃଶୀଳ ପାପୀ ପ୍ରଚ୍ଛନ୍ନ ଭାବରେ ପରିଷଦରେ ଥିବା ଜାଣିପାରି ହାତଧରି ତାକୁ ବାହାର କରିଦେଲେ ଓ ବୁଦ୍ଧଦେବଙ୍କୁ ଯାଇ କହିଲେ- 'ଭଗବାନ ବର୍ତ୍ତମାନ ପରିଷଦ ଶୁଦ୍ଧ, ଆପଣ ପ୍ରତିମୋକ୍ଷ ପ୍ରଦାନ କରନ୍ତୁ ।' ତହୁଁ ବୁଦ୍ଧଦେବ କହିଲେ- ଆଶ୍ଚର୍ଯ୍ୟ ମୋଗ୍‌ଗଲ୍ଲାନ-ଅଦ୍ଭୁତ ମୋଗ୍‌ଗଲ୍ଲାନ-ତୁମ ଦ୍ୱାରା ହିଁ ସେ ବହିଷ୍କୃତ ହେଲା । ସେ ପ୍ରସିଦ୍ଧ ଥେର ଥିବା ବିଷୟ ବହୁ ଗ୍ରନ୍ଥରେ ଉଲ୍ଲେଖ ଅଛି । ମୋଗ୍‌ଗଲ୍ଲାନଙ୍କୁ ସେବାରେ ସନ୍ତୁଷ୍ଟକରି ଅନେକ ବ୍ୟକ୍ତି ଶୁଦ୍ଧ ଓ ସୁଖୀ ହୋଇଅଛନ୍ତି ।

ସାରିପୁତ୍ର ଓ ମୋଗ୍‌ଗଲ୍ଲାନ ଉଭୟେ ସଦ୍‌ଗୁଣରାଜିରେ ଭୂଷିତ ଥିଲେ । ଧର୍ମ ନିମିତ୍ତ ସେ ଦୁହିଁଙ୍କୁ ଅନେକ ସ୍ଥାନରେ ଯାତନା ଭୋଗ କରିବାକୁ ହୋଇଥିଲା । କିନ୍ତୁ ସେମାନେ ବୌଦ୍ଧଧର୍ମର ପ୍ରକୃତ ମର୍ମ ବୁଝିଥିଲେ ଓ ପ୍ରତିପାଳନ କରିଥିଲେ । "ନହି ବେରେନ ବେରାନି ସମ୍ମନ୍ତବ୍ୟ କୁଦାଚନ । ଅବେରେନ ଚ ସମ୍ମନ୍ତି ଏଷ ଧମ୍ମୋ ସନନ୍ତେନୋ"(ଧର୍ମ୍ମପଦ) । ଶତ୍ରୁଦ୍ୱାରା କେତେବେଳେ ହେଁ ଶତ୍ରୁତା ପ୍ରଶମିତ ହୁଏନାହିଁ । ଶତ୍ରୁତା ଶୂନ୍ୟତା(ମିତ୍ରତା ବା ଉଦାସୀନତା) ଦ୍ୱାରାହିଁ ପ୍ରଶମିତ ହୁଏ । ଏହାହିଁ ସନାତନ ଧର୍ମ । ଥରେ ଜଣେ ବ୍ରାହ୍ମଣ ସାରିପୁତ୍ରଙ୍କୁ ପ୍ରହାର କରିଥିଲା । କିନ୍ତୁ ଯେତେବେଳେ ସାରିପୁତ୍ର କ୍ଷମାମୃତ ଚକ୍ଷୁରେ ବ୍ରାହ୍ମଣ ପ୍ରତି ଦୃଷ୍ଟିପାଦ କଲେ- ଉକ୍ତ ନିର୍ବୋଧ ବ୍ରାହ୍ମଣ ଅନୁତାପନଳରେ ଦଗ୍‌ଧ ହୋଇ ମହୋଦାର ସାରିପୁତ୍ରଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କଲା । ଏହି ଉଦାର ମୈତ୍ରୀଭାବ କେବଳ ଯୀଶୁଖ୍ରୀଷ୍ଟ ଓ ଚୈତନ୍ୟଙ୍କ ଜୀବନରେ ପରିଦୃଷ୍ଟ ହୁଏ । କୌଣସି ଏକ ପୂର୍ବଜନ୍ମରେ ଗୌତମ ବୁଦ୍ଧ ଅନୋମଦର୍ଶୀ ବୁଦ୍ଧ ରୂପରେ ଧର୍ମ ପ୍ରଚାର କରୁଥିଲେ-ଏହି ଦୁଇଜଣ ତାଙ୍କର ଶିଷ୍ୟଥିଲେ- ପରଜନ୍ମରେ ବୁଦ୍ଧଙ୍କ ପ୍ରଧାନ ଶିଷ୍ୟ ହେବା ନିମିତ୍ତ ସେହି ଜନ୍ମରେ ସେ ଦୁହେଁ ଇଚ୍ଛା ପୋଷଣ କରିଥିଲେ; ଗୌତମ ବୁଦ୍ଧଙ୍କ କାଳରେ ସେହି ଇଚ୍ଛା ଫଳବତୀ ହେଲା । ସଂଯୁକ୍ତନିକାୟରେ ଲିଖିତ ଅଛି ଯେ, ସାରିପୁତ୍ତ ଓ ମୋଗ୍‌ଗଲ୍ଲାନଙ୍କୁ ଘୃଣାକରି କୋମାବିକ ନାମକ ଭିକ୍ଷୁ ପଦ୍ମନିରୟ ନାମକ ନରକରେ ପତିତ ହୋଇଥିଲା ।

ଗୃହସ୍ଥ ଜୀବନରେ ଭଗବାନ ବୁଦ୍ଧଙ୍କ ଶାଳକ ଦେବଦତ୍ତ ବୁଦ୍ଧଙ୍କଠାରୁ ପ୍ରବ୍ରଜ୍ୟା ଗ୍ରହଣ କରି ସୁଦ୍ଧା ତାଙ୍କର ଭୀଷଣ ବିଦ୍ରୋହୀ ହୋଇଥିଲା । ସେ ବୁଦ୍ଧଙ୍କ ପ୍ରାଣହରଣ କରିବା ପର୍ଯ୍ୟନ୍ତ ମଧ ଉଦ୍ୟତ ହୋଇଥିଲା । ଏହି ବିଦ୍ରୋହ ମନୋବୃତ୍ତି ଧାରଣକରି ସେ ବିଷମ ଷଡ଼ଯନ୍ତ୍ର କରିବାରେ ପଶ୍ଚାତ୍‌ପଦ ହୋଇ ନ ଥିଲା । ଅହିଂସା ଭାବରେ ବୁଦ୍ଧଦେବ ତାକୁ ଉପେକ୍ଷା କରୁଥିଲେ, କିନ୍ତୁ ଦୁର୍ବୃତ୍ତ ସେଥିରୁ ନିବୃତ୍ତ ନ ହୋଇ ଜଘନ୍ୟ ନୃଶଂସ କାର୍ଯ୍ୟ ସାଧନରେ ପ୍ରବୃତ୍ତ ହେଉଥାଏ । ଦେବଦତ୍ତ ଭିକ୍ଷୁସଂଘରେ ଭେଦଭାବ

ଜନ୍ମାଇଲା । ବୁଦ୍ଧଙ୍କୁ ହତ୍ୟା କରିବା ନିମିତ୍ତ ଦସ୍ୟୁ ଓ ଦୁଷ୍ଟ ପୈଶାଚିକ ବୃତ୍ତିର ଲୋକଙ୍କୁ ନିଯୁକ୍ତ କରିଥିଲା । ହସ୍ତୀର ପଦରେ ଦଳିତ କରିଦେବାରେ ମଧ୍ୟ ଚେଷ୍ଟା କରିଥିଲା ଓ ଏକଦା ପର୍ବତର ଉପରି ଭାଗରୁ ବୃହତ ପ୍ରସ୍ତର ଖଣ୍ଡ ବୁଦ୍ଧଦେବଙ୍କ ଉପରେ ନିକ୍ଷେପ କରି ତାଙ୍କର ମସ୍ତକକୁ କ୍ଷତ ବିକ୍ଷତ କରି ଦେଇଥିଲା । ଦେବଦତ୍ତର ଷଡ୍‌ଯନ୍ତ୍ର ଭୟରେ ସମସ୍ତ ଭିକ୍ଷୁ ସଂଘ କମ୍ପିତ ହେବାକୁ ଲାଗିଲେ । ଏହି ଦୁଷ୍ଟ ପାପାଚାରୀର ଅତ୍ୟାଚାରର ମାତ୍ରା ଅତ୍ୟଧିକ ହୁଅନ୍ତେ, ତାହା ଅସହ୍ୟ ହୋଇ ପଡ଼ିଲା । ତହୁଁ ସାରିପୁତ୍ତ ଓ ମୋଗ୍‌ଗଲ୍ଲାନ ଦୁହେଁ ଦେବଦତ୍ତର ସମୀପକୁ ଯାଇ ନିଜର ଅଦ୍ଭୁତ ବ୍ୟକ୍ତିତ୍ୱ ତଥା ସାଧୁତ୍ୱ ବଳରେ ତାର ଅଜ୍ଞାନତା ଦୂର କଲେ ଏବଂ ତା'ର ୫୦୦ ଶିଷ୍ୟଙ୍କୁ ଆଣି ଭଗବାନ ବୁଦ୍ଧଙ୍କ ଶରଣରେ ଉପସ୍ଥିତ କରାଇଲେ । ଏଥିରେ ଦେବଦତ୍ତର ଏପରି ପତନ ହେଲା ଯେ, ସେ ସେହିଦିନୁ ଜୀବିତାବଧି ଷଡଯନ୍ତ୍ର କ୍ରିୟାରୁ ବିରତ ହେଲା । ଏହି ଘଟଣାରେ ତାର ହୃଦୟରେ ସେପରି ଆଘାତ ହେଲା ଯେ ସେ ନବମାସାବଧି ରୋଗ କ୍ଳିଷ୍ଟ ହୋଇ ପ୍ରାଣ ବିସର୍ଜ୍ଜନ କଲା । ଶେଷରେ ସେ ବୁଦ୍ଧଦେବଙ୍କ ଦର୍ଶନ ଇଚ୍ଛା କରିଥିଲା, କିନ୍ତୁ ଭାଗ୍ୟରେ ତାର ସେ ପୁଣ୍ୟ ଦର୍ଶନ ନ ଥିବାରୁ ସେ ପଥରେ ପ୍ରାଣତ୍ୟାଗ କଲା । ଏହି କାର୍ଯ୍ୟଦ୍ୱାରା ଉଭୟଙ୍କର ଚରିତ୍ରର କି ମହନୀୟତା ଓ ବ୍ୟକ୍ତିତ୍ୱର କି ବିଶାଳତା ପରିଲକ୍ଷିତ ନ ହୁଏ?

ପୁନଶ୍ଚ ଭଗବାନ ବୁଦ୍ଧଙ୍କ ସଙ୍ଗରେ ରହୁଥିବା ଭିକ୍ଷୁ ସଂଘରେ ଷଡବର୍ଗୀୟ ନାମକ ଏକ ଭିକ୍ଷୁ ଦଳ ଥିଲା । ଏହି ଦଳରେ ପ୍ରାୟ ଉଦ୍ଦଣ୍ଡ ଓ ଉଦ୍‌ବୃତ୍ତ ସ୍ୱଭାବର ଭିକ୍ଷୁ ଥିଲେ- ଏମାନେ ପ୍ରଭୂତ ଉତ୍‌ପାତ କରୁଥିଲେ । ଯେଉଁ ସ୍ଥଳକୁ ଯାତ୍ରା କରୁଥିଲେ, ସେ ସ୍ଥଳରେ ସୁନ୍ଦର ସୁନ୍ଦର ସ୍ଥାନ ଅଧିକାର କରୁଥିଲେ । ପ୍ରାଚୀନ ଭିକ୍ଷୁଙ୍କୁ ପ୍ରହାରକରି ବହିଷ୍କୃତ କରିଦେଉଥିଲେ । ଉତ୍ତମ ଖାଦ୍ୟଦ୍ରବ୍ୟ ଅନ୍ୟ ଭିକ୍ଷୁଙ୍କଠାରୁ ବଳାତ୍‌କାରରେ ଗ୍ରହଣ କରୁଥିଲେ । ବୃଦ୍ଧଜ୍ଞାନୀ ପର୍ଯ୍ୟନ୍ତ ପ୍ରହାରରୁ ନିଷ୍କୃତି ଲଭୁ ନ ଥିଲେ । ସାରିପୁତ୍ତ ଏହିସବୁ ଉତ୍ପାତ ପ୍ରତି ପୂରା ନଜର ରଖିଥିଲେ ଓ ସମୟେସମୟେ ଭଗବାନ ବୁଦ୍ଧଦେବଙ୍କଦ୍ୱାରା ଏହାର ନିବୃତ୍ତି ଓ ଶିଷ୍ଟାଚାରର ନିୟମମାନ ବିଧାନ କରାଉଥିଲେ । ସାରିପୁତ୍ତ ବୁଦ୍ଧଦେବଙ୍କ ଆଦେଶରେ ସଂଘକୁ ଚଳାଇବାରେ ସର୍ବଦା ତତ୍ପର ଥିଲେ, ସଂଘର ଦୋଷୀମାନଙ୍କ ପ୍ରତି ସାହସପୂର୍ବକ ଦୃଷ୍ଟିରଖି ସମସ୍ତ କାର୍ଯ୍ୟ ସୁବିଧାରେ ନିର୍ବାହ କରୁଥିଲେ । ସାରିପୁତ୍ତ ଓ ମୋଗ୍‌ଗଲ୍ଲାନ ଏଥିନିମିତ୍ତ ଭିକ୍ଷୁମାନଙ୍କର ଆକ୍ଷେପର ପାତ୍ର ହେଉଥିଲେ ଏବଂ ତିରସ୍କାର ମଧ୍ୟ ପାଉଥିଲେ । କିନ୍ତୁ ସେହି ମହାପୁରୁଷଦ୍ୱୟ ସଦାସର୍ବଦା ସ୍ୱସ୍ୱ କର୍ତ୍ତବ୍ୟ ପଥରେ ଦୃଢ ରହି ତହିଁରୁ ଅଣୁମାତ୍ର ବିଚଳିତ ହେଉ ନ ଥିଲେ । ଧର୍ମର ସ୍ଥାୟିତ୍ୱ ଓ ମର୍ଯ୍ୟାଦା ଧର୍ମୋପଦେଷ୍ଟାଙ୍କ ଠାରୁ ଧର୍ମର ପ୍ରତିପାଳକ ଓ ସଂରକ୍ଷକଦ୍ୱାରା ଅକ୍ଷୁଣ୍ଣ ରହେ ବୋଲି ସାରିପୁତ୍ତ ଓ ମୋଗ୍‌ଗଲ୍ଲାନଙ୍କୁ ବୁଦ୍ଧଦେବ ପ୍ରାଣସଦୃଶ ପ୍ରିୟ ମଣୁଥିଲେ । ସେ ଦୁଇ ମହାପୁରୁଷଙ୍କଦ୍ୱାରା ବୌଦ୍ଧଧର୍ମ ଯଥାଯଥ ପ୍ରତିପାଳିତ ହେଉଥିଲା ବୋଲି ସେ ଦୁହେଁ ଶିଷ୍ୟମାନଙ୍କ ମଧ୍ୟରେ ଅଗ୍ରଣୀ ହୋଇଥିଲେ । ଏ ଦୁଇ ମହାତ୍ମା ବହୁକାଳ ପ୍ରାଣ ଧାରଣ କରିଥିଲେ । ଯେଉଁ ବର୍ଷ ଭଗବାନ ବୁଦ୍ଧଦେବଙ୍କର ମହାପରିନିର୍ବାଣ ହୁଏ, ସେହି ବର୍ଷ ଏମାନଙ୍କର ମଧ୍ୟ ନିର୍ବାଣ ହୋଇଥିଲା । ନିଜର ଅନ୍ତିମ

ଦିବସ ଆଗତପ୍ରାୟ ମଣି କାର୍ତ୍ତିକ ପୂର୍ଣ୍ଣମା ଦିବସ ସାରିପୁତ୍ତ ପୁତ୍ରର କର୍ତ୍ତବ୍ୟ ବିଷୟ ସ୍ମରଣ କରିଥିଲେ । ବୃଦ୍ଧା ଜନନୀଙ୍କୁ ସେ ମୁକ୍ତିମାର୍ଗର ସନ୍ଦେଶ ପ୍ରଦାନ କଲେ । ପରମକାରୁଣିକ ମହାଯୋଗେଶ୍ୱର ଭଗବାନ ବୁଦ୍ଧଦେବଙ୍କର ମାହାତ୍ମ୍ୟ ମାତାଙ୍କ ସମ୍ମୁଖରେ ପ୍ରଖ୍ୟାପନ କଲେ । ମାତାଙ୍କ ସାକ୍ଷାତର ପରଦିବସରେ ସାରିପୁତ୍ତ ପରିନିର୍ବାଣ ଲାଭକଲେ । ମୋଗ୍‌ଗଲ୍ଲାନ ତତ୍‌ପରେ କିଛିଦିନ ଜୀବନ ଧାରଣ କରିଥିଲେ । ଏକଦା ତାଙ୍କର ଧ୍ୟାନମଗ୍ନ ଅବସ୍ଥାରେ କୌଣସି ପାପାଚାର ଦୁର୍ବୃତ୍ତ ତାଙ୍କ ଶିରୋଦେଶରେ ଭୀଷଣ ଭାବରେ ଲଗୁଡ଼ାଘାତ କଲେ । ସର୍ବାଙ୍ଗ କ୍ଷତବିକ୍ଷତ ହେଲା । ଅସ୍ଥି ଚୂର୍ଣ୍ଣବିଚୂର୍ଣ୍ଣ ହେଲା । ମହାଶ୍ରମଣ ମୋଗ୍‌ଗଲ୍ଲାନ ଧ୍ୟାନମଗ୍ନ, ଚିତ୍ତବୃତ୍ତି ନିରୁଦ୍ଧ ଦେହର ନିର୍ଯ୍ୟାତନାର ବ୍ୟାପାର, ବାହ୍ୟ ବିଷୟର ବାର୍ତ୍ତା ସଂବାଦବହୀ ସ୍ନାୟୁ ତାଙ୍କର ମନର ଗୋଚରୀଭୂତ କରାଇ ପାରିଲାନାହିଁ । ଧ୍ୟାନଭଙ୍ଗ ପରେ ଯୋଗୀ ଦେଖିଲେ, ଶରୀର ଭଗ୍ନ, ଉପାୟାନ୍ତର ନାସ୍ତି । ତହୁଁ ଋଦ୍ଧିର ସମସ୍ତ ଶକ୍ତି ନିୟୋଜିତ କରି ଭଗବାନ ବୁଦ୍ଧଦେବଙ୍କ ସମୀପରେ ଉପସ୍ଥିତ ହେଲେ ଭଗ୍ନକାୟ ଶିଷ୍ୟ । ତାଙ୍କର ପୂତ ଚରଣରେ ପ୍ରମାଣ କରି ସେ ପରିନିର୍ବାଣ ପ୍ରାପ୍ତ ହେଲେ । କିପରି ଏପରି ଯୋଗି ପ୍ରବରଙ୍କର ମୃତ୍ୟୁଦଶା ଘଟିଲା, ତାର କାରଣ ହେଉଛି- କର୍ମ କାରଣର ବନ୍ଧନ ଅଚ୍ଛେଦ୍ୟ । ପୂର୍ବଜନ୍ମର କାର୍ଯ୍ୟଫଳ ଅବଶ୍ୟ ଭୋଗ କରିବାକୁ ହେବ- ତାହା ଅନତିକ୍ରମଣୀୟ ।

ସାରିପୁତ୍ତଙ୍କର ଅନ୍ତେଷ୍ଟିକ୍ରିୟା ମହାସମାରୋହରେ ସମ୍ପନ୍ନ ହୋଇଥିଲା । ରାଜମହାରାଜାଙ୍କଠାରୁ ଦୀନଦରିଦ୍ର, ଶ୍ରମଣ, ଭିକ୍ଷୁ, ସମସ୍ତେ ସେହି ମହାପ୍ରାଣଙ୍କୁ ଅର୍ଘ୍ୟ ପ୍ରଦାନ କଲେ । ସେହି ଚିତାଗ୍ନିରେ ପ୍ରଦତ୍ତ ଘୃତ ଓ ଚନ୍ଦନାଦିରେ ଦିଗଦିଗନ୍ତ ଆମୋଦିତ ହୋଇଥିଲା । ଭିକ୍ଷୁ ଚନ୍ଦନ ଭସ୍ମାବଶେଷ ନେଇ ଶ୍ରାବସ୍ତି ନଗରରେ ଆନନ୍ଦଙ୍କ ହସ୍ତରେ ସମର୍ପଣ କଲେ । ଏହି ପ୍ରିୟ ଶିଷ୍ୟଙ୍କର ଚିତାଭସ୍ମ ବୁଦ୍ଧଦେବଙ୍କ ହସ୍ତରେ ଅର୍ପିତ ହେଲା । ସେ ଦକ୍ଷିଣ କରରେ ସେହି ଭସ୍ମ ଗ୍ରହଣକରି ବିହାରର ଭିକ୍ଷୁଗଣଙ୍କୁ କହିଲେ- "ପବିତ୍ର ସାରିପୁତ୍ତଙ୍କର ଭସ୍ମ ପ୍ରତି ଦୃଷ୍ଟିପାତ କର । ସେ ସରଳପ୍ରାଣ ଓ ଦୀନହୃଦୟ ଥିଲେ- ସେ ଦେହ ପ୍ରତି ଆଦୌ ଆସ୍ଥାବାନ ନଥିଲେ । ସାରିପୁତ୍ତ ଜଳବତ୍ ବିଶୋଧକ-ବାୟୁତୁଲ୍ୟ ସର୍ବଜଗତ କଲ୍ୟାଣକାରୀ ଓ ପରମ କାରୁଣିକ । ସର୍ବପ୍ରାଣୀର ସାନ୍ତ୍ୱନାଦାୟକ, ପରାର୍ଥପର ଓ କୃତଜ୍ଞ ଥିଲେ । ସେ ଦୁଃଖୀ, ପ୍ରପୀଡ଼ିତଙ୍କୁ ପ୍ରାଣତୁଲ୍ୟ ସମାଦର କରୁଥିଲେ । ସେ ସମସ୍ତଙ୍କର ମିତ୍ର ଓ ଜନନୀ ତୁଲ୍ୟ ଥିଲେ । ତାହାଙ୍କୁ ତୁମ୍ଭେମାନେ ସମସ୍ତେ ପୂଜାକର । ବୁଦ୍ଧଦେବ ତାଙ୍କର ଦେହାବଶେଷକୁ ଜେତବନର ଗୋଟିଏ ସ୍ତୂପରେ ରକ୍ଷା କରିଥିଲେ । ତାହାର ଏକପକ୍ଷ ପରେ ମହାମୋଗ୍‌ଗଲ୍ଲାନଙ୍କ ପଞ୍ଚତ୍ୱ ପ୍ରାପ୍ତ ହେଲା । ସେ ଦେହାବଶେଷକୁ ବୁଦ୍ଧଦେବ ରାଜଗୃହର ଗୋଟିଏ ସ୍ତୂପ ମଧ୍ୟରେ ରକ୍ଷା କରିଥିଲେ । ପ୍ରକୃତରେ ସେ ଦୁହେଁ ମହାତ୍ମା ଥିଲେ । କାରଣ ଭଗବାନ ବୁଦ୍ଧଦେବ ସେହି ଦୁହିଁଙ୍କର ଦେହାବଶେଷ ସ୍ୱହସ୍ତରେ ସ୍ପର୍ଶ କରିଥିଲେ ଓ ତାଙ୍କ ମହିମା ଖ୍ୟାପନ କରିଥିଲେ । ଧନ୍ୟ ସାରିପୁତ୍ତ, ଧନ୍ୟ ମୋଗ୍‌ଗଲ୍ଲାନ । ତୁମ୍ଭଦୁହିଁଙ୍କର ପବିତ୍ର ଆତ୍ମା ବିଦ୍ୟମାନ ଓ ଜାଜ୍ୱଲ୍ୟମାନ ।

# ଶିଷ୍ଟତା

ଜୀବ ଜଗତରେ ମାନବ ଶ୍ରେଷ୍ଠ । ତାର କାରଣ ହେଉଛି, ତାର ମନନ ଶକ୍ତି ଓ ବିଚାର ଶକ୍ତି ଅଛି- ଯେଉଁ ଶକ୍ତିବଳରେ ସେ ଭଲମନ୍ଦ ବିଚାର କରିପାରେ । କେବଳ ଯେ ଏପରି ବିଚାର କଲେ ତାହାର କାର୍ଯ୍ୟ ସେ ସାଙ୍ଗ କଲା, ତାହାନୁହେଁ । ବିଚାର ଅନୁଯାୟୀ ଆଚରଣ କରିବାରେ ସେହି ବିଚାରର ସାର୍ଥକତା ପ୍ରତିପାଦିତ ହୁଏ ଏବଂ ସେ ପ୍ରକୃତ ମାନବର କାର୍ଯ୍ୟକରେ । ଏହି ଶକ୍ତିର ଯଥାର୍ଥ ଅଧିକାରୀ ହେବା ନିମିତ୍ତ ତାହାର ଉପଯୁକ୍ତ ଶିକ୍ଷା ଉଚିତ । ଏହି ସଂସାରରେ ତିନିଗୋଟି ଗୁଣ କାର୍ଯ୍ୟ କରେ- ତାହା ସତ୍ତ୍ୱ,ରଜ ଓ ତମ । ସତ୍ତ୍ୱଗୁଣଟି ନିର୍ମଳ ଓ ସୁଖପ୍ରଦ । ରଜ ଗୁଣଟି ଲୋକକୁ ବିଷୟରେ ଆସକ୍ତ କରାଏ ଏବଂ ଆସକ୍ତି ହେତୁ ଲୋକକୁ ଗ୍ରାସ କରେ । ଏବଂ ସେ ପଶୁବତ୍ ବିଚାରହୀନ ହୋଇପଡ଼େ । ଯଥାସମ୍ଭବ ତମ ଓ ରଜଗୁଣକୁ ଏଡ଼ାଇ ଛାତ୍ରକୁ ସତ୍ତ୍ୱଗୁଣରେ ଅଧିକାରୀ କରାଇବା ଗୁରୁଙ୍କର, ଶିକ୍ଷକଙ୍କର, ପିତାମାତାଙ୍କର କର୍ତ୍ତବ୍ୟ । ଯେ ଶିକ୍ଷକ, ସେ ଉପଦେଶକ ଏବଂ ସେ ମଧ୍ୟ ଉପଯୁକ୍ତ ଶାସକ । ଏ ପଦର ଅଧିକାରୀ ହେବା ବଡ଼ ଗୁରୁତ୍ୱର ବିଷୟ । ସମସ୍ତଙ୍କଦ୍ୱାରା ଏ କାର୍ଯ୍ୟ ସମାହିତ ହୋଇପାରେ ନାହିଁ । ଶିକ୍ଷକ ନିଯୁକ୍ତି ପ୍ରତି ତୀବ୍ର ଦୃଷ୍ଟି ରହିବା ବାଞ୍ଛନୀୟ । ପରିବାର ତଥା ସମାଜଗତ ରୀତିନୀତି ଲୋକର ଚରିତ୍ର ଗଠନରେ ବିଶେଷ ପ୍ରଭାବ ବିସ୍ତାରକରେ । ସମସ୍ତ ପରିବାର ଏକ ଧରଣର ନୁହନ୍ତି ବା ଏକ ଧରଣର ଶିକ୍ଷିତ ନୁହନ୍ତି । ସେଠାରେ ନୀତିଗତ ଓ ଚରିତ୍ରଗତ ପାର୍ଥକ୍ୟ ପୂର୍ଣ୍ଣତଃ ପରିଦୃଷ୍ଟ ହୁଏ । ସମସ୍ତ ପରିବାରର ପିତା ମାତା ଭ୍ରାତା ପ୍ରଭୃତିଙ୍କର ରୀତିନୀତି ଏକ ଧରଣର ହୋଇ ପାରେନାହିଁ । କେବଳ ଲେଖାପଢା କଲେ, ଲୋକ ଶିକ୍ଷିତ ହୁଏନାହିଁ । ଚାରିତ୍ରଗତ, ନୀତିଗତ ଉତ୍କର୍ଷରେ ଲୋକ ଉପଯୁକ୍ତ ଶିକ୍ଷିତ ରୂପେ ବିବେଚିତ ହୁଏ । ପରିବାରର, ପରିବେଷ୍ଟନୀର ତଥା ଶିକ୍ଷକଙ୍କର ନୀତିଗତ ତଥା ଚରିତ୍ରଗତ ଦୁର୍ବଳତା ହେତୁ ସମାଜରେ ବିଶୃଙ୍ଖଳା ଜାତହୁଏ । ଭିନ୍ନଭିନ୍ନ ପରିବାରର ବାଳକ ବାଳିକାଙ୍କୁ ଶିକ୍ଷାପ୍ରଦାନ କରି ସେମାନଙ୍କର ଚରିତ୍ରଗତ, ନୀତିଗତ ତଥା ବିଦ୍ୟାଗତ ଉନ୍ନତି ବିଧାନ କରିବା ଏକ ଗୁରୁତର ବିଷୟ ।

ପ୍ରାଚୀନ କାଳରେ ଛାତ୍ରମାନଙ୍କୁ (ଅବଶ୍ୟ ଉଚ୍ଚଶ୍ରେଣୀର ବା ଜାତିର ଛାତ୍ରମାନଙ୍କୁ) ବ୍ରହ୍ମଚାରୀ ଭାବରେ ଜୀବନ ନିର୍ବାହ କରିବାକୁ ହେଉଥିଲା । ଛାତ୍ରାବସ୍ଥାରେ ସେମାନଙ୍କ କର୍ତ୍ତବ୍ୟ ନିର୍ଦ୍ଧାରିତ ହୋଇଥିଲା ଏବଂ ଆଚରଣ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ବର୍ତ୍ତମାନ ଆମ୍ଭେମାନେ ସଭ୍ୟ ବୋଲି ଆତ୍ମାଭିମାନ ପ୍ରକାଶ କରୁଅଛୁ । କି ଧରଣର ସଭ୍ୟ ହୋଇଅଛୁ-ଆମ୍ଭେମାନଙ୍କ ସଂସ୍କୃତି କଣ ଯଥାର୍ଥ ପଦବାଚ୍ୟ ? ଏହା ଧୀର ସ୍ଥିର ଭାବରେ ନିର୍ମଳ ଚିତ୍ତରେ କଳ୍ପନାକରି ବସିଲେ ଆମ୍ଭେମାନେ ସ୍ପଷ୍ଟତଃ ଜାଣୁ ଯେ, ଆମ୍ଭମାନଙ୍କର ନୈତିକ ଉତ୍କର୍ଷ ପ୍ରତି ଯଥାଯଥ ଦୃଷ୍ଟି ପ୍ରଦତ୍ତ ହେଉନାହିଁ । ତେଣୁ ନୈତିକ ଅଧୋଗତି ପ୍ରତି ସମ୍ମୁଖୀନ ହେଉଅଛୁ । ଅଦ୍ୟତନ ଭାରତ ପୂର୍ବତନ ଭାରତରୁ ବିଶେଷ ପରିମାଣରେ ସାକ୍ଷର ହୋଇଅଛି । ଜନସାଧାରଣରେ ଯଥାସମ୍ଭବ ବିଦ୍ୟାଶିକ୍ଷା ଅବାଧରେ ପ୍ରଚଳିତ ହେବାରୁ ବହୁ ପରିମାଣର ଲୋକେ ଲେଖାପଢ଼ା କରିପାରୁଅଛନ୍ତି । ଏହି ଶିକ୍ଷା ଅର୍ଥାତ୍ ଲେଖାପଢ଼ାକୁ ସର୍ବତୋଭାବେ ସୁଫଳପ୍ରଦ କରିବାକୁ ହେବ । ତେଣୁ ଶିକ୍ଷାର ଗତିରେ ସୁବିହିତ ବନ୍ଦୋବସ୍ତ କରଣୀୟ । ଏହା କରିବା ବଡ଼ କଠିନ ବୋଲି କେତେକ ମତ ପ୍ରକାଶ କରନ୍ତି, କିନ୍ତୁ ଆମ୍ଭମାନଙ୍କ ମତରେ ଏହା ତେତେ କଠିନ ନୁହେଁ । କେଉଁ ଧରଣର ଶିକ୍ଷା ଭାରତର-ଉପଯୋଗୀ, ବର୍ତ୍ତମାନ ଜଗତର ଅବସ୍ଥା ଦୃଷ୍ଟିରେ କିପରି ଶିକ୍ଷା ଲୋକଙ୍କର ଅନୁକୂଳ ହୋଇ ଲୋକଙ୍କୁ ପୃଥିବୀର ସଭ୍ୟଜାତିର ସମକକ୍ଷ କରାଇବ ତଥା ବିଶେଷତ୍ୱ ଅକ୍ଷୁଣ୍ଣ ରଖି ଲୋକଙ୍କୁ ଜଗତ ସମକ୍ଷରେ ସମ୍ମାନାର୍ହ କରାଇବ, ତାହାର ଉପଯୁକ୍ତ ସଂବିଧାନ କରିବାକୁ ହେବ । ଏହା ହେଲା ଶିକ୍ଷାମାର୍ଗର ପ୍ରବର୍ତ୍ତନ ବା ପରିବର୍ତ୍ତନ । କିନ୍ତୁ ପ୍ରକୃତ ଶିକ୍ଷାର ପ୍ରବର୍ତ୍ତନରେ ଗୋଟିଏ ମୂଳ ବିଷୟକୁ ଆଶ୍ରୟ କରିବାକୁ ହେବ- ତାହା ହେଉଛି ବିନୟ-ଶାସନ । ସେହି ବିନୟ ବା ଶାସନ ଉପଯୁକ୍ତ ଚରିତ୍ରବାନ ବୃଦ୍ଧଙ୍କ ସେବା ଉପରେ ପୂର୍ଣ୍ଣତଃ ନିର୍ଭର କରେ । ବିନୟ-ଶାସନ ଅଭାବରେ ସମସ୍ତ ବିଶୃଙ୍ଖଳା ଜନ୍ମିବା ସ୍ୱତଃସିଦ୍ଧ । ଯେ ଗୁରୁ(ଶିକ୍ଷକ) ସେ ନିଜେ ଶିଷ୍ଟ ହେବେ, କ୍ରୋଧ ଲୋଭାଦିର ବଶୀଭୂତ ହେବେ ନାହିଁ- ଅର୍ଥାତ୍ ଆତ୍ମାଧିକାରୀ ହେବେ । ଆଚାର୍ଯ୍ୟ, ପୁରୋଧା ଓ ଗୁରୁଙ୍କ ଲକ୍ଷଣ ନୀତିଶାସ୍ତ୍ର, ଧର୍ମଶାସ୍ତ୍ର ତଥା ପୁରାଣମାନଙ୍କରେ କଥିତ ଅଛି ଯେ "ଜିତେନ୍ଦ୍ରିୟ, ଜିତବୋଧ, ଲୋଭ ମୋହ ବର୍ଜିତ.....ଯତ୍ର କୋପଭୀତ୍ୟା ରାଜାଽପି ଧର୍ମ ନୀତି ପରୋ ଭବେତ୍"- ସେ ଇନ୍ଦ୍ରିୟ ଜୟୀ, କ୍ରୋଧ-ଲୋଭ-ମୋହ ଶୂନ୍ୟ, ଶାସ୍ତ୍ରଜ୍ଞ, ଧର୍ମଜ୍ଞ, ପ୍ରଭୃତି ହୋଇଥିବେ ଏବଂ ଯାହାଙ୍କର କ୍ରୋଧକୁ ଭୟ କରି ରାଜା-ଶାସକ ମଧ୍ୟ ଧର୍ମନୀତି ପ୍ରତି ଦୃଷ୍ଟି ଦେବେ । ଗୁରୁଙ୍କ ଲକ୍ଷଣ ତୁଲ୍ୟ ଶିଷ୍ୟର ଲକ୍ଷଣ ମଧ୍ୟ କଥିତ ହୋଇଅଛି:-

"ଅମାନ୍ୟ ମତ୍ସରୋ ଦକ୍ଷୋ ନିର୍ମମୋ ଦୃଢ ସୌହୃଦଃ
ଅସତ୍ୱରୋଽର୍ଥଜିଜ୍ଞାସୁରସୂୟୁର ମୋଘବାକ୍" ।

ଭାଗବତ ସ୍କନ୍ଧ ୧୧-୧୦-୬ ଶ୍ଳୋକ ।

ଗୁରୁଙ୍କ ସେବକ ଛାତ୍ର ନିରଭିମାନ, ଅହଙ୍କାରଶୂନ୍ୟ, ଅନଳସ, ବିଷୟମମତା ରହିତ, ଗୁରୁଙ୍କ ପ୍ରତି ଦୃଢ ପ୍ରୀତିଯୁକ୍ତ, ଅବ୍ୟଗ୍ର, ତତ୍ତ୍ୱଜ୍ଞାନାକାଂକ୍ଷୀ ଅସୂୟାରହିତ ଓ ବୃଥା

ଆଳାପରୁ ରହିତ ହେବ । ଆଜିକାଲି ସହସ୍ର ସହସ୍ର ଶିକ୍ଷକଙ୍କଦ୍ୱାରା ଶିକ୍ଷାକାର୍ଯ୍ୟ ନିର୍ବାହିତ ହେବା ସ୍ଥଳେ ଏଭଳି ଗୁଣସମ୍ପନ୍ନ ଏତେ ସଂଖ୍ୟକ ଗୁରୁ ନିଯୁକ୍ତ କରିବା ସୁକଠିନ, ତନ୍ଥୁଁ ଶିକ୍ଷା ବିଭାଗର କର୍ତ୍ତୃପକ୍ଷ ତଥା ସର୍ବଶ୍ରେଷ୍ଠ କର୍ତ୍ତା । ସେ ଶିଷ୍ଟ ତଥା ଆତ୍ମାଧିକାର ଅର୍ଥାତ୍ ସଚ୍ଚରିତ୍ର ନୀତିମାନ ହେବା ଆଦୌ ବାଞ୍ଛନୀୟ । ଏଭଳି ପ୍ରଧାନ ଶିକ୍ଷକ ବା ଅଧକ୍ଷଙ୍କ "ଆଜ୍ଞା ଅବିଚାରଣୀୟ ।" ଭାରତର ଗୁରୁଙ୍କ, ପୁରୋଧାଙ୍କ ଆଜ୍ଞା ଦେଶ ଶାସକଙ୍କର ମଧ ଶିରୋଧାର୍ଯ୍ୟ ହେଉଥିଲା । ତାଙ୍କର ଆଦେଶକୁ ଅବହେଳା କରିବାରେ କାହାର ଅଧିକାର ନାହିଁ । ସ୍ଥଳବିଶେଷରେ ମଧ ଉପଯୁକ୍ତ ଗୁରୁଙ୍କ ଅଭାବରୁ ବିଶୃଙ୍ଖଳା ଜାତ ହେବା ଦୃଷ୍ଟିଗୋଚର ହୁଏ । ଉପଯୁକ୍ତ ଶିକ୍ଷକଙ୍କ ଶାସନ ଅଭାବରୁ ଛାତ୍ରଙ୍କ ଚରିତ୍ରରେ ଶିଥିଳତା ଦର୍ଶିତ ହେଉଅଛି । ଆଜିକାଲି ଛାତ୍ରମାନଙ୍କ ଆଚରଣ ଦେଖି ଆମ୍ଭେମାନେ ଅତ୍ୟଧିକ ବିସ୍ମିତ । ଛାତ୍ରମାନଙ୍କ ଧର୍ମଘଟ ଅତୀବ ପ୍ରମାଦଜନକ । ଦୁଃଖର କଥା, ଦେଶର କେତେକ ତଥାକଥିତ ନାୟକ ଛାତ୍ରସଂଘକୁ ନାନା ଅଯଥା କାର୍ଯ୍ୟରେ ପ୍ରବର୍ତ୍ତାଉ ଅଛନ୍ତି, ମଧ ଉତ୍ତେଜିତ କରୁଅଛନ୍ତି । ସରଳ ଛାତ୍ରଜୀବନ ପଥଭ୍ରଷ୍ଟ ହେଉଅଛି । ସେମାନେ ନିଜ ନିଜର ଗୂଢ଼ ଦୂରଭିସନ୍ଧି ଚରିତାର୍ଥ ନିମିତ୍ତ ଛାତ୍ରମାନଙ୍କୁ ଅସ୍ତ୍ରରୂପେ ବ୍ୟବହାର କରୁଅଛନ୍ତି । ପୁନଶ୍ଚ କେତେକ ଅପରିଣାମଦର୍ଶୀ ପତ୍ରିକାର ସମ୍ପାଦକମାନେ ଅବାଞ୍ଛନୀୟ ବିଷୟମାନ ପ୍ରକାଶକରି ଗୁରୁ ଗୌରବ ପ୍ରତି ଜଳାଞ୍ଜଳି ଦେବାରେ ସହାୟତା ପ୍ରଦାନ କରୁଅଛନ୍ତି ।

ମନୁଷ୍ୟ ଦୋଷ ବର୍ଜିତ ନୁହେଁ । ନିର୍ଦ୍ଦୋଷ ଲୋକ ନାହିଁ କହିଲେ ଚଳେ । ଦୋଷ ଦର୍ଶାଇବା ତଥା ସୁଧାରିବାର ଉପାୟ ଅମର୍ଯ୍ୟାଦାସମ୍ପନ୍ନ ଉକ୍ତି ନୁହେଁ । ମନେରଖିବାକୁ ହେବ ପ୍ରତିବାଦ ପରିବାଦ ନୁହେଁ । ଦେଶର ଜନସାଧାରଣଙ୍କର ସୁସ୍ଥ ମନୋବୃତ୍ତି ଜନ୍ମାଇବା ପତ୍ରିକାକାରଙ୍କ କର୍ତ୍ତବ୍ୟ । ପତ୍ରିକାକାର ହେଉଛନ୍ତି ଦେଶର ସୁମାର୍ଗ ପ୍ରବର୍ତ୍ତକ । ଅମର୍ଯ୍ୟାଦା ସମ୍ପନ୍ନ ଉକ୍ତି କେତେବେଳେ ସ୍ପୃହଣୀୟ ନୁହେଁ । ପ୍ରତ୍ୟେକ ବିଭାଗର ଶାସନପଦ୍ଧତି ଉପଯୁକ୍ତ ରୂପେ ପରିଚାଳନା କରିବା ଶାସକଙ୍କର କାର୍ଯ୍ୟ । ଶାସନକାର୍ଯ୍ୟରେ ବାଧା ଜନ୍ମାଇ ଦେଶରେ ଉଚ୍ଛୃଙ୍ଖଳତା ଜନ୍ମାଇବା ଆମ୍ଭମାନଙ୍କ ମତରେ ସମୀଚୀନ ନୁହେଁ । ତ୍ରୁଟି ପ୍ରମାଦ ଏପରି ଭାବରେ ଦର୍ଶାଇବାକୁ ହେବ, ଯେପରିକି ଦେଶରେ ଶାସନ ଶୃଙ୍ଖଳା ପ୍ରତି ବାଧା ନ ଜନ୍ମାଇ ବରଂ ଉପଯୁକ୍ତ ପ୍ରତିକ୍ରିୟା ସାଧନରେ ସାହାଯ୍ୟ କରିବ । ଉଚ୍ଛୃଙ୍ଖଳା ଦଣ୍ଡନୀୟ- ଏହା ଶାସ୍ତ୍ରକାରଙ୍କ ମତ । ବ୍ରିଟିସ ସରକାର ବିଦେଶୀ ଥାଇ ଭାରତୀୟଙ୍କୁ ଶାସନ କରୁଥିଲେ- ତାଙ୍କର ପଦ୍ଧତି ଉଚ୍ଚ ଧରଣର । ପୃଥିବୀର ଅନ୍ୟଶାସନ ପଦ୍ଧତି ତୁଳନାରେ ବ୍ରିଟିସ ଶାସନ ପଦ୍ଧତି ଉଚ୍ଚ ସ୍ଥାନ ଅଧିକାର କରେନାହିଁ । ଉଚ୍ଛୃଙ୍ଖଳତା ଅତିମାତ୍ରାରେ ବ୍ରିଟିସର ସ୍ୱାର୍ଥଦୃଷ୍ଟିରେ ତଥା ଶାସନର ଅନୁରୋଧରେ ଦଣ୍ଡ ବିହିତ ହେଉଥିଲା । ତାହା ଶାସକ ପକ୍ଷରେ କେତେକ ସ୍ଥଳରେ ଅବଲମ୍ବନୀୟ । ସାମାନ୍ୟ ଉଚ୍ଛୃଙ୍ଖଳତାକୁ ଲୋକମତ ଦୃଷ୍ଟିରେ ଓ ଅନ୍ୟାନ୍ୟ କାରଣ ହେତୁ କେତେକ ସ୍ଥଳରେ ଉପେକ୍ଷା କରୁଥିଲେ । ସେହି କେତେକ ସ୍ଥଳର ଉପେକ୍ଷା ଆଜି ଭାରତରେ ତୀବ୍ର ଭାବ ଧାରଣକରି ଦେଶରେ ଅଶାନ୍ତି ଜନ୍ମାଉଛି ।

ଗଣତନ୍ତ୍ର ଶାସନ ଅତି ଗୁରୁତର ବିଷୟ । ପ୍ରକୃତ ଶିକ୍ଷା ଅଭାବରୁ ଆମ୍ଭମାନଙ୍କର ମନୋବୃତ୍ତି ସେପରି ଉନ୍ନତ କୋଟିକୁ ଆସି ନାହିଁ, ଯହିଁରେ ଆମ୍ଭେମାନେ ଗଣତନ୍ତ୍ର ଶାସନର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବୁ । ପୁନଶ୍ଚ ଶାସକମଣ୍ଡଳୀର ବା ଶାସକ ବିଶେଷଙ୍କର ସାମୟିକ ଯଥେଚ୍ଛାଚାରିତା ସ୍ପୃହଣୀୟ ନୁହେଁ, ତାହା ଅନିଷ୍ଟକାରକ । ଅନୁକୂଳ ଭାବେ ସୁମନ୍ତ୍ରଣାଦାତାଙ୍କ ମନ୍ତ୍ରଣା ଗ୍ରହଣ କରିବା ତାଙ୍କର ଉଚିତ । ନିଜ ମତର ସଂସ୍ଥାପନା ନିମିତ୍ତ ଅପର ବିଜ୍ଞ ବ୍ୟକ୍ତି ବିଶେଷଙ୍କର ସୁମନ୍ତ୍ରଣା ଗ୍ରହଣରେ ଅସହମାନ ହେବା ବଡ଼ ବିପଦଜନକ । ଆତ୍ମାଭିମାନଶୂନ୍ୟ ହୋଇ, ନିଜର ଶକ୍ତିରେ ଅତ୍ୟଧିକ ଆସ୍ଥା ନ ରଖି, ବିଜ୍ଞ ମନ୍ତ୍ରବିତଙ୍କସହ ମନ୍ତ୍ରଣା କରି କର୍ଯ୍ୟକଲେ, ବିଷୟମାନ ସୁନ୍ଦରଭାବରେ ସମାହିତ ହେବ, ଶତ୍ରୁ ମଧ ନିଜର ଗୁଣରେ ମୁଗ୍ଧ ହୋଇ କାଳର ଗତି, ଦେଶର ପରିସ୍ଥିତି ତଥା ଅବସ୍ଥା ଦୃଷ୍ଟିରେ ଅନୁକୂଳ ଭାବରେ (ଅବଶ୍ୟ ଉଭୟ ପକ୍ଷର) ବିଚାରକଲେ ଅନେକ ଜଟିଳ ବିଷୟ ସୁନ୍ଦର ଭାବରେ ସାଧିତ ହେବ । ଶିଷ୍ଟ ସମାହିତ ମତି ତଥା ଆତ୍ମାଧିକାରସମ୍ପନ୍ନ ହୋଇ କାର୍ଯ୍ୟ କଲେ ଅମର୍ଯ୍ୟାଦାସମ୍ପନ୍ନ ଉକ୍ତି-ପ୍ରତ୍ୟୁକ୍ତି ବିଲୟ ଭଜିବ । "ମା ବ୍ରୂୟାଦ୍ ସତ୍ୟମ-ପ୍ରିୟମ୍" ଏହାର ମର୍ମ ଯେ ବୁଝେ, ସେ କେବେ ଉଚ୍ଛୃଙ୍ଖଳତାକୁ ପ୍ରଶ୍ରୟ ଦିଏନାହିଁ । ଯେ ନିଜର ଗୃହକୁ ଚଳାଇବାରେ ସମର୍ଥ, ସେ ବହୁପରିମାଣରେ ଅନୁଷ୍ଠାନ ବିଶେଷ ବା ରାଜ୍ୟଚାଳନାରେ ସମର୍ଥ ହୁଏ । ସାମ୍ୟରେ ଅସାମ୍ୟ ରହିବା ସ୍ୱାଭାବିକ । ରାଜ୍ୟ ଚାଳନାରେ ସାମ, ଦାନ, ଭେଦ ଓ ଦଣ୍ଡ ରୂପ ଉପାୟ ଚତୁଷ୍ଟୟ ପ୍ରୟୋଗ କରିବା ବିଷୟ ବିଜ୍ଞ ନୀତିକାରମାନେ ଉପଦେଶ ଦେଇ ଅଛନ୍ତି । କିପରି ସ୍ଥଳରେ କ'ଣ ପ୍ରୟୋଗ କରିବା ଉଚିତ, ତାହା ଜାଣିବା ଆଦୌ ଆବଶ୍ୟକ ।

କୂଟନୀତିଜ୍ଞ ଚାଣକ୍ୟ କହିଅଛନ୍ତି "ସାମ୍ନା ଦାନେନ ଭେଦେନ ନ ଦଣ୍ଡେ ନ କଦାଚନ"- ସାମ, ଦାନ ଓ ଭେଦ ପ୍ରୟୋଗ କରନାହିଁ । ଏହା ହେଲା ସାଧାରଣ ନିୟମ । କିନ୍ତୁ ଶାସନ ଶୃଙ୍ଖଳାରେ ଅତ୍ୟଧିକ ବାଧା ଉପସ୍ଥିତ ହେଲେ ବିଜ୍ଞ ରାଜନୀତିଜ୍ଞ ଶାସକ ଅଗତିକ ଗତି ହୋଇ(ସାମ,ଦାନ, ଭେଦରେ ବିଫଳ ମନୋରଥ ହେବା ପରେ) ଦଣ୍ଡ ପ୍ରୟୋଗ କରିବାକୁ ବାଧ ହୁଅନ୍ତି । ଏହା ମଧ ଚାଣକ୍ୟଙ୍କ ମତ । ଦୁଃଖର କଥା, ଆଜିକାଲିକାର ତଥାକଥିତ ନେତା ଓ ବିଚାରପତିମାନେ ନୀତିଗତ ଓ ଧର୍ମଗତ ବିଷୟମାନଙ୍କର ପାର୍ଥକ୍ୟ ତଥା ଉଦ୍ଦେଶ୍ୟ ଓ ପ୍ରୟୋଗ ବିଷୟରେ ଯଥାଯଥ ଅଭିଜ୍ଞ ନ ଥିବାରୁ, ନୀତି ଓ ଧର୍ମ ସାଂକର୍ଯ୍ୟ ଜନ୍ମାଉଅଛନ୍ତି । ଗୃହସ୍ଥ ତଥା ରାଜଧର୍ମର ନୀତିକୁ ବିଦ୍ୟାପୀଠ ତଥା ଧର୍ମପୀଠରେ, ଅର୍ଥାତ୍ ବ୍ରହ୍ମଚାରୀ ଏବଂ ବାନପ୍ରସ୍ଥ ଓ ଯତିଙ୍କର ଧର୍ମନୀତିକୁ ସମଦୃଷ୍ଟିରେ ଦେଖିବା ଅବିମୃଶ୍ୟକାରିତାର ଲକ୍ଷଣ । ସମଦୃଷ୍ଟିରେ ଯେଉଁମାନେ ଦେଖନ୍ତି, ସେମାନେ ସତ୍ତ୍ୱଗୁଣର ମାହାତ୍ମ୍ୟ ଅବଗତ ନ ହୋଇ ତାହାକୁ ଉପେକ୍ଷା କରନ୍ତି ଏବଂ ରଜଗୁଣକୁ ପୂର୍ଣ୍ଣମାତ୍ରାରେ ସମର୍ଥନ କରନ୍ତି । ଅବଶ୍ୟ ରଜଗୁଣକୁ ସର୍ବତୋଭାବେ ଉପେକ୍ଷା କଲେ ସଂସାର ଧର୍ମ ଚଳିବ ନାହିଁ, ତେବେ କେତେକ

ପରିଣାମରେ ତାହାର ପ୍ରୟୋଗ ସ୍ଥଳବିଶେଷରେ କରଣୀୟ, ତାହା ଧୀରସ୍ଥିର ଭାବରେ ବିଚାର କରିବାକୁ ହେବ ।

ବିଦ୍ୟାପୀଠରେ ତଥା ଧର୍ମପୀଠର ନୀତିରେ ବିମଳ ସତ୍ୟକୁ ପୂର୍ଣ୍ଣଭାବରେ ଆଶ୍ରୟ କରିବାକୁ ହେବ । କାରଣ "ଧର୍ମ ପ୍ରୋଜ୍ଝିତ କୈତବ" ହେବା ଆଦୌ ବାଞ୍ଛନୀୟ ।ଏହି ଧର୍ମନୀତିର କପଟତା ପୂର୍ଣ୍ଣଭାବରେ ତ୍ୟାଗ କରିବାକୁ ହେବ । ଶଠେ ଶାଠ୍ୟଂ ସମାଚରେତ୍, ତାହା ଗୃହସ୍ଥର ତଥା ରାଜନୀତିର ବିଷୟ- ସାରସ୍ୱତ ମନ୍ଦିର ବ୍ରହ୍ମଚିନ୍ତନ ଘର, ଆଶ୍ରମର ନୀତି ନୁହେଁ । କାହାର କେଉଁ ଧର୍ମ, କିଏ କ'ଣ ପ୍ରତିପାଳନ କରିବ- ଏହା ସମ୍ୟକ୍ ଭାବରେ ଉପଲବ୍ଧି କରିବା ବାଞ୍ଛନୀୟ । ତନ୍ନିମିତ୍ତ ଶାସ୍ତ୍ରକାରଙ୍କ ମତରେ- "ଆନ୍ୱୀକ୍ଷିକୀ ତ୍ରୟୀ ବାର୍ତ୍ତା ଦଣ୍ଡ ନୀତିଶ୍ଚ ଶାଶ୍ୱତୀ" ପାଠ କରିବାକୁ ହେବ । ଅର୍ଥାତ୍ ଦର୍ଶନ, ବେଦ, ଅର୍ଥଶାସ୍ତ୍ର, ଦଣ୍ଡନୀତିକୁ ସମ୍ୟକ୍ ଅନୁଶୀଳନ କଲେ, ଲୋକଯାତ୍ରା ସୁଷ୍ଠୁ ପରିଚାଳିତ ହେବ । ତାର ଅନୁଶୀଳନ ଫଳରେ ଲୋକର ମତି, ସ୍ଥୈର୍ଯ୍ୟ ଓ ବୁଦ୍ଧି ବୈଶଦ୍ୟ ଜନ୍ମେ । ତନ୍ନିମିତ୍ତ ଶୁକ୍ରାଚାର୍ଯ୍ୟ କହିଲେ-

ନୟସ୍ୟ ବିନିୟୋ ମୂଳଂ ବିନୟଃ ଶାସ୍ତ୍ର ନିଶ୍ଚୟାତ୍
ବିନୟସ୍ୟେନ୍ଦ୍ରିୟ ଜୟସ୍ତଦ୍ୟୁକ୍ତଃ ଶାସ୍ତ୍ରମୃଚ୍ଛତି ।

ନୀତି ପ୍ରୟୋଗର ମୂଳ ହେଉଛି ବିନୟ(ଶାସନ, ଆତ୍ମଶାସନ) । ଶାସ୍ତ୍ରତତ୍ତ୍ୱ ଜ୍ଞାନରୁ ବିନୟ ଜାତହୁଏ । ବିନୟର ମୂଳ ହେଉଛି ଇନ୍ଦ୍ରିୟ ଜୟ- ଜିତେନ୍ଦ୍ରିୟ ବ୍ୟକ୍ତି ଶାସ୍ତ୍ର ଅନୁସାରେ କାର୍ଯ୍ୟ କରେ ।

ଅତଏବ ଶିଷ୍ଟ ନ ହେଲେ, ଆତ୍ମାଧିକାରୀ ନ ହେଲେ, କୌଣସି କାର୍ଯ୍ୟ ସୁନ୍ଦର ତଥା ଯଥାଯଥ ଭାବରେ ସମାହିତ ହୋଇପାରିବ ନାହିଁ ।
ଶିଷ୍ଟର ଲକ୍ଷଣ ପୁନର୍ବାର କହିଲେ-

ନ ପାଣି ପାଦ ଚପଳୋ ନ ନେତ୍ର ଚପଳୋମୁନିଃ
ନ ଚ ବାଳାଙ୍ଗଚପଳଂ ଇତି ଶିଷ୍ଟସ୍ୟ ଲକ୍ଷଣମ୍ ।

ମନ ସ୍ଥିର ହେଲେ ଇନ୍ଦ୍ରିୟମାନେ ସ୍ଥିର ହୁଅନ୍ତି । ସ୍ଥିର ମନର ଅପର ନାମ ବୁଦ୍ଧି । ବୁଦ୍ଧିରେ ଆତ୍ମାର ଜ୍ୟୋତି ପତିତ ହୁଏ- ତନ୍ନିମିତ୍ତ ଲୋକ ଅଭ୍ରାନ୍ତ ଭାବେ କାର୍ଯ୍ୟକରେ । ତନ୍ନିମିତ୍ତ ପ୍ରଥମେ ଶାସନାଧୀନ –ଶିଷ୍ୟ ହୋଇ ସାଧକଭାବେ ସାଧନା କରିବାକୁ ହେବ । ସାଧନାରେ ସିଦ୍ଧି ହୁଏ । ବିନା ସାଧନାରେ ସିଦ୍ଧ ହୋଇ ମାମଲାତକାରୀ କଲେ, ସମାଜରେ ଦେଶରେ ଘୋର ଅନିଷ୍ଟ ଜନ୍ମେ । ତନ୍ନିମିତ୍ତ ସମସ୍ତଙ୍କ ଶିଷ୍ଟ ହେବା ବାଞ୍ଛନୀୟ ।

ଉପାସ୍ୟ ଦେବଙ୍କର ଶକ୍ତି ହିଁ ସ୍ତ୍ରୀ ଦେବତାରୂପେ ଗୃହୀତ ତଥା ପୂଜିତ । ପ୍ରକୃତରେ ବିଚାରିଲେ ପ୍ରତିପନ୍ନ ହୁଏ ଯେ, ଶକ୍ତି ବିନା ଶକ୍ତିଧରଙ୍କର ସତ୍ତା ନାହିଁ । କାରଣ କଥିତ ଅଛି - "ଶକ୍ତ୍ୟାହୀନଃ ଶିବଃ ଶବ ଏବ ।" ଶକ୍ତିହୀନ ଶିବ ଶବ ମାତ୍ର । ମହାଦେବଙ୍କ ବକ୍ଷରେ କାଳିମୂର୍ତ୍ତିଙ୍କ ସ୍ଥିତି ତାହାର ନିଦର୍ଶନ । ତେଣୁ ଶକ୍ତିକୁ ହିଁ ସଂସାରର ମୂଳକାରଣ ଧରିବାକୁ ହେବ । ଦେବୀଭାଗବତରେ ଲିଖିତ ଅଛି ଯେ-

ଶକ୍ତିଂ ବିନା ହରିହର ପ୍ରମୁଖାଃ ସୁରାଶ୍ଚ
ନୈବଶ୍ୱରା ବିଚଳିତୁଂ ତବ ଦେବ ଦେବି?

ହେ ଦେବଦେବି, ତୁମର ଶକ୍ତି ବିନା ହରିହର ପ୍ରମୁଖ ଦେବତାମାନେ ଟିକିଏ ହେଲେ ହଳଚଳ ହେବାରେ ସମର୍ଥ ନୁହନ୍ତି । ଏଠାରେ ଦେବୀଙ୍କ ଶକ୍ତିର ଅର୍ଥ କ'ଣ ? ଦେବୀଙ୍କ ସ୍ଥୂଳମୂର୍ତ୍ତିର ସ୍ତୁତିରେ ଏହା କଥିତ । କିନ୍ତୁ ପ୍ରକୃତରେ ଶକ୍ତିର ରୂପ ନାହିଁ । ସେହି ଦେବୀଭାଗବତରେ ନାରଦ ରାମଚନ୍ଦ୍ରଙ୍କୁ କିଷ୍କିନ୍ଧ୍ୟାରେ କହୁଛନ୍ତି :

ଶଣୁ ରାମ ସଦ୍ୟା ନିତ୍ୟା ଶକ୍ତିରାଦ୍ୟା ସନାତନୀ
କାରଣଂ ସର୍ବ ଜନ୍ତୁନାଂ ବ୍ରହ୍ମାଦୀନାଂ ରଘୁଦ୍ୱହ ।
ତସ୍ୟାଃ ଶକ୍ତିଂ ବିନା କୋଽପିସ୍ପନ୍ଦିତୁଂନ କ୍ଷମୋଭବେତ୍
ବିଷ୍ଣୋଃ ପାଳନଶକ୍ତିଃ ସା କର୍ତ୍ତୃଶକ୍ତିଃହିତୁର୍ମମ ।
ରୁଦ୍ରସ୍ୟନାଶ ଶକ୍ତିସା ତ୍ୱନ୍ୟାଶକ୍ତି ପରାଶିରା
ଯତ୍‌କିଞ୍ଚିତ୍ କ୍ୱଚିଦବସ୍ତୁ କୁତୋଭବେତ୍ ।

ହେ ରାମ ଶୁଣ! ଆଦ୍ୟାଶକ୍ତି ସେ, ସେ ନିତ୍ୟା, ସନାତନୀ ଓ ସଦାନିତ୍ୟା । ସେ ସର୍ବପ୍ରାଣୀଙ୍କର, ବ୍ରହ୍ମାଙ୍କର ଜନନୀ । ତାଙ୍କ ଶକ୍ତି ବିନା କେହି ମଧ ହଲିପାରନ୍ତିନାହିଁ । ସେ ବିଷ୍ଣୁଙ୍କ ପାଳିବା ଶକ୍ତି, ବ୍ରହ୍ମାଙ୍କ ସର୍ଜିବା ଶକ୍ତି ଓ ଦେବଙ୍କ ନାଶିବା ଶକ୍ତି ଅଟନ୍ତି । ଏହାଛଡ଼ା ମଧ ଅଧିକ ଶକ୍ତିମତୀ ବ୍ରହ୍ମାଣ୍ଡର ଯାବତୀୟ ବସ୍ତୁର ସେ ଶକ୍ତି- ତେଣୁ ଶକ୍ତିଙ୍କର ଜନ୍ମ କେଉଁଠୁ ସମ୍ଭବିବ ? ଯେପରି ବିରାଟପୁରୁଷଙ୍କ ଏକ ପାଦରେ ବିଶ୍ୱବ୍ରହ୍ମାଣ୍ଡ ଓ ତିନି ପାଦ ଉର୍ଦ୍ଧ୍ୱ- ସେହିପରି ଶକ୍ତିଙ୍କ କିୟଦଂଶରେ ଏହି ବିଶ୍ୱ ବ୍ରହ୍ମାଣ୍ଡ ଅବିଦତ । ଋଗବେଦର ଶ୍ରୀସୂକ୍ତ ଅମ୍ଭୃତ୍ୟ ଋଷିଙ୍କ ବାଗ୍‌ଦେବୀ ବହ୍ମବାଦିନୀଙ୍କ ଉକ୍ତିହିଁ ଶକ୍ତିଦେବୀଙ୍କ ଉକ୍ତି ସ୍ୱୀକାର କରିବାକୁ ହେବ । କାରଣ ଦେବୀଉପନିଷଦରେ ଏହା ସ୍ପଷ୍ଟରୂପେ ପ୍ରତିପାଦିତ: -

"ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମ୍ୟହମାଦତୈର୍ଭୁତ ବିଶ୍ୱ ହେବୈ
ଅହଂମିତ୍ରାବରୁଣୀ ବୁଭୌବିଭର୍ମ୍ୟହମିନ୍ଦ୍ରାଗ୍ନି ଅହମଶ୍ୱିନା ବିଭୋ
ଅହଂ ସୋମଂ ତ୍ୱଷ୍ଟାରଂଭୂଷଣଂ ଭଗଂ ଦଧାମ୍ୟହମ୍ ।
ବିଷ୍ଣୁ ମୁରୁକ୍ରମଂ ବ୍ରହ୍ମାଣମୃତ ମ୍ରଜାପତିଂ ଦଧାମି ।
ଅହଂ ଦଧାମି ଦ୍ରବିଣଂ ହବିଷତେ ସୁପ୍ରାବ୍ୟେ ଯଜମାନାୟସୁନ୍ୱତେ-
... ଦୁର୍ଗାଂ ଦେବୀଂ ଶରଣମହଂ ପ୍ରପଦ୍ୟେ ସୁତରାଂ ନାଶୟତେ ତମଃ: -

ଋଗବେଦ ୧୦ମ ମଣ୍ଡଳ ଓ ଦେବ୍ୟୁପନିଷଦ୍ ମତରେ ଶକ୍ତି- ରୁଦ୍ର, ବସୁ, ଆଦିତ୍ୟ, ବିଶ୍ୱଦେବ, ମିତ୍ର, ବରୁଣ, ଅଗ୍ନି, ଅଶ୍ୱିନୀକୁମାର, ସେମା, ତ୍ୱଷ୍ଟା, ଭଗ, ବିଷ୍ଣୁ, ବ୍ରହ୍ମା

ପ୍ରଜାପତି ପ୍ରଭୃତିଙ୍କୁ ଧାରଣ କରିଅଛି । ସେହି ଯେ ଦେବୀ ଦୁର୍ଗା, ମୁଁ ତାଙ୍କ ଶରଣ ପଶୁଛି । ପୁରାଣ ଶାସ୍ତ୍ରାଦିରେ ଲିଖିତ ଅଛି ଯେ, ବ୍ରହ୍ମାଙ୍କର ଦଶଜଣ ମାନସ ପୁତ୍ର । ଯଥା- ମରୀଚି, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅଙ୍ଗିରା, ବଶିଷ୍ଠ, ନାରଦ, ଭୃଗୁ ଓ ଦକ୍ଷ । ଏମାନଙ୍କ ମଧ୍ୟରେ କେତେକ ପ୍ରଜାପତି ଥିଲେ । ଯଥା- ମରୀଚି, ଅତ୍ରି, ପୁଲସ୍ତ୍ୟ, ପୁଲହ,କ୍ରତୁ ପ୍ରଭୃତି । ମରୀଚିଙ୍କ ପୁତ୍ର କଶ୍ୟପଙ୍କର ଅଦତି, ଦିତି, ଦନୁ, କାଳିକା, ବିନତା, ସିଂହିକାଦି ସ୍ତ୍ରୀଙ୍କ ଠାରୁ ଯଥାକ୍ରମେ ଆଦିତ୍ୟ, ଦୈତ୍ୟ, ଦାନବ, କାଳକେୟ, ବୈନତେୟ ଓ ସିଂହିକେୟ ଜନ୍ମ ଲଭିଥିଲେ । ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବା । ବିଶ୍ରବାଙ୍କଠାରୁ କୁବେର, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଜାତ ହୋଇଥିଲେ ।

ଦେବୀପୂଜା: ଉକ୍ତ ବୈଦିକସୂକ୍ତ ଓ ଦେବୀଉପନିଷଦ ଛଡ଼ା ଆମ୍ଭେମାନେ ଦେବୀ ହୈମବତୀ ଉମାଙ୍କ ବିଷୟ କେନୋପନିଷଦରେ ଦେଖିବାକୁ ପାଉ । ବାଲ୍ମୀକି ରାମାୟଣରେ ଓ ବ୍ୟାସକୃତ ଆଧ୍ୟାତ୍ମରାମାୟଣରେ ରାମଚନ୍ଦ୍ରଙ୍କଦ୍ୱାରା ଦେବୀ ଉପାସିତ ହେବା ଏବଂ ତାଙ୍କ ବରଦାନରେ ରାବଣ, କୁମ୍ଭକର୍ଣ୍ଣ ଓ ଇନ୍ଦ୍ରଜିତ୍‌ଙ୍କୁ ବଧ ବିଷୟ ନାହିଁ । ପୁନଶ୍ଚ ମାର୍କଣ୍ଡେୟପୁରାଣ ଦେବୀଗୁଣ ପ୍ରଖ୍ୟାପନର ଆଦ୍ୟଗ୍ରନ୍ଥ ଏବଂ ଏହି ପୁରାଣରେ ପୂଜା ପ୍ରଣାଳୀ ନିହିତ ।

ସେ ଯାହାହେଉ, ପ୍ରଥମତଃ ଦେବୀପୂଜାର ଉପକ୍ରମ ଏଥିରେ ନିହିତ । ଏଥିରେ ବକ୍ତବ୍ୟ ଏହି ଯେ, ମାର୍କଣ୍ଡେୟପୁରାଣ ମତେ:- ମନ୍ୱନ୍ତରରେ ଚୈତବଂଶରେ ସ୍ମରଣ ପୃଥିବୀରେ ଆବିର୍ଭୂତ ହୋଇଥିଲେ । ଶତ୍ରୁଙ୍କଦ୍ୱାରା ପରାଜିତ ହୋଇ ଦେବୀ ଦୁର୍ଗାଙ୍କୁ ଆଶ୍ରୟ କଲେ । ସେ ସେଠାରେ ସୁମେଧା ଋଷିଙ୍କ ଶରଣାପନ୍ନ ହେଲେ- ତତ୍ପରେ ସମାଧି ନାମକ ବ୍ୟକ୍ତିଙ୍କ ସହିତ ଋଷିଙ୍କ ଆଶ୍ରମରେ ବାସକରି ଋଷିଙ୍କଠାରୁ ସ୍ତୁତିର ଉପାୟ ଶ୍ରବଣ କଲେ । ସର୍ବଦୁର୍ଗତିନାଶିନୀ ଦେବୀଙ୍କର ଉପାସନା ପଦ୍ଧତି ଋଷିଙ୍କଠାରୁ ଶୁଣି ନବପତ୍ରିକା ପାଳନ କଲେ । ସୁମେଧା ଋଷି ଦେବୀଙ୍କ କୀର୍ତ୍ତନ ଅବସରରେ ମଧୁକୈଟଭଙ୍କଦ୍ୱାରା ପରାଜିତ ହୁଅନ୍ତେ ବ୍ରହ୍ମାଙ୍କଦ୍ୱାରା ଦେବୀସ୍ତୁତ ହେବା ଏବଂ ଶରୀରରୁ ମୁକ୍ତ ହେବା ଓ ବିଷ୍ଣୁଙ୍କ ଦ୍ୱାରା ମଧୁକୈଟଭ ଓ ମହିଷାସୁର ବଧ, ଶୁମ୍ଭ ନିଶୁମ୍ଭ ବଧ ଓ ଚଣ୍ଡୀପାଠ ଆଦି ଦେବୀ ମାହାତ୍ମ୍ୟରେ କହିଥିଲେ । ଦେବୀ ଭଗବତୀଙ୍କ ମାହାତ୍ମ୍ୟ ମାର୍କଣ୍ଡେୟପୁରାଣ; ଦେବୀଭାଗବତ, କାଳିକାଦେବୀପୁରାଣ ଆଦିରେ କଥିତ । ମାର୍କଣ୍ଡେୟପୁରାଣ ଦେବୀ ଭାଗବତ ପରେ ରଚିତ, ଏହା ସୁନିଶ୍ଚିତ । ମାର୍କଣ୍ଡେୟପୁରାଣାନ୍ତର୍ଗତ ଦେବୀମା ହାତ୍ମ୍ୟକୁ ବିସ୍ତର ଭାବରେ, ନାନା ପ୍ରକାରରେ ଦେବୀଭାଗବତକାର ବର୍ଣ୍ଣନା କରିଛନ୍ତି । ନାରଦଙ୍କ ମୁଖରୁ ବ୍ରହ୍ମା, ବିଷ୍ଣୁଙ୍କ ଉପାଖ୍ୟାନ; ବ୍ୟାସଙ୍କର ଆଦ୍ୟାଶକ୍ତିଙ୍କୁ ପୂଜାକରି ପୁତ୍ରଲାଭ, ବିଷ୍ଣୁଙ୍କ ଶିରଚ୍ଛେଦନରେ ଦେବୀଙ୍କଦ୍ୱାରା ବିଷ୍ଣୁଙ୍କର ଯୋଜନା, ବିଷ୍ଣୁଙ୍କର ହୟଗ୍ରୀବ ନାମଧାରଣ; ହୟଗ୍ରୀବର ବିଷ୍ଣୁଙ୍କ ହସ୍ତେ ମୃତ୍ୟୁ ଦେବୀ ସ୍ତୁତିରେ ଦେବୀ ପ୍ରସନ୍ନ ହୋଇ ବିଷ୍ଣୁଙ୍କ ଶରୀର ଧାରଣ କରିବାରୁ ବିଷ୍ଣୁଙ୍କ ଦ୍ୱାରା ମଧୁକୈଟବ ନାଶ; ଦେବୀଙ୍କ ଅଭୟ ଦାନରେ ସୁଦର୍ଶନର ନାନା ସଂକଟରୁ ମୁକ୍ତି, ରାଜ୍ୟପ୍ରାପ୍ତି ଓ ଦେବୀଙ୍କ କାଶୀବାସ, ଅଯୋଧ୍ୟାରେ ଦେବୀସ୍ଥାପନା, କିଷ୍କିନ୍ଧ୍ୟାରେ ସୀତା ବିରହଜନିତ ରାମଙ୍କ ଖେଦ, ନାରଦଙ୍କ ଉପଦେଶ ତଥା

ଆଚାର୍ଯ୍ୟତ୍ୱରେ ରାମ ଓ ଲକ୍ଷ୍ମଣଙ୍କର ନବରାତ୍ରବିଧି ପାଳନ, ଦେବୀଙ୍କ ଅଷ୍ଟମୀ ରାତ୍ରରେ ଆବିର୍ଭାବ, ରାମଙ୍କଦ୍ୱାରା ରାବଣ ଓ କୁମ୍ଭକର୍ଣ୍ଣ ନାଶ ଓ ଲକ୍ଷ୍ମଣଙ୍କଦ୍ୱାରା ଇନ୍ଦ୍ରଜିତ ନାଶ ରୂପ ବର ଘେନିଥିଲେ । ଦେବୀ ମଧ୍ୟ କହିଲେ ଯେ, ବିଧିପୂର୍ବକ ଶରତ କାଳରେ ଏ ବ୍ରତ ପାଳନ କରିବ । ଲଙ୍କାରେ ବସନ୍ତ ଋତୁରେ ଉତ୍ସବ ସହ ବାସନ୍ତୀବ୍ରତ ପାଳନ କରିବ । କୋଶଳଦେଶର ସୁଶୀଳ ନାମକ ଅତି ଦରିଦ୍ର ବଣିକ ନିଜର ଅବସ୍ଥାର ସୁଧାର ନିମନ୍ତେ ଜଣେ ବ୍ରାହ୍ମଣକୁ ପ୍ରଶ୍ନ କରନ୍ତେ, ଉକ୍ତ ବ୍ରାହ୍ମଣ ସୁଶୀଳକୁ ନବରାତ୍ରବ୍ରତ ପାଳନ କରିବାକୁ ଉପଦେଶ ଦେଇଥିଲେ ଓ କହିଥିଲେ- ଏହି ନବରାତ୍ର ପାଳନ ବଳରେ ରାମଚନ୍ଦ୍ର ରାବଣ ଓ କୁମ୍ଭକର୍ଣ୍ଣାଦିଙ୍କୁ ନାଶକରି ସୀତା ଲାଭପୂର୍ବକ ସୁଖରେ ରାଜ୍ୟପାଳନ କରିଥିଲେ ।

ନାରଦ ରାମଚନ୍ଦ୍ରଙ୍କୁ କହିଥିଲେ- ଏହି ନବରାତ୍ର ବ୍ରତ ବିଷ୍ଣୁ, ମହାଦେବ, ବ୍ରହ୍ମା, ଇନ୍ଦ୍ର, ବିଶ୍ୱାମିତ୍ର, ଭୃଗୁ, ବିଶ୍ୱାମିତ୍ର, ବଶିଷ୍ଠ, କଶ୍ୟପ, ବୃହସ୍ପତି ପ୍ରଭୃତି ପାଳନ କରିଥିଲେ । ତେଣୁ ତୁମ୍ଭେ ପାଳନକରି ରାବଣକୁ ନିଶ୍ଚୟ ବଧ କରିବ । ଭଗବତୀ ଦେବୀ ସର୍ବତ୍ର ବିଷ୍ଣୁମାୟା ରୂପେ କଥିତ, ସ୍ଥଳେ ସ୍ଥଳେ ଶାମ୍ଭବୀ ମାୟା ରୂପେ ମଧ୍ୟ ଗୃହୀତ । ବିଷ୍ଣୁ ମଧ୍ୟ ସ୍ୱ ମାୟାରେ ବିମୋହିତ । ସ୍ୱୟଂ ବିଷ୍ଣୁ ରାମ ରୂପରେ ଅବତୀର୍ଣ୍ଣ ହୋଇ ମଧ୍ୟ ମନୁଷ୍ୟ ଦେହ ଆଶ୍ରୟ କରି ମନୁଷ୍ୟ ପରି ନାନା ଦୁଃଖ ଭୋଗ କଲେ । କୃଷ୍ଣ ମଧ୍ୟ ତଦ୍ରୂପ । କାରଣ ସମସ୍ତେ ମାୟାଧୀନ ।

ମାୟାତଃ ପାତିନଃ ସର୍ବେ ମାୟାଧୀନାଃ ସୁରାଽସୁରାଃ । ପୁନଶ୍ଚ ମାୟାତନ୍ତ୍ରୀ ନିବଦ୍ଧା ଯେ ବ୍ରହ୍ମା ବିଷ୍ଣୁ ହରାଦୟଃ ।

ଭ୍ରମନ୍ତି ବନ୍ଧମାୟାନ୍ତି ଲୀଳୟା ଚୌର୍ଣ୍ଣନାଭିବଦ୍ ।

ମହିଷାସୁର ଉପାଖ୍ୟାନ: ଦେବୀଭାଗବତ ମତେ, ଦେବ ଦାନବ ଯୁଦ୍ଧ ପ୍ରସଙ୍ଗରେ ବର୍ଣ୍ଣିତ ଯେ, ଦନୁଙ୍କ ଦୁଇ ପୁତ୍ର ରମ୍ଭ ଓ କରମ୍ଭ ଥିଲେ । କରମ୍ଭ ଜଳ ମଧ୍ୟରେ ଓ ରମ୍ଭ ଅଗ୍ନି ମଧ୍ୟରେ ତପସ୍ୟା କଲେ । ଇନ୍ଦ୍ର କରମ୍ଭକୁ ନାଶ କରିବା ଶୁଣି ରମ୍ଭ ନିଜ ଶିର ଖଡ୍ଗରେ ଛେଦନ କରିବାକୁ ଉଦ୍ୟମ ହୁଅନ୍ତେ, ଅଗ୍ନିଦେବ ତାଙ୍କୁ ବାରଣ କଲେ ଓ ବର ମାଗିବାକୁ ପ୍ରାର୍ଥନା କର ବୋଲି କହିଲେ । ରମ୍ଭ ବର ପ୍ରାର୍ଥନା କଲେ ଯେ, ମୋର ପୁତ୍ର ତ୍ରିପୁର ବିଜୟୀ ହେବ । ତଥାସ୍ତୁ ଭାଷି ଅଗ୍ନିଦେବ କହିଲେ- ତୁ ଯାହାକୁ ପତ୍ନୀରୂପେ ଗ୍ରହଣ କରିବୁ, ତା'ଠାରୁ ତୁ ଅତି ବଳବନ୍ତ ପୁତ୍ର ପ୍ରାପ୍ତ ହେବୁ । ତେଣୁ ରମ୍ଭ ଏକ ମହିଷୀକୁ ସ୍ତ୍ରୀ ରୂପେ ଗ୍ରହଣ କଲା । ସେ ମହିଷୀ ଗର୍ଭବତୀ ହୋଇଥାଏ । ଏପରି ସମୟରେ ଅନ୍ୟ ଏକ ମହିଷ ସେହି ମହିଷୀପ୍ରତି କାମାସକ୍ତ ହେବାରୁ ରମ୍ଭ ସହିତ ତାହାର ଯୁଦ୍ଧ ହେଲା । ରମ୍ଭ ମହିଷଦ୍ୱାରା ହତ ହେବାରୁ ସେ ମହିଷୀ ଅଗ୍ନି ଜ୍ୱଳନ କରି ପତିସହ ଅଗ୍ନିରେ ପ୍ରବେଶ କଲା । ତେଣୁ ଅଗ୍ନି ମଧ୍ୟରୁ ମହିଷ ଜାତ ହେଲା ଓ ରମ୍ଭ ରକ୍ତବୀର୍ଯ୍ୟ ରୂପେ ଜାତହେଲା । ମହିଷ ପ୍ରାପ୍ତ ବୟସ୍କ ହୋଇ ବ୍ରହ୍ମାଙ୍କଠାରୁ ପୁରୁଷଦ୍ୱାରା ଅବଧ୍ୟ ବରପ୍ରାପ୍ତ ହେଲା । ପୃଥିବୀରେ ରାଜତ୍ୱ କରି ସ୍ୱର୍ଗ ଜୟ କରିବା ନିମନ୍ତେ ପ୍ରୟାସୀ ହେଲା । ଇନ୍ଦ୍ର ବୃହସ୍ପତିଙ୍କ ପରାମର୍ଶରେ ବ୍ରହ୍ମାଙ୍କ ନିକଟକୁ ଗଲେ । ତେଣୁ ସେମାନେ ଶିବ ଓ ବିଷ୍ଣୁଙ୍କ କହିଲେ- ସର୍ବସୁରଙ୍କର ତେଜର ସମଷ୍ଟିରେ ଯେଉଁ ଦେବୀ ଉଦ୍ଭୂତା ହେବେ, ସେ ଏହି ଦୁସ୍ତର କାର୍ଯ୍ୟ

ସମ୍ପନ୍ନ କରିବେ । ତହୁଁ ପ୍ରତ୍ୟେକ ଦେବତାଙ୍କ ଦେହରୁ ତେଜ ନିଃସୃତ ହେଲା ଏବଂ ସେହି ତେଜମାନଙ୍କ ସମବାୟରେ ଦେବୀ ଆବିର୍ଭୂତା ହେଲେ । ତତ୍‌ପରେ ଦେବତାମାନେ ସ୍ୱସ୍ୱ ଆୟୁଧମାନ ଦେବୀଙ୍କୁ ପ୍ରଦାନ କଲେ । ତହୁଁ ସେ ଦେବୀ ଗର୍ଜନ କରନ୍ତେ ତ୍ରିପୁର କମ୍ପମାନ ହେଲା । ମହିଷଦ୍ୱାରା ପ୍ରେରିତ ହୋଇ ଦୂତମାନେ ଦେବୀଙ୍କୁ ଦେଖି ଭୀତତ୍ରସ୍ତ ହୋଇ ମହିଷକୁ ଯାଇ ଦେବୀଙ୍କ ବିଷୟ କହିଲେ । ଏହା ଶୁଣି ମହିଷ ମନ୍ତ୍ରୀକୁ କହିଲା- ସାମ, ଦାନାଦି ଉପାୟଦ୍ୱାରା ଯଦି ସେ ମୋ ନିକଟକୁ ନ ଆସେ, ତାକୁ ନ ମାରି ମୋ ନିକଟକୁ ଆଣ, ମୁଁ ତାକୁ ପାଟରାଣୀ କରିବି । ଦେବୀଙ୍କୁ ଦୂତମାନେ ବହୁପ୍ରକାର ଅନୁନୟ ବିନୟ କରି କହିଲେ । ଦେବୀ କହିଲେ- "ମହିଷକୁ କହ, ସେ ପାତାଳ ଆଶ୍ରୟକରୁ, ନତୁବା ଯୁଦ୍ଧରେ ତାକୁ ଯମପୁରକୁ ପଠାଇବି । " ଯୁଦ୍ଧ ଆରମ୍ଭ ହେଲା । ବାଷ୍କଳ, ଦୁର୍ମଦ ତାମ୍ର ସହିତ  ଦେବୀ ଭୀଷଣ ଯୁଦ୍ଧକରି ସେମାନଙ୍କୁ ନାଶ କଲେ । ମହିଷାସୁର ସଙ୍ଗେ ଯୁଦ୍ଧ କଲେ । ଦେବୀ ମହିଷାସୁରକୁ କହିଲେ- ମୁଁ ଅପୂଜା, ଅଜନ୍ମା । ଦେବତାମାନଙ୍କ ନିମିତ୍ତ ମୁଁ ଜାତ ହୋଇଅଛି ।    ଅରୂପାୟାଶ୍ଚମେ ରୂପମଜନ୍ମାୟାଶ୍ଚ ଜନ୍ମର

ସୁରଣାଂ ରକ୍ଷଣାର୍ଥାୟ ବିଦ୍ଧିଦୈତ୍ୟାଂ ବିନିଶ୍ଚ ।

ତୁ ପାତାଳକୁ ଯା' ବା ଯୁଦ୍ଧକର- ମୁଁ ଅସୁର ନାଶ କରିବି । ତହୁଁ ଯୁଦ୍ଧ ହେଲା । ତାହାର ସେନାପତି ଦୁର୍ଦ୍ଧର, ତ୍ରିନେତ୍ର ଓ ଅନ୍ଧକର ମୃତ୍ୟୁରେ ମହଷାସୁର ଦେବୀଙ୍କ ଉପରେ ତୀକ୍ଷ୍ଣ ବାଣ ବର୍ଷଣ କଲା । ଦେବୀ ବାଣସବୁ ଛିନ୍ନ ବିଛିନ୍ନ କରିବାରୁ ମହିଷାସୁର-- ଗଜ, ଶରଭ, ମହିଷ ରୂପ ଗ୍ରହଣ କରି ଦେବୀଙ୍କ ସହିତ ଯୁଦ୍ଧ କଲା ।  ଦେବୀ ତ୍ରିଶୂଳରେ ତାକୁ ବିଦ୍ଧ କଲେ । ଅସୁରର ପ୍ରାଣ ନାଶ ହେଲା ।

ତତ୍‌ପରେ ପାତାଳରୁ ଶୁମ୍ଭ ଓ ନିଶୁମ୍ଭ ଅସୁର ଦୁଇଭାଇ ଆସି ବ୍ରହ୍ମାଙ୍କୁ ବହୁ ତପସ୍ୟା କଲେ । ବ୍ରହ୍ମା ପ୍ରୀତ ହୋଇ ବର ମାଗିବାକୁ ତାଙ୍କୁ କହନ୍ତେ, ସେ କହିଲେ- ଆମେ କୌଣସି ପୁରୁଷର ହସ୍ତରେ ଯେପରି ନ ମରୁ ।  ବ୍ରହ୍ମା ତଥାସ୍ତୁ କହି ବିଦାୟ ନେଲେ । ଶୁମ୍ଭ ରାଜା ହେଲା ଚଣ୍ଡ, ମୁଣ୍ଡ, ଧୂମ୍ରଲୋଚନ, ରକ୍ତବୀର୍ଯ୍ୟ, ମହାବଳ ବୀରମାନେ ତା'ର ସେନାପତି ଥିଲେ । ରକ୍ତବୀର୍ଯ୍ୟ ଏହି ବରପ୍ରାପ୍ତ ହୋଇଥିଲା ଯେ- ତା'ର ଶରୀର ଶସ୍ତ୍ରାହତ ହୋଇ ଯେତେ ବିନ୍ଦୁ ରକ୍ତପାତ ହେବ, ସେତେଗୋଟି ରକ୍ତବୀର୍ଯ୍ୟ ସଦୃଶ ବୀର ଜାତ ହେବେ । ପୃଥିବୀର ସକଳ ରାଜ୍ୟ ଜୟକରି ନିଶୁମ୍ଭ ସ୍ୱର୍ଗ ଯାତ୍ରା କଲା । ନିଶୁମ୍ଭ ଇନ୍ଦ୍ରଙ୍କଦ୍ୱାରା ପରାଜିତ ହେବା ଶୁଣି ଶୁମ୍ଭ ଯାଇ ଇନ୍ଦ୍ରାଦିଙ୍କୁ ପରାଜିତ କରି ସ୍ୱର୍ଗ ସିଂହାସନ ଅଧିକାର କଲା । ଦେବତାମାନେ ଲୁଚି ଲୁଚି ବୁଲିଲେ । ବହୁବର୍ଷ ପରେ ଇନ୍ଦ୍ର ବୃହସ୍ପତିଙ୍କ ଉପଦେଶରେ ହିମାଳୟ ଯାଇ ଦେବତାଙ୍କ ସହ ଦେବୀଙ୍କୁ ସ୍ତୁତି କଲେ । ତହୁଁ ଦେବୀ ସନ୍ତୁଷ୍ଟ ହେବାରୁ ତାଙ୍କ ଶରୀରରୁ ଦେବୀ ଅମ୍ବିକା ରୂପେ ନିଃସୃତ ହେଲେ । ସେ କୌଶକୀ ନାମରେ ବିଖ୍ୟାତ ଥିଲେ । ଅମ୍ବିକାଙ୍କ ଅନ୍ୟରୂପ କାଳିକା- କାଳରାତ୍ରି ନାମରେ ଖ୍ୟାତ । ଦେବୀ ଅମ୍ବିକା କାଳିକାଙ୍କ ସହ ଶତ୍ରୁ ନଗରକୁ ଯାତ୍ରା କଲେ ଓ ସେଠାରେ ମନୋହର ଭାବରେ ଗାନକଲେ । ଚଣ୍ଡ ମୁଣ୍ଡ ଦେବୀଙ୍କୁ ଦର୍ଶନକରି  ଶୁମ୍ଭଙ୍କୁ କହିଲେ ଯେ- ଦେବୀ ଗାନ କରୁଛନ୍ତି । ସେ ତୁମର ପତ୍ନୀ ହବାର ଯୋଗ୍ୟ । ତହୁଁ ଶୁମ୍ଭ ଦୂତ ପଠାଇବାରୁ ଦେବୀ

କହିଲେ- ମୁଁ ପତିରୂପେ ତାକୁ ଗ୍ରହଣ କରିବି- କିନ୍ତୁ ମୋର ବାଲ୍ୟକାଳର ପ୍ରତିଜ୍ଞା ଅଛି ଯେ, ମତେ ଯିଏ ଯୁଦ୍ଧରେ ଜୟ କରିବ, ତାକୁହିଁ ମୁଁ ବିବାହ କରିବି । ଦୂତ ଏହା ଯାଇ କହନ୍ତେ ଶୁମ୍ଭ ବା ନିଶୁମ୍ଭ କେହି ଯୁଦ୍ଧକୁ ନ ଯାଇ ଧୂମ୍ରଲୋଚନକୁ ପଠାଇଲେ । ଧୂମ୍ରଲୋଚନ ଯୁଦ୍ଧରେ ହତ ହୁଅନ୍ତେ ଚଣ୍ଡ, ମୁଣ୍ଡ ଯୁଦ୍ଧ କରିବାକୁ ଗଲେ । ଘୋର ଯୁଦ୍ଧ ହୁଅନ୍ତେ ଦେବୀଙ୍କ ମୁଖରୁ କାଳୀ ନିର୍ଗତ ହୋଇ ଅସୁରଙ୍କୁ ନାଶକରି ରକ୍ତ ସହିତ ମୁଖରେ ନିକ୍ଷେପ କଲେ । ଅଶ୍ୱ, ଓଟ ସହିତ ସାରଥିଙ୍କୁ ମଧ୍ୟ ମୁଖସାତ୍ କରି ଦନ୍ତରେ ଚୂର୍ଣ୍ଣ କଲେ । ତଦ୍‌ପରେ କାଳିକା ଚଣ୍ଡ, ମୁଣ୍ଡଙ୍କ ଶିର ଖଡ୍‌ଗରେ କର୍ତ୍ତନ କରି ରକ୍ତପାନ କଲେ । ତହୁଁ ଦେବୀ ଅମ୍ବିକା କହିଲେ- ଚଣ୍ଡମୁଣ୍ଡୌ ହତୌଯସ୍ମାତ୍ତସ୍ମାତ୍ତେ ନାମ କାଳିକେ

ଚାମୁଣ୍ଡେତି ସୁବିଖ୍ୟାତଂ ଭବିଷ୍ୟତି ଧରାତଳେ-

ତତ୍‌ପରେ ଦୂତ ଯାଇ ଯୁଦ୍ଧର ବାର୍ତ୍ତା କହନ୍ତେ ଶୁମ୍ଭ ଯୁଦ୍ଧରେ ନିବୃତ୍ତ ନ ହୋଇ ରକ୍ତବୀର୍ଯ୍ୟକୁ ସେନାନୀ କରି ପଠାଇଲେ । ରକ୍ତବୀର୍ଯ୍ୟ ପ୍ରଥମତଃ ଦେବୀଙ୍କ ବାଣରେ ମୂର୍ଚ୍ଛା ପ୍ରାପ୍ତ ହେଲା । ତାହା ଜାଣି ଶୁମ୍ଭ ଚତୁରଙ୍ଗ ବଳ ରଣାଙ୍ଗନକୁ ପଠାଇଲା । ତହୁଁ ଦେବତାମାନଙ୍କର ଶକ୍ତି- ଯଥା ବ୍ରାହ୍ମଣୀ, ବୈଷ୍ଣବୀ, ଶାଙ୍କରୀ; କୌମାରୀ; ଇନ୍ଦ୍ରାଣୀ, ବାରାହୀ, ନାରସିଂହୀ, ଯାମ୍ୟା, ବାରୁଣୀ; କୌବେରୀ, ଯୁଦ୍ଧରେ ଯୋଗ ଦେବାକୁ ଗଲେ । ତାଙ୍କ ସାଙ୍ଗେ ଶବର ମଧ୍ୟ ଥିଲେ । ଶବର ଦେବୀଙ୍କୁ କହିଲା- ଆମ୍ଭେମାନେ ଅସୁରଙ୍କୁ ନାଶ କରିବୁ ଓ ଜଗତ ଶାନ୍ତି ଲାଭକରିବ । ମହାଦେବୀଙ୍କ ବାକ୍ୟ ଶୁଣି ଚଣ୍ଡିକାଙ୍କ ଶରୀରରୁ ଘୋରରୂପା ଅଦ୍ଭୁତ ଶକ୍ତି ନିର୍ଗତ ହେଲା । ତହୁଁ ଦେବୀ ଶବରଙ୍କୁ କହିଲେ- ତୁମ୍ଭେ ଦୂତରୂପେ ଯାଇ ଶୁମ୍ଭ ନିଶୁମ୍ଭଙ୍କୁ କହ- ଯେବେ ଜୀବନ ଇଚ୍ଛାଥାଏ, ତେବେ ପାତାଳକୁ ଯାଅ । ଯେବେ ମୃତ୍ୟୁ ଇଚ୍ଛାଥାଏ, ତେବେ ଯୁଦ୍ଧ କର । ଦାନବଗଣ ଆସି ଘୋର ଯୁଦ୍ଧକଲେ । ଅସ୍ତ୍ରାଘାତରେ ରକ୍ତବୀର୍ଯ୍ୟ ଶରୀରରୁ ଶତ ଶତ ରକ୍ତବୀର୍ଯ୍ୟ ସଦୃଶ ବୀର ଜାତ ହୁଅନ୍ତେ ଦେବଗଣ ଅସ୍ତବ୍ୟସ୍ତ ହେଲେ । ତହୁଁ ଦେବୀ କାଳୀଙ୍କୁ କହିଲେ- ମୁଖ ବିସ୍ତୃତ କରି ରକ୍ତପାନ ସାଙ୍ଗେ ସାଙ୍ଗେ କର । ତହୁଁ କାଳିକା ସମସ୍ତ ରକ୍ତବୀର୍ଯ୍ୟ ଜାତ ରକ୍ତବୀର୍ଯ୍ୟମାନଙ୍କୁ ଭକ୍ଷଣ କଲେ- ରକ୍ତବୀର୍ଯ୍ୟ ଦେବୀଦ୍ୱାରା ହତହେଲା । ତହୁଁ ମନ୍ତ୍ରିବର ଶୁମ୍ଭଙ୍କୁ କହିଲେ- ଯୁଦ୍ଧ କରିବା ଅସମ୍ଭବ । ଚାଲନ୍ତୁ- ପାତାଳରେ ପଶିବା । ତହୁଁ ଦେବୀ ପର ପର ନିଶୁମ୍ଭ ଓ ଶୁମ୍ଭକୁ ବଧ କଲେ । ଶୁମ୍ଭ ନାଶ ପରେ ଦେବୀଭାଗବତରେ ସୁରଥ ରାଜା ଉପାଖ୍ୟାନ ବର୍ଣ୍ଣିତ । ଏହିରୂପେ ମାର୍କଣ୍ଡେୟପୁରାଣ ଆଖ୍ୟାନ ଦେବୀଭାଗବତରେ ପରିବର୍ଣ୍ଣିତ ।

ନବରାତ୍ରବିଧି କଥା:

"ଅଶ୍ୱିନେତ ତଥା ଚୈତ୍ରେ ଶୁକ୍ଳେ ପକ୍ଷେ ନରାଧିକ୍ଷ
ନବ ରାତ୍ରୋପବାସେ ତୌ କର୍ତ୍ତବ୍ୟେ ଶୁଭମିଚ୍ଛତା ।

ପୁନଶ୍ଚ, ବ୍ୟାସଦେବ ଜନ୍ମେଜୟଙ୍କୁ କହୁଛନ୍ତି ।

"ଶୁଣ ରାଜନ୍ ପ୍ରବଖ୍ୟାମି ନବରାତ୍ରବତଂ ଶୁଭମ୍
ଶରତ୍‌କାଳେ ବିଶେଷେଣ କର୍ତ୍ତବ୍ୟଂ ବିଧିପୂର୍ବକମ୍
ବସନ୍ତେର ପ୍ରକର୍ତ୍ତବ୍ୟଂ ତଦୌବ ପ୍ରେମ ପୂର୍ବକଂ

ଦ୍ୱାବୃତ ଯମଦଂ ଷ୍ଟାଖ୍ୟେନୁନଂ ସର୍ବଜନେଷ୍ଟୁବୈ ।
ବସନ୍ତ ଶରଦାଦେବ ଜନନାଶ କରା ବୁଭୌ—

ବ୍ରତ ଅମାବାସ୍ୟାରୁ ଆରମ୍ଭ କରିବାକୁ ହେବ । ଏକ ଓଳି ହବିଷ୍ୟାନ୍ନ ଭୋଜନ କରିବ । ଷୋଳହାତର ମଣ୍ଡପ ପବିତ୍ର ସ୍ଥଳରେ ସ୍ତମ୍ଭ ଧ୍ୱଜ ସହିତ ନିର୍ମାଣ କରିବ । ଗୋମୟ ଲେପନ କରି ମଧ୍ୟରେ ବେଦୀ କରିବ । ପ୍ରତିପଦ ଦିବସରେ ପ୍ରାତଃସ୍ନାନ କରିବ ଓ ଉପଯୁକ୍ତ ବ୍ରାହ୍ମଣଙ୍କୁ ବରିବ । ସିଂହାସନ କରି ଦେବୀ ଅମ୍ବିକାକୁ ସ୍ଥାପନ କରିବ । ଦେବୀ ଚତୁର୍ଭୁଜା ବା ଅଷ୍ଟାଦଶଭୁଜା ହେବେ । ଶଙ୍ଖ, ଚକ୍ର, ଗଦା, ପଦ୍ମ-ଧାରିଣୀ ଓ ସିଂହବାହିନୀ ହେବେ । ପାର୍ଶ୍ୱରେ କଳସାଦି ସ୍ଥାପନ କରିବ । ମନ୍ଦାରାଦି ପୁଷ୍ପ, ଚନ୍ଦନାକାର, କର୍ପୂର, ଧୂପ, ଦୀପାଦି, ନାରୀକେଳ, ମାତୁଲଙ୍ଗ ଓ ଦାଡ଼ିମାଦି ଫଳରେ ତଥା ଅନ୍ନରେ ପୂଜା କରିବ । ଯେଉଁମାନେ ମାଂସାସୀ, ସେମାନେ ମହିଷ, ଛାଗ ଓ ବରାହ ବଳିଦାନ କରିବେ । କାରଣ ଯଜ୍ଞରେ ହିଂସା, ହିଂସା ନୁହେଁ । ଭୂମିରେ ଶୟନ କରିବ, କୁମାରୀ ମଧ୍ୟ ପୂଜା କରିବ । ଏକ ବର୍ଷର କୁମାରୀ ପୂଜ୍ୟା ନୁହେଁ- ଦୁଇ ବର୍ଷର କନ୍ୟା କୁମାରୀ; ତିନି ବର୍ଷର ରୋହିଣୀ, ଛ' ବର୍ଷର କାଳିକା, ସାତ ବର୍ଷର ଦୁର୍ଗା, ଦଶ ବର୍ଷର ସୁଭଦ୍ରାକୁ ପୂଜା କରିବ । ଏହାଠାରୁ ଊର୍ଦ୍ଧ୍ୱ ବର୍ଷୀୟାନ ପୂଜା କରିବନାହିଁ । ଏହି କୁମାରୀମାନଙ୍କ ପୂଜାରେ ବିଶେଷ ବିଶେଷ ଫଳ ଲାଭ ହୁଏ ।

ମୂର୍ତ୍ତି ଭେଦେ ଯଥା ଦେବୀ ପୂଜାଂ ଗୃହଣାତି ଭୂତୟେ
କନ୍ୟାସଂସ୍ଥେ ରବୌ ବସ୍ତ୍ର ଶୁକ୍ଳମାରଭ୍ୟ ନନ୍ଦିକାମ୍
ଅଯାଚିତାଶୀ ନକ୍ତାଶୀ ଏକାଶୀବାଂ ଚାପଦଃ
ପ୍ରାତଃସ୍ନାୟୀ ଜିତ ଦ୍ୱନ୍ଦ୍ୱ ତ୍ରିକାଳଂ ଶିବ ପୂଜକଃ-
ଜପ ହୋମମୃମା ଯୁକ୍ତୋ ଭୋଜୟେ କୁମାରିକାଃ
ବୋଧୟେଦ୍ ବିଲ୍ୱଶାଖାସୁ ଷଷ୍ଠ୍ୟାଂ ଦେବୀ ଫଳେଷୁଚ
ସପ୍ତମ୍ୟାଂ ବିଲ୍ୱ ଶାଖାଂ ତାମାହୃତ୍ୟ ପ୍ରତି ପୂଜୟେଦ୍
ପୁନଃ ପୂଜାଂ ତଥାଷ୍ଟମ୍ୟାଂ ବିଶେଷଣ ସମାଚରେଦ୍
ଜାଗରଞ୍ଚ ସ୍ୱୟଂ କୁର୍ଯ୍ୟାଦ୍ ବଳିଦାନଂ ମହାନିଶି
ପ୍ରଭୁତ ବଳି ଦାନଞ୍ଚ ନବମ୍ୟାଂ ବିଧିବଜ୍ଜରେଦ୍
ଆତଚାଦ୍ ଦଶଭୂଜାଂ ଦେବ୍ୟାଂ ଦୁର୍ଗାତନ୍ତ୍ରେଣ ପୂଜୟେଦ୍
ବିସର୍ଜନଂ ଦଶମ୍ୟାନ୍ତୁକୁର୍ଯ୍ୟାହ ବୈସାଧବୋତ୍ତମଃ-

ପୁନଃ ଦ୍ୱାଦଶଭୁଜା ଓ ଷୋଡ଼ଶଭୁଜାଙ୍କ ପୂଜାବିଧି ଭିନ୍ନ ପ୍ରକାର ନିର୍ଦ୍ଦେଶିତ ଅଛି-
ପୁନଶ୍ଚ -

ରାତ୍ରାବେବ ମହାଦେବ ବ୍ରହ୍ମଣା ବୋଧିତା ପୁରା
ଜଗାମ ନଗରୀଂ ଲଙ୍କା ପୁତ୍ରାସୀଦ୍ ରାଘବଃ ପୁରା
ରାମ ରାବଣୟୋର୍ଯ୍ୟଦ୍ଧଂ ସପ୍ତାହଂସାନ୍ୟ ଯୋଜୟେଦ୍
ବ୍ୟତୀତେ ସପ୍ତମେ ରାତ୍ରୌ ନବମ୍ୟା ରାବଣଂ ତେ

ରାମେଣ ଘାତୟା ମାସ ମହାମାୟା ଜଗନ୍ମୟୀ-
ପ୍ରତିକଳ୍ପଂ ଭବେଦ୍ରାମୋ ରାବଣ ଶ୍ଚାପି ରାକ୍ଷସଃ
ତଦୈବ ଜାୟତେ ଯୁଦ୍ଧଂ ତଥୈବତ୍ରିଦଶ ସଙ୍ଗମଃ
ଏବଂ ରାମ ସହସ୍ର ରାବଣାନାଂ ସହସ୍ରର
ଭବିତବ୍ୟାନି ରୂପାନି ତଥା ଦେବୀ ପ୍ରବର୍ତ୍ତତେ-

ଦେବୀଙ୍କ ନିକଟରେ ଜୟନ୍ତୀ ପ୍ରଭୃତି ନବଦୁର୍ଗାଙ୍କୁ ପୂଜା କରିବାକୁ ହେବ । ସତ୍ୟ ଯୁଗର ପ୍ରାରମ୍ଭରେ ମହିଷାସୁର ନାଶ ନିମନ୍ତେ ଦେବୀ ପ୍ରଥମତଃ ଆବିର୍ଭୂତ ହୋଇଥିଲେ । କାଳିକାପୁରାଣ ମତେ ମହିଷାସୁର ତିନି ସୃଷ୍ଟିରେ ତିନିଥର ଦେବୀଙ୍କଦ୍ୱାରା ହତ ହୋଇଥିଲା । ଆଦି ସୃଷ୍ଟିରେ ଉଗ୍ରଚଣ୍ଡା ୧୮ଶ ଭୁଜା, ଦ୍ୱିତୀୟ ସୃଷ୍ଟିରେ ଭଦ୍ରକାଳୀ ମୂର୍ତ୍ତି ୧୬ଶ ଭୁଜା, ଦୁର୍ଗାମୂର୍ତ୍ତିରେ ୧୦ ଭୁଜା । ଦୈତ୍ୟ ତପସ୍ୟାକରି- ମହାଦେବଙ୍କୁ ସନ୍ତୁଷ୍ଟ କଲା । ମହାଦେବ ବର ପ୍ରାର୍ଥନା କରିବାକୁ କହନ୍ତେ, ସେ କହିଲେ- ହେ ଦେବ, ମୁଁ ଅପୁତ୍ରକ- ତିନି ଜନ୍ମରେ ମୋର ଆପଣ ପୁତ୍ର ହେଉନ୍ତୁ ଏବଂ ମୋର ପୁତ୍ର ହୋଇ ଅବଧ, ଦେବ ଜୟୀ ଓ ଯଶସ୍ୱୀ ହୁଅନ୍ତୁ । ମହାଦେବ ତଥାସ୍ତୁ କହି ପ୍ରସ୍ଥାନ କଲେ । ତହୁଁ ମହିଷାସୁର ମହାଦେବ ଅଂଶ ସମ୍ଭୂତ ରମ୍ଭର ଔରସରୁ ଓ ମହିଷୀ ଗର୍ଭରୁ ମହାଦେବର ପୁତ୍ର ରୂପେ ମହିଷାସୁର ଆଖ୍ୟା ଗ୍ରହଣ କରି ଜାତହେଲେ । ମହିଷାସୁର କାତ୍ୟାୟନୀ ଶିଷ୍ୟଙ୍କୁ ସ୍ତ୍ରୀ ରୂପେ, ପରେ ଛଳରେ ମୋହିତ କରିବାକୁ ଉଦ୍ୟତ ହେବାରୁ ଋଷି ଅଭିଶାପ ଦେଲେ ଯେ, – ତୁ ସ୍ତ୍ରୀ ହସ୍ତରେ ହତ ହେବୁ ।

ମହିଷ ସ୍ୱପ୍ନରେ ଦେଖିଲେ ଯେ, ଦେବୀ ଭଦ୍ରକାଳୀ ତା'ର ରୁଧିର ପାନ କରୁଅଛନ୍ତି । ତହୁଁ ମହିଷ ଯାଇ ଦେବୀଙ୍କୁ ପ୍ରଣାମ କରି କହିଲା- ମୁଁ ଜାଣେ ଯେ ଆପଣଙ୍କ ଦ୍ୱାରା ମୁଁ ବଧ- କିନ୍ତୁ ମୁଁ ମୋ ଜନ୍ମର ଶେଷ ପ୍ରାର୍ଥନା କରେ- ମୁଁ ଯଜ୍ଞଭାଗ ପାଇବାକୁ ଇଚ୍ଛାକରେ ଏବଂ ସଦା ସର୍ବଦା ଆପଣଙ୍କ ପାଦସେବା ତ୍ୟାଗ ନ କରେ । ଦେବୀ କହିଲେ- ଯଜ୍ଞ ଭାଗ ଆଉ ନାହିଁ- ମୋର ଶବର ତୁ ପୂଜା ପାଇବୁ ଓ ତୁ ସଦାସର୍ବଦା ମୋ ପାଦଲଗ୍ନ ରହିବୁ ।

ପୁନଶ୍ଚ ମହାଦେବ ପାର୍ବତୀଙ୍କୁ କହିଲେ- ଭଗବାନ ହରି ସିଂହ ରୂପରେ ତୁମ୍ଭଙ୍କୁ ବହନ କରିବାକୁ ଅସମର୍ଥ । ମୋର ଏହି ମହିଷ ଶରୀର ତୁମ୍ଭର ବାହନ ହେବ । ଏହିପରି ନାନା ବିଷୟ କାଳିକାପୁରାଣରେ ଅଛି ଓ ଏହିପରି ନାନା ଉପାଖ୍ୟାନ ଦେବୀଙ୍କ ବିଷୟରେ ପୁରାଣମାନଙ୍କରେ ଅଛି ।

ଦେବୀଙ୍କ ମାହାତ୍ମ୍ୟ ରାମାୟଣ ବା ଅଧ୍ୟାତ୍ମରାମାୟଣରେ ବର୍ଣ୍ଣିତ ନାହିଁ । ମହାଭାରତ ଯୁଦ୍ଧ ପୂର୍ବେ କୃଷ୍ଣଚନ୍ଦ୍ର ଅର୍ଜ୍ଜୁନଙ୍କୁ କାଳିକା ପୂଜା କରିବାକୁ କହିବା ଓ ସେ ସ୍ତୁତି ଯାହା ବର୍ଣ୍ଣିତ, ତାହା ପ୍ରକ୍ଷିପ୍ତ ରୂପେ ପ୍ରତୀତ ହୁଏ ।

ଏଥୁ ପ୍ରତୀତ ହୁଏ, ପ୍ରାୟ ଖ୍ରୀଷ୍ଟ ୬ଷ୍ଠ ଶତାବ୍ଦୀ ପରେ ଦେବୀପୂଜାର ପ୍ରସିଦ୍ଧି ହେଲା ।

# ସୁସ୍ଥିତି

ସୁଖ ଶାନ୍ତି ଜୀବର କାମ୍ୟ । ସୁଖର ପ୍ରାପ୍ତି ଓ ଦୁଃଖର ତ୍ୟାଗ ନିମନ୍ତେ ସଂଗ୍ରାମ । ବୈଦିକ ଯୁଗରୁ ଜ୍ଞାତ, ବୃତ୍ତାନ୍ତ ଯୁଗରୁ ଏହା ପରିଦୃଷ୍ଟ । ଦୁଃଖର ତ୍ୟାଗ ନିମନ୍ତେ ବହୁବିଧ ଉପାୟ କାଳେକାଳେ ଅବଲମ୍ବିତ । ଦୁଃଖର ସ୍ୱରୂପ ନିର୍ଣ୍ଣିତ ହେଲା ଆଧାତ୍ମିକ, ଆଧିଦୈବିକ, ଆଧିଭୌତିକ ରୂପେ । ଏହି ତ୍ରିବିଧ ପାପ, ତାପ ବା ଦୁଃଖ ଦୂରୀକରଣ ନିମନ୍ତେ ଐହିକ, ପାରତ୍ରିକ ଉପାୟଗୁଡ଼ିକ ବ୍ୟର୍ଥ ଦୃଷ୍ଟିରେ ଦର୍ଶନ ଶାସ୍ତ୍ରଗୁଡ଼ିକରୁ ଉଦ୍ଭବ ହେଲା । ନାନାମୁନିଙ୍କର ନାନାମତ ଉପସ୍ଥାପିତ ହେଲା । ମତଗୁଡ଼ିକରେ ପାର୍ଥକ୍ୟ ଲକ୍ଷିତ ହୁଏ । ଲକ୍ଷିତ ହେବାର କାରଣ ନିରର୍ଥକ ନୁହେଁ । ଦେଶ, କାଳ ଓ ପାତ୍ର ଅବସ୍ଥା ଦୃଷ୍ଟିରେ ଉପାୟ ସମ୍ମିତ ହୁଏ । ମାନବ ଉନ୍ନତି ପଥରେ ଅଗ୍ରସର । ତେଣୁ ମାନସିକ ବିକାଶ ସହିତ ତତ୍ତ୍ୱଦର୍ଶନର ମାର୍ଗ ଉତ୍ତରୋତ୍ତର ଉନ୍ମୁକ୍ତ ହୁଏ । ଏହା ପ୍ରକୃତିଗତ ଧର୍ମ ।

ଧର୍ମ, ଏହା ଚତୁର୍ବର୍ଗର ପ୍ରଥମ । ଧର୍ମ, ଅର୍ଥ, କାମ, ମୋକ୍ଷ- ଜୀବର ଉଦ୍ଦେଶ୍ୟ । ପରେ ଅର୍ଥ ଓ କାମ ଧର୍ମାନୁମୋଦିତ ହେତୁ କେବଳ ଧର୍ମ ଗୃହୀତ ହେଲା । ତହୁଁ ପୂର୍ବମୀମାଂସାରେ ଧର୍ମଜିଜ୍ଞାସାର ବିଷୟ ଅଛି । ଯଦିଚ ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, କାମଶାସ୍ତ୍ର ସ୍ୱତନ୍ତ୍ର ଭାବରେ ମାନବର ସୁଖ ଓ ଜୀବନ ନିର୍ବାହ ନିମନ୍ତେ ଉଦ୍ଦିଷ୍ଟ, ଶାସ୍ତ୍ରକାର ଅର୍ଥ ଓ କାମକୁ ପରିହାର କରି ଧର୍ମର ଅନ୍ତର୍ଭୁକ୍ତ କଲେ । ଧର୍ମବୋଧ ଚିନ୍ତାର ବିଷୟ ସାପେକ୍ଷ । ଯୁଗଯୁଗରେ ତାହାର ପାର୍ଥକ୍ୟ ଲକ୍ଷିତ ହେବା ସ୍ୱାଭାବିକ । ବହୁ ଘାତ-ପ୍ରତିଘାତ ପରେ ଶତ ଶତ ବର୍ଷର ଅନୁଭୂତି ଭୂୟୋଦର୍ଶନ ପରେ ଭାରତୀୟ ଆର୍ଯ୍ୟ ମହାମାନବ, ମାନବ ଜାତିର ପ୍ରତିନିଧି ବିଷ୍ଣୁଙ୍କର ଅବତାର ଭୂତମୁଖରୁ ବଜ୍ର ନିର୍ଘୋଷରେ ନିସୃତ ହେଲା । ଦୋଷ ଓ ରାଗ ରହିତ ସାଧୁ ହିତାହିତ ବ୍ୟକ୍ତିଙ୍କଦ୍ୱାରା ପାଳିତ ଓ ତାଙ୍କ ହୃଦୟରେ ଅନୁମୋଦିତ ଯାହା, ତାହାହିଁ ଧର୍ମ । ପୁନଶ୍ଚ ଧର୍ମର ସ୍ଥାନ ନିର୍ଦ୍ଦେଶରେ କଥିତ ଶ୍ରୁତି, ସ୍ମୃତି, ସଦାଚାର ଓ ଆତ୍ମତୁଷ୍ଟି ବେଦ, ମନୁ ଆଦି ସ୍ମୃତିଶାସ୍ତ୍ର, ଚିରାଚରିତ ପ୍ରଥାପଞ୍ଚକ ହୃଦୟାନୁକୂଳ ମତ- ଧର୍ମର ସ୍ଥାନ । ପୁନଶ୍ଚ ଶାସ୍ତ୍ରକାର କହିଲେ-

ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ
ବିଭିନ୍ନା ନା ସୌ ମୁନିର୍ଯସ୍ୟ ମତଂ ନ ଭିନ୍ନମ୍ ।
ଧର୍ମସ୍ୟତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥା ।।

ତର୍କର ସୀମା ନାହିଁ । ଏକ ବିଷୟରେ ଭିନ୍ନଭିନ୍ନ ଭେଦୋକ୍ତି, ଯାହାଙ୍କର ମତରେ ପାର୍ଥକ୍ୟ ବା ସ୍ୱାତନ୍ତ୍ର୍ୟ ନାହିଁ, ସେ ମୁନି ନୁହନ୍ତି । ଏଣୁ ଧର୍ମତତ୍ତ୍ୱ ଅତି ନିଗୂଢ଼-ଗୁହା କୋଟରସ୍ଥ । ପ୍ରକୃଷ୍ଟପନ୍ଥା ହେଉଛି ମହାପୁରୁଷଙ୍କର ଅନୁସୃତ ପନ୍ଥା । ଏହି ଧର୍ମ ଯାଜ୍ଞ୍ୟବଲକ୍ୟଙ୍କ ମତରେ ମୋକ୍ଷ ଅନ୍ତର୍ଗତ, ଯଦିଚ ଉତ୍ତରମୀମାଂସା ଅର୍ଥାତ୍ ବ୍ରହ୍ମଜିଜ୍ଞାସା କହି ସ୍ୱତନ୍ତ୍ର ବେଦାନ୍ତ ଦର୍ଶନ ରଚନା କଲେ । ଏହି ଧର୍ମ ପ୍ରାଚୀନ ଭାରତରେ ଅନ୍ତର୍ଗତ ହେଲା ବର୍ଣ୍ଣ ଓ ଆଶ୍ରମ । ଆଜିକାଲି ଯେପରି ସଂକୀର୍ଣ୍ଣ ଭାବରେ ବର୍ଣ୍ଣାଶ୍ରମକୁ ଦେଖୁଛନ୍ତି, ପୂର୍ବେ ସେପରି ନ ଥିଲା । ସମସ୍ତ ସଂସ୍କୃତି ଉପରେ ନିର୍ଭର କରୁଥିଲା । ସେହି ଯୁଗରେ ଶୂଦ୍ର ନିଷାଦଙ୍କୁ ସେମାନେ ବ୍ରହ୍ମତ୍ୱ ପ୍ରଦାନ କରିବା ନମନ୍ତେ ଉନ୍ମୁନା ଥିଲେ । ଶୂଦ୍ରର ଉତ୍ତରୋତ୍ତର ଉନ୍ନତି କଳ୍ପେ ଉପାୟ ସମ୍ବିତ ହୋଇଥିଲା । ଦୁଃଖର କଥା, ସେହି ଦୂରଦୃଷ୍ଟି ପରିହାର କରି ଆଜି ବ୍ରାହ୍ମଣଙ୍କୁ ଚଣ୍ଡାଳ କରିବାରେ ଲୋକେ ଉନ୍ମୁନା । କିନ୍ତୁ ପ୍ରକୃତ କାର୍ଯ୍ୟ ହେଉଛି ଶୂଦ୍ର ଚଣ୍ଡାଳଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରିବା ଆର୍ଯ୍ୟର ପ୍ରକୃଷ୍ଟ ଧର୍ମ । ସେହି ମର୍ମରେ ମହାଭାରତର ଶାନ୍ତି ପର୍ବରେ ଲେଖାଅଛି- ବ୍ରାହ୍ମଣ ଗୁଣକର୍ମ ବଶର କ୍ଷତ୍ରିୟତ୍ୱ, ବୈଶ୍ୟତ୍ୱ ଓ ଶୂଦ୍ରତ୍ୱ ପ୍ରାପ୍ତ ହେଲା ।

ଆଶ୍ରମ ଧର୍ମ ଆଧୁନିକ ଯୁଗରେ ପୂର୍ଣ୍ଣତଃ ପାଳିତ ନ ହେବାରୁ ଭାରତର ସଂସ୍କୃତି ନଷ୍ଟପ୍ରାୟ । ବ୍ରହ୍ମଚର୍ଯ୍ୟରେ ଛାତ୍ରର ବେଦାଧ୍ୟୟନ କେବଳ ଅଧ୍ୟୟନରେ ତାହାର ପରିସମାପ୍ତି ନ ଥିଲା । ଗୁରୁକୁଳରେ ସେ ଯୋଗ ଶିକ୍ଷାକରି ଆତ୍ମସ୍ଥ ଶିକ୍ଷା ପାଉଥିଲା । ତତ୍‌ପରେ ସେ ଗୃହସ୍ଥାଶ୍ରମ ଅବଲମ୍ବନ କରୁଥିଲା । ସେ ଭୁକ୍ତ ନ ହୋଇ ଭୋଗ କରୁଥିଲା । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଲୋକେ ଭୁକ୍ତ ହେଉଛନ୍ତି କହିଲେ ଅଯଥାର୍ଥ ହେବନାହିଁ । ଉତ୍କଳର ମହାପୁରୁଷମାନେ ଯଥାର୍ଥ କହିଛନ୍ତି, ଯୋଗର ପରେ ଭୋଗ, ଭୋଗ ପରେ ଲୟ, ଲୟ ପରେ ଲୀଳା । ଏ ସମସ୍ତ ଧର୍ମ ଉପରେ ପ୍ରତିଷ୍ଠିତ । ଧର୍ମର ଅର୍ଥ ସମସ୍ତେ ଯାହାଦ୍ୱାରା ଧରା ହୋଇ ରହନ୍ତି, ବା ଯାହା ସମସ୍ତଙ୍କୁ ଧରି ରଖେ । ତାହାହେଲେ ଏହା ସମସ୍ତଙ୍କୁ ସୁଖରେ ରଖେ । କାହାକୁ ଦୁଃଖଗ୍ରସ୍ତ କରେନାହିଁ । ତହୁଁ ଧର୍ମଶାସ୍ତ୍ର ଲେଖାଗଲା । ମନୁ ପ୍ରଥମ ଧର୍ମ ଶାସ୍ତ୍ରକାର । ମନୁଷ୍ୟ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ବ୍ୟାବହାରିକ ସମସ୍ତ କ୍ଷେତ୍ରରେ ସମସ୍ତ ବିଷୟ ଉପଦିଷ୍ଟ । ରାଜନୀତି ମଧ୍ୟ ତହିଁରୁ ବାଦଯାଇନାହିଁ । ରାଜା ଧର୍ମର ରକ୍ଷକ । ସେ ମହତୀ ଦେବତା । ରାଜା କେବଳ ଶାସକ ନୁହନ୍ତି, ସେ ରଞ୍ଜନକାରୀ । ତାହାଙ୍କୁ ଶାସନ କରିବାକୁ ହେବ- ସେ ମହତୀ ଦେବତା, କାରଣ ସେ ମାନବସମାଜରେ ଆଦର୍ଶ ପୁରୁଷ । କାରଣ ଯେ ଶାସନ କରିବ, ସେ ନିଜେ ଶିଷ୍ଟ ହେବା ଉଚିତ । ଶିଷ୍ଟ ନ ହେଲେ, ସେ ପରକୁ କିପରି ଶାସନ କରିବ? ଯେ ଶିଷ୍ଟ, ସେ ଧୀର । ଧୀରର ଅର୍ଥ ଚୁପ୍‌ଚାପ୍ ବସିବା, ଆସ୍ତେଆସ୍ତେ କଥା କହିବା, ହାନିଲାଭରେ କିଛି ନ କହିବା- ଏସବୁ ନୁହେଁ । ଧୀରର ପ୍ରକୃତ ଅର୍ଥ ହେଉଛି- ଯେ ଧୀକୁ, ବା ବୁଦ୍ଧିକୁ ଚଳାଇପାରନ୍ତି । ବୁଦ୍ଧି କ'ଣ? ସ୍ଥିର ମନକୁ ବୁଦ୍ଧି କହନ୍ତି । ଉପନିଷଦକାର କହିଲେ- ଏ ଶରୀର ଗୋଟିଏ ରଥ, ଆତ୍ମା ତାହାର ଅଧିକାରୀ- ମାଲିକ । ସେ ରଥ ଭିତରେ ବସି ବିଷୟ ଦେଖୁଛନ୍ତି । ରଥରେ ୧୦ଟା ଇନ୍ଦ୍ରିୟରୂପୀ ଘୋଡ଼ା । ୫ ଯୋଡ଼ା

ଘୋଡ଼ା ହୋଇ ଲାଗିଛନ୍ତି । ୫ଟା କର୍ମେନ୍ଦ୍ରିୟ । ବାୟୁ, ଉପସ୍ଥ, ପାଣି ପାଦ ଓ ବାକ୍ । ଅନ୍ୟ ୫ଟା ଜ୍ଞାନେନ୍ଦ୍ରିୟ- ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ । ମନ ହେଲା ଲଗାମ । ମନରୂପୀ ଲଗାମ ଏ ୧୦ଟା ଇନ୍ଦ୍ରିୟରୂପୀ ଘୋଡ଼ାଙ୍କ ଠାରେ ଲାଗିଛି । ଘୋଡ଼ାର ଗତି ଅନୁସାରେ ଲଗାମର ଗତି ହେଲେ ମୁସ୍କିଲ୍ । ତନ୍ମ୍ଭୁ ଲଗାମକୁ ଧରି ରଥ ଚଳାଏ ସାରଥି । ସେହିପରି ଏ ମନରୂପ ଲଗାମକୁ ଚଳାଉଛି ବୁଦ୍ଧିରୂପୀ ସାରଥି । ଯେବେ ସାରଥି ଲଗାମକୁ କଷି ଧରି ଠିକ୍‌ରୂପେ ଚଳାଏ, ତେବେ ରଥ ସୁନ୍ଦର ଚଳିବ । ଆତ୍ମା ନିଶ୍ଚିନ୍ତରୂପେ ଆସନ ଜମାଇ ବସିବ । କିନ୍ତୁ ଯଦି ସାରଥି ଦୁଷ୍ଟ ହୁଏ, ବୁଦ୍ଧି ଅସ୍ଥିର ହୁଏ । ସବୁ ସତ୍ୟାନାଶ ।

ଏହି ଶରୀର-ରୂପୀ ରଥର ସୁଚାରୁ ଚଳନ ନିମନ୍ତେ ଏବଂ ରଥସ୍ଥ ଆତ୍ମାର ଆତ୍ମତ୍ୱ ଲାଭ ନିମନ୍ତେ ସୋପାନ କ୍ରମେ ବ୍ୟାବହାରିକ ଜଗତରେ ଶାସ୍ତ୍ରମାନ ବିହିତ ହୋଇଅଛି । ତାହା ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, କାମଶାସ୍ତ୍ର, ମୋକ୍ଷଶାସ୍ତ୍ର । ଅନ୍ୟ ପ୍ରକାରରେ କହିଲେ ଆନ୍ୱୀକ୍ଷିକୀ, ତ୍ରୟୀ, ବାର୍ତ୍ତା, ଦଣ୍ଡନୀତି । ଅବଶ୍ୟ ପ୍ରାଚୀନ ଯୁଗରେ ବାର୍ତ୍ତା ଓ ଦଣ୍ଡନୀତି ଅନୁନ୍ନତ ଅବସ୍ଥାରେ, ବର୍ତ୍ତମାନ ଯୁଗର ତୁଳନାରେ ଅନୁନ୍ନତ ଥିଲା । କିନ୍ତୁ ଯାହା ଥିଲା, ତାହାର ତତ୍ତ୍ୱ ଉପଲବ୍‌ଧ କରି, ଅଭାବ ପୂରଣ କଲେ, ଦେଶର ସଂସ୍କୃତିର ପରମ୍ପରା ଅକ୍ଷୁଣ୍ଣ ରହିବ । ରାଜନୀତିର ବିଚାର କଲେ ଆମ୍ଭମାନେ ଦେଖୁ କି, କାୟଦା କଟକଣାରେ ରାଜା କର୍ମଚାରୀମାନଙ୍କୁ ନିଯୁକ୍ତ କରୁଥିଲେ । ସେମାନଙ୍କର ଚରିତ୍ର ଓ ଧର୍ମଭାବ ନିଯୁକ୍ତିର ପ୍ରଥମ କାରଣ ଥିଲା । ରାଜ୍ୟଚାଳନାରେ ମନ୍ତ୍ରୀ, ବ୍ରାହ୍ମଣ, କ୍ଷତ୍ରିୟ; ବୈଶ୍ୟ, ଶୂଦ୍ର- ସମସ୍ତଙ୍କ ମଧ୍ୟରୁ ଧର୍ମପ୍ରାଣ, ଧୀରସ୍ଥିର ବ୍ୟକ୍ତିଙ୍କୁ ନିଯୁକ୍ତ କରାଯାଉ ଥିଲା । ସେମାନଙ୍କର ଚରିତ୍ରବତ୍ତା ପରୀକ୍ଷା ନିମନ୍ତେ ଗୁପ୍ତଚର ନିଯୁକ୍ତ ହେଉଥିଲେ । ଗୁପ୍ତଚର ୩ ଦଳର ଥିଲେ । ପ୍ରଥମ ଦଳର କାର୍ଯ୍ୟକଳାପ, ଦୋଷଗୁଣ, ୨ୟ ଦଳ ଦୋଷ ଗୁଣ ଓ ୩ୟ ଦଳ ରାଜାଙ୍କୁ ବା ରାଜାଙ୍କ ପ୍ରଧାନମନ୍ତ୍ରୀଙ୍କୁ ନିଭୃତରେ ସମ୍ବାଦ ଦେଉଥିଲେ । କାରଣ ଚରମାନେ ରାଜାଙ୍କର ଚକ୍ଷୁ । ସେମାନେ ଅତି ଚରିତ୍ରବାନ୍ ପୁରୁଷ । ସତ୍ୟର ଅନୁରୋଧରେ ପ୍ରାଣ ବିସର୍ଜ୍ଜନ କରିବାକୁ ମଧ୍ୟ ସେମାନେ କୁଣ୍ଠିତ ନ ଥିଲେ । ସେମାନଙ୍କଦ୍ୱାରା ରାଜା ଅଧର୍ମ, ଅନ୍ୟାୟ ଯାହା କିଛି ଦେଶରେ ଆଚରିତ ହେଉଥିଲା- ତାହାର ବାର୍ତ୍ତା ପାଉଥିଲେ ଏବଂ ଲୋକର ସୁଖଶାନ୍ତି ନିମନ୍ତେ ଯାହା କରଣୀୟ- ତାହା ସେହିମାନଙ୍କର ସମ୍ବାଦ ଦାନ ଉତ୍ତାରୁ ରାଜା ସଂବିଧାନ କରୁଥିଲେ । ଧର୍ମ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ଆଜିକାଲି ଧର୍ମବାଦମାନଙ୍କରେ ଯେପରି ଦ୍ୱେଷ, ସେପରି ପୂର୍ବେ ମଧ୍ୟ ଥିଲା । କିନ୍ତୁ ରାଜା ଧର୍ମରେ ଦ୍ୱେଷର ପ୍ରଶ୍ରୟ ଦେଉନଥିଲେ । କାରଣ ଶାସ୍ତ୍ରାକାର କହିଲେ, 'ଅନ୍ୟତ୍ର ନିନ୍ଦା ବର୍ଜନ କରି ଧର୍ମପାଳନ କର ।' ଆଜି ସେହି ଶିକ୍ଷା ପ୍ରବର୍ତ୍ତିତ ହେଲେ କୌଣସି ବାଦ ବିସମ୍ବାଦ କି ବିଶୃଙ୍ଖଳା ଜାତ ହେବନାହିଁ ।

ଯେତେବେଳେ ଖ୍ରୀଷ୍ଟଧର୍ମ, ମୁସଲମାନ ଧର୍ମ, ଭାରତରେ ଅଜ୍ଞାତ ଥିଲା, ସେହି ସମୟରେ ଏହି ଉତ୍କଳ, ଧର୍ମର ସମନ୍ୱୟ କରି ପାରିଥିଲା । ଜଗନ୍ନାଥ କ୍ଷେତ୍ର ସମକ୍ଷରେ ଶୈବ, ସୌର, ଗାଣପତ୍ୟ, ଶାକ୍ତ ଓ ବୈଷ୍ଣବ ସମଭାବାପନ୍ନ ଥିଲେ । ଏହି ସମସ୍ତେ

ଜଗନ୍ନାଥଙ୍କୁ ନିଜର ଅଭୀଷ୍ଟ ରୂପେ ଦେଖନ୍ତି । ଅବଶ୍ୟ କେତେକ କହିପାରନ୍ତି- ଭଗବାନ ଅରୂପ ଓ ଜ୍ଞାନମୟ । ତାଙ୍କର ମୂର୍ତ୍ତିର ପୂଜାରେ ଅର୍ଥ କ'ଣ? ଅର୍ଥ ବହୁତ ଅଛି-ଭାରତୀୟ ଆର୍ଯ୍ୟର ଧର୍ମ କତିପୟ ଜ୍ଞାନୀ ବ୍ୟକ୍ତିଙ୍କ ପ୍ରତି ଅଭିପ୍ରେତ ନୁହେଁ । ଅଜ୍ଞମାନଙ୍କର ପ୍ରଭୁଭକ୍ତି ସଂଚରିବା ନିମିତ୍ତ ମୂର୍ତ୍ତିର ପରିକଳ୍ପନା । ମୂର୍ତ୍ତି ପୂଜାର ପ୍ରଧାନ ଗ୍ରନ୍ଥ, ଭାଗବତରେ ସ୍ପଷ୍ଟ ଲେଖାଅଛି । ଦ୍ରଷ୍ଟାଙ୍କ ଠାରେ ଦୃଶ୍ୟତ୍ୱ ଆରୋପ ଅଜ୍ଞାନତା ହେତୁ, ଯେ ରୂପ ଆକାଶରେ ମେଘର ଆରୋପ । ବ୍ୟାସଦେବ ମଧ୍ୟ କହିଅଛନ୍ତି, "ହେ ଭଗବାନ୍, ଆପଣ ଅରୂପ ଓ ଚିନ୍ମୟ । ମୁଁ ଆପଣଙ୍କଠାରେ ଗୁଣ ଓ ରୂପ ପ୍ରଦାନ କରି ମହାପାପ କରିଅଛି । ଆପଣ ମତେ କ୍ଷମା କରନ୍ତୁ ।' ଏହା ତାଙ୍କର ବିନୟୋକ୍ତି, କିନ୍ତୁ ଜଗତର ସୁଖ ଓ ଶାନ୍ତି ନିମିତ୍ତ ଅଜ୍ଞମାନଙ୍କ ମନରେ ଧର୍ମଭୀତି ଉତ୍ପାଦନ ନିମିତ୍ତ ଯେ ମୂର୍ତ୍ତି ଗଠିତ କରିଅଛି, ତାର ମୂଲ୍ୟ ବହୁତ । ସେହି ଧର୍ମ ଶାସ୍ତ୍ରରେ ଅଛି, ହୃଦୟରେ ଭକ୍ତି ଜନ୍ମିଲା ପରେ ରୂପକୁ ଛାଡ଼ି ଅରୂପକୁ ଭଜ । ଏସବୁ ପରିକଳ୍ପନା ଜଗତର ଶାନ୍ତି ନିମିତ୍ତ । ରାଜନୀତି ହେଉ, ଧର୍ମନୀତି ହେଉ, ଗୃହସ୍ଥ ନୀତ ହେଉ, ବାନପ୍ରସ୍ଥ ବା ଯତିର ନୀତି ହେଉ- ସମସ୍ତ ନୀତି ଗାର୍ହସ୍ଥ୍ୟ ନୀତି ତଥା ରାଜନୀତି ଉପରେ ପ୍ରତିଷ୍ଠିତ । ରାଜା, ଶାସକ, ଦଣ୍ଡଧାରୀ ଶାସନ ବଳରେ ସମସ୍ତ ସଂସାର ସୁଖ ଶାନ୍ତିରେ ପରିଚାଳିତ ହୁଏ । ଯୁଧିଷ୍ଠିର ଭିଷ୍ମଙ୍କୁ ପଚାରିଲେ- **କାଳୋଽହି କାରଣ ରାଜ୍ଞ ରାଜାର୍ବେ କାଳ କାରଣମ୍, ଇତି ତେ ସଂଶୟ ମା ଭୂତ୍ ରାଜା କାଳସ୍ୟ କାରଣମ୍ ।**"ରାଜା ଅନୁରଞ୍ଜକ, ଶାସକ, ନରପତି, ମାନବ । ତେଣୁ ତାଙ୍କୁ ଅତି ସାବଧାନତାର ସହିତ ନିଜର ଶରୀର-ରୂପୀ ରାଜ୍ୟକୁ ଶାସନ କରିବାକୁ ହେବ । ତାଙ୍କୁ ନିଜର ବୁଦ୍ଧି ତଳେ ରଖିବାକୁ ହେବ ଏବଂ ବୁଦ୍ଧିର ଚାଳକ ନିମନ୍ତେ ଉପଯୁକ୍ତ ମନ୍ତ୍ରୀ ନିଯୁକ୍ତ କରିବାକୁ ହେବ ଓ ବୃଦ୍ଧଙ୍କ ସେବା କରିବାକୁ ହେବ । କାରଣ ଭାରତର ଶ୍ରେଷ୍ଠ ରାଜନୀତିଜ୍ଞ ଚାଣକ୍ୟ ତାଙ୍କର ଅର୍ଥଶାସ୍ତ୍ରର ପ୍ରାରମ୍ଭରେ ବୃଦ୍ଧସେବା, ମନ୍ତ୍ରୀସେବାର ମହତ୍ତ୍ୱ ଦର୍ଶାଇ ଅଛନ୍ତି ।

ବର୍ତ୍ତମାନ ପରିଦୃଷ୍ଟ ହୁଏ, ଦଳର ଅନୁରୋଧରେ ଉପଯୁକ୍ତ ବ୍ୟକ୍ତିମାନେ ମନ୍ତ୍ରିତ୍ୱରେ ନିଯୁକ୍ତ ନ ହୋଇ ଜଣେ ଦୁଇ ଜଣଙ୍କର ଅଧିନାୟକତ୍ୱରେ ପରିଚାଳିତ ହେଉଅଛନ୍ତି ଏବଂ ପ୍ରକୃତ ମନ୍ତ୍ରଣା ଲାଭ ହେଉନାହିଁ । ପୂର୍ବକାଳରେ ବ୍ୟବସ୍ଥାଦାତା ଥିଲେ ଜିତେନ୍ଦ୍ରିୟ, ଅରଣ୍ୟବାସୀ ନୀରୋଗ ଋଷିମାନେ । ଆଜିକାଲି ତତ୍‌ପ୍ରତି, ଚରିତ୍ରବତ୍ତା ପ୍ରତି, ନିଃସଙ୍ଗତା ପ୍ରତି ଦୃଷ୍ଟି ଦିଆଯାଉନାହିଁ । ତହୁଁ ବିସମ୍ବାଦ । ଦେଶରେ ସେପରି ମନୋବୃତ୍ତି ନାହିଁ- ଯାହାଦ୍ୱାରା ପ୍ରକୃତ ଶାସନର ସୁବ୍ୟବସ୍ଥା ସମ୍ଭବ ହେବ । ଧୀରସ୍ଥିର ଭାବରେ ଯଥାର୍ଥତଃ ବିଚାର କଲେ ସ୍ପଷ୍ଟ ଜଣାଯାଏ, ବହୁସ୍ଥଳରେ ଯଥେଚ୍ଛାଚାରିତା ସ୍ଥାନ ଲାଭ କରିଅଛି । ପ୍ରଜାତନ୍ତ୍ର ବା ଲୋକତନ୍ତ୍ର ପ୍ରତିଭାତ ହେଉଛି ମାତ୍ର । ପ୍ରକୃତରେ ସୁଶାସନ ଦୃଷ୍ଟିରେ କାର୍ଯ୍ୟ ହେଲେହେଁ କୌଣସି ଦଳ ଦେଶରେ ରହିବ ନାହିଁ । ସୁଶାସନ ପଦ୍ଧତିରେ ସମସ୍ତେ ସୁଖ ଶାନ୍ତିରେ ରହିବେ ଏବଂ ଅଶାନ୍ତି ଦେଶରେ ବିରାଜିବ ନାହିଁ । ସମାନ ଭାବରେ ସର୍ବତ୍ର ଲୋକମାନଙ୍କର ସ୍ଥାନ ରହିବ । ସୁଖ ଓ ଶାନ୍ତି ହେତୁ ସୁସ୍ଥିତି ବିରାଜିବ ।

# କୃଷ୍ଣଙ୍କର ସ୍ୱରୂପ ନିର୍ଣ୍ଣୟ

ବେଦରେ ବିଷ୍ଣୁଙ୍କର ସୂକ୍ତ ଅଛି । ଏହି ସୂକ୍ତରୁ ପ୍ରତିପାଦିତ ହୁଏ, ବିଷ୍ଣୁ ଭଗବାନ ଓ ସର୍ବବ୍ୟାପକ । ବିଷ୍ଣୁଙ୍କ ସୂକ୍ତ ସହିତ ସୂର୍ଯ୍ୟ ଓ ସବିତାଙ୍କ ସୂକ୍ତମାନ ପାଠକଲେ ଜଣାଯାଏ, ସେମାନେ, ଅର୍ଥାତ୍, ବିଷ୍ଣୁ, ସୂର୍ଯ୍ୟ ଓ ସବିତା ଏକ ଦେବତା ରୂପେ ଗୃହୀତ । ପରବର୍ତ୍ତୀ ଯୁଗରେ ଅର୍ଥାତ୍ ପୁରାଣ ଯୁଗରେ ସୂର୍ଯ୍ୟ ନାରାୟଣ ରୂପେ କଥିତ । ପୁନଶ୍ଚ ବେଦରେ କଥିତ ଅଛି- 'ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି' । ଭଗବାନ ଏକ ଓ ଅଦ୍ୱିତୀୟ । ସେ ବ୍ରହ୍ମ, ପରମାତ୍ମା ଭଗବାନ ରୂପେ ଉପାସକ ଭେଦରେ ପୂଜିତ । ତତ୍ତ୍ୱଦର୍ଶୀ ପଣ୍ଡିତମାନେ ବିଭିନ୍ନ କାର୍ଯ୍ୟକଳାପ ବିଧାନ ହେତୁ ତାଙ୍କୁ ନାନା ରୂପରେ, ନାନା ନାମରେ ଆହ୍ୱାନ କରିଅଛନ୍ତି । ଅଗ୍ନି, ବରୁଣ, ରୁଦ୍ର, ପୂଷା, ଇନ୍ଦ୍ର ନବଗ୍ରହ ପ୍ରଭୃତି ଭଗବାନଙ୍କର ନାମ ବ୍ୟତୀତ ଅନ୍ୟ କିଛି ନୁହନ୍ତି ।

ବେଦରେ କୃଷ୍ଣଙ୍କର ନାମ ଉଲ୍ଲେଖ ନାହିଁ । ପରବର୍ତ୍ତୀ ଯୁଗରେ ନାରାୟଣ ତଥା ବାସୁଦେବଙ୍କର ନାମର ଉଲ୍ଲେଖ ଅଛି । ଦେବୀଭାଗବତରେ କଥିତ ଅଛି ଯେ, ବିଷ୍ଣୁ ନର-ନାରାୟଣ ରୂପେ ଅବତୀର୍ଣ୍ଣ ହୋଇ ତପଶ୍ଚର୍ଯ୍ୟା କରିଥିଲେ । ତେଣୁ ନାରାୟଣ ବିଷ୍ଣୁଙ୍କର ଅଂଶ-ହରେସଂଶୌ ସ୍ଥିତୌ ତତ୍ର ନରନାରାୟଣାବୃଷୀପୂର୍ଣ୍ଣ ବର୍ଷ ସହସ୍ରନ୍ତୁ ଚକ୍ରାତେ ତପ ଉତ୍ତମମ୍, (ଦେ, ଭା- ୪ର୍ଥ ସ୍କନ୍ଧ, ୫ମ ଅଧ୍ୟାୟ ୧୫ଦଶ ଶ୍ଳୋକ) । ଯୋଽସୌଧର୍ମସୁତଃ ଶ୍ରୀମାନ୍ ନାରାୟଣ ଇତିଶ୍ରୁତଃ ତସ୍ୟାଂଶେ ବାସୁଦେବସ୍ତୁ ବିଦ୍ୟମାନେ ମୁନୌ ତଦା (ଦେ,ଭା- ୪ର୍ଥ ସ୍କନ୍ଧ, ୨୨ଶ ଅଧ୍ୟାୟ, ୩୧ଶ ଶ୍ଳୋକ) । ନରସ୍ତସ୍ୟାନୁଜୋ ଯସ୍ତୁ ତସ୍ୟାଂଶୋଽର୍ଜ୍ଜୁନ ଏବ ଚ ଯୁଧିଷ୍ଠରସ୍ତୁ ଧର୍ମାଂଶୋ ବାୟୁଂଶୋ ଭୀମ ଇତ୍ୟୁତ ଅଧ୍ୟାୟ ୩୨ ଶ୍ଳୋକ । ନାରାୟଣାଂଶସମ୍ଭୂତୋ ବାସୁଦେବଃ ପ୍ରତାପବାନ୍
କଥଂସ ସୂତିକା ଗାରାଦ୍ଧୃତୋ ବାଲୋ ହରେରପି ।
(ଦେ, ଭା- ୪ର୍ଥ ସ୍କନ୍ଧ, ୨୫ଶ ଅଧ୍ୟାୟ, ୨ୟ ଶ୍ଳୋକ)

ଇନ୍ଦ୍ର ନରନାରାୟଣଙ୍କର ତପଶ୍ଚର୍ଯ୍ୟାରେ ଭୀତତ୍ରସ୍ତ ହୋଇ ନିଜର ଇନ୍ଦ୍ରପଦ ନାରାୟଣ ତପଶ୍ଚରଣଦ୍ୱାରା ଅଧିକାର କରିବେ- ଏହି ଆଶଙ୍କା କରି କାମଦେବଙ୍କ ସହିତ ରମ୍ଭା, ତିଳୋତ୍ତମାଦି ସ୍ୱର୍ଗର ଅପ୍ସରାମାନଙ୍କୁ ତାଙ୍କର ତପଶ୍ଚରଣ ବ୍ରତ ଭଙ୍ଗ କରିବାକୁ ପଠାଇଥିଲେ । ଜିତେନ୍ଦ୍ରିୟ ଭଗବାନ ନାରାୟଣ ଇନ୍ଦ୍ରଙ୍କର ଉଦ୍ଦେଶ୍ୟ ବୁଝିପାରି ନିଜର ଅଙ୍ଗରୁ କେତେକ ପରମଲାବଣ୍ୟମୟୀ ଅପ୍ସରା ଜାତ କରାଇଲେ । ସେମାନେ ଶତଗୁଣରେ ସ୍ୱର୍ଗର ଅପ୍ସରାମାନଙ୍କଠାରୁ ସୁନ୍ଦରୀ । ତନ୍ମଧ୍ୟରେ ଉର୍ବଶୀ ସୌନ୍ଦର୍ଯ୍ୟରେ ସର୍ବଶ୍ରେଷ୍ଠା ଥିଲେ । ନାରାୟଣ ସ୍ମିତ ବଦନରେ ଦେବଦୂତଙ୍କୁ କହିଲେ-'ଉର୍ବଶୀ ସହିତ ଏହି ଅପ୍ସରାମାନଙ୍କୁ ଇନ୍ଦ୍ରଙ୍କୁ ପ୍ରଦାନ କଲି ।' ସ୍ୱର୍ଗର ଅପ୍ସରାମାନେ ଅତି ବୁଦ୍ଧିମତୀ ।

ସେମାନେ କୌଶଳରେ ନାରାୟଣଙ୍କୁ ତପଶ୍ଚର୍ଯ୍ୟାରୁ ବିରତ କରିବା ଉଦ୍ଦେଶ୍ୟରେ ନାରାୟଣଙ୍କୁ ବିନୀତ ଭାବରେ ପ୍ରାର୍ଥନା କଲେ-

ପତିସ୍ତ୍ୱଂ ଭବ ଦେବେଶ ବରମେନଂ ପରନ୍ତପ
ଭବାମଃ ପ୍ରୀତିଯୁକ୍ତାସ୍ତାଂ ସେବିତୁଂ ଜଗଦୀଶ୍ୱର ।

ଆପଣ ଆମ୍ଭମାନଙ୍କୁ ନିଜର ସ୍ତ୍ରୀ ରୂପେ ଗ୍ରହଣ କରନ୍ତୁ ।

ଶାସ୍ତ୍ରରେ ଲିଖିତ ଅଛି ଯେ ଅପରିଣିତା ଓ ଅବାଗ୍‌ଦତ୍ତା କୌଣସି ନାରୀ ଯଦି କୌଣସି ପୁରୁଷକୁ ପତିତ୍ୱରେ ବରଣକରନ୍ତି, ତେବେ ସେ ପୁରୁଷ ତାଙ୍କୁ ପ୍ରତ୍ୟାଖ୍ୟାନ କଲେ ପାପଭାଗୀ ହେବେ । ଏହି ବିଷମ ସଙ୍କଟରେ ପଡ଼ି ନାରାୟଣ କ୍ରୋଧ ପ୍ରକାଶ କରିବାକୁ ଉଦ୍ୟତ ହୁଅନ୍ତେ, ତାଙ୍କର ଭ୍ରାତା ନରଦେବ ନାରାୟଣଙ୍କୁ କହିଲେ- 'ଭାଇ! କ୍ରୋଧ ପ୍ରକାଶ କଲେ ଆମ୍ଭମାନଙ୍କର ତପସ୍ୟା ବ୍ୟର୍ଥ ହେବ । ତହୁଁ ସେମାନଙ୍କୁ ଆଶ୍ୱାସନାବାଣୀରେ ସନ୍ତୁଷ୍ଟ କରନ୍ତୁ ।" ତାହା ଶୁଣି ଶମପରାୟଣ ନାରାୟଣ ଅପ୍‌ସରାମାନଙ୍କୁ ଅନୁରୋଧ କରି କହିଲେ- 'ମୋର ବ୍ରତଭଙ୍ଗ କରନାହିଁ । କୃଷ୍ଣ ଅବତାରରେ ତୁମେମାନେ ମୋର ଅଙ୍ଗସଙ୍ଗ ଲାଭ କରିବ ।

ଭବତୀଭିଃ କୃପାଂ କୃତ୍ୱା ରକ୍ଷଣୀୟଂ ବ୍ରତଂ ମମ
ଭବିଷ୍ୟାମି ମହାଭାଗାଃ ପତିରପ୍ୟନ୍ୟଜନ୍ମନି ।
(୪ର୍ଥ ସ୍କନ୍ଧ, ୧୭ ଦଶ ଅଧ୍ୟାୟ ୧୪୩ଶ ଶ୍ଳୋକ)

ରାମଚନ୍ଦ୍ର ମଧ୍ୟ ନାରାୟଣଙ୍କ ଅଂଶରୂପେ କଥିତ, ଯଥା-

ନାରାୟଣାଂଶସମ୍ଭୂସ୍ତ୍ୱଂ ବଂଶେ ମାନବେଽନଘେ
ରାବଣସ୍ୟ ବଧାୟୈବ ପ୍ରାର୍ଥିତସ୍ତ୍ୱମମରୈରସି ।
(୩ୟ ସ୍କନ୍ଧ, ୩୦ଶ ଅଧ୍ୟାୟ ୧୪ ଶ୍ଳୋକ)

କୃଷ୍ଣୋପନିଷଦ'ର ମୂଳରେ ଅଛି-

ଯୋ ରାମଃ କୃଷ୍ଣତାମେତ୍ୟ ସାର୍ବାତ୍ମ୍ୟଂ ପ୍ରାପ୍ୟ ଲୀଲୟା
ଅତୋଷୟଦ୍ଦେବ ମୌନିନିପଟଲଂତଂ ନତୋଽସ୍ମ୍ୟହମ୍ ।

(ଯେଉଁ ରାମଚନ୍ଦ୍ର ଲୀଳାବଶତଃ କୃଷ୍ଣରୂପେ ପରିଗ୍ରହପୂର୍ବକ ଶ୍ରେଷ୍ଠତ୍ୱ ଲାଭକରି ଦେବତାମାନଙ୍କୁ ତୁଷ୍ଟ କରିଥିଲେ, ତାଙ୍କୁ ପ୍ରଣାମ କରୁଛି)

ରାମାୟଣରେ ତଥା 'କୃଷ୍ଣୋପନିଷଦ'ରେ କଥିତ ଅଛି ଯେ, ଋଷିମାନେ ରାମଚନ୍ଦ୍ରଙ୍କୁ ଦେଖି ବିସ୍ମିତ ହେଲେ ଏବଂ କହିଲେ- 'ଆମ୍ଭେମାନେ ଆପଣଙ୍କୁ ଆଲିଙ୍ଗନ କରିବୁ । ତହୁଁ ସେ କହିଲେ-

'ଭବାନ୍ତରେ କୃଷ୍ଣାବତାରେ ସ୍ୱୟଂ ଗୋପିକା ଭୂତ୍ୱା ମାମାଲିଙ୍ଗଥ'

ଏହି ଋଷିମାନଙ୍କ ସଙ୍ଗରେ ଦେବତାମାନେ ମଧ୍ୟ ଏପରି ପ୍ରାର୍ଥନା କରିବା ପ୍ରକାଶପାଏ । କାରଣ 'କୃଷ୍ଣୋପନିଷଦ'ରେ ଲିଖିତ ଅଛି-

ରୁଦ୍ରାଦୀନାଂ ବଚଃ ଶ୍ରୁତ୍ୱା ପ୍ରୋବାଚ ଭଗବାନ୍ ସ୍ୱୟମ୍ଭୁ
ଆବାଂସଙ୍ଗ କରିଷ୍ୟାମି ଭବଦ୍‌ବାକ୍ୟଂ କରୋମ୍ୟହମ୍ ।

ଦେବୀଭାଗବତରେ ସ୍ପଷ୍ଟ କଥିତ ହୋଇଅଛି ଯେ ବିଷ୍ଣୁଙ୍କ ଅଂଶ ନାରାୟଣ ଏବଂ ନାରାୟଣଙ୍କର ଅଂଶ କୃଷ୍ଣ । ବିଷ୍ଣୁଭାଗବତରେ ଉକ୍ତ- 'ଜଗୃହେ ପୌରୁଷଂ ରୂପ ଭଗବାନ ମହଦାଦିଭିଃ ।' ଏହି ପୌରୁଷ-, ରୂପ ବେଦକୁ ସେହି ସହସ୍ର ଶୀର୍ଷ (ବିରାଟ ପୁରୁଷ) ପୁରୁଷଙ୍କର ସହସ୍ର ଶୀର୍ଷ ପୁରୁଷଙ୍କର ଏକ ପାଦରେ ବିଶ୍ୱବ୍ରହ୍ମାଣ୍ଡ, ଆଉ ତ୍ରିପାଦ ଉର୍ଦ୍ଧ୍ୱରେ-

'ତ୍ରିପାଦୂର୍ଦ୍ଧ୍ୱମୁଦୈତ୍ ପୁରୁଷଃ ପାଦୋସ୍ୟେହାଭବତ ପୁନଃ' । ଏହି ଉର୍ଦ୍ଧ୍ୱସ୍ଥିତ ତ୍ରିପାଦ ମାନବ ବୁଦ୍ଧିର ଅଗୋଚର ।

ବିରାଟପୁରୁଷ ନାନାବିଧ ଅବତାରର ମୂଳ କାରଣ ।
'ଏତନ୍ନାବତାରାଣାଂ ନିଧାଂ ବୀଜମବ୍ୟୟମ୍' ।

ବିଷ୍ଣୁଭାଗବତର ପ୍ରଥମ ସ୍କନ୍ଧର ତୃତୀୟ ଅଧ୍ୟାୟରେ ବାଇଶ ଅବତାରର ବିଷୟ ଲିଖିତ ଅଛି । ଉନବିଂଶ ବିଂଶତିରେ ରାମ ଓ କୃଷ୍ଣ ବୃଷ୍ଣିକୁଳରେ ଜନ୍ମଗ୍ରହଣ କରି ପୃଥିବୀର ଭାର ହରଣ କରିଥିଲେ ।

ଏକୋନିବଂଶେ ବିଂଶତି ମେ ବୃଷ୍ଣିଷୁପ୍ରାପ୍ୟ ଜନ୍ମ
ରାମକୃଷ୍ଣାଦିତି ଭୂବୋ ଭଗବାନହରଦ୍ ଭରମ୍ ।

ତଦ୍‌ପରେ ବୁଦ୍ଧ ଓ କଲ୍‌କିଙ୍କର ଅବତାର କଥିତ କହି ପରେ ଭାଗବତକାର କହିଲେ- ଏମାନେ, ଅର୍ଥାତ୍ ପୂର୍ବୋକ୍ତ ଅବତାରମାନେ ପୁରୁଷଙ୍କ ଅଂଶ ଏବଂ କଳାରେ ଜାତ; କିନ୍ତୁ କୃଷ୍ଣ ସ୍ୱୟଂ ଭଗବାନ୍-

"ଏତେ ଚାଂଶକଳା ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍ ।
ଏହା ସତ୍ତ୍ୱେ ଅନ୍ୟତ୍ର ଏଷ ବୈ ଭଗବାନ
ସାକ୍ଷାଦାଦଦ୍ୟୋ ନାରାୟଣଃ ପୁମାନ୍
ମୋହୟନ୍ମାୟୟା ଲୋକଂ ଗୂଢଂ ଚରତି ବୃଷ୍ଣିଷୁ ।

ସେହି ବିଷ୍ଣୁ ଭାଗବତରେ ଭୀଷ୍ମ ଶ୍ରୀକୃଷ୍ଣଙ୍କୁ ନିର୍ଦ୍ଦେଶ କରି ଯୁଧିଷ୍ଠିରଙ୍କୁ କହୁଛନ୍ତି- ଏ ସାକ୍ଷାତ ନାରାୟଣ ।

ଯେ ସାକ୍ଷାତ ନାରାୟଣ, ସେ ସ୍ୱୟଂ ନାରାୟଣ ନୁହନ୍ତି । ଏହାଦ୍ୱାରା ଦେବୀଭାଗବତର ଉକ୍ତି ସମର୍ଥିତ । ପୁନଶ୍ଚ ୧୦ମ ସ୍କନ୍ଧରେ ଲିଖିତ ଅଛି- ଗୋପବୃଦ୍ଧମାନେ ବାଳକ ଶ୍ରୀକୃଷ୍ଣଙ୍କର ଅଦ୍ଭୁତ କାର୍ଯ୍ୟକଳାପ ଦେଖି ବିସ୍ମିତ ହୋଇ ନନ୍ଦଙ୍କୁ ପଚାରିଲେ- ତୁମର ଏହି ଶିଶୁ ବାଳକ କିପରି ଅଦ୍ଭୁତ କର୍ମ କରୁଅଛି ? ତାର ଉତ୍ତରରେ ନନ୍ଦ କହିଲେ –ଗର୍ଗ ଋଷି ରାମକୃଷ୍ଣଙ୍କର ଜନ୍ମପତ୍ରିକା କହିବା ସମୟରେ କହିଥିଲେ- "ଏ କୃଷ୍ଣ ନାରାୟଣଙ୍କର ଅଂଶ ଏବଂ ନାରାୟଣଙ୍କର ସମ-

ତସ୍ମାନନ୍ଦ କୁମାରୋଽୟଂ ନାରାୟଣସମୋ ଗୁଣୈଃ
ଶ୍ରିୟା କୀର୍ତ୍ତ୍ୟାନୁଭାବେନ ତଦ୍‌କର୍ମସୁନ ବିସ୍ମୟଃ ।
ଇତ୍ୟଦ୍ଧା ମାଂ ସମାଦଶ୍ୟ ଗର୍ଗେ ଚ ସ୍ୱଗୃହଂ ଗତେ
ମନ୍ୟେ ନାରାୟଣସ୍ୟାଂଶଂକୃଷ୍ଣକ୍ଲିଷ୍ଟକାରିଣମ୍ ।

ପୁନଶ୍ଚ ୧୦ମ ସ୍କନ୍ଧର ଦ୍ୱାରକାଲୀଳାରେ କଥିତ ଅଛି ଯେ, ଦ୍ୱାରକାରେ ଜଣେ ବିପ୍ର ପତ୍ନୀଙ୍କର ପୁତ୍ରମାନେ ଜାତ ହୋଇ ମୃତ୍ୟୁ ଲଭୁଥିଲେ । ତହୁଁ ତାଙ୍କର ସ୍ୱାମୀ କୃଷ୍ଣଙ୍କ ସମ୍ମୁଖରେ ନିଜର ଦୁଃଖ ଜଣାଇଲେ । ଅର୍ଜୁନ ଉକ୍ତ ବ୍ରାହ୍ମଣଙ୍କ ଠାରୁ ପ୍ରକୃତ ବୃତ୍ତାନ୍ତ ଜାଣି ଗର୍ବର ସହିତ କହିଲେ- ଏଠାରେ ଧନୁର୍ଦ୍ଧର କେହି ନାହାନ୍ତି । ଦ୍ୱାରକାବାସୀମାନେ ସମସ୍ତେ କ୍ଷତ୍ରବନ୍ଧୁ, କ୍ଷତ୍ରିୟ ନୁହନ୍ତି । ତେଣୁ ବ୍ରାହ୍ମଣମାନେ ଦୁଃଖଗ୍ରସ୍ତ ହେଉଛନ୍ତି । କିନ୍ତୁ ମୁଁ ପ୍ରତିଜ୍ଞା କରୁଛି ଆପଣଙ୍କୁ ନିଶ୍ଚୟ ସାହାଯ୍ୟ କରିବି । ମୁଁ ବିଷ୍ଣୁ ନୁହେଁ, ଇନ୍ଦ୍ର ନୁହେଁ, ମୁଁ ଅର୍ଜୁନ । ଏପରି ବିଧାନ କରିବି ଯେ, ଆପଣଙ୍କ ପୁରରେ ଯମର ଅଧିକାର ରହିବନାହିଁ । ଆଉ ଯଦି ପ୍ରତିଜ୍ଞା ରକ୍ଷା ନ କରିପାରେ, ତେବେ ଅଗ୍ନିରେ ଝାସ ଦେବି ।' ଏହି ପ୍ରକାରେ ବ୍ରାହ୍ମଣଙ୍କୁ ଆଶ୍ୱାସନା ପ୍ରଦାନ କରି ବ୍ରାହ୍ମଣ ଗୃହର ଚତୁଃପାର୍ଶ୍ୱରେ ଅର୍ଜୁନ ନାନାବିଧ ଅସ୍ତ୍ର ନିଯୋଜିତ କଲେ । କିନ୍ତୁ ଦୈବବଶତଃ ଉପଯୁକ୍ତ ସମୟରେ ବ୍ରାହ୍ମଣଙ୍କର ଏକ ମୃତପୁତ୍ର ଜାତ ହେଲା । ଏଥିରେ ବ୍ରାହ୍ମଣ କୋପାବିଷ୍ଟ ହୋଇ ଅର୍ଜୁନଙ୍କୁ ଯାଇ କହିଲେ- ରେ ନରାଧମ, ତୁ ତ ପ୍ରତିଜ୍ଞା କରିଥିଲୁ, ଦମ୍ଭରେ କହିଥିଲୁ- ମୁଁ ବିଷ୍ଣୁ ନୁହେଁ, ଇନ୍ଦ୍ର ନୁହେଁ; କିନ୍ତୁ କାର୍ଯ୍ୟରେ କ'ଣ ଘଟିଲା? ପୂର୍ବେ ପୁତ୍ରସନ୍ତାନ ଜାତ ହୋଇ କିଛି କାଳ ଜୀବିତ ରହୁଥିଲେ- କିନ୍ତୁ ବର୍ତ୍ତମାନ ଏକ ମୃତପୁତ୍ର ଜାତ ହେଲା । ତୋର ଦାମ୍ଭିକତାକୁ ଧିକ୍ ।' ବ୍ରାହ୍ମଣଙ୍କର ଏହି ଆକ୍ଷେପୋକ୍ତିରେ ଅର୍ଜୁନ ବିଷଣ୍ଣ ହୋଇ ଜ୍ୱଳନ୍ତ ଅଗ୍ନିରେ ଆତ୍ମବିସର୍ଜନ କରିବାକୁ ଉଦ୍ୟତ ହେଲେ । ଏହି ସାହସିକ କର୍ମରେ କୃଷ୍ଣ ବିରକ୍ତ ହୋଇ ତାଙ୍କୁ କହିଲେ- 'କି ମହାପାପ କରିବାକୁ ଯାଉଅଛ ଅର୍ଜୁନ ।' ତହୁଁ କୃଷ୍ଣ ଅର୍ଜୁନଙ୍କୁ ପାତାଳପୁରକୁ ନେଲେ ଏବଂ ସେଠାରେ ନାରାୟଣଙ୍କୁ ସାକ୍ଷାତ କଲେ ।

ଏହି ନାରାୟଣ କୃଷ୍ଣ ଓ ଅର୍ଜୁନଙ୍କୁ କହିଲେ- 'ତୁମ୍ଭମାନଙ୍କର ସାକ୍ଷାତକାର ନିମିତ୍ତ ମୁଁ ଏହା କରିଅଛି । ତୁମ୍ଭମାନଙ୍କର ଲୀଳାର ସମୟ ଆସି ଶେଷପ୍ରାୟ । ତୁମ୍ଭେମାନେ ସ୍ୱସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କର ।' ଏହା କହି ସେ ସେହି ମୃତ ପୁତ୍ରମାନଙ୍କୁ ପ୍ରଦାନ କଲେ ।

ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ, ଶ୍ରୀକୃଷ୍ଣ ନାରାୟଣ ନୁହନ୍ତି । ବିଷ୍ଣୁପୁରାଣ ଓ ଅନ୍ୟାନ୍ୟ ପୁରାଣରେ ଲିଖିତ ଅଛି ଯେ, ବିଷ୍ଣୁ ବ୍ରହ୍ମାଙ୍କୁ ଶ୍ୱେତ ଓ କୃଷ୍ଣ କେଶ ପ୍ରଦାନ କରି କହିଲେ- 'ମୁଁ ଏହି ବର୍ଣ୍ଣଦ୍ୱୟରେ ଅବତୀର୍ଣ୍ଣ ହେବି ।

ଏବଂ ସଂସ୍ତୂୟମାନସ୍ତୁ ଭଗବାନ ପରମେଶ୍ୱରଃ,
ଉଜ୍ଜହାରାତ୍ମନଃ କେଶୌ ସିତକୃଷ୍ଣୌ ମହାମୁନେ ।
ଭବାଚ ସୁରାନେତୌ ମତ୍‌କେଶୌ ବସୁଧାତଳେ ।
ଅବତୀର୍ଯ୍ୟ ଭୁବୋ ଭାରକ୍ଲେଶହାନିଂ କରିଷ୍ୟତଃ ।
(ବିଷ୍ଣୁପୁରାଣ- ପଂଚମାଂଶ ପ୍ରଥମ ଅଧ୍ୟାୟ ।)

ମହାଭାରତର ସ୍ୱର୍ଗାରୋହଣ ପର୍ବରେ ଲିଖିତ ଅଛି ଯେ, କୃଷ୍ଣଙ୍କର ପ୍ରୟାଣ ପରେ କୃଷ୍ଣଙ୍କର ଜୀବାତ୍ମା ନାରାୟଣଙ୍କର ଅଙ୍ଗରେ ପ୍ରବେଶ କଲା-

ଯଃ ସ ନାରାୟଣୋ ନାମଂ ଦେବଦେବ ସନାତନଃ

ତସ୍ୟାଂଶୋ ବାସୁଦେବସ୍ତୁ କର୍ମଣୋଽନ୍ତେ ବିବେଶ ହ ।

ଏ ସମସ୍ତ ପ୍ରମାଣ ବଳରେ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଦେବକୀନନ୍ଦନ କୃଷ୍ଣ ସ୍ୱୟଂ ଭଗବାନ ନୁହନ୍ତି । ପ୍ରଶ୍ନ ହୋଇପାରେ, ତେବେ କିପରି କୃଷ୍ଣ ଉପାସକ ବୈଷ୍ଣବମାନେ କୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବୋଲି କହନ୍ତି? ଉତ୍ତରରେ କେବଳ ଏତିକି କୁହାଯାଇପାରେ- ଯେ ଯାହାର ଉପାସକ, ସେ ତାଙ୍କୁ ସ୍ୱୟଂ ଭଗବାନ ରୂପେ ଉପାସନା ନ କଲେ, ତାହାର ଗତି ଅସମ୍ଭବ । ପୁନଶ୍ଚ ସାଧକ ନିଜର ସାଧନ ବଳରେ ବ୍ରହ୍ମତ୍ୱପ୍ରାପ୍ତ ହୁଏ । ବିଷ୍ଣୁଭାଗବତରେ ଲିଖିତ ଅଛି- ଯେତେବେଳେ ସାଧକ ସ୍ଥୂଳ ଓ ସୂକ୍ଷ୍ମ ରୂପକୁ ସମ୍ୟିତ ବଳରେ ପ୍ରତିଷେଧ କରେ, ସେତେବେଳେ ଜୀବ ବ୍ରହ୍ମତ୍ୱପ୍ରାପ୍ତ ହୁଏ-

ଯତ୍ରେମେ ସଦସଦ୍‌ରୂପେ ପ୍ରତିଷିଦ୍ଧେ ସ୍ୱସମ୍ୱିଦା
ଅବିଦ୍ୟୟାଽତ୍ମନି କୃତେ ଇତି ତଦ୍ ବ୍ରହ୍ମଦର୍ଶନମ୍ ।

ଶ୍ରୀଧରସ୍ୱାମୀ କହିଛନ୍ତି- 'ଜୀବୋ ବ୍ରହ୍ମ ଏକ ଭବତି' । ବିଶ୍ୱନାଥ ଚକ୍ରବର୍ତ୍ତୀ କହିଛନ୍ତି- 'ବ୍ରହ୍ମଣୋ ଜୀବ-ସାକ୍ଷାତ୍-କାରୋ ଭବତି' । ଏହାର କାରଣ- ଶ୍ରୀଧରସ୍ୱାମୀ ସାଯୁଜ୍ୟ ମୁକ୍ତି ସ୍ୱୀକାର କରନ୍ତି, କିନ୍ତୁ ଅଦ୍ୱୈତବାଦୀ ନ ହୋଇଥିବାରୁ ବିଶ୍ୱନାଥ ଚକ୍ରବର୍ତ୍ତୀ ସାଯୁଜ୍ୟ ମୁକ୍ତି ସ୍ୱୀକାର କରନ୍ତିନାହିଁ ।

ବେଦରେ ଦେଖୁ- ଆମ୍ଭୃଣ ଋଷିଙ୍କର କନ୍ୟା- ବାକ୍ ସ୍ୱ ସାଧନା ବଳରେ ବ୍ରହ୍ମବାଦନୀ ହୋଇଥିଲେ, ଅର୍ଥାତ୍ ବ୍ରହ୍ମ ସ୍ୱରୁପିଣୀ ହୋଇଥିଲେ । ସେହି ବ୍ରହ୍ମସ୍ୱରୂପିଣୀଙ୍କର ଉକ୍ତି- ମୋର ଶକ୍ତି ବଳରେ ବ୍ରହ୍ମା ରୁଦ୍ରାଦି ସୃଷ୍ଟି । ମୋର ଇଚ୍ଛାରେ ସମସ୍ତ କାର୍ଯ୍ୟ ସାଧିତ ହୁଏ । ଜଗତର ଲୋକମାନଙ୍କର କ୍ରିୟାକଳାପ ମୋଦ୍ୱାରା ସାଧିତ ।

ସାଧାରଣ ନରନାରୀ ଯଦି ନିଜର ସାଧନ ବଳରେ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି, ତେବେ ଅବତାର ରାମ ଓ କୃଷ୍ଣଙ୍କର ଭଗବତ୍ତ ପ୍ରାପ୍ତିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ।

କାରଣ- ପୂର୍ଣ୍ଣମିଦଂ ପୂର୍ଣ୍ଣମଦଃ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।

ଏସବୁ ଯୁକ୍ତି ଥିବା ସ୍ଥଳରେ ମଧ୍ୟ ଯେଉଁ ଦେବୀଭାଗବତକାର ପ୍ରଥମାଂଶରେ କୃଷ୍ଣଙ୍କୁ ବିଷ୍ଣୁଙ୍କର ଅଶାଂଶ କହିଲେ, ସେ ପୁଣି ଦେବୀ ଭାଗବତର ଉତ୍ତରାର୍ଦ୍ଧରେ ଭଗୀରଥଙ୍କର ଗଙ୍ଗାନୟନ ଅବସରରେ ଯେଉଁ କୃଷ୍ଣଙ୍କୁ ସ୍ତୁତି କରିଥିଲେ ଏବଂ ଯାହାଙ୍କୁ ସ୍ତୁତି କରି ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିଥିଲେ, ସେହି କୃଷ୍ଣ ଗୋଲକବିହାରୀ, ମହାନିତ୍ୟ ସ୍ଥଳାଧିକାରୀ । ସେ ନିର୍ଗୁଣ, ପରମ ବ୍ରହ୍ମ, ନିରାକାର, ନିରଞ୍ଜନା-

ଦଦର୍ଶ କୃଷ୍ଣଂ ଶ୍ରୀଷ୍ମସୁସୂର୍ଯ୍ୟକୋଟୀସମପ୍ରଭମ୍
ଦ୍ୱିଭୁଜଂ ମୁରଲୀହସ୍ତଂ କିଶୋରଂ ଗୋପବେଶିନମ୍ ।
ସ୍ୱେଚ୍ଛାମୟଂ ପରଂବ୍ରହ୍ମ ପରିପୂର୍ଣ୍ଣତମଂ ପ୍ରଭୁମ୍
ବ୍ରହ୍ମା ବିଷ୍ଣୁ ଶିବାଦୈଶ୍ଚ ସ୍ତୁତଂ ମୁନିଗଣୈର୍ନୁତମ୍ ।
ନିର୍ଲିପ୍ତଂ ସାକ୍ଷିରୂପଞ୍ଚ ନିର୍ଗୁଣଂ ପ୍ରକୃତେଃ ପରମ୍ ।

(ଦେ, ଭା ୯ମ ସ୍କନ୍ଧ, ଏକାଦଶ ଅଧ୍ୟାୟ) ।
ଓଡ଼ିଶାର ବୈଷ୍ଣବମାନେ ବସୁଦେବନନ୍ଦନ କୃଷ୍ଣଙ୍କୁ ମାନବକୃଷ୍ଣ କହିଅଛନ୍ତି ।

ଗୋଲୋକରେ ତାଙ୍କର ପତ୍ନୀ ସହିତ ପ୍ରବେଶାଧିକାର ନ ଥିବା ବହୁଶଃ ବର୍ଣ୍ଣିତ ହୋଇଛି । ତହୁଁ ଉତ୍କଳ ବୈଷ୍ଣବମାନେ ଅର୍ଥାତ ଜ୍ଞାନମିଶ୍ରା ଭକ୍ତିର ଉପାସକମାନେ ରାମକୃଷ୍ଣଙ୍କୁ ଅବତାର ରୂପେ ଗ୍ରହଣକରି ପ୍ରକୃତ ବୈଷ୍ଣବଧର୍ମର ସାରଗ୍ରାହୀତାର ପରିଚୟ ପ୍ରଦାନ କରିଅଛନ୍ତି । ଦିବାକର ଦାସ ଜଗନ୍ନାଥ- ଚରିତାମୃତରେ କହିଅଛନ୍ତି-

ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବାଳା ।

ପୁନଶ୍ଚ ସଂସ୍କୃତ ଭାଗବତର ନାନା ସ୍ଥାନରେ କଥିତ ଅଛି- 'ଅଂଶେନ ଅବତୀର୍ଣ୍ଣୋ ହରିଃ ।

ଯତ୍ରାଂଶେନାବତୀର୍ଣ୍ଣସ୍ୟ ବିଷ୍ଣୋର୍ବୀର୍ଯ୍ୟାଣି ଶଂସ ନଃ ।

ଏହାର ଅର୍ଥ- ହରି ମର୍ତ୍ତରେ ଅଂଶରେ ଅବତୀର୍ଣ୍ଣ ହୋଇ କୃଷ୍ଣ ନାମ ଧାରଣ କଲେ । କୃଷ୍ଣୋପାସକ ତଥା କୃଷ୍ଣଭକ୍ତ ଶ୍ରୀଧର ପ୍ରମୁଖ ବୈଷ୍ଣବଗଣ 'ଅଂଶେନ' ଏହି ଶବ୍ଦର ଅର୍ଥ କରନ୍ତି- ବଳରାମଙ୍କ ସହିତ ବିଷ୍ଣୁ କୃଷ୍ଣ ରୂପେ ଧରାପୃଷ୍ଠରେ ଆବିର୍ଭୂତ ହୋଇଥିଲେ । ମୁଖ୍ୟ ଅର୍ଥ ଛାଡ଼ି, ଏପରି ଗୌଣ ଅର୍ଥ ଗ୍ରହଣ କରିବାଦ୍ୱାରା କୃଷ୍ଣଭକ୍ତ କୃଷ୍ଣଙ୍କୁ ଭଗବତ୍ତା ପ୍ରଦାନ କରିଅଛନ୍ତି, କିନ୍ତୁ ପୂର୍ବୋକ୍ତ ପ୍ରମାଣମାନଙ୍କଦ୍ୱାରା ସ୍ପଷ୍ଟ ସମର୍ଥିତ ହୁଏ ଯେ, ଦେବକୀନନ୍ଦନ କୃଷ୍ଣ ଭଗବାନଙ୍କ ଅଂଶରେ ଅବତୀର୍ଣ୍ଣ ।

କୃଷ୍ଣୋପାସକମାନେ ନିଜର ଗ୍ରନ୍ଥାଦିରେ କୃଷ୍ଣଙ୍କୁ ଅବତାରୀ ରୂପେ ଏବଂ ରାମଙ୍କୁ ଅବତାର ରୂପେ ଓ ରାମୋପସାକମାନେ ରାମଙ୍କୁ ଅବତାରୀ ରୂପେ ଏବଂ କୃଷ୍ଣଙ୍କୁ ଅବତାର ରୂପେ ଗ୍ରହଣ କରିଅଛନ୍ତି । କିନ୍ତୁ ଉପର୍ଯ୍ୟୁକ୍ତ ପ୍ରମାଣ ବଳରେ ସ୍ପଷ୍ଟ ପ୍ରତୀତ ହୁଏ, ରାମ ଓ କୃଷ୍ଣ ଏକା । କେବଳ ଦେଶ, କାଳ, ପାତ୍ର ଭେଦରେ ଲୀଳାର ପାର୍ଥକ୍ୟ ଲକ୍ଷିତ ହୋଇଛି ।

ରାମାଦିମୂର୍ତ୍ତିଷୁ କଳନୀୟମେନ ତିଷ୍ଟନ୍
ନାନାବତାରମ କରୋଦ୍‌ଭୁବନେଷୁ କିନ୍ତୁ ।
କୃଷ୍ଣଃ ସ୍ୱୟଂ ସମଭବଦ୍ ପରମଃ ପୁମାନ୍ ଯୋ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ।
(ବ୍ରହ୍ମସଂହିତା –ପଂଚମ ଅଧ୍ୟାୟ)

ବ୍ରହ୍ମସଂହିତାକାର ବିଷ୍ଣୁ ଭାଗବତକାର ତୁଲ୍ୟ କୃଷ୍ଣଭକ୍ତ ଥିବାରୁ ଏଭଳି ଉକ୍ତି କରିଛନ୍ତି ।

କୃଷ୍ଣ ସର୍ବକ୍ଷେତ୍ରରେ ମାନବ ଜୀବନର ସର୍ବ ଅବସ୍ଥାରେ ବିରାଜମାନ ହୋଇ ତହିଁରେ ଦେଶିକ ବା ଆଦର୍ଶ ରୂପେ ଦେଶିକତ୍ୱ ବା ଆଦର୍ଶ ରୂପତ୍ୱର ପ୍ରତୀକ ହୋଇ ରହିଛନ୍ତି ।

# ଶକ୍ତି

ଏହି ସଂସାର ସ୍ଥାବରଜଙ୍ଗମାତ୍ମକ । ସେହି ସ୍ଥାବରଜଙ୍ଗମ ଜଡ଼ ଓ ଚୈତନ୍ୟମୟ ରୂପେ ଦ୍ୱିଭାଗରେ ବିଭକ୍ତ । କେତେକ ସ୍ଥାବର ଜଡ଼ ଓ ଚୈତନ୍ୟଯୁକ୍ତ ବା ପ୍ରାଣବନ୍ତ । ମୃତ୍ତିକା, ପାଷାଣ ପ୍ରଭୃତି ସ୍ଥାବର ଓ ଜଡ଼ । ଅନ୍ୟାନ୍ୟ ତୃଣ, ଲତା, ବୃକ୍ଷାଦି ସ୍ଥାବର । କୀଟ, ପତଙ୍ଗ, ପଶୁ, ପକ୍ଷୀ ଓ ମନୁଷ୍ୟ ପ୍ରଭୃତି ଜଙ୍ଗମ ହେଉଛନ୍ତି ଜୀବନ୍ତ ତଥା ଚୈତନ୍ୟଯୁକ୍ତ । ପ୍ରକୃତରେ ବିଚାର କଲେ ଜଣାଯାଏ, ଯାହା ଜଡ଼ ତାହାର ଅନ୍ତରରେ ଚିଦ୍‌ଶକ୍ତି ନିହିତ । କିନ୍ତୁ ସେହି ଶକ୍ତି ଏପରି ଘନ ଆବରଣରେ ଆବୃତ୍ତ ଯେ ତାହାର ବିକାଶ ଆଦୌ ହୁଏନାହିଁ; କିନ୍ତୁ ଏହି ଚିଦ୍‌ଶକ୍ତିଦ୍ୱାରା ହିଁ ସବୁ ପଦାର୍ଥର ଅସ୍ତିତ୍ୱ । କାରଣ ଆସ୍ତମ୍ଭ ବ୍ରହ୍ମ ପର୍ଯ୍ୟନ୍ତ ସର୍ବତ୍ର ଏହି ଚିଦ୍‌ଶକ୍ତିର ସତ୍ତା ସ୍ୱୀକାର୍ଯ୍ୟ । ସାମାନ୍ୟ କୀଟ, ସ୍ୱଞ୍ଜ ଜାତୀୟ ପଦାର୍ଥଠାରୁ ମନୁଷ୍ୟ ପର୍ଯ୍ୟନ୍ତ ସର୍ବତ୍ର ଏକ ଶକ୍ତି; ଅର୍ଥାତ୍ ଚିଦ୍‌ଶକ୍ତି ବା ପ୍ରାଣଶକ୍ତି ରହି କାର୍ଯ୍ୟ କରୁଅଛି । ହିନ୍ଦୁଶାସ୍ତ୍ରରେ ଆମ୍ଭେମାନେ ବିଷ୍ଣୁଙ୍କର ଅସଂଖ୍ୟ ଅବତାର ଥିବା ପାଉ । ତା ମଧ୍ୟରେ ଦଶଟି ଅବତାର ପ୍ରଧାନ ରୂପେ ଗୃହୀତ । ଯଥା - ମୀନ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମଚନ୍ଦ୍ର, ବଳରାମ, ବୁଦ୍ଧ ଓ କଲ୍‌କି । ଭଗବାନଙ୍କ ଏହି ଦଶରୂପରେ କିପରି ଚିଦ୍‌ଶକ୍ତି କାର୍ଯ୍ୟ କରୁଅଛି, ତାହା ଦ୍ରଷ୍ଟବ୍ୟ । ଅବଶ୍ୟ ଧର୍ମପ୍ରାଣ ହିନ୍ଦୁ କହିବ ଯେ, ଏସବୁ ଭଗବତ ରୂପ ଚିନ୍ମୟ—ଏ ମୂର୍ତ୍ତି ସଚ୍ଚିଦାନନ୍ଦମୟ । କିନ୍ତୁ ବୈଜ୍ଞାନିକ ପ୍ରଣାଳୀରେ ବିଚାର କଲେ ଜଣାଯାଏ ଯେ ଏହି ଚିଦ୍‌ଶକ୍ତି ପ୍ରାଚୀନ ଶକ୍ତି । ବ୍ରହ୍ମ କିପରି ତାମସ, ରାଜସ ଓ ସାତ୍ତ୍ୱିକ ଗୁଣ ମଧ୍ୟରେ ରହି ସ୍ୱ ଆତ୍ମସତ୍ତା ପ୍ରକାଶ କରିଅଛି ; ଘୋର ତାମସ ଓ ରାଜସ ଗୁଣ କିପରି କ୍ରମଶଃ କ୍ଷୀଣ ହୋଇ ପୂର୍ଣ୍ଣ ସାତ୍ତ୍ୱିକଭାବ ବିରାଜମାନ କରିଅଛି ; ଜୀବ ଶୁଦ୍ଧ ସତ୍ତ୍ୱମୟ ହୋଇ ସେଥିରେ ଚିଦ୍ ଓ ଆନନ୍ଦର ବିଳାସ ହୋଇଅଛି । କ୍ରମଶଃ ପଶୁତ୍ୱ ଲୋପ ପାଇ ପୂର୍ଣ୍ଣ ମନୁଷ୍ୟତ୍ୱ... ଦେବତ୍ୱ ଲାଭ କରାଯାଇଅଛି । ବଳରାମଙ୍କ ଚରିତ ପାଠକଲେ ଜଣାଯାଏ, ତାଙ୍କଠାରେ କପଟତା ଓ ମାୟାର ଗନ୍ଧ ନଥିଲା । ତାଙ୍କର ହୃଦୟ ଶୁଦ୍ଧ ସତ୍ତ୍ୱମୟ ଥିଲା । ତଦ୍‌ପରେ ଜ୍ଞାନରୁ ପୂର୍ଣ୍ଣ ବିଳାସ ବୁଦ୍ଧତ୍ୱରେ 'ଜ୍ଞାନେ ପରିସମାପ୍ୟତେ'- ଗୀତାର ଉକ୍ତିର ସାର୍ଥକତା ସମ୍ପାଦିତ ହୋଇଅଛି ।

ପ୍ରଥମେ ମନୁଷ୍ୟ ସୃଷ୍ଟ ହୋଇ ତାର ଚାରିଆଡ଼କୁ ଦେଖିଲା । ଦେଖିଲା ଅଗ୍ନି, ବାୟୁ, ସୂର୍ଯ୍ୟ, ଆକାଶ, ଜଳ ବିଦ୍ୟୁତ ପ୍ରଭୃତି । ଏ ସବୁର ଶକ୍ତି ଦେଖି ବିସ୍ମିତ ହେଲା । ତହୁଁ ସେମାନଙ୍କଠାରେ ଦେବତ୍ୱ ଆରୋପ କରି ପୂଜାକଲା । ବେଦପାଠରୁ ଯାହା ଜଣାଯାଏ, ମନୁଷ୍ୟ ତାର ଜୀବନର ପ୍ରାରମ୍ଭରୁ ଶକ୍ତିର ପୂଜା କରିବାକୁ ଆରମ୍ଭ କଲା । ସେ ନିଜକୁ

ଅନ୍ୟାନ୍ୟ ପଦାର୍ଥ ଠାରୁ ଶକ୍ତିମାନ ମଣି ତାକୁ ନିଜର କାର୍ଯ୍ୟରେ ଲଗାଇଲା । କେତେକ ପଶୁଙ୍କୁ ନିଜର ଖାଦ୍ୟରୂପେ ଗ୍ରହଣ କଲା ଓ ସେହି ପଶୁମାନଙ୍କୁ ନିଜର ଉପାସ୍ୟ ଦେବତାଙ୍କଠାରେ ବଳିଦେଲା । ତତ୍‌ପରେ ସେହି ଦେବଶକ୍ତିର ପ୍ରୀତି ନିମିତ୍ତ ନିଜର ଆତ୍ମୀୟ ସ୍ୱଜନ ଓ ପୁତ୍ର ପର୍ଯ୍ୟନ୍ତ ବଳିଦେଇ ଆତ୍ମପ୍ରସାଦ ମଣିଲା ।

ମନୁଷ୍ୟ ନିଜର ଶକ୍ତିକୁ ଚାଳନା କଲା । ପ୍ରଥମତ ତାମସ ଓ ରାଜସ ଗୁଣର ସାହାଯ୍ୟରେ କ୍ରମଶଃ ଏହି ଦୁଇ ଗୁଣକୁ ବଶୀଭୂତ କରିବାକୁ ଚେଷ୍ଟା କଲା । ଏହି ପ୍ରକୃତି ତମ, ରଜ ଓ ସତ୍ତ୍ୱଗୁଣାତ୍ମକ । ଏହି –ଗୁଣଦ୍ୱାରା ସୃଷ୍ଟି, ସ୍ଥିତିର ନାଶ ଘଟେ । ତେଣୁ ସେ ମାଟିର ଦେବତା କଲା । ସତ୍ତ୍ୱ ଗୁଣରେ ବିଷ୍ଣୁ, ରଜ ଗୁଣରେ ବ୍ରହ୍ମା, ତମ ଗୁଣରେ ଶିବ । ବିଷ୍ଣୁ ପାଳକ, ବ୍ରହ୍ମା ଜନକ, ଶିବ ନାଶକ ।

ରଜ ଗୁଣରେ ଦୁଃଖ, ତମ ଗୁଣରେ ମୋହ, ସତ୍ତ୍ୱ ସୁଖ ବୋଲି ସେ ଧରିଲା । ଏହି ତିନି ଗୁଣର କାର୍ଯ୍ୟକଳାପକୁ ସଂସାରିକ ଲୀଳା, ମାୟା ବା ଲୀଳାରୂପେ ସେ ଜାଣିପାରିଲା । ସେହି ଚିତ୍‌ଶକ୍ତି, ଶକ୍ତିବ୍ରହ୍ମ ଏହି ତ୍ରିଗୁଣରେ ଜଡ଼ୀଭୂତ ହୋଇ ପ୍ରକାଶ କରିପାରେନାହିଁ । ଯେଉଁଠାରେ ଆମେ ତମଗୁଣର ନ୍ୟୂନତା ଦେଖୁ ଓ ସତ୍‌ଗୁଣର ଭାବ ଦେଖୁ, ସେଠାରେ ଚିତ୍‌ର ମଧ ଅଧିକ ବିକାଶ । ଯେଉଁଠାରେ ତମ ଗୁଣର ଆଧିକ୍ୟ ଦେଖୁ, କହୁଁ ଅସୁରୀ ବା ପୈଶାଚ ପ୍ରକୃତି । ଯେଉଁଠି ରଜ ଗୁଣର ଆଧିକ୍ୟ ଦେଖୁ , ସେଠାରେ କହୁ ଏ ମାନୁଷ ଲୀଳା । ଏଠାରେ ମନୁଷ୍ୟ ସ୍ୱର୍ଥାନ୍ଧ ହୋଇ କାର୍ଯ୍ୟ କରୁଛି । ଯେଉଁଠାରେ ସତ୍ତ୍ୱଗୁଣର ଆଧିକ୍ୟ ଦେଖୁ ; ସେଠାରେ ମନୁଷ୍ୟ ସ୍ୱାର୍ଥ ସଙ୍ଗେ ଦେଶର ଓ ଦେଶର ମଙ୍ଗଳ ନିମନ୍ତେ କାର୍ଯ୍ୟ କରୁଅଛି । ସବୁ କ୍ଷେତ୍ରରେ ଆମ୍ଭେମାନେ ଏହିପରି ଦେଖିବାକୁ ପାଉ । ତେଣୁ ମନୁଷ୍ୟକୁ ଠିକ ବାଟରେ ନେବାର ଉଦ୍ଦେଶ୍ୟରେ ପ୍ରାଚୀନ ଭାରତରେ ସୁଶିକ୍ଷାର ପ୍ରବର୍ତ୍ତନ ହେଲା । ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଗୁରୁ ଗୃହରେ ଶିଷ୍ୟ ରହି ମନୁଷ୍ୟତା ହାସଲ କରିବ । ମନୁସ୍ମୃତିରେ ସେଥି ସକାଶେ ବ୍ରହ୍ମଚାରୀ ନିମନ୍ତେ ଆଚାରର ଅଛି ନିର୍ଦ୍ଦେଶ- ଧର୍ମ କଣ, କର୍ତ୍ତବ୍ୟ କଣ । ପାତ୍ର ନିର୍ଦ୍ଦେଶ ବିଶେଷରେ, ବର୍ଣ୍ଣ ବିଶେଷରେ ସବୁ ଉପଦିଷ୍ଟ ହେଲା । ମନୁଷ୍ୟକୁ ସ୍ୱସ୍ୱ ରୂପ ପ୍ରଦାନ ହେବ । ଏହି ଶିକ୍ଷାର ଉଦ୍ଦେଶ୍ୟ ହେଉଛି- ବାଲ୍ୟାବସ୍ଥାରେ ମନୁଷ୍ୟକୁ ଶିଷ୍ଟ କରିବାକୁ ହେବ । ରଜ ଓ ତମ ଗୁଣଦ୍ୱାରା ମନ ଯେପରି ଆକ୍ରା ନ୍ତ ନ ହୁଏ, ତତ୍‌ପ୍ରତି ସାବହିତ ଦେବାକୁ ହୁଏ । ସ୍ୱଶିକ୍ଷିତ ହେଲେ, ଆତ୍ମାଧିକାରୀ ହେଲେ, ସେ ସଂସାରୀ ହେବ । ଗୃହସ୍ଥ ଧର୍ମ ପାଳନକରିବ । ସେ ବିବାହ କରି ଭୋଗ କରିବ; କିନ୍ତୁ ଭୁକ୍ତ ହେବନାହିଁ । ମନୁଷ୍ୟର ଚାରିଟି ଉଦ୍ଦେଶ୍ୟ, ଅର୍ଥ ବା ପ୍ରୟୋଗ ଅଛି । ତାହାକୁ ଚତୁର୍ବର୍ଗ କହନ୍ତି । ତାହା ଯଥାକ୍ରମେ- ଧର୍ମ, ଅର୍ଥ, କାମ ଓ ମୋକ୍ଷ । ସଂସାରୀ ନିମନ୍ତେ ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ । କେତେକଙ୍କ ମତରେ ଧର୍ମରୁ ଅର୍ଥ, ଅର୍ଥରୁ କାମ, କାମଦ୍ୱାରା ଇନ୍ଦ୍ରିୟ ନିବୃତ୍ତ । କିନ୍ତୁ ଏହା ଠିକ ନୁହେଁ । ଯେଉଁ ଧର୍ମ ଅକ୍ଷର ସୋପାନ ସ୍ୱରୂପ, ତାହାର ଉଦ୍ଦେଶ୍ୟ ଅର୍ଥ ନୁହେଁ । ପୁନଶ୍ଚ ଯେଉଁ ଅର୍ଥ ଧର୍ମାନୁପ୍ରାଣିତ, ତାର ଉଦ୍ଦେଶ୍ୟ କାମ ନୁହେଁ । କାମ ମଧ ଧର୍ମାନୁମୋଦିତ ହେବା ଉଚିତ । କାରଣ କାମର ଅର୍ଥ ଇନ୍ଦ୍ରିୟ ତୃପ୍ତି ନୁହେଁ । କିନ୍ତୁ ସୁଖମୟ ଜୀବନଯାପନ କରିବାକୁ ହେବ । ଏଠାରେ ଶ୍ରେୟ ପ୍ରତି ଦୃଷ୍ଟି ରଖି ପ୍ରେୟକୁ ଛାଡ଼ିବାକୁ

ହେବ । ଏପରି କାମ ଓ ସେବା କରିବାକୁ ହେବ ଯାହାଦ୍ୱାରା ମନୁଷ୍ୟର ଶାରୀରିକ, ମାନସିକ ତଥା ପାରମାର୍ଥିକ ଉତ୍କର୍ଷ ସମ୍ପାଦିତ ହେବ ।

ତେଣୁ ଏସବୁ ବିଷୟ ନିର୍ଭର କରେ ଶକ୍ତିର ଉପଯୁକ୍ତ ବିନିଯୋଗ ଉପରେ । ଶକ୍ତିର ଆତ୍ମଶକ୍ତିର ଯଥାର୍ଥ ବିନିଯୋଗ ନ କଲେ ସବୁ ବିଶୃଙ୍ଖଳା ଘଟିବ । ପ୍ରାଣୀ ମାତ୍ରେ ଅଧିକନ୍ତୁ ମନୁଷ୍ୟ ସୁଖଭୋଗ କରିବାକୁ ସର୍ବଦା ଇଚ୍ଛା କରେ । ସୁଖଭୋଗ ଦୁଃଖର ନାଶରେ । ସେହି ଦୁଃଖ ବା ତ୍ୟାଗ ତ୍ରିବିଧ । ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଦୈବିକ । ଶରୀର ଓ ମନର ପୀଡ଼ା ଆଧ୍ୟାତ୍ମିକ; ଅତିବୃଷ୍ଟି, ଅନାବୃଷ୍ଟି, ମହାମାରି ଭୟ, ଭୂମିକମ୍ପ ପ୍ରଭୃତି ଆଧିଭୌତିକ; ଚୌର, ବ୍ୟାଘ୍ର, ସର୍ପ, କୁମ୍ଭୀର ପ୍ରଭୃତି ଠାରୁ ଯେଉଁ ଦୁଃଖ ହୁଏ- ତାହା ଆଧିଭୌତିକ । ଏହି ତ୍ରିବିଧ ଦୁଃଖ ଦୂର କରିବାକୁ ଲୋକ ଉପାୟ ନିର୍ଦ୍ଧାରଣ କରେ । ଏକ ରକମ ଦୁଃଖ ଦୂରହେବା ପରେ ଆଉ ଗୋଟିଏ ଦୁଃଖ ଆସେ । ତେଣୁ ମନୁଷ୍ୟ ଦେଖିଲା ଯେ, ଆତ୍ୟନ୍ତିକ ଓ ଐକାନ୍ତିକ ସୁଖ ଇହଲୋକରେ, ଏହି ମାମୁଲି ଧରଣ ଜୀବନ ନିର୍ବାହରେ ନାହିଁ । ପୁନଶ୍ଚ ହିନ୍ଦୁଙ୍କ ମତରେ ସ୍ୱର୍ଗସୁଖ ଲାଭ କରିବାକୁ ସେ ପୁଣ୍ୟକର୍ମ, ଯାଗଯଜ୍ଞାଦି କରେ । ସେଥିରେ ମଧ୍ୟ ଦେଖିଲା, ସ୍ୱର୍ଗରେ ବଡ଼ ପାହିଆ ଓ ଛୋଟ ପାହିଆ ଅଧିକାରୀ ଅଛନ୍ତି । ସେଠାରେ ମଧ୍ୟ ଈର୍ଷାର ପ୍ରସାର ଅଛି । ପୁନଶ୍ଚ ପୁଣ୍ୟଫଳ ସରିଗଲେ ଫେର ମନୁଷ୍ୟ ଏହି ସଂସାରରେ ଜନ୍ମ, ଜରା, ମରଣ ଓ ବ୍ୟାଧିଜନିତ ଦୁଃଖ ଭୋଗକରେ । ତେଣୁ ଦେଖିଲେ- ସ୍ୱର୍ଗରେ ମଧ୍ୟ ଚିରନ୍ତନ ସୁଖ ନାହିଁ । ତେଣୁ ସେ ଉପାୟ ନିର୍ଦ୍ଧାରଣ କରିବାରେ ଚେଷ୍ଟାକଲା । ଏବଂ ଦେଖିଲା ଯେ, ମନୁଷ୍ୟ ଯାହା କରେ, ତାହା କର୍ମ, ଅକର୍ମ ଓ ବିକର୍ମ । ସେ ଅକର୍ମ ଓ ବିକର୍ମକୁ ଛାଡ଼ି କର୍ମକୁ ଆଶ୍ରୟ କଲା । କର୍ମ କରି ସେ ଦେଖିଲା ଯେ, ଏହା ପାଞ୍ଚ ପ୍ରକାର । ନିତ୍ୟ, ନୈମିତ୍ତିକ, କାମ୍ୟ, ପ୍ରାୟଶ୍ଚିତ୍ତ ଓ ଉପାସନା । ସେସବୁ ଆଚରଣ କରି ଅନୁଭୂତିରେ ଜାଣିଲେ ଯେ, କାମ୍ୟ କର୍ମରେ କିଛି ବିଡ଼ମ୍ବନା ଅଛି । ହେଲେ କଣ ହେବ; କାମନା ନ ରଖି ତ କେହି କାର୍ଯ୍ୟ କରନ୍ତିନାହିଁ । କାରଣ କାମନାର ମୂଳରେ ସଂକଳ୍ପ ଅଛି । ତେଣୁ ସେ ନିଜର ଜୀବନର ଘାତ ପ୍ରତିଘାତ ପରେ ଠିକ କଲା, କାର୍ଯ୍ୟ କରିବାକୁ ହେବ । ଫଳ ଆଶା ରଖିବାକୁ ହେବନାହିଁ । ତେଣୁ ସେ ନିଷ୍କାମ ଭାବରେ କାମ କରିବାକୁ ସ୍ଥିରକଲା ।

ଏପରି କାର୍ଯ୍ୟ କରି ସେ ବୁଝିପାରିଲା- ଏହା ହେଉଛି ପ୍ରକୃତ ମନୁଷ୍ୟର କର୍ତ୍ତବ୍ୟ । ଏହା କଲେ ଲୋକ ଚିରନ୍ତନ ସୁଖ ଲାଭକରିବ, କୌଣସି ବିଷୟରେ ମନରେ ଦୁଃଖ ଆସିବନାହିଁ । ତେଣୁ ସେ ନିଜ ଶକ୍ତିର ସୁନ୍ଦର ବିନିଯୋଗ କରିବାର ଉପାୟ ନିର୍ଦ୍ଧାରଣ କଲା । ସଂସାରର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ନିଜର ସ୍ୱାର୍ଥ ଛାଡ଼ି ଜଗତର ମଙ୍ଗଳ ନିମନ୍ତେ କାର୍ଯ୍ୟ କରନ୍ତି – ଏହା ମଧ୍ୟ ସବୁ କ୍ଷେତ୍ରରେ ପ୍ରଯୁଜ୍ୟ । ସାଂସାରିକ ଜୀବନରେ ଏହାର ଭୂରିଭୂରି ପ୍ରମାଣ ମିଳୁଛି । ରାଜନୀତି କ୍ଷେତ୍ରରେ ଯେଉଁ ନାୟକ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶର ମଙ୍ଗଳ ନିମିତ୍ତ ପ୍ରାଣ ଉତ୍ସର୍ଗ କରନ୍ତି, ସେ ହୁଅନ୍ତି ନାୟକ । ସେ ନିଜର ଶକ୍ତିକୁ ଯଥାସମ୍ଭବ ନିୟୋଜିତ କରନ୍ତି । ଏସବୁ ନିର୍ଭର କରେ ଶିକ୍ଷା ଉପରେ । ଯେଉଁ ଲୋକର ଆତ୍ମଅଧିକାର ନାହିଁ, ସେ ନିଜ ଶକ୍ତିର ଚାଳନା

କରିପାରେନାହିଁ । ସେ ନିଜର ଶରୀରସ୍ଥ ରିପୁମାନଙ୍କଦ୍ୱାରା ଚାଳିତ ହୁଏ । ପ୍ରଥମେ ଆତ୍ମାଧିକାର ଲାଭ କରିବାକୁ ସାବଧାନ ହେବାକୁ ପଡ଼ିବ । ମହାଭାରତର ପଞ୍ଚପାଣ୍ଡବଙ୍କ ଉଦାହରଣ ଏଠାରେ ପ୍ରଯୁଜ୍ୟ । ପ୍ରଥମେ ଏହି ସଂସାରରୂପ ଯୁଦ୍ଧ କ୍ଷେତ୍ରରେ ସ୍ଥିର ହୁଅ । ଯୁଧିଷ୍ଠିର ହୁଅ । ଯୁଧିଷ୍ଠିର ହେଲେ ଅନ୍ୟାୟ, ପାପ ପ୍ରତି ଭୀମ ଦୃଷ୍ଟିଦେଇ ଭୀମସ୍ୱରୂପ ଧାରଣ କରେ । ତହୁଁ ତୁମର ହୃଦୟ ସତ୍ତ୍ୱମୟ ହେବ । ସେ ଅର୍ଜ୍ଜୁନ ହୋଇଯିବ । ବକ୍ଷ "ଧବଳୋଽର୍ଜ୍ଜୁନ" ତୁମର ହୃଦୟ ସତ୍ୱମୟ ହେବ । ରଜ ନାଲି ଓ ତମ କଳାଭାବ ତୁମ ହୃଦୟରେ ରହିବନାହିଁ । ତାପରେ ଜଗତ ତୁମର ନିଜର ହେବ ଏବଂ ତୁମର କୁଳାଭିମାନ ରହିବ ନାହିଁ । ତୁମେତ ଜଗତ୍- ଅଭିନ୍ନ ହୋଇ ନକୁଳ ହେବ । ନକୁଳତ୍ୱ ପରେ ତୁମେ ଦେବତ୍ୱ ପ୍ରାପ୍ତ ହୋଇ ସହଦେବ ହେବ । ଏହି ମହାଶିକ୍ଷାକୁ ଦୃଷ୍ଟିକରି ଏହି ଯୁଦ୍ଧରେ (ମହାଭାରତୀୟ) ବୀର ପାଳଟିବାକୁ ହେବ । ତେବେ ଯାହା ମାୟାନ୍ଧ ଧୃତରାଷ୍ଟ୍ର(ବିଷୟାଶକ୍ତ)ର ପିଲା, ସେ ମନ୍ଦମାନର ଲୋପକରି ସଂସାରରେ ଶାନ୍ତି ଆଣିବ ।

ତହୁଁ ଆତ୍ମଶକ୍ତିକୁ ପ୍ରକାଶ କରିବାକୁ ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହେବ । ଅର୍ଥାତ୍ ଯେଉଁ ସକାଶେ ପାଦସ୍ଖଳନ ହୋଇଅଛି- ତତ୍‌ସକାଶେ ଅନୁତର, ଦୃଢସଂକଳ୍ପ ପୂର୍ବକ ପ୍ରକୃତ[illegible] ଅବଲମ୍ବନ କର । ସେହି ଚିତ୍‌ଶକ୍ତି -ବ୍ରହ୍ମ । ପ୍ରାଚୀନ ଶକ୍ତିର ଉପାସନା କର, ଅର୍ଥାତ୍ ତାହାର ପୂର୍ଣ୍ଣ ବିକାଶ କରିବା ନିମନ୍ତେ ଆତ୍ମ ନିୟୋଜନ କର ।

ଶକ୍ତିପୂଜା ମାନବ ତାର ଜୀବନର ପ୍ରାକ୍‌କାଳରୁ କରି ଆସିଅଛି । ବେଦରେ ଦେବୀ ବାକ୍‌ଶକ୍ତି କହୁଛନ୍ତି- ମୋଦ୍ୱାରା ଦେବତାମାନଙ୍କ ଦେବତ୍ୱ । ମୋଦ୍ୱାରା ସମସ୍ତ ପ୍ରାଣୀ ପ୍ରାଣବନ୍ତ । ମୋଦ୍ୱାରା ସମସ୍ତ କାର୍ଯ୍ୟ ସମ୍ପାଦିତ ହୁଏ । ମୁଁ ଯାହା ଇଚ୍ଛାକରେ, ତାହା କରେ ।

ରାମଚନ୍ଦ୍ର ସ୍ୱ ଶକ୍ତି ପୂଜାକରି ଅର୍ଥାତ ସ୍ୱ ଶକ୍ତି ଆହରଣ କରି ପାପର ପ୍ରତୀକ ରାବଣକୁ ମାରିବାରେ ସମର୍ଥ ହୋଇଥିଲେ । ମାର୍କଣ୍ଡ ପୁରାଣରେ, ଦେବୀ ଭାଗବତରେ କାଳୀପୁରାଣାଦିରେ ଦେବୀଙ୍କ ମହିମା ଆଖ୍ୟାତ । ବାଲ୍ମିକୀ ରାମାୟଣରେ ଲିଖିତ ଅଛି ଯେ, ଅଗସ୍ତି ଋଷି ରାମଚନ୍ଦ୍ରଙ୍କୁ ଅରଣ୍ୟରେ ବ୍ରହ୍ମଶକ୍ତି ଦାନ କରିଥିଲେ । ଯେତେବେଳେ ରାବଣକୁ ମାରି ନ ପାରି ଦୁଃଖିତ ହୋଇ ବସିଛନ୍ତି, ଏପରି ସମୟରେ ଅଗସ୍ତି ଋଷି ତାଙ୍କୁ କହିଛନ୍ତି- ଆପଣ ତ ଅବତୀର୍ଣ୍ଣ ହୋଇଛନ୍ତି ରାବଣବଧ ନିମିତ୍ତ । ଆପଣ ନିଜକୁ, ଅର୍ଥାତ ନିଜର ସ୍ୱରୂପଭୂତ ଆଦିତ୍ୟ ପ୍ରସନ୍ନ କରନ୍ତୁ । ଆତ୍ମଶକ୍ତି କଳନା କଲେ ଆପଣ ଆପଣଙ୍କ ଶତ୍ରୁକୁ ନାଶ କରିପାରିବେ । ମାର୍କଣ୍ଡେୟପୁରାଣରେ ଦେବୀଙ୍କ ପ୍ରଶସ୍ତି ଅଛି । ଦେବୀଙ୍କ ପ୍ରଶସ୍ତି ଆଖ୍ୟାନ ମାର୍କଣ୍ଡ ପୁରାଣ ହିଁ ପ୍ରାମାଣିକ । ସେଥିରେ ମହିଷା ବଧାଦି ଅଛି, କିନ୍ତୁ ରାମଚନ୍ଦ୍ରଙ୍କଦ୍ୱାରା ଦେବୀ ପ୍ରସନ୍ନ ହେବା ଏବଂ ସେହି ଦେବୀଙ୍କ ବଳରେ ରାବଣକୁ ବଧ କରିବା ଲିଖିତ ନାହିଁ । ବାଲ୍ମୀକିରାମାୟଣ ବା ଆଧ୍ୟାତ୍ମରାମାୟଣରେ ନାହିଁ । ପ୍ରଥମେ ଏ ବିଷୟ ଲିଖିତ ହୋଇଛି ଦେବୀଭାଗବତରେ ଓ ପରେ କାଳିକାପୁରାଣରେ । ସେ ଯାହା ହେଉ, ଦେବୀ ହେଉଛନ୍ତି ବିଷ୍ଣୁଶକ୍ତି । କାରଣ ବିଷ୍ଣୁ ପାଳକ, ରକ୍ଷକ । ସଂସାରେ ସ୍ଥିତି

ଉଦ୍ଦେଶ୍ୟରେ ବିଷ୍ଣୁ ଉପାସ୍ୟ ଓ ତାଙ୍କ ଶକ୍ତି ଉପାସ୍ୟା । ଆମ ଉତ୍କଳରେ ଦୁର୍ଗାମାଧବ ଉଚ୍ଚାରଣକରି ଲୋକେ ନିଜର କାର୍ଯ୍ୟରେ ଅଗ୍ରସର ହୁଅନ୍ତି । କାରଣ ଦୁର୍ଗତି ନାଶକରନ୍ତି ଦେବୀ ଭଗବତୀ । ବିଷ୍ଣୁଶକ୍ତି ଦୁର୍ଗା ଦୁରିତ ନାଶକଲେ ଲୋକ ଲକ୍ଷ୍ମୀବନ୍ତ ଓ ଐଶ୍ୱର୍ଯ୍ୟବନ୍ତ ହୁଏ । ତନ୍ହୁଁ ମାଧବ- ଲକ୍ଷ୍ମୀ ବିଷ୍ଣୁ ଆଶ୍ରୟଣୀୟ । ଦେବୀଙ୍କୁ ପ୍ରସନ୍ନ କରିଥିଲେ ପ୍ରଥମରେ ରାମଚନ୍ଦ୍ର କିଷ୍କିନ୍ଧ୍ୟାରେ । ନାରଦ ପୌରହିତ୍ୟ କରିଥିଲେ । ନବରାତ୍ର ବ୍ରତ ରାମ ଓ ଲକ୍ଷ୍ମଣ ଉଭୟ ସେଠାରେ ପାଳନ କରିଥିଲେ । ଦେବୀ ଅଷ୍ଟମୀ ରାତ୍ରରେ ଆବିର୍ଭୂତା ହୋଇ କହିଲେ, 'ମୁଁ ପ୍ରସନ୍ନା ହେଲି । ରାମଚନ୍ଦ୍ର ତୁମେ ରାବଣ ଓ କୁମ୍ଭକର୍ଣ୍ଣଙ୍କୁ ମାରିବ, ଲକ୍ଷ୍ମଣ ଇନ୍ଦ୍ରଜିତକୁ ମାରିବ । ଏଠାରେ କିଷ୍କିନ୍ଧ୍ୟାରେ ବିଧିପୂର୍ବକ ଏ ବ୍ରତ ପାଳନ କଲେ, ଚୈତ୍ରମାସରେ ମୋର ପୂଜା ପ୍ରୀତିପୂର୍ବକ କରିବ । ଦେବୀ ଦୁର୍ଗା ଶକ୍ତି- ସ୍ୱରୂପିଣୀ । ଯେତେବେଳେ ସଂହାର କର୍ତ୍ତ୍ରୀ, ସେତେବେଳେ ସେ ରୁଦ୍ରପତ୍ନୀ ଅର୍ଥାତ୍ ରୁଦ୍ରଶକ୍ତି; ଯେତେବେଳେ ସୃଷ୍ଟି କରନ୍ତି, ସେତେବେଳେ ସେ ବ୍ରହ୍ମାଙ୍କ ଶକ୍ତି ଅର୍ଥାତ୍ ପତ୍ନୀ । ବିଷ୍ଣୁ, ଶିବ, ବ୍ରହ୍ମାଙ୍କୁ ଏକ ଦେବରୂପେ ଗ୍ରହଣ କରିବାକୁ ହେବ । ଭେଦରେ ସେ ବିଭିନ୍ନ । ଅତ୍ରି ଭଗବାନଙ୍କୁ ପୁତ୍ରରୂପେ ପ୍ରାପ୍ତ ହେବାକୁ ତପସ୍ୟା କରିଥିଲେ । ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ଭଗବାନ ତ୍ରିରୂପରେ, ଅର୍ଥାତ୍ ବ୍ରହ୍ମା, ଶିବ ଓ ବିଷ୍ଣୁ ରୂପରେ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ସେ ଆଶ୍ଚର୍ଯ୍ୟ ହୁଅନ୍ତେ ସେ ତିନିମୂର୍ତ୍ତି କହିଲେ, "—ତିନିହେଁ ଏକ । ତନ୍ହୁଁ ବିଷ୍ଣୁ ଦତ୍ତାତ୍ରେୟ ରୂପେ, ଶିବ ଦୁର୍ବାଋଷି ରୂପେ ଓ ବ୍ରହ୍ମା ଚନ୍ଦ୍ରରୂପେ ତାଙ୍କର ପୁତ୍ରତ୍ୱ ବରଣ କଲେ । ଏହି ସଂସାର ଏକ ଶକ୍ତିଦ୍ୱାରା ଚାଳିତ । ଶକ୍ତି କହିଲେ, ଶକ୍ତିମାନ ସ୍ୱୀକାର କରିବାକୁ ହେବ । ତନ୍ହୁଁ ଏହି ଶକ୍ତିକୁ ଭାଗବାନଙ୍କ ଶକ୍ତି କହନ୍ତି । ସେହି ଶକ୍ତି ସର୍ବଜୀବରେ ବିଦ୍ୟମାନ । ତାର ପରିଚୟ ନିମିତ୍ତ ସାଧନା କରିବାକୁ ହେବ । ତନ୍ହୁଁ ମନୁଷ୍ୟ ଦେବତ୍ୱ ଲାଭ କରିବ ।

# ଧର୍ମ ସଂସ୍ଥାନ

ଭାରତୀୟ ଆର୍ଯ୍ୟମାନେ ପ୍ରଥମତଃ ପ୍ରକୃତିର ବିଶାଳ ତେଜୋମୟ ତଥା ଶକ୍ତିମାନ ପଦାର୍ଥମାନଙ୍କୁ ଦୃଷ୍ଟିକରି ସେମାନଙ୍କୁ ଦେବତାରୂପେ ଗ୍ରହଣ କଲେ । ମନୁଷ୍ୟ ତାହାର ସୃଷ୍ଟି କାଳରୁ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ନିମିତ୍ତ ଚେଷ୍ଟିତ ହୋଇ ନିଜର ଅପାରଗତା ହେତୁ ସେ ସେହି ପ୍ରକୃତିସ୍ଥ ଶକ୍ତିମନ୍ତଙ୍କୁ ଦେବତାଜ୍ଞାନରେ ସହାୟତା ଲୋଡ଼ିଲା । ସେ ପ୍ରଥମେ ପୃଥିବୀ ଓ ସ୍ୱର୍ଗର ଦେବତାରୂପେ ବରୁଣଦେବଙ୍କୁ ଓ ପରେ ନିଜକୁ ବିପଦରୁ ରକ୍ଷା କରିବା ନିମିତ୍ତ ଇନ୍ଦ୍ରଦେବଙ୍କୁ ନିଜର ରକ୍ଷକ ରୂପେ ସ୍ତୁତିକଲା । ଏହିପରି ସେ ଅଗ୍ନି, ସବିତା, ବିଷ୍ଣୁ, ରୁଦ୍ରଙ୍କୁ ନିଜର ରକ୍ଷକରୂପେ ମଣି ତାଙ୍କର ସ୍ତୁତିଗାନ କରିବାରେ ଆତ୍ମସନ୍ତୋଷ ଲାଭକଲା । ସେ ଯେଉଁ ଦେବତାର ସ୍ତୁତି କରିଛି, ତାହାକୁ ପରମେଶ୍ୱର ରୂପେ ବିବେଚନା କରିଛି । ଏହିପରି ସେହି ଆର୍ଯ୍ୟ ସ୍ତୁତି କରିକରି କେତେକ ସମୟ ଅତିବାହିତ କଲାପରେ ଅନାର୍ଯ୍ୟମାନଙ୍କର ସଂଘର୍ଷରେ ଆସି ସେ ଅନାର୍ଯ୍ୟ ଦେବଦେବୀଙ୍କୁ ମଧ୍ୟ ନିଜର ସ୍ତୁତ୍ୟ ରୂପେ ଗ୍ରହଣ କଲା ଏବଂ ତଦ୍ଦ୍ୱାରା ଅନାର୍ଯ୍ୟମାନଙ୍କୁ ନିଜର ବଶୀଭୂତ କରିବାରେ ସମର୍ଥ ହୋଇଥିଲା । ଅନାର୍ଯ୍ୟମାନଙ୍କ ଦେବତା, ଭୂତପ୍ରେତ, ଇନ୍ଦ୍ରଜାଲ, କୁହୁକ ପ୍ରଭୃତି ଗ୍ରହଣ କଲା ଏବଂ ସେହି କୁହୁକ ଇନ୍ଦ୍ରଜାଲ ପ୍ରଭୃତି ସେ ପରେ ତାର ଯୋଗ ଆଦି ସାଧନାରେ କେତେକ ପରିମାଣରେ ଗ୍ରହଣ କଲା । ଏହା ପରେ ଆର୍ଯ୍ୟ ଦେବତାଙ୍କର ପ୍ରୀତି ନିମିତ୍ତ ଯଜ୍ଞାଦି ସାଧନାରେ ଅର୍ଥର ବିନିଯୋଗ ଆବଶ୍ୟକ । ଯେଉଁମାନେ ସେପରି ଯଜ୍ଞ କରିବାରେ ଅସମର୍ଥ ହେଲେ, ସେମାନେ ଦେଶର ସାଧାରଣ ଲୋକ । ଏ ସାଧାରଣମାନେ ଧନୀ ଲୋକଙ୍କଠାରୁ ବିଶେଷ ଚିନ୍ତାଶୀଳ । କାରଣ ଅଭାବଗ୍ରସ୍ତ ଲୋକହିଁ ଜଗତର ଯାବତୀୟ ଉନ୍ନତି ସାଧନ କରିବାରେ ସମର୍ଥ । ତହୁଁ ସେମାନେ ଯଜ୍ଞସାଧନ କର୍ମରେ ଅସମର୍ଥ ହୋଇ ଜ୍ଞାନ ଅନୁଶୀଳନରେ ବ୍ରତୀ ହେଲେ । ତାହାରି ଫଳରେ ସେମାନେ ଉପନିଷଦ ଓ ଶାସ୍ତ୍ର ସୃଷ୍ଟି କଲେ ।

ବେଦରେ ଯେଉଁ ସ୍ତୁତିମାନ ଦେଖୁ, ସେଥିରେ ନିଜର ଅସମର୍ଥତା ଦୃଷ୍ଟେ ଭକ୍ତିର ମୂଳବୀଜର ରୋପିତ ହେବାର ଉପକ୍ରମ ହୋଇଥିଲା । ଅବଶ୍ୟ ଯାଗ ଯଜ୍ଞାଦି ସମ୍ପାଦନରେ ଭକ୍ତି ଗୌଣଭାବରେ ବିଦ୍ୟମାନ ଥିଲା । ଜ୍ଞାନଚର୍ଯ୍ୟାରେ ମଧ୍ୟ ଶ୍ରଦ୍ଧାର ବୀଜ ନିହିତ ଥିବା ସୁନିଶ୍ଚିତ । ଜ୍ଞାନଚର୍ଯ୍ୟାର ସଙ୍ଗେସଙ୍ଗେ ଭକ୍ତି ଉଦ୍ଭବ ହେବା ଯୁକ୍ତିଯୁକ୍ତ । କ୍ରମେକ୍ରମେ ଜ୍ଞାନଚର୍ଯ୍ୟାର ସହିତ ଭକ୍ତିଚର୍ଯ୍ୟା ଅବଲମ୍ବିତ ହେଲା । ଶ୍ୱେତାଶ୍ୱେତର ଉପନିଷଦରେ ଭକ୍ତିର ସୁନ୍ଦର ସହଚର୍ଯ୍ୟା ପ୍ରକାଶମାନ ହୁଏ । ଆମ୍ଭେମାନେ ଯଦିଚ ନାରାୟଣ, ବାସୁଦେବ, ଦୁର୍ଗା, ଗଣେଶଙ୍କର ନାମ ବେଦରେ ଉପାସ୍ୟ ଦେବତାରୂପେ

ଦେଖିବାକୁ ନ ପାଉଁ, ପରବର୍ତ୍ତୀ ଯୁଗରେ ଉପନିଷଦ ଛାନ୍ଦୋଗ୍ୟଉପନିଷଦରେ ଦେବକୀ ପୁତ୍ର ବାସୁଦେବ ଶ୍ରୀକୃଷ୍ଣଙ୍କର, 'କେନୋପନିଷଦ'ରେ ଉମାଙ୍କର, ଏବଂ 'ଶ୍ୱେତାଶ୍ୱେତରଉପନିଷଦ'ରେ ଶିବଙ୍କର ନାମୋଲ୍ଲେଖ ପାଉ । ବେଦରେ ବିଷ୍ଣୁ, ସୂର୍ଯ୍ୟ, ରୁଦ୍ର ଏବଂ ଗୌଣ ଭାବରେ ଦେବୀ ଓ ଗଣପତିଙ୍କର ବିଷୟ ପ୍ରାପ୍ତ ହେଉ । ଉପନିଷଦ ଯୁଗ ପରେ ଐତିହାସିକ, ପୌରାଣିକ ଯୁଗରେ- ଅର୍ଥାତ୍ ମହାଭାରତ, ରାମାୟଣ, ମତ୍ସ୍ୟ, ବାୟୁ ଆଦି ପୁରାଣ ଯୁଗରେ ପଞ୍ଚଦେବତାଙ୍କର ଉପାସନା ପ୍ରବର୍ତ୍ତନ ହେଲା । ଶାସ୍ତ୍ରାଦି ଆଲୋଚନା କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ, ରୁଦ୍ର ପ୍ରଥମରେ ଅନାର୍ଯ୍ୟମାନଙ୍କର ଉପାସ୍ୟ ଦେବତା ଥିଲେ । ପରେ ସେ ଆର୍ଯ୍ୟଙ୍କର ଉପାସ୍ୟ ହେଲେ । ଶାସ୍ତ୍ରରେ ଅଛି-

"ଇତିହାସ ପୁରାଣାଭ୍ୟାଂ ବେଦାର୍ଥମୁପବୃଂହୟେଦ୍ ।"

ଅର୍ଥାତ୍ ବେଦରେ ଯେଉଁ ବିଷୟ ସଂକେତ ମାତ୍ର ଦିଆହୋଇଛି ବା ଯେଉଁ ବିଷୟ ବେଦରେ ନାହିଁ, ତାହା ପୁରାଣ ଇତିହାସରୁ ଲାଭ କରିବ । ଶିବଙ୍କର ପ୍ରଥମେ ଯଜ୍ଞର ଭାଗ ନଥିଲା । ମହାଭାରତ ବନପର୍ବରେ ସ୍ପଷ୍ଟ ଲିଖିତ ଅଛି ଯେ, - ଏହି ଆମ୍ଭମାନଙ୍କର ପବିତ୍ର ଉତ୍କଳଖଣ୍ଡର ସେହି ପୁଣ୍ୟମୟ ଧାମ ଯାଜପୁର କ୍ଷେତ୍ରର ଧର୍ମ-ଦେବତାମାନଙ୍କ ସାହାଯ୍ୟରେ ଯଜ୍ଞ ଅନୁଷ୍ଠାନ କରିଥିଲେ । ରୁଦ୍ର ବଳାତ୍କାରରେ ହବିର୍ଭାଗ ଅପହରଣ କରିବାରୁ ଦେବତାମାନେ ତାଙ୍କୁ କହିଲେ, "ଆଜିଠାରୁ ତୁମ୍ଭଙ୍କୁ ଉତ୍ତମ ଭାଗ ପ୍ରଦାନ କରାଯିବ ।" ଦକ୍ଷଯଜ୍ଞର ଉପାଖ୍ୟାନରୁ ମଧ୍ୟ ଏହି ବିଷୟ ପ୍ରତୀତ ହୁଏ ।

ଶାସ୍ତ୍ର ଆଲୋଚନା କରି ଜଣାଯାଏ ଯେ, ପ୍ରଥମେ ବିଷ୍ଣୁ ଆର୍ଯ୍ୟଙ୍କଦ୍ୱାରା ପୂଜିତ ହେଲେ । ପରେ ଶିବ ପୂଜ୍ୟ ରୂପେ ଗୃହୀତ ହେଲେ । କାଳକ୍ରମେ ଶିବ ଏବଂ ବିଷ୍ଣୁ ଭାରତରେ ପ୍ରଧାନ ଉପାସ୍ୟ ରୂପେ ପୂଜିତ ହେଲେ । ଦୁର୍ଗାଙ୍କ ବିଷୟ ବିଚାର କଲେ ପ୍ରତିପନ୍ନ ହୁଏ ଯେ, ଦେବୀ ଭଗବତୀ ବିଷ୍ଣୁଶକ୍ତି ଏବଂ ଶିବପ୍ରିୟା । ଏ ରହସ୍ୟ ଭେଦ କରିବା ଅତି କଠିନ । ଉତ୍କଳର ଲୋକେ ଯାତ୍ରା ଅବସରରେ 'ଦୁର୍ଗାମାଧବ' ଉଚ୍ଚାରଣ କରନ୍ତି । ସେହି ଦୁର୍ଗା ବିଷ୍ଣୁଙ୍କର ପତ୍ନୀ, ଭଗିନୀ ଏବଂ ମାତାରୂପେ ପୁରାଣମାନଙ୍କରେ ବର୍ଣ୍ଣିତ । ଚଣ୍ଡୀପାଠରେ ଏହି ଉକ୍ତିର ରହସ୍ୟ ଭେଦ ହେବ । କିନ୍ତୁ ସେ ଯାହାହେଉ, ଦୁର୍ଗା ବିଷ୍ଣୁଙ୍କର ଶକ୍ତି । ଏହା ସର୍ବ ପୁରାଣ ସମ୍ମତ ଯେ ଶକ୍ତି ସେ ଶକ୍ତିମାନଙ୍କଠାରୁ ଅଭିନ୍ନ ଅଟନ୍ତି । 'ଅତ୍ରି ଉପାଖ୍ୟାନ'ରୁ ସ୍ପଷ୍ଟ ଜଣାଯାଏ, ବ୍ରହ୍ମା ଓ ବିଷ୍ଣୁ ଓ ଶିବ ଏକ ବ୍ୟକ୍ତି । ଗୁଣ ଭେଦରେ ତ୍ରିରୂପଧାରୀ । ଭଗବାନ ସତ୍ତ୍ୱ ଗୁଣାଶ୍ରିତ ହେଲେ ବିଷ୍ଣୁ ଏବଂ ତମୋଗୁଣାଶ୍ରିତ ହେଲେ ଶିବ । ସେ ସତ୍ତ୍ୱଗୁଣ ଅର୍ଥାତ୍ ବିଶୁଦ୍ଧ ସତ୍ତ୍ୱ-ସେ ତମ- ବିଶୁଦ୍ଧତମ । ତହୁଁ ସତ୍ତ୍ୱ ଓ ତମର ପ୍ରାର୍ଥକ୍ୟ ଉପଚାର ମାତ୍ର । 'ନାରଦପୁରାଣ'ରେ ସ୍ପଷ୍ଟ ଉକ୍ତି ଅଛି ଯେ, ଶିବ ଓ ବିଷ୍ଣୁ ଅଭେଦ୍ୟ ଶରୀର । ତାହା ସୁନ୍ଦର, ତାହା ଉତ୍କଳଖଣ୍ଡରେ ପରିଦର୍ଶିତ । ଭୁବନେଶ୍ୱରର ଲିଙ୍ଗରାଜ ତାହାର ଜ୍ୱଳନ୍ତ ନିଦର୍ଶନ । ଏହି ଉତ୍କଳଖଣ୍ଡ ଅତି ପ୍ରାଚୀନ । କାରଣ ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ, ପରମ ବୈଷ୍ଣବ ଗୟାସୁରର ଶରୀର ଅତି ପବିତ୍ର ଏବଂ ତାହାର ଶରୀର ଉପରେ ବ୍ରହ୍ମା ଯଜ୍ଞ ନିଷ୍ପାଦନ କରିଥିଲେ ଏବଂ ତାହାର ଶରୀରର ଅବସ୍ଥିତି, ଯଥା-ଶିରଦେଶ ଗୟା, ନାଭି ଯାଜପୁର, ପାଦ ପୀଠାପୁର । ଏହି ଅବସ୍ଥିତିରୁ ପ୍ରତୀତ ହୁଏ ଯେ,

ଗୟାସୁରର ଶରୀରର ପ୍ରାୟ ୧୨ ଅଣା ଏହି ଉତ୍କଳଖଣ୍ଡରେ ଅବସ୍ଥିତ । ଲୋକଙ୍କ ଧାରଣା ଯେ ବୁଦ୍ଧଙ୍କ ପରେ ବୁଦ୍ଧଗୟାର ପ୍ରଶସ୍ତି । କିନ୍ତୁ ବେଦର ଟୀକାକାର ଯାସ୍କାଚାର୍ଯ୍ୟ, ଯେ କି ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପୂର୍ବରେ ଜୀବିତ ଥିଲେ, ସେ ତାଙ୍କ ପୂର୍ବବର୍ତ୍ତୀ ବେଦ ଟୀକାକାର ଔର୍ଣ୍ଣନାଭଙ୍କ ଉକ୍ତି ଉଦ୍ଧାର କରି କହିଛନ୍ତି- "ଗୟଃଶୀର୍ଷେ" । ଏଥିରୁ ପ୍ରତିପନ୍ନ ହୁଏ, ଖ୍ରୀ:ପୂ: ଅନ୍ତତଃ ହଜାରବର୍ଷ ପୂର୍ବେ ଗୟୋତ୍କଳ ପବିତ୍ର ସ୍ଥାନରୂପେ ପରିଗୃହୀତ ହୋଇଥିଲା । ଭାରତରେ ଆର୍ଯ୍ୟଙ୍କଦ୍ୱାରା କାଳର କୁଟିଳଗତିରେ ଲୋକେ ଯଜ୍ଞ ଛଳରେ ନାନାବିଧ ପଶୁ ବଧକରିବା ହେତୁ ହିଂସାରୁ ତାଣ୍ଡବ ସୃଷ୍ଟି ହେଲା । ତହୁଁ ସେହି ଆଚାର୍ଯ୍ୟଙ୍କ ମଧ୍ୟରେ ନିବୃତ୍ତମାର୍ଗର ଲୋକେ ତା'କୁ ପ୍ରତିରୋଧ କରିବାକୁ ପ୍ରୟାସୀ ହେଲେ । ଏ ପ୍ରୟାସ ଅତି ପ୍ରାଚୀନକାଳରୁ ହୋଇଆସୁଅଛି । ମହାତ୍ମା ଗାନ୍ଧୀଙ୍କଦ୍ୱାରା ଭାରତ ସ୍ୱାଧୀନତା ଲାଭ କଲା ଭଳି, ମହାବୀର ଏବଂ ବୁଦ୍ଧଙ୍କଦ୍ୱାରା ଅହିଂସା ଧର୍ମ ସୁନ୍ଦର ଭାବରେ ଭାରତରେ ସୁପ୍ରତିଷ୍ଠିତ ହେଲା ।

ଉତ୍କଳରେ ସନାତନ ଆର୍ଯ୍ୟଧର୍ମ ପରେ ଜୈନଧର୍ମର ପ୍ରଚାର ହୁଏ । ଋଷଭଦେବ ପରବର୍ତ୍ତୀ ଯୁଗରେ ବିଷ୍ଣୁ ଅବତାର ରୂପେ ସ୍ୱୀକୃତହେଲେ । ସେ ଭାରତ ପର୍ଯ୍ୟଟନ କରିଥିଲେ ଏବଂ ତାଙ୍କର ମୂର୍ତ୍ତି ଜଗନ୍ନାଥ ମୂର୍ତ୍ତି ରୂପେ କେତେକ ଲୋକ କଳ୍ପନା କରନ୍ତି । ଉତ୍କଳରେ ପୂଜିତ ହେଉଥିବା ଋଷଭଦେବଙ୍କ ମୂର୍ତ୍ତି ମଗଧ ରାଜ ତାହା ବଳାତ୍କାରରେ ଗ୍ରହଣ କରିବା ଏବଂ ଖାରବେଳଙ୍କଦ୍ୱାରା ତାହା ପୁନଃ ପ୍ରତ୍ୟାହୃତ ହୋଇ ଉତ୍କଳକୁ ଆଣିବା ଇତିହାସ ପ୍ରସିଦ୍ଧ । କେତେକ ଲୋକ ପରେଶନାଥଙ୍କ ମୂର୍ତ୍ତି ବୋଲି କହନ୍ତି । ଜୈନଧର୍ମ ପ୍ରଥମେ ପ୍ରବଳ ଭାବରେ ଉତ୍କଳରେ ପ୍ରକଟିତ ହେଲା ପରେ ବୌଦ୍ଧଧର୍ମ ଉତ୍କଳ ଖଣ୍ଡରେ ଆସି ପ୍ରବେଶ ଲାଭକଲା । କ୍ଷେମରାଜ ମହାମୁନି ବୁଦ୍ଧଙ୍କର ବାମ ଦନ୍ତ ଆଣି କଳିଙ୍ଗ ରାଜାଙ୍କୁ ପ୍ରଦାନ କରିବା, କଳିଙ୍ଗର ତାହା ପୂଜିତ ହେବା ଏବଂ କଳିଙ୍ଗ ରାଜାଙ୍କ ପୌତ୍ର ଗୁହଦେବଙ୍କଦ୍ୱାରା ସେହି ଦନ୍ତ ସିଂହଳକୁ ନିଜର କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ଦ୍ୱାରା ପ୍ରେରିତ ହେବା, ଦାଠାବଂଶରୁ ଜଣାଯାଏ । ସେ ଯା'ହେଉ, ଏଥିରୁ ଜଣାଯାଏ- ଜୈନଧର୍ମ ପରେ ବୌଦ୍ଧଧର୍ମ ଉତ୍କଳରେ ପ୍ରଚଳ ଥିଲା ।

ଅଶୋକ କଳିଙ୍ଗ ଯୁଦ୍ଧ ପରେ ବୌଦ୍ଧଭିକ୍ଷୁ ଉପଗୁପ୍ତଙ୍କଦ୍ୱାରା ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ । ଦେଶ ବିଦେଶରେ ବୌଦ୍ଧ ଧର୍ମର ପ୍ରବଳ ପ୍ରଚାର ଏହି କଳିଙ୍ଗ ଦେଶ ହିଁ ମୂଳ କାରଣ । ଅଶୋକ ଏହି କଳିଙ୍ଗରେ ଦୁଇଗୋଟି ଅନୁଶାସନ- ଧଉଳି ଏବଂ ଜଉଗଡ଼ରେ ସ୍ଥାପନ କରିଥିଲେ ଏବଂ ମହାବିହାର ସ୍ଥାପିତ କରିଥିଲେ । ଅଶୋକଙ୍କର ପ୍ରାୟ ୮୦/୯୦ ବର୍ଷ ପରେ ଦିଗ୍‌ବିଜୟୀ ମହାବୀର, ଖ୍ୟାତନାମା ଜୈନ ସମ୍ରାଟ ଖାରବେଳ ମଗଧ ଆକ୍ରମଣ କରି ଉପଯୁକ୍ତ ପ୍ରତିଶୋଧ ନେଇଥିଲେ । ଏ ଭାରତରେ ପ୍ରାୟ ୧୨ ପଣ ନିଜର କରାୟତ୍ତ କରିପାରିଥିଲେ । ସେ ଜୈନ ଥିଲେ ହେଁ ସନାତନ ଆର୍ଯ୍ୟଧର୍ମର ପକ୍ଷପାତୀ ଥିଲେ । ଜୈନଧର୍ମର ପ୍ରବଳ ପ୍ରଚାର ନିମିତ୍ତ ସେ ଉପଯୁକ୍ତ ସଂବିଧାନ କରିଥିଲେ । ତହୁଁ ଜୈନଧର୍ମ ଓଡ଼ିଶାରେ ଉତ୍ତମ ରୂପେ ପ୍ରଚାରିତ ହେଲା । ଏ ଯେଉଁ ଧର୍ମ ପ୍ରଚାର କରା ହେଉଥିଲା, ତାହା ସନାତନ ଆର୍ଯ୍ୟଧର୍ମର ପ୍ରଚାର କରାହେଉ

ଥିଲା । ଖ୍ରୀଷ୍ଟୀୟ ପ୍ରାୟ ୨ୟ ଶତାବ୍ଦୀରେ ବୌଦ୍ଧଧର୍ମ କ୍ଷୀଣପ୍ରଭ ହୋଇ ପଡୁଥିଲା । ନାଗାର୍ଜୁନ ଦାକ୍ଷିଣାତ୍ୟରୁ ଆସି ବୌଦ୍ଧଧର୍ମକୁ ପ୍ରବଳ ଭାବରେ ପ୍ରଚାର କରିବାର ଉଦ୍ୟୋଗୀ ହେଲେ ଏବଂ ତାହା ମଧ୍ୟ କରିପାରିଥିଲେ । ବୌଦ୍ଧଧର୍ମର ମହାଜନ ଶାଖା ପ୍ରବର୍ତ୍ତିତ ହେଲା ଏବଂ ହିନ୍ଦୁମାନଙ୍କର ଦେବଦେବୀ ଅପ୍ରଧାନ ଦେବତା ରୂପେ ଗୃହୀତ ହେବାରୁ ତାହା ଲୋକପ୍ରିୟ ହୋଇପଡ଼ିଲା । ଏହି ବୌଦ୍ଧଧର୍ମର ପ୍ରସାର ଫଳରେ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ସଂସ୍ଥାପନ । ଶୁଭାକରକେଶରୀଙ୍କ ଦ୍ୱାରା ଚୀନ ସମ୍ରାଟଙ୍କୁ ବୌଦ୍ଧ ଧର୍ମଗ୍ରନ୍ଥ ଉତ୍କଳର ମହାପଣ୍ଡିତ ପ୍ରାଜ୍ଞଙ୍କଦ୍ୱାରା ପ୍ରେରିତ ହେବା ଇତିହାସ ପ୍ରସିଦ୍ଧ । ପ୍ରାଜ୍ଞ ଯେ କପିଶାର ଲୋକଥିଲେ, ତାହା ଇତିହାସରେ ବର୍ଣ୍ଣିତ । ସେ ଉତ୍କଳର କପିଶା, ଯାହାକି କାଳିଦାସ ରଘୁବଂଶରେ ଉଲ୍ଲେଖ କରିଛନ୍ତି । ସେ ଭାରତର ଉତ୍ତର ପୂର୍ବାଂଶର କପିଶାର ଲୋକ ନ ହେବା ସମ୍ଭବ । ସେ ଯାହେଉ, ଉତ୍କଳରେ ସେହି ସମୟରେ ବୌଦ୍ଧଧର୍ମର ମହାଯାନ ଶାଖାରୁ ବଜ୍ରଯାନ, ସହଜଯାନ, କାଳଯାନ ପ୍ରଭୃତି ଉଦ୍‌ଭୂତ ହେଲା ଏବଂ ସେଥିରେ ନୀତିଚର୍ଯ୍ୟାର ଅପଚାର ହେତୁ ଏବଂ ତାମସତନ୍ତ୍ରର ବହୁଳ ପ୍ରଚାର ହେତୁ, ତାହା ସୁଧୀ ସମାଜରେ ଅନାଦୃତ ହେଲା ଏବଂ ବୌଦ୍ଧଧର୍ମର ଦେବତାମାନେ କାଳକ୍ରମେ ହିନ୍ଦୁଧର୍ମରେ ପୂଜିତ ହେଲେ ।

ବୌଦ୍ଧଧର୍ମ ପରେ ପ୍ରାଚୀନ ଶୈବଧର୍ମ ପ୍ରବଳ ଭାବରେ ଉତ୍କଳରେ ପ୍ରଚାର ଲାଭକଲା ଏବଂ ତାହାରି ଫଳରେ ଉତ୍କଳ ଖଣ୍ଡରେ ପ୍ରାୟ ୨/୪ ଖଣ୍ଡ ଗ୍ରାମ ଅନ୍ତରରେ ଶିବ ମନ୍ଦିର ପରିଦୃଷ୍ଟ ହୁଏ । ସମୟ କ୍ରମେ ଉତ୍କଳ ଦେଶ ଶୈବ ପାଲଟି ଯାଇଥିଲା । ଅବଶ୍ୟ ଏଥିରେ ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ପ୍ରଭାବ ପଡ଼ିବା ସୁନିଶ୍ଚିତ । ବୌଦ୍ଧଧର୍ମର ଅବସାନ ପରେ ଶୈବଧର୍ମ ସାହଚର୍ଯ୍ୟରେ ଶାକ୍ତଧର୍ମର ପ୍ରଚାର ହେଲା ଏବଂ ସେହି ଶାକ୍ତଧର୍ମ ଏପରି ପ୍ରବଳ ଭାବରେ ଉତ୍କଳରେ ପ୍ରସାର ଲାଭକଲା, ଯାହା ଫଳରେ ଉତ୍କଳରେ ନାନା ଦେବୀପୀଠ ସଂସ୍ଥାପିତ ହେଲା । ଯଥା- ବିମଳା, ସାରଳା, ବିରଜା, ଚର୍ଚ୍ଚିକା, ଭଟ୍ଟାରିକା, ସମଲାଈ, ହରଚଣ୍ଡୀ, ରାମଚଣ୍ଡୀ ପ୍ରଭୃତିଙ୍କର ମୂର୍ତ୍ତି ସ୍ଥାନେ ସ୍ଥାନେ ପୂଜିତ ହେଲା । ଶିବପୂଜାର ଚିହ୍ନ ଆମ୍ଭେମାନେ ଉତ୍କଳରେ ନାନା ଶିଳାଲିପି ଓ ଦାନପତ୍ରରେ ଦେଖିବାକୁ ପାଉଁ- ଯାହାକି ୧୦ମ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚୀନ ଉତ୍କଳ ସାହିତ୍ୟରେ ମଧ୍ୟ ତାହାର ନିଦର୍ଶନ ମିଳେ । ସୂର୍ଯ୍ୟୋପାସନା ଉତ୍କଳରେ ଅତି ପ୍ରାଚୀନ । କୋଣାର୍କଠାରେ କୃଷ୍ଣଙ୍କ ପୁତ୍ର ଶାମ୍ବଙ୍କୁ ସୂର୍ଯ୍ୟପୂଜା କରିବା ମଧ୍ୟ କଥିତ ଅଛି ଏବଂ ଗଣେଶଙ୍କ ପୂଜା ମହାବିନାୟକ କ୍ଷେତ୍ରରେ ପ୍ରତିଷ୍ଠିତ । ନାରାୟଣ ବାସୁଦେବ ପୂଜା ପରବର୍ତ୍ତୀ ଯୁଗରେ ରାମ ଓ କୃଷ୍ଣ ରୂପେ ପ୍ରତିଷ୍ଠିତ ହେଲା । ବିଷ୍ଣୁ ପରବର୍ତ୍ତୀ ଯୁଗରେ ନାରାୟଣ ରୂପେ ଗୃହୀତ ହେଲେ ଏବଂ ନାରାୟଣ ରୂପରେ ଦେବକୀ ପୁତ୍ର ବାସୁଦେବ ପୂଜିତ ହେଲେ ଏବଂ ସେହି ନାରାୟଣ ରାମ ରୂପରେ ମଧ୍ୟ ପୂଜିତ ହେଲେ । କାରଣ 'ଦେବୀ ଭାଗବତ'ରେ ସ୍ପଷ୍ଟ ଲିଖିତ ଅଛି, ବିଷ୍ଣୁଙ୍କର ଅଂଶ ନାରାୟଣ, ନାରାୟଣଙ୍କ ଅଂଶ ରାମ ଓ କୃଷ୍ଣ । ଉତ୍କଳ ସାହିତ୍ୟରେ ମଧ୍ୟ ଆମ୍ଭେମାନେ ପ୍ରଥମତଃ ରାମଙ୍କ ସଂପର୍କୀୟ ସାହିତ୍ୟ ଆତ୍ମପ୍ରକାଶ ଲାଭକଲା । କୃଷ୍ଣ ଉପାସନାରେ ଆମ୍ଭେମାନେ ଦୁଇଟି ସଂପ୍ରଦାୟ

ଦେଖିବାକୁ ପାଉଁ । ଗୋଟିଏ ଜ୍ଞାନମିଶ୍ରା ଭକ୍ତି ଉପାସକ, ଅନ୍ୟଟି ଶୁଦ୍ଧା ଭକ୍ତି ଉପାସକ । ଏହି ଦୁଇ ଭକ୍ତିର ବିଷୟ ସଂସ୍କୃତ 'ବୈଷ୍ଣବ ଭାଗବତ'ରେ ସୁନ୍ଦର ଭାବରେ ବର୍ଣ୍ଣିତ ଅଛି । ଉତ୍କଳର ପଞ୍ଚଶାଖା-ବଳରାମ, ଜଗନ୍ନାଥ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ- ଏହି ମାର୍ଗର ଉପାସକ । ରାୟ ରାମାନନ୍ଦ, ଶିଖି ମହାନ୍ତି, ମାଧବ ଦାସୀ- ଭକ୍ତି ମାର୍ଗର ଉପାସକ । ବଙ୍ଗୀୟ ଷଡ଼ଗୋସ୍ୱାମୀ- ସନାତନ, ସ୍ୱରୂପ, ରଘୁନାଥ ଭଟ୍ଟ, ରଘୁନାଥ ଦାସ, ଗୋପାଳ ଭଟ୍ଟ, ଜୀବ ଗୋସ୍ୱାମୀ ଶୁଦ୍ଧାଭକ୍ତି ମାର୍ଗର ଉପାସକ । ଚୈତନ୍ୟଚନ୍ଦ୍ର ଉଭୟମାର୍ଗର ସମର୍ଥକ ଥିଲେ । ଚୈତନ୍ୟଚନ୍ଦ୍ର ଉତ୍କଳରେ ନିଜର ଅଚିନ୍ତ୍ୟ ଭେଦାଭେଦ ପ୍ରବର୍ତ୍ତନ କରି ନ ଥିଲେ । ତାହା ଉତ୍କଳର ବୈଷ୍ଣବ ପ୍ରବର ରାୟ ରାମାନନ୍ଦଙ୍କ ବିଦିତ ଥିଲା । ଚୈତନ୍ୟ କିଛି ନୂତନ ମତ ଉତ୍କଳରେ ପ୍ରଚାର କରି ନ ଥିଲେ ହେଁ ତାଙ୍କର ଉତ୍କଳରେ ଅବସ୍ଥାନ କାଳରେ ବୈଷ୍ଣବଧର୍ମ ପ୍ରବଳ ପ୍ରସାର ଲାଭ ଏବଂ ଯାହା ଫଳରେ ଅନ୍ୟାନ୍ୟ ଧର୍ମମାନ କ୍ରମଶଃ ହ୍ରାସ ଲାଭକଲା ।

ଏହି ଉତ୍କଳଖଣ୍ଡରେ ମହାତ୍ମା ଅରକ୍ଷିତ ଦାସଙ୍କ ଦ୍ୱାରା ବ୍ରାହ୍ମଧର୍ମ, ରାୟ ରାମମୋହନ ରାୟଙ୍କର ପ୍ରବର୍ତ୍ତିତ ବ୍ରାହ୍ମ ଧର୍ମର ପ୍ରାୟ ୧୦ ବର୍ଷ ପୂର୍ବ ଆତ୍ମପ୍ରକାଶ ଲାଭକରିଥିଲା । ଅବଶ୍ୟ ରାୟ ରାମମୋହନ ପ୍ରବର୍ତ୍ତିତ ବ୍ରାହ୍ମଧର୍ମ ଓ ଅରକ୍ଷିତ ଦାସଙ୍କ ବ୍ରାହ୍ମଧର୍ମର ସାମାନ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହା ପରେ ମହିମା ଗୋସ୍ୱାମୀଙ୍କଦ୍ୱାରା ମହିମାଧର୍ମ ବା କୁମ୍ଭିପଟଧର୍ମ ଉତ୍କଳରେ ପ୍ରସାରଲାଭ କଲା । ଏ ଧର୍ମର ପ୍ରଧାନ ପୋଷକ ହେଉଛନ୍ତି, ଅନ୍ଧ କନ୍ଧକବି ଭୀମ ଭୋଇ । ବ୍ରିଟିଶ ଶାସନ କାଳରେ ରାମମୋହନ ରାୟଙ୍କ ପ୍ରବର୍ତ୍ତିତ ବ୍ରହ୍ମଧର୍ମ, କେଶବଚନ୍ଦ୍ର ସେନଙ୍କଦ୍ୱାରା କିଞ୍ଚିତ ପରିବର୍ତ୍ତିତ ହୋଇ ପ୍ରଚାରିତ ହେଲା ଏବଂ ତାହା ଉତ୍କଳଖଣ୍ଡରେ ମଧ୍ୟ ପ୍ରବେଶ ଲାଭକଲା । ଏହି ରାଜତ୍ୱ କାଳରେ ଖ୍ରୀଷ୍ଟଧର୍ମ ରୋମାନ୍ କାଥିଲିକ୍ ଓ ପ୍ରୋଟେଷ୍ଟାଣ୍ଟ ଧର୍ମ ମଧ୍ୟ ପ୍ରଚାର ହେଲା । ଏଥିରେ ଆହୁରି ମଧ୍ୟ ବକ୍ତବ୍ୟ ଯେ, ମୁସଲମାନଙ୍କ ରାଜତ୍ୱକାଳରେ ମୁସଲମାନଧର୍ମ ଉପାସକମାନେ ଉତ୍କଳଖଣ୍ଡରେ ଉକ୍ତ ଧର୍ମର ପ୍ରବର୍ତ୍ତନ କଲେ ଏବଂ ସେହି ଧର୍ମର ଲୋକେ ମୁସଲମାନଧର୍ମ ପାଳନକରନ୍ତି । ସମୟ ବିଶେଷରେ କବୀର ପ୍ରଭୃତିଙ୍କଦ୍ୱାରା ମୁସଲମାନଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ ସମନ୍ୱୟ ଆଣିବା ନିମିତ୍ତ ସତ୍ୟନାରାୟଣ ପୂଜାର ପ୍ରବର୍ତ୍ତନ ହୁଏ ଏବଂ ସେହିହେତୁ ଉତ୍କଳରେ ପାଲାର ପ୍ରବର୍ତ୍ତନ । ଏହି ରୂପେ ନାନା ଧର୍ମର ପ୍ରଚାର ଓ ପ୍ରସାର ଉତ୍କଳଖଣ୍ଡରେ ହୋଇଅଛି । ପରିଶେଷରେ ବକ୍ତବ୍ୟ ଯେ, ଉତ୍କଳରେ ପ୍ରତିଷ୍ଠିତ ଜଗନ୍ନାଥ ମୂର୍ତ୍ତି ହେଉଛି, ବୌଦ୍ଧ, ଜୈନ, ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ ଓ ସୌର ଧର୍ମର ପ୍ରତୀକ । ଯେତେବେଳେ ଭାରତରେ ମୁସଲମାନ ଧର୍ମ ଓ ଖ୍ରୀଷ୍ଟିଆନ ଧର୍ମ ଭଲଭାବରେ ଆତ୍ମପ୍ରକାଶ କରି ନଥିଲା, ସେହି ସମୟରେ ଜଗନ୍ନାଥଙ୍କର ମୂର୍ତ୍ତିରେ ଏକ ମହାସମନ୍ୱୟ ଆନୀତ ହୋଇଥିଲା ।

ପ୍ରକୃତ ଧର୍ମ ଅବଲମ୍ବନରେ କୌଣସି ଧର୍ମ ପ୍ରତି ନିନ୍ଦା ପ୍ରଦର୍ଶିତ ହୁଏନାହିଁ । କାରଣ ଭାଗବତରେ ଲିଖିତ ଅଛି, ଶ୍ରଦ୍ଧା ଭାଗବତେ ଶାସ୍ତ୍ରେ ଅନିନ୍ଦମନ୍ୟତ୍ରଚ । ଏହାର ଅର୍ଥ ହେଉଛି- ଯେଉଁମାନେ ଭଗବଦ୍ ବିଶ୍ୱାସୀ, ତାଙ୍କୁ ଶ୍ରଦ୍ଧା, ସମ୍ମାନ କରିବ ଏବଂ

ଯେଉଁମାନେ ନାସ୍ତିକ, ଭଗବତ୍-ପରାୟଣ, ସେମାନେ ବିଶ୍ୱାସର ଯୋଗ୍ୟ ନୁହନ୍ତି ଏବଂ ଦେଶରୁ ବହିଷ୍କାର୍ଯ୍ୟ ।

ଶେଷରେ ବୈଷ୍ଣବ ଧର୍ମ ମହତ୍ତ୍ୱ କଥନ ଛଳରେ ବକ୍ତବ୍ୟ ଏହି ଯେ, ବୈଷ୍ଣବ ଧର୍ମ ଅତି ଉଦାର । ଏହି କୃଷ୍ଣଙ୍କ ଉପାସନାରେ ଗଣେଶ, ସୂର୍ଯ୍ୟ, ଶିବ ଓ ଦୁର୍ଗା- ଉପାସିତ ହୁଅନ୍ତି । କାରଣ ପ୍ରତ୍ୟେକ ପୂଜାରେ ଗଣେଶଙ୍କୁ ପ୍ରଥମେ ପୂଜା କରିବାକୁ ହୁଏ ଏବଂ ପରମ ଭକ୍ତ ଶ୍ରେଷ୍ଠ ଗୋପୀମାନେ ମହାଦେବ ଓ ପାର୍ବତୀଙ୍କୁ ଉପାସନା କରି କୃଷ୍ଣଙ୍କର ଅଙ୍ଗସଙ୍ଗ ଲାଭ କରିଥିଲେ । ରାଧା ମଧ୍ୟ ସୂର୍ଯ୍ୟଙ୍କୁ ପୂଜା କରିଥିଲେ । କାରଣ ସୂର୍ଯ୍ୟ ନାରାୟଣରୂପୀ । ତହୁଁ ଶେଷରେ ବକ୍ତବ୍ୟ, ଯେଉଁ ଧର୍ମାବଲମ୍ବୀ ହେଉ ପଛକେ, ଅନ୍ୟ ଧର୍ମାବଲମ୍ବୀଙ୍କୁ ସେ ସମାନ ଚକ୍ଷୁରେ ଦୃଷ୍ଟି କରିବ । ଏ ହେଉଛି ବୈଷ୍ଣବଧର୍ମର ସାର ମର୍ମ । ଏଭଳି ଧର୍ମ ପ୍ରତି ଦୃଷ୍ଟିକରି ଲୋକେ ଜୀବନଯାପନ କଲେ, ଦେଶର ଶାନ୍ତି, ମୈତ୍ରୀ ସୁନ୍ଦରରୂପେ ପ୍ରତିଷ୍ଠିତ ହେବ ଏବଂ ଏ ଭାରତ ସେହି କଳ୍ପିତ ରାଜ୍ୟରେ ପରିଣତ ହେବ ।

# ଦୁର୍ଗାପୂଜା

ଜୀବ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ । ପ୍ରତ୍ୟେକ ଜୀବ ସୁଖ ଚାହେଁ । ମନୁଷ୍ୟ ସର୍ବଦା ଦୁଃଖ ଓ ଅଭାବମୋଚନ କରିବାରେ ବ୍ୟସ୍ତ । ତହୁଁ ସେ ଯଥାସାଧ୍ୟ ଚେଷ୍ଟାକରି କାର୍ଯ୍ୟକରେ । ମନୁଷ୍ୟ ତା'ର ଜୀବନର ପ୍ରାରମ୍ଭରୁ କାର୍ଯ୍ୟକରି ତାର ଉତ୍ତରୋତ୍ତର ଅଭାବମୋଚନ ପୂର୍ବକ ନାନାବିଧ ଜ୍ଞାନ ବିଜ୍ଞାନ ହାସଲ କରୁଅଛି ।

ମନୁଷ୍ୟର ଚାରିଗୋଟି ଉଦ୍ଦେଶ୍ୟ, ଯଥା- ଧର୍ମ, ଅର୍ଥ, କାମ, ମୋକ୍ଷ । ଏହି ଚାରିଗୋଟି ପାଇବାକୁ ସେ ସବୁବେଳେ ବ୍ୟସ୍ତ । ତହୁଁ ସେ କାର୍ଯ୍ୟ କରେ । ସେ ଯାହା କରେ, ତାହା ଅକର୍ମ, ବିକର୍ମ ଓ କର୍ମ । ଅକର୍ମ ଓ ବିକର୍ମ ନିନ୍ଦ୍ୟ ଓ ତ୍ୟାଜ୍ୟ । ତହୁଁ ତାହାର କର୍ମହିଁ କରଣୀୟ । କର୍ମ, ଧର୍ମ ଓ ଯଜ୍ଞ- ଏକାର୍ଥବୋଧକ । ଲୋକର କ'ଣ କରିବା ଉଚିତ ତାହା କର୍ମଶାସ୍ତ୍ର ବା ଧର୍ମଶାସ୍ତ୍ରରେ ବର୍ଣ୍ଣିତ- ତାହା ସ୍ମୃତି ନାମରେ କଥିତ । ସ୍ମୃତିର ସଂଖ୍ୟା ଛତିଶ- ତନ୍ମଧ୍ୟରୁ ଊନବିଂଶ ପ୍ରଧାନ । ଏହି ଊନବିଂଶ ମଧ୍ୟରେ ମନୁସ୍ମୃତି ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ । କର୍ମ, ଯଜ୍ଞ ବହୁବିଧ- ଦ୍ରବ୍ୟଯଜ୍ଞ, ତପୋଯଜ୍ଞ, ଯୋଗଯଜ୍ଞ, ସ୍ୱାଧ୍ୟାୟଯଜ୍ଞ, ଜ୍ଞାନଯଜ୍ଞ, ପଞ୍ଚମହାଯଜ୍ଞ । ପଞ୍ଚମହାଯଜ୍ଞ ପ୍ରତ୍ୟେକ ଗୃହସ୍ଥର କରିବା ଉଚିତ । ଏହାଦ୍ୱାରା ପିତୃ, ଦେବ, ଋଷି, ନର ଓ ପ୍ରାଣୀବର୍ଗଙ୍କ ତୃପ୍ତି ବିହିତ ହୁଏ । ଯେ ନିଷ୍ଠାର ସହିତ କାର୍ଯ୍ୟ କରେ, ସେ ପୁଣ୍ୟାତ୍ମା ପାଲଟେ । ସାଧାରଣତଃ ମନୁଷ୍ୟ ତ୍ରିବର୍ଗ – ଧର୍ମ, ଅର୍ଥ ଓ କାମ ଲାଭ କରିବାକୁ ଯତ୍ନକରେ- ମୋକ୍ଷପ୍ରାପ୍ତି ନିମିତ୍ତ ଯତ୍ନଶୀଳ ଖୁବ୍ କମ୍ । କର୍ମ ପଞ୍ଚବିଧ- ନିତ୍ୟ, ନୈମିତ୍ତିକ, କାମ୍ୟ, ପ୍ରାୟଶ୍ଚିତ ଓ ଉପାସନା । ନିତ୍ୟ ନୈମିତ୍ତିକ, ପ୍ରତ୍ୟେକର କରଣୀୟ । ସେଥିରେ ଶରୀର ଓ ମନର ସୁସ୍ଥତା ଆସେ । ସାଧାରଣତଃ ଲୋକେ କାମନା ରଖି କାର୍ଯ୍ୟ କରନ୍ତି । କାମନା ପୋଷଣ କରିବା ପ୍ରଶସ୍ତ ନ ହେଲେ ହେଁ- କାମନାବର୍ଜିତ କର୍ମ ନାହିଁ କହିଲେ ଚଳେ । ବେଦଜ୍ଞାନ ଓ ବୈଦିକ କର୍ମ କାମନାମୂଳକ । ଏହି କାମନା ତା'ର କୌଣସି ବିଷୟ ପ୍ରାପ୍ତି ନିମିତ୍ତ- ଯାହାର ପ୍ରାପ୍ତିରେ ସେ ସୁଖ ଭୋଗ କରିବ ଏବଂ ଶାନ୍ତିରେ ଜୀବନ କଟାଇବ । ସୁଖର ପ୍ରାପ୍ତି ଦୁଃଖର ନାଶରେ । ଦୁଃଖ-ତାପ ତ୍ରିବିଧ । ଶରୀର ଓ ମନର ଦୁଃଖ ଆଧିଦୈବିକ । ପ୍ରାଣୀଘଟିତ ଦୁଃଖ ଆଧିଭୌତିକ । ଏହି ତିନିପ୍ରକାର ଦୁଃଖ ଦୂର କରିବାକୁ ମନୁଷ୍ୟ ଉପାୟ କଲା । ଗୋଟିକର ନାଶରେ ଆଉ ଗୋଟିଏ ଆସି ତାକୁ ବ୍ୟତିବ୍ୟସ୍ତ କଲା । ପୁଣି ସେ ଯଜ୍ଞ କଲା, ସ୍ୱର୍ଗକୁ ଗଲା, ତାର ପୁଣ୍ୟ ସରିଗଲା । ପୁଣି ମର୍ତ୍ତରେ ଜନ୍ମି ସେହି ଜନ୍ମ, ବ୍ୟାଧି, ଜରା, ମରଣଜନିତ ଦୁଃଖ ଭୋଗକଲା । ତେଣୁ ଦେଖିଲା ଯେ, ଐହିକ ଓ ପାରତ୍ରିକ ସୁଖ ଚିରନ୍ତନ ନୁହେଁ । ମନୁଷ୍ୟର

ବୁଦ୍ଧି ଅଛି । ସେ ବୁଦ୍ଧି ବଳରେ ଦର୍ଶନଶାସ୍ତ୍ରମାନ ସୃଷ୍ଟିକଲା ଚିରନ୍ତନ ସୁଖ ପାଇବା ନିମନ୍ତେ ।

ଦର୍ଶନଶାସ୍ତ୍ରମାନ ହେଲା ବାରଗୋଟି- ଛ'ଗୋଟି ନାସ୍ତିକ ଓ ଛ'ଗୋଟି ଆସ୍ତିକ । ନାସ୍ତିକଦର୍ଶନ- ଚାର୍ବାକ- ଲୋକାୟତିକ, ଯୋଗାଚାର, ମାଧମିକ, ବୈଭାଷିକ, ସୈତାନ୍ତିକ (ଚାରି ବୌଦ୍ଧ ଦର୍ଶନ) ଓ ଆର୍ହତ (ଜୈନ) ଦର୍ଶନ । ବେଦ ଉପରେ ପ୍ରତିଷ୍ଠିତ ନ ହେବା ହେତୁ ଏମାନେ ନାସ୍ତିକ ଦର୍ଶନରୂପେ କଥିତ । ଆସ୍ତିକ ଦର୍ଶନ ମଧ ଛଗୋଟି । ନ୍ୟାୟ, ବୈଶେଷିକ, ଯୋଗ, ସାଂଖ୍ୟ, ମୀମାଂସା ଓ ବେଦାନ୍ତ । ଚାର୍ବାକ ଓ ମୀମାଂସା ପ୍ରବୃତ୍ତପର । ଅନ୍ୟ ଦର୍ଶନମାନେ ପ୍ରାୟ ନିବୃତ୍ତପର । ନାସ୍ତିକ ଦର୍ଶନମାନ ଈଶ୍ୱର ଓ ବେଦ ସ୍ୱୀକାର କରନ୍ତିନାହିଁ । ଆସ୍ତିକଦର୍ଶନମାନ ବେଦ ଉପରେ ପ୍ରତିଷ୍ଠିତ ହେଲେ ହେଁ ବେଦାନ୍ତ ହିଁ ବ୍ରହ୍ମ, ଭଗବାନ ତଥା ପରମାତ୍ମାଙ୍କୁ ସ୍ୱୀକାର କରେ । ଅନ୍ୟ ପଞ୍ଚ ଆସ୍ତିକ ଦର୍ଶନମାନଙ୍କ ମଧ୍ୟରୁ କେହି ଈଶ୍ୱର ସ୍ୱୀକାର କରେ, କେହି ଗୌଣ ଭାବରେ ଈଶ୍ୱରଙ୍କୁ ମାନେ । ବେଦାନ୍ତ ବ୍ୟତୀତ ଅନ୍ୟ ଦର୍ଶନମାନଙ୍କଦ୍ୱାରା ଚିତ୍ତର ପ୍ରସନ୍ନତା ତଥା ପରମ ଗତି ଲାଭ ହୁଏନାହିଁ । ଏହା ଶଙ୍କରାଚାର୍ଯ୍ୟଙ୍କ ବେଦାନ୍ତ । କର୍ମକାଣ୍ଡ, ଜ୍ଞାନକାଣ୍ଡ ଓ ଉପାସନାକାଣ୍ଡ ଅଛି । ଗୀତାରେ ମଧ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗର ବିଷୟ ଅଛି ।

ବେଦ ପରେ ଉପନିଷଦର ସୃଷ୍ଟି - ତଦ୍‌ପରେ ଦର୍ଶନାଦିର । ଦର୍ଶନାଦିର ବ୍ୟାଖ୍ୟାନ ରୂପେ ଇତିହାସ ପୁରାଣମାନଙ୍କରେ ବହୁଳପ୍ରଚାର । ଶାସ୍ତ୍ରରେ ଅଛି "ଇତିହାସ ପୁରାଣାଭ୍ୟାଂ ବେଦାର୍ଥମୂପବୃଂହୟେତ୍"- ବେଦରେ ଯାହା ନାହିଁ ଓ ଯାହାର ଇଙ୍ଗିତ ଅଛି, ତାହା ଇତିହାସ ପୁରାଣାଦିରେ ବିସ୍ତୃତ ଭାବରେ କଥିତ । ସ୍ମୃତି ଧର୍ମ ପ୍ରତିପାଦକ । ଇତିହାସ ଓ ପୁରାଣ ବ୍ରହ୍ମ ପ୍ରତିପାଦକ । ପୁରାଣମାନେ ଗୁଣାଶ୍ରିତ ହେତୁ ଏକଦେଶଦର୍ଶୀ । ଅର୍ଥାତ୍ କେଉଁ ପୁରାଣ ସତ୍ତ୍ୱଗୁଣୀ ବିଷ୍ଣୁଙ୍କର, କେଉଁ ପୁରାଣ ରଜୋଗୁଣୀ ବ୍ରହ୍ମାଙ୍କର ଓ କେଉଁ ପୁରାଣ ତମୋଗୁଣୀ ଶିବଙ୍କର ଗୁଣ ପ୍ରଶସ୍ତି କରେ । କିନ୍ତୁ ଇତିହାସ ସର୍ବ ଦେଶଦର୍ଶୀ । ତେଣୁ ଇତିହାସର ସ୍ଥାନ ପୁରାଣମାନଙ୍କ ଠାରୁ ଉଚ୍ଚରେ ।

ସେ ଯାହା ହେଉ, ଉପନିଷଦ ତଥା ବେଦାନ୍ତର ପ୍ରପଞ୍ଚ କ୍ରିୟା ପୁରାଣାଦିରେ ବର୍ଣ୍ଣିତ । ପୁରାଣ ଯୁଗରେ ପଞ୍ଚଦେବତାଙ୍କ ଉପାସନାର ପ୍ରବର୍ତ୍ତନ । ବେଦରେ ବିଷ୍ଣୁ, ରୁଦ୍ର ଓ ସୂର୍ଯ୍ୟଙ୍କର ସ୍ତୁତିରୂପ ସୂକ୍ତ- ଅଗ୍ନି, ଇନ୍ଦ୍ର, ବରୁଣାଦଙ୍କ ସୂକ୍ତ ସହିତ ଅଛି । ଦେବୀ ଦୁର୍ଗାଙ୍କର ନାମ ପ୍ରତ୍ୟକ୍ଷତଃ ନାହିଁ । କେନୋପନିଷଦରେ ହୈମବତୀ ଉମାଙ୍କ ବିଷୟ କଥିତ- ସେ ବ୍ରହ୍ମଦର୍ଶନୀରୂପେ ସୂଚିତା । ବେଦର ଆମ୍ଭୃଣ ଋଷିଙ୍କ କନ୍ୟା ବ୍ରହ୍ମବାଦନୀ ବାକଙ୍କ ସୂକ୍ତ ଦେବୀସୂକ୍ତ ରୂପେ ଗୃହୀତ । ଗଣପତିଙ୍କ ନାମ ଗୌଣ ଭାବରେ କଥିତ । କିନ୍ତୁ ଗଣପତି- ଗଣର ପତି- ପ୍ରାଣୀମାନଙ୍କର ପତି । ତେଣୁ ସେ ଭଗବତ୍ ଭାବେ ପୂଜିତ । ଏହି ପାଞ୍ଚଦେବତା- କିନ୍ତୁ ପରମାତ୍ମା ରୂପେ ପୂଜିତ । ସୂର୍ଯ୍ୟ ନାରାୟଣ ରୂପେ ଗୃହୀତ ।

ରୁଦ୍ରହୃଦୟଉପନିଷଦରେ ଅଛି- "ଯା ଉମା ସା ସ୍ୱୟଂ ବିଷ୍ଣୁର୍ଯୋବିଷ୍ଣୁଃ ସହି ଚନ୍ଦ୍ରମାଃ । ଯେ ନମସ୍ୟନ୍ତି ଗୋବିନ୍ଦଂ ତେ ନମସ୍ୟନ୍ତି ଶଙ୍କରମ୍ । ଯେ ରୁଦ୍ରଂ ନାଭି-ଜାନନ୍ତି ତେନ ଜାନନ୍ତି କେଶବମ୍" । ପୁନଶ୍ଚ- "ଉମା- ଶଙ୍କର ଯୋଗେ ଯଃ ସ ଯୋଗେ

ବିଷ୍ଣୁରୁଚ୍ୟତେ" । ଯେ ଉମା ସେ ବିଷ୍ଣୁ, ଯେ ବିଷ୍ଣୁ ସେ ଚନ୍ଦ୍ରମା, ଯେ ଗୋବିନ୍ଦଙ୍କୁ ନମସ୍କାର କରନ୍ତି, ସେ ଶଙ୍କରଙ୍କୁ ମଧ ନମସ୍କାର କରନ୍ତି । ଯେ ରୁଦ୍ରଙ୍କୁ ଜାଣନ୍ତି ନାହିଁ, ସେ ବିଷ୍ଣୁଙ୍କୁ ଜାଣନ୍ତି ନାହିଁ । ଉମା ଶଙ୍କର ଯୋଗ ହିଁ ବିଷ୍ଣୁ । ପୁନଶ୍ଚ କାର୍ଯ୍ୟ ବିଷ୍ଣୁ, କ୍ରିୟା ବ୍ରହ୍ମା, କାରଣଂ ତୁ ମହେଶ୍ୱରଃ- ଏହି ତିନି ଦେବତା ଏକ । ଏହାର ପ୍ରମାଣ- ଅତ୍ରିଙ୍କ ଭଗବାନଙ୍କୁ ପୁତ୍ର ରୂପେ ପାଇବା ପାଇଁ ତପସ୍ୟା । ଏହି ତିନିଜଣ ତାଙ୍କ ତପସ୍ୟା ସିଦ୍ଧିରେ ତାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ- ଆମେ ତିନିହେଁ ଏକ ଏବଂ ଆମେ ତିନିଜଣ ଚନ୍ଦ୍ର, ଦୁର୍ବାସା, ଦତ୍ତାତ୍ରେୟ ରୂପେ ତୁମ୍ଭର ପୁତ୍ର ହେବୁ । ଏହି ତିନି ଦେବତାଙ୍କ ମଧ୍ୟରେ ବ୍ରହ୍ମା ସ୍ରଷ୍ଟା, ବିଷ୍ଣୁ ପାଳକ, ଶିବ ନାଶକ ରୂପେ ଜ୍ଞାତ । ବିଷ୍ଣୁ, ପାଳକ ହେତୁ ଯୁଗେଯୁଗେ ତାଙ୍କର ପୂଜା ହୁଏ । ସବୁ ପୁରାଣରେ ଦେବୀ ଦୁର୍ଗା ବିଷ୍ଣୁଶକ୍ତିରୂପେ କଥିତ । ଆମ ଓଡ଼ିଶାରେ ଅନୁକୂଳ ସମୟରେ ମାଧବ କହି ଲୋକେ ଘରୁ ବାହାରନ୍ତି । ତାର ଅର୍ଥ ଅପଶକ୍ତି ଦୁର୍ଗା ଦୂରିତ ବା ନାଶ କଲେ- ମାଧବ ସୌଖ୍ୟ ପ୍ରଦାନ କରିବେ ।

ଦେବୀଉପନିଷଦ୍‌ରେ ଦେବତାମାନେ ଦେବୀଙ୍କୁ ସ୍ତୁତି କଲେ ଓ ପଚାରିଲେ -------- ସିଦ୍ଧଂ ମହାଦେବି । ହେ ମହାଦେବି, ତୁମେ କିଏ ! ତହୁଁ ଦେବୀ କହିଲେ- ମୁଁ ବ୍ରହ୍ମସ୍ୱରୂପିଣୀ- ତହୁଁ ଶ୍ରୀସୂକ୍ତକୁ ସେ କହିଲେ । ତାର ଅର୍ଥ – ଶିବ, ବିଷ୍ଣୁ, ବ୍ରହ୍ମାଙ୍କୁ ମୁଁ ଧାରଣ କରିଛି । ମୁଁ ସର୍ବମୟୀ- ମୋ ସକାଶେ ସଂସାର ଆତଯାତ- ଏହା ମଧ ଯଥାର୍ଥ । ଶକ୍ତିହିଁ ଅସଲ- ଶକ୍ତିହୀନ ସମସ୍ତ ଜୀବ ଜଡ଼ । ଶକ୍ତ୍ୟା ହୀନଃ ଶିବଃ- ଶକ୍ତିଶୂନ୍ୟ ଶିବ- ଶବ । ସେହିପରି ବିଷ୍ଣୁ ମଧ ସ୍ୱଶକ୍ତିହୀନ ହେଲେ ଶବତୁଲ୍ୟ । ତହୁଁ ଶକ୍ତି ଓ ଶକ୍ତିମାନ ଅଭେଦ । କାରଣ ଶକ୍ତି ନ ଥିଲେ କେହି କିଛି ନୁହେଁ । ପୁନଶ୍ଚ ଶକ୍ତି ଆଧାରଯୁକ୍ତା । ଶକ୍ତି କାହାର? ଏ ପ୍ରଶ୍ନର ସମାଧାନ ଶକ୍ତିମାନଙ୍କ ସଦ୍ଧା ସ୍ୱୀକୃତିରେ । –ଶକ୍ତି-ଦେବୀଦୁର୍ଗାଙ୍କ ଉପାସନା ମାର୍କଣ୍ଡେୟପୁରାଣ, ଦେବୀଭାଗବତ ଓ କାଳିକାପୁରାଣରେ ସୁନ୍ଦରଭାବରେ ବର୍ଣ୍ଣିତ- (ସୁରଥ ରାଜାଙ୍କ ଉପାଖ୍ୟାନ) । ମାର୍କଣ୍ଡେୟପୁରାଣରେ ବର୍ଣ୍ଣିତ ଅଛି- ରମ୍ଭ ଓ କରମ୍ଭ ନାମରେ ଦୁଇ ଦାନବ ତପସ୍ୟା କଲେ । କରମ୍ଭ ଜଳରେ- ରମ୍ଭ ଅଗ୍ନି ସ୍ଥାପି । କରମ୍ଭଙ୍କୁ ଇନ୍ଦ୍ର ମାରିବାରୁ – ରମ୍ଭ ଅଗ୍ନିରେ ଆତ୍ମବିସର୍ଜନ କରନ୍ତେ, ଅଗ୍ନି-ଦେବ ତାକୁ ବାରଣ କଲେ ଓ ରମ୍ଭକୁ ବର ଦେଲେ ଯେ- ତୁ ଜଣେ ଜଗଜ୍ଜିଣା ପୁତ୍ର ଜାତ କରିବୁ ତୋର ସ୍ୱେଚ୍ଛାବରିତ ପତ୍ନୀଠାରୁ । ରମ୍ଭ ଗୋଟିଏ ମହିଷୀକୁ ବିବାହକରି ପାତାଳକୁ ଗଲା- ସେଠାରେ ତାର ସ୍ତ୍ରୀ ମହିଷୀ ଗର୍ଭବତୀ ହେଲା । ଆଉ ଗୋଟିଏ ମହିଷ, ମହିଷୀ ଠାରେ ଆସକ୍ତ ହୁଅନ୍ତେ- ରମ୍ଭ ଓ ମହିଷର ଯୁଦ୍ଧ ହେଲା । ସେଥିରେ ରମ୍ଭ ପ୍ରାଣତ୍ୟାଗ କଲା । ତହୁଁ ମହିଷୀ ଅଗ୍ନିଜାଳି- ଅକ୍ଷମାନଙ୍କ ନିଷେଧ ସତ୍ତ୍ୱେ ସ୍ୱାମୀ ସହିତ ପ୍ରବେଶ କଲା । ସେହି ଅଗ୍ନିରୁ ରମ୍ଭ-ରକ୍ତବୀର୍ଯ୍ୟ ରୂପେ ଓ ମହିଷୀ-ଗର୍ଭସ୍ଥ ସନ୍ତାନ ମହିଷାସୁର ରୂପେ ଜାତହେଲେ ।

ମହିଷାସୁର ବୟଃପ୍ରାପ୍ତ ହୋଇ ତପସ୍ୟା କଲା । ତାହା ତପସ୍ୟାରେ ବ୍ରହ୍ମା ସନ୍ତୁଷ୍ଟ ହୋଇ ବର ଦେଲେ ଯେ, କୌଣସି ପୁରୁଷଦ୍ୱାରା ସେ ବିନାଶ ହେବନାହିଁ ଏବଂ ରାଜା ହେବ । ସ୍ତ୍ରୀ ହସ୍ତରେ ତାର ବଧ ହେବ । ମହିଷାସୁର ବର ପ୍ରାପ୍ତିରେ ମଦମତ୍ତ ହୋଇ ସ୍ୱର୍ଗପୁର ଜୟକଲା । ଦେବତାମାନେ ପରାଜିତ ହୋଇ ପ୍ରମାଦ ଗଣିଲେ । ବିଷ୍ଣୁ, ଶିବ,

ଇନ୍ଦ୍ରାଦି ଦେବତାମାନେ ତାକୁ ମାରି ପାରିଲେନାହିଁ । ପରେ ବ୍ରହ୍ମା, ଶିବ ଓ ଇନ୍ଦ୍ର ବିଷ୍ଣୁଙ୍କ ନିକଟକୁ ଯାଇ ମହିଷାସୁରର ନାଶର ପ୍ରାର୍ଥନା କଲେ । ତହୁଁ ବିଷ୍ଣୁ କହିଲେ- ଦେବତାଙ୍କ ଶକ୍ତି ସମଷ୍ଟିରେ ଯେ ଦେବୀ ଜାତ ହେବେ, ତାଙ୍କଦ୍ୱାରା ମହିଷାସୁରର ନାଶ ହେବ । ତହୁଁ ଦେବତାମାନଙ୍କ ଶକ୍ତିରେ ଦେବୀ ଆବିର୍ଭୂତା ହେଲେ ଓ ଦେବତାମାନଙ୍କ ଆୟୁଧଯୁକ୍ତା ହୋଇ ଦେବୀ ଦୁର୍ଗା ମହିଷାସୁରକୁ ବଧ କଲେ ଓ ସେହି ଦେବୀ ଶୁମ୍ଭ ଓ ନିଶୁମ୍ଭ, ଚଣ୍ଡ, ମୁଣ୍ଡ, ରକ୍ତବୀର୍ଯ୍ୟ ପ୍ରଭୃତିଙ୍କୁ ଦେବତାଙ୍କ ଆହ୍ୱାନରେ ନାଶ କରିଥିଲେ । ଶୁମ୍ଭ ଓ ନିଶୁମ୍ଭ ବଧ ଅବସରରେ ଚଣ୍ଡୀପାଠ ଦେବତାଙ୍କଦ୍ୱାରା ହୋଇଥିବା ମାର୍କଣ୍ଡପୁରାଣରେ ଲିଖିତ । ଦେବୀଙ୍କୁ ପୂଜାକରି ରାମଚନ୍ଦ୍ର ରାବଣକୁ ମାରିବା ବିଷୟ ବାଲ୍ମୀକିଙ୍କ ରାମାୟଣରେ, ଅଧ୍ୟାତ୍ମ ରାମାୟଣରେ ବା ଯୋଗବାଶିଷ୍ଠରେ ନାହିଁ । ବାଲ୍ମୀକିଙ୍କ ରାମାୟଣରେ ଅଛି ଯେ, ରାମଚନ୍ଦ୍ର ରାବଣକୁ ମାରିବାରେ ଅସମର୍ଥ ହୁଅନ୍ତେ ଦୁଃଖିତ ହେଲେ । ତହୁଁ ଅଗସ୍ତ୍ୟ ଋଷି ଆସି ତାଙ୍କୁ କହିଲେ- ମୁଁ ତୁମ୍ଭଙ୍କୁ ବ୍ରହ୍ମାସ୍ତ୍ର ଦେଇଅଛି । ବର୍ତ୍ତମାନ ଏହି ମଦୁକ୍ତ ଆଦିତ୍ୟ ହୃଦୟ ମନ୍ତ୍ର ପାଠକର । ରାମଚନ୍ଦ୍ର ତଦନୁସାରେ କାର୍ଯ୍ୟକରି ରାବଣକୁ ମାରିଥିଲେ । ଆଶ୍ଚର୍ଯ୍ୟ ବିଷୟ- ମାର୍କଣ୍ଡେୟପୁରାଣ ଦେବୀଙ୍କ ମାହାତ୍ମ୍ୟ ଗାନରେ ଶ୍ରେଷ୍ଠ ପୁରାଣ- ଏ ବିଷୟ ଦେବୀଭାଗବତ ଓ କାଳିକାପୁରାଣରେ ବିସ୍ତୃତଭାବେ ବର୍ଣ୍ଣିତ । ଦେବୀଭାଗବତ ଅନୁସାରେ- ରାମଚନ୍ଦ୍ର କିଷ୍କିନ୍ଧ୍ୟାରେ ସୀତାହରଣରେ ବ୍ୟଥିତ ହୁଅନ୍ତେ ଦେବର୍ଷି ନାରଦ ସ୍ୱର୍ଗରୁ ଅବତୀର୍ଣ୍ଣ ହୋଇ ଦେବୀଙ୍କ ନବରାତ୍ର ବ୍ରତ ପାଳନ କରିବାକୁ କହିଲେ ଓ ନିଜେ ଆଚାର୍ଯ୍ୟ ହେଲେ । ରାମ ଓ ଲକ୍ଷ୍ମଣ ଉଭୟେ ଏହି ବ୍ରତ ପାଳନ କଲେ । ଦେବୀ ଅଷ୍ଟମୀ ଅର୍ଦ୍ଧରାତ୍ରରେ ଆବିର୍ଭୂତା ହୋଇ କହିଲେ- ରାମଚନ୍ଦ୍ର ତୁମ୍ଭେ ରାବଣ ଓ କୁମ୍ଭକର୍ଣ୍ଣକୁ ମାରିବ । ଲକ୍ଷ୍ମଣ ଇନ୍ଦ୍ରଜିତକୁ ମାରିବ । ତୁମ୍ଭେ କିଷ୍କିନ୍ଧ୍ୟାରେ ବିଧିପୂର୍ବକ ଶରତ କାଳରେ ଏ ବ୍ରତ ପାଳନ କରିବ । ଲଙ୍କାରେ ଉତ୍ସବର ସହିତ ଚୈତ୍ରମାସରେ ଏହି ବ୍ରତ ମଧ ପାଳନ କରିବ ।

ଦେବୀଭାଗବତରେ ଲିଖିତ- ଆଶ୍ୱିନ ଓ ଚୈତ୍ରମାସ ସବୁ ରୋଗର ଘର । ଏହାକୁ ଯମଦଂଷ୍ଟ୍ରା କୁହାଯାଏ । ଏହି ଦୁସ୍ତର ସମୟରୁ ଉତ୍ତୀର୍ଣ୍ଣ ହେବା ନିମିତ୍ତ ବ୍ରତ ପାଳନକର । ପୁନଶ୍ଚ ଶରତକାଳ ଯୁଦ୍ଧଯାତ୍ରାର ପ୍ରକାର୍ଯ୍ୟ । ଉତ୍କଳର ଗଜପତି ଦଶହରାରେ ନାଟକାଦି କରାଇ ବିଜୟାଦଶମୀରେ ଜୈତ୍ରଯାତ୍ରା କରନ୍ତି । ଏହି ଦୁର୍ଗାପୂଜା ଉତ୍କଳରେ ଗ୍ରାମେଗ୍ରାମେ ସଂଘଟିତ ହୁଏ । ଉତ୍କଳରେ ଘଟପୂଜାର ପ୍ରାଧାନ୍ୟ । ମୃଣ୍ମୟୀ ମୂର୍ତ୍ତିପୂଜା କ୍ୱଚିତ୍ ସଂଘଟିତ ହୁଏ । ଦେବୀ ଶକ୍ତିପୀଠ ଉତ୍କଳରେ ଯେତେ, ଅନ୍ୟ ଦେଶରେ ସେତେ ନାହିଁ । କାରଣ ଉତ୍କଳ ଦେଶରେ ଶୈବ, ଶାକ୍ତ, ବୈଷ୍ଣବ ଧର୍ମର ପ୍ରାବଲ୍ୟ ଅନ୍ୟତ୍ର ପରିଦୃଷ୍ଟ ହୁଏନାହିଁ । ତହୁଁ ଦେବୀ-ଶକ୍ତି ପୂଜାରେ ସର୍ବ-ଦୂରିତ ନାଶ ହୁଏ । ଦେବୀପୂଜା-ଶକ୍ତିର ପୂଜା ସମସ୍ତଙ୍କ କରଣୀୟ ।

ନମାମି ତ୍ୱାମହଂ ଦେବୀଂ
ମହାଭୟବିନାଶିନୀମ୍ ।
ମହାଦୁର୍ଗପ୍ରଶମନୀଂ

ମହାକାରୁଣ୍ୟରୂପିଣୀମ୍-
ଯସ୍ୟାଃ ସ୍ୱରୂପଂ ବ୍ରହ୍ମାଦୟୋ
ନ ଜାନନ୍ତି ତସ୍ମା ଦୁଚ୍ୟତେଽଜ୍ଞେୟା ।
ଯସ୍ୟା ଅନ୍ତୋ
ନ ବିଦ୍ୟତେ ତସ୍ମା ଦୁଚ୍ୟତେଽନନ୍ତା ।
ଯସ୍ୟା ଗ୍ରହଣଂ
ନୋପଲଭ୍ୟତେ ତସ୍ମାଦୁଚ୍ୟତେଽଜା
ଏକୈବ ସର୍ବତ୍ର ବର୍ତ୍ତତେ
ତସ୍ମାଦୁଚ୍ୟତେଽକା- ଏକୈବ
ବିଶ୍ୱରୂପିଣୀ ତସ୍ମାଦୁଚ୍ୟତେ ନୈକା ।
ଅତଏବୋଚ୍ୟତେ
ଅଜ୍ଞେୟାଽନନ୍ତାଽଲକ୍ଷ୍ୟାଽ ଜୈକା ନୈକେତି ।
ମନ୍ତ୍ରାଣାଂ ମାତୃକା ଦେବୀ
ଶବ୍ଦାନାଂ ଜ୍ଞାନରୂପିଣୀ
ଜ୍ଞାନାନାଂ ଚିନ୍ମୟାତୀତା
ଶୂନ୍ୟାନାଂ ଶୂନ୍ୟସାକ୍ଷିଣୀ
ଯସ୍ୟା ସ୍ୱରୂପଂ ବ୍ରହ୍ମାଦୟୋ
ନ ଜାନନ୍ତି ତସ୍ମା ଦୁଚ୍ୟତେଽଜ୍ଞେୟା ।
ଯସ୍ୟା ଅନ୍ତୋ
ନ ବିଦ୍ୟତେ ତସ୍ମା ଦୁଚ୍ୟତେଽନନ୍ତା ।
ଯସ୍ୟା ଗ୍ରହଣଂ
ନୋପଲଭ୍ୟତେ ତସ୍ମାଦୁଚ୍ୟତେଽଲକ୍ଷ୍ୟା
ଯସ୍ୟା ଜନନଂ ନୋପ-ଲଭ୍ୟାତେ
ତସ୍ମା ଦୁଚ୍ୟତେଽଜା
ଏକୈବ ସର୍ବତ୍ର ବର୍ତ୍ତତେ
ତସ୍ମାଦୁଚ୍ୟତେଽକା- ଏକୈବ
ବିଶ୍ୱରୂପିଣୀ ତସ୍ମାଦୁଚ୍ୟତେ ନୈକା ।
ଅତଏବୋଚ୍ୟତେ
ଅଜ୍ଞେୟାଽନନ୍ତାଽଲକ୍ଷ୍ୟାଽ- ଜୈକା ନୈକେତି ।
ମନ୍ତ୍ରଣାଂ ମାତୃକା ଦେବୀ
ଶବ୍ଦାନାଂ ଜ୍ଞାନରୂପିଣୀ
ଜ୍ଞାନାନାଂ ଚିନ୍ମୟାତୀତା
ଶୂନ୍ୟାନାଂ ଶୂନ୍ୟାସାକ୍ଷିଣୀ

ଯସ୍ୟା ପରତରଂ ନାସ୍ତି
ସୈଷା ଦୁର୍ଗା ପ୍ରକୀର୍ତ୍ତିତା ।
(ଦୁର୍ଗାଦ୍ ସଂତ୍ରାୟତେ ଯସ୍ମା ଦ୍ଦେବୀ ଦୁର୍ଗେ ତି କଥ୍ୟତେ
ପ୍ରପେଦ୍ୟ ଶରଣଂ ଦେବୀଂ
ଦୁଂ ଦୁର୍ଗେ ଦୂରିତଂ ହର ।
ତାଂ ଦୁର୍ଗାଂ ଦୁର୍ଗ ମାଂ ଦେବୀଂ
ଦୁରାଚାର ବିଘାତିନୀମ୍
ନମାମି ଭବଭୀତୋଽହଂ
ସଂସାରର୍ଣ୍ଣବ ତାରିଣୀମ୍
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ-
-ଜୟଦୁର୍ଗା-

'ଦେବୀ ଉପନିଷଦ୍'ରୁ କିଞ୍ଚିଦ୍-

ସର୍ବେ ବୈଦେବା ଦେବୀମୂପତସ୍ଥୁ । କାସି ତ୍ୱାଂ ମହାଦେବି । ସାବ୍ରବୀଦହଂ ବ୍ରହ୍ମସ୍ୱରୂପିଣୀ । ମତ୍ତଃ ପ୍ରକୃତି- ପୁରୁଷାତ୍ମକଂ ଜଗଚ୍ଛୂନ୍ୟଂ ଚ ଅହମାନନ୍ଦାନାନନ୍ଦା ବିଜ୍ଞନାବିଜ୍ଞନେ ଅହମ୍ । ବ୍ରହ୍ମାବ୍ରହ୍ମଣୀ ବେଦତବ୍ୟେ... ଅହଂ ପଞ୍ଚଭୂତାନ୍ୟାପଞ୍ଚଭୂତାନି । ଅହମଖିଳଂ ଜଗଦ୍ । ବେଦୋଽହମ୍ । ବିଦ୍ୟାହମବିଦ୍ୟାହମ୍ । ଅଜାହମନଜାହମ୍ । ଅଧେଶ୍ଚୋର୍ଦ୍ଧ୍ୱଞ୍ଚତିର୍ଯ୍ୟକ୍ ଚାହମ୍ । ଅହଂରୁଦ୍ରେ- ଭିର୍ବସୁଭିଶ୍ଚରାମ୍ୟହମାଦତୈ୍ୟରୁତବିଶ୍ୱ-ଦେବୈଃ । ଅହଂ ମିତ୍ରାବରୁଣବୁଭୌ ବିଭର୍ମ୍ୟ ହିମାନ୍ଦ୍ରୀଗ୍ନୀ ଅହମ୍‌ମଶ୍ୱିନା ବୁଭୌ ଅହଂ ସୋମଂତ୍ୱଷ୍ଟାରଂ ପୂଷଣଂ ଭଗଂ ଦଧାମ୍ୟହମ୍ । ବିଷ୍ଣୁ ମୁରକ୍ରମଂ ବ୍ରହ୍ମଣା ମୃତ ପ୍ରଜାପତିଂ ଦଧାମି । ଅହଂ-ରାଷ୍ଟ୍ରୀ ସଂଗମନୀ ବସୂ ନାମହଂ ସୁବେ ପିତରମସ୍ୟ ମୂର୍ଧନ ମମ ଯୋନିରପ୍‌ସ୍ୱନ୍ତଃ ସମୁଦ୍ରେ । ଏବଂ ବେଦ ସ ଦେବୀ ପଦମାପ୍ନୋତି । ତେ ଦେବା ଅବ୍ରୁବନ୍ । ନମୋ ଦେବ୍ୟୈ ମହାଦେବ୍ୟୈ । ଶିବାୟୈ ସତତଂ ନମଃ । ନମଃ ପ୍ରକୃତ୍ୟୈ ଭଦ୍ରାୟୈ ନିୟୁତାଃ ପ୍ରଣତାଃସ୍ମତାମ୍ ।

# ଭାରତରେ ଧର୍ମର ଗତି ଓ ତାହାର ପ୍ରସାର

ଅଦ୍ୟଯାବତଲବ୍ଧ ପୃଥିବୀର ପ୍ରାଚୀନତମ ଭାଷା, ସାହିତ୍ୟ ଓ ଧର୍ମ ବିଷୟର ନିଦର୍ଶନହିଁ ଆର୍ଯ୍ୟଙ୍କର ଦାନ । ଏହି ବେଦରୁ ମାନବ ସଭ୍ୟତାର ପ୍ରାଚୀନତମ ସମ୍ବାଦ ମିଳେ । ଧର୍ମରୁ ସର୍ବତ୍ର ସାହିତ୍ୟର ସୃଷ୍ଟି । ବୈଦିକ ସାହିତ୍ୟ ସାଧାରଣତଃ ସର୍ବବିଦ୍ୟାର ଉଦାହରଣ ରୂପେ ସ୍ୱୀକୃତ । ବେଦ ତ୍ରିକାଳାତ୍ମକ- କର୍ମ, ଧର୍ମ ଓ ଉପାସନା; ଉପାସନା- ଭକ୍ତିମୂଳକ । ବେଦର- ବଦୟତି ଧର୍ମାଧର୍ମ- ଯେ ଧର୍ମ ଓ ଅଧର୍ମ । ପୁନଶ୍ଚ ଯାହାଦ୍ୱାରା ଚତୁର୍ବର୍ଗ ଅର୍ଥାତ୍ ଧର୍ମାର୍ଥ କାମ ଓ ମୋକ୍ଷ ଲାଭହୁଏ । ବେଦରେ ଚତୁର୍ବର୍ଗ ପ୍ରାପ୍ତିର ମାର୍ଗ ଥିଲେ ହେଁ ପରେ ପ୍ରତ୍ୟେକର ସ୍ୱତନ୍ତ୍ର ଶାସ୍ତ୍ରମାନ ହେଲା । ଧର୍ମଶାସ୍ତ୍ର–ମନୁ, ଯାଜ୍ଞବଲ୍କ୍ୟକୃତ; ଅର୍ଥଶାସ୍ତ୍ର– ଚାଣକ୍ୟ ପ୍ରମୁଖକୃତ, କାମଶାସ୍ତ୍ର- ବାତ୍ସାୟନାଦିଙ୍କ ରଚିତ ; ମୋକ୍ଷଶାସ୍ତ୍ର– ଉପନିଷଦ । ମୋକ୍ଷ, ଅର୍ଥ ଓ କାମ ଧର୍ମାଶ୍ରିତ ହେତୁ ଧର୍ମ ଓ ମୋକ୍ଷ (ବ୍ରହ୍ମ) ଦୁଇଗୋଟି ମାତ୍ର ସ୍ୱୀକୃତ ହେଲା- ଯଥା- ତତୋଧର୍ମ ଜିଜ୍ଞାସା(ମୀମାଂସା) ଅଥାତୋବ୍ରହ୍ମଜିଜ୍ଞାସା (ବେଦାନ୍ତ) । ଯୋଗୀ ଯାଜ୍ଞବଲ୍କ୍ୟଙ୍କ ମତରେ ଧର୍ମ ହିଁ ଚତୁର୍ବର୍ଗ ବୋଧକ- ଇଜ୍ୟାଚାର ଦମୋଽହିଂସାଦାନ ନ୍ୟାୟକର୍ମଣାନ୍ । ଅୟନ୍ତୁ ପରମୋଧର୍ମୋ ନାଦଯୋଗେନାତ୍ମ ଧନମ୍ । ଧର୍ମାର୍ଜନ-କର୍ମ, ଜ୍ଞାନ ଓ ଭକ୍ତିମୂଳକ । ଯାହା ସମସ୍ତଙ୍କୁ ଧାରଣ କରିଅଛି ବା ଯାହାଦ୍ୱାରା ସମସ୍ତେ ଧୃତ- ମନୁଷ୍ୟ ପକ୍ଷରେ ଯାହା ଧାରଣ କରି- ଐହିକ, ପାରତ୍ରିକ ଓ ପରମାର୍ଥିକ ସୁଖପ୍ରଦାନ କରେ- ତାହା ଧର୍ମ ।

ଧର୍ମର ସ୍ୱରୂପ ମନୁଙ୍କ ମତରେ, "ବିଦ୍ୱଭିଃ ସେବିତଃ ସଭିର୍ନିତ୍ୟମ ଦ୍ୱେଷରାଗିଭିଃ । ହୃଦୟେନାଭ୍ୟନୁଜ୍ଞାତୋ ଯୋ ଧର୍ମ ସ୍ତନିବୋଧତ- ରାଗଦ୍ୱେଷଶୂନ୍ୟ ବେଦମର୍ମଜ୍ଞ ସଜ୍ଜନଙ୍କଦ୍ୱାରା ଆଚରିତ ତଥା ହୃଦୟଦ୍ୱାରା ପୂର୍ଣ୍ଣତଃ ସ୍ୱୀକୃତ ହିଁ ଧର୍ମ । ମୀମାଂସାକାର କହିଲେ- ଚୋଦନା ଧର୍ମଲକ୍ଷଣମ୍-ସତ୍କାର୍ଯ୍ୟରେ ପ୍ରବର୍ତ୍ତନ ହିଁ ଧର୍ମ । ଅପସ୍ତମ୍ଭ ମଧ୍ୟ ଏହି ମର୍ମରେ ଧର୍ମର ସ୍ୱରୂପ ନିର୍ଣ୍ଣୟ କରିଅଛନ୍ତି । ଧର୍ମପ୍ରାପ୍ତିର ସ୍ଥାନ- ଶ୍ରୁତି, ସ୍ମୃତି ସଦାଚାର ଆତ୍ମନସ୍ତୁଷ୍ଟିରେବଚ(ମନୁ) ବେଦ, ମନ୍ୱାଦିସ୍ମୃତି, ସଦାଚାର ଓ ଆତ୍ମତୁଷ୍ଟି (ସଜ୍ଜନଙ୍କ ହୃଦୟରେ ଯାହା ଅନୁମୋଦିତ) । ଧର୍ମ ବିଷୟରେ ମହାଭାରତକାର କହିଲେ- ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନା ନାସୌମୁନିର୍ଯସ୍ୟ ମତଂ ନ ଭିନ୍ନମ୍ । ଧର୍ମସ୍ୟତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃ ସ ପନ୍ଥା । ତର୍କର ଶେଷ ପରିଣତି ନାହିଁ । ଶ୍ରୁତିବେଦର ଉକ୍ତିମାନଙ୍କରେ ମେଳ ନାହିଁ । (ବିରୋଧ ଭାବାତ୍ମକ ଉକ୍ତିମାନ ଅଛି । ପ୍ରୟୋଜନ ବିଶେଷର ଅନୁରୋଧରେ ଉକ୍ତି ହେତୁ ସାଧାରଣତଃ ବିରୋଧ ରୂପେ

ବୋଧହୁଏ) ଯାହାଙ୍କର ମତ ଭିନ୍ନ ନୁହେଁ, ସେ ମୁନି ନୁହନ୍ତି (ଦେଶ କାଳ ପାତ୍ର ଅବସ୍ଥା ଭେଦରେ ସଂସାରସ୍ଥ ମାନବର ସୁଖରେ ଜୀବନ ଯାତ୍ରା ନିର୍ବାହ ନିମିତ୍ତ ବ୍ୟବସ୍ଥାର ଭିନ୍ନତ୍ୱ ସମୀଚୀନ)। ଧର୍ମର ତତ୍ତ୍ୱ ନିଗୂଢ଼ (ସାଧାରଣରେ ଅବୋଧ, କିନ୍ତୁ ଜ୍ଞାନିଙ୍କ ବୋଧଗମ୍ୟ) ତହୁଁ ମହାପୁରୁଷମାନଙ୍କଦ୍ୱାରା ଆଚରିତ ପନ୍ଥା ସାଧାରଣଙ୍କଦ୍ୱାରା ଆଶ୍ରୟ କରିବା ଉଚିତ। ଗୀତାର ଉକ୍ତି ମଧ୍ୟ ଏହା ସମର୍ଥନ କରେ- ଯଦ୍‌ଯଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋଜନାଃ ମମାବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥସର୍ବଶଃ (ଗୀତା ୩-୨୧)। ଶ୍ରେଷ୍ଠଙ୍କୁ ଦେଖି ଲୋକ ବାଟ ଚାଲନ୍ତି- ଲୋକେ ସର୍ବଥା ମୋ ବାଟକୁ ଅନୁସରନ୍ତି।

କର୍ମ: ଲୋକ ଯାହା କରେ ତାହା ଯେ କେବଳ କର୍ମ, ତାହା ନୁହେଁ। ତାହା ଅକର୍ମ, ବିକର୍ମ ଓ କର୍ମ। ଅକର୍ମ- ନିଷିଦ୍ଧ କର୍ମ। ବିକର୍ମ-ବିହିତ କର୍ମର ଅକରଣ। କର୍ମ-ଶାସ୍ତ୍ରୋକ୍ତ, ତହୁଁ ବିହିତ। ଗୀତା ଓ ଭାଗବତରେ କର୍ମ, ଅକର୍ମ ଓ ବିକର୍ମ ବିଷୟ କଥିତ। କର୍ମଣୋ ହ୍ୟପିବୋଦ୍ଧବ୍ୟଂ ବୋଦ୍ଧବ୍ୟଚ ବିକର୍ମଣଃ। କର୍ମ, ଅକର୍ମ ଓ ବିକର୍ମର ବିଷୟ ବୁଝିବାକୁ ହେବ; କିନ୍ତୁ କର୍ମର ଗତି ଅତି ଗୂଢ଼ (ଗୀତା ୪-୧୭)। କର୍ମାକର୍ମ ବିକର୍ମେତି ବେଦବାଦୋ ନ ଲୌକିକଃ। ବେଦସ୍ୟଚେଶ୍ୱରାତ୍ମତ୍ୱାତ୍‌ତତ୍ର ମୁହ୍ୟନ୍ତି ସୂରୟଃ। ପରୋକ୍ଷ ବାଦୋ ବେଦୋଽୟଂ ବାଳାନା ମନୁ ଶାସନମ୍। କର୍ମମୋକ୍ଷୟ କର୍ମାଣି ବିଧତ୍ତେହ୍ୟଗଦଂ ଯଥାଃ- ଭାଗ. ୧୧-୩-୪୩।୪୪। ଏହି ତିନିଗୋଟିର ସ୍ୱରୂପ ବେଦଗମ୍ୟ। ବେଦ ଈଶ୍ୱର ଜାତ। ଅପୌରୁଷେୟ ହେତୁ ପଣ୍ଡିତମାନେ ସେଥିରେ ମୋହିତ। ପରୋକ୍ଷବାଦ (ଈଶ୍ୱରଙ୍କ ମତ ଜାଣନ୍ତା ଋଷିମାନେ ଯଥାର୍ଥ ତତ୍ତ୍ୱ ଗୋପନ କରି ଅନ୍ୟପ୍ରକାରରେ ତାହା କହନ୍ତି- ଏହା ପରୋକ୍ଷବାଦ) ବେଦର ଗୋଟିଏ ସ୍ୱଭାବ। ପିତା ଯେପରି ମିଷ୍ଟପଦାର୍ଥ ପ୍ରଭୃତିର ଲୋଭଦେଖାଇ ଆରୋଗ୍ୟପ୍ରଦ ତିକ୍ତଔଷଧ ପୁତ୍ରକୁ ସେବନ କରାନ୍ତି, ସେପରି ବେଦ ମୂର୍ଖଙ୍କର ପ୍ରବୃତ୍ତି ନିମିତ୍ତ ସ୍ୱର୍ଗାଦିସୁଖର ପ୍ରଲୋଭନରେ ନିବୃତ୍ତ ନିମିତ୍ତ ବିହିତ କର୍ମମାନ ପ୍ରତିପାଦନ କରନ୍ତି। (ଇନ୍ଦ୍ରିୟପରାୟଣ ଅଦୂରଦର୍ଶୀ ବ୍ୟକ୍ତିଙ୍କୁ ବେଦ ସବୁ କର୍ମକଣ୍ଡର ଲୋଭ ଦର୍ଶାଇ କର୍ମଫଳ ଭୋଗରୁ ନିବୃତ୍ତ କରନ୍ତି, (ପ୍ରବୃତ୍ତି ରେଷାଭୂତାନାଂ ନିବୃତ୍ତିସ୍ତୁ ମହାଫଳା)

କର୍ମ ପଞ୍ଚବିଧ-ନିତ୍ୟ, ନୈମିତ୍ତିକ, କାମ୍ୟ, ପ୍ରାୟଶ୍ଚିତ୍ତ ଓ ଉପାସନା। ଶୁଦ୍ଧିପ୍ରଦ ହେତୁ ନିତ୍ୟ ନୈମିତ୍ତିକ ପ୍ରତ୍ୟେକ ଗୃହସ୍ଥର କରଣୀୟ। କାର୍ଯ୍ୟ ସାଧାରଣତଃ ସମସ୍ତଙ୍କଦ୍ୱାରା ଅନୁଷ୍ଠିତ ହୁଏ। ଏହା ପ୍ରଶସ୍ତ ନୁହେଁ- କାରଣ ଏହା ପ୍ରେୟ ଶ୍ରେୟକୁ ପ୍ରାୟଶ୍ଚିତ୍ତ କରଣୀୟାଭବିଷ୍ୟତରେ ପାପ ମୋତେ ସ୍ପର୍ଶ କରିବ ନାହିଁ- ସୁଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇ ଶାସ୍ତ୍ରାନୁସାରେ କର୍ମାନୁଷ୍ଠାନ ହିଁ ପ୍ରାୟଶ୍ଚିତ୍ତ। ଉପାସନା, ଦେବସ୍ତୁତି- ଏହା ଭକ୍ତିମୂଳକ।

କର୍ମ, ଧର୍ମ ଓ ଯଜ୍ଞ ଏକାର୍ଥବୋଧକ। ଯଜ୍ଞରୁ କଳ୍ମଷ କ୍ଷୟ ହୁଏ। ଗୀତାରେ ଦୈବଯଜ୍ଞ (ଦେବଗଣ ଯାହାଦ୍ୱାରା ପୂଜିତ), ଜ୍ଞାନଯଜ୍ଞ ସମେତ ପାଂଚ ପ୍ରକାର ଯଜ୍ଞ କଥିତ। କିଏ ଦ୍ରବ୍ୟଦାନକରି, କିଏ ସ୍ତୁତି କରି, କିଏ ରେଚକ, ପୂରକ ଓ କୁମ୍ଭକ ଇତ୍ୟାଦି

ସାଧନା କରି ଏବଂ ପ୍ରତ୍ୟାହାରାଦି ଅନ୍ୟାନ୍ୟ ଯାଗାଙ୍ଗ ଆଶ୍ରୟକରି, କିଏ ବା ମୋକ୍ଷ ଶାସ୍ତ୍ର ଅଧ୍ୟୟନକରି, କିଏ ବା ଜ୍ଞାନଲାଭକରି ଯଜ୍ଞାନୁଷ୍ଠାନ କରନ୍ତି (ଗୀତା ୪ର୍ଥ ୨୪-୩୩ ଶ୍ଳୋକ ଦ୍ରଷ୍ଟବ୍ୟ) । ବହୁ ପ୍ରକାର ଯଜ୍ଞ ବିସ୍ତାରିତ- ଏସବୁ କାୟିକ, ବାଚିକ, ମାନସିକ ଓ କର୍ମଜ, ନୈଷ୍କର୍ମ୍ୟ ରୂପେ ନୁହେଁ । ଦ୍ରବ୍ୟ ଚିତ୍ତକୁ ଶୁଦ୍ଧିକରେ ଏବଂ ଜ୍ଞାନ ଯଜ୍ଞର ଅଧିକାରୀ କରାଏ । ପୁନଶ୍ଚ ମହାଭାରତ ଶାନ୍ତିପର୍ବ ୧୭୫ ଅଧ୍ୟାୟରେ ଅଛି- ପିତ୍ରପୁତ୍ର ତୋ ମୁନିः । ବାଙ୍ମନ କର୍ମଯଜ୍ଞଶ୍ଚ ଭବ ଦଗାୟନେ । ଉତ୍ତରାୟଣ କାଳରେ ଶାନ୍ତି ଯଜ୍ଞ, ନିତ୍ୟ ଉପନିଷଦର୍ଥ ଚିନ୍ତନ ବ୍ରହ୍ମଯଜ୍ଞର ଅନୁଷ୍ଠାନରେ ରତ, ମନନଶୀଳ ପ୍ରଣବ ଜପରୂପେ ବା – ପରଂବ୍ରହ୍ମଙ୍କର ମନନ ରୂପ ମନୋଯଜ୍ଞ (ଅକାର ମକାରାଦ ମାତ୍ରାମାନଙ୍କର ପୂର୍ବ ପୂର୍ବର ଉତ୍ତଚଉତ୍ତର ଲୟକରଣ) ସ୍ନାନଶୌଚ ଗୁରୁଶୁଶ୍ରୂଷାଦି ଅବଶ୍ୟ କରଣୀୟ କର୍ମଯଜ୍ଞର ଅନୁଷ୍ଠାନ କରିବି (ମୋ ତୁଲ୍ୟ ପ୍ରାଜ୍ଞ ପିଶାଚାର ନିଷ୍ଫଳ କ୍ଷେତ୍ର ଯଜ୍ଞ ସଦୃଶ ହିଂସା ସାଧଦ୍ୱାରା କିପରି ଯାଗ କରିବାରେ ସମର୍ଥ ହେବି) ।

ବ୍ରହ୍ମପୁରାଣ ୧୪୫ ଅଧ୍ୟାୟରେ ଲିଖିତ:- ମାର୍କଣ୍ଡେୟ, ଭରଦ୍ୱାଜ, ଅତ୍ରି, ବିଶିଷ୍ଠ, ଯାଜ୍ଞବଳକ ଆଦି ବ୍ୟକ୍ତି କେଉଁଥିରେ ଅନାୟାସରେ ମୁକ୍ତିହୁଏ ଏହାର ଆଲୋଚନା କଲେ । କିଏ ଜ୍ଞାନର, କିଏ କର୍ମର, କିଏ କର୍ମ-ଜ୍ଞାନ ଉଭୟର ପ୍ରଶଂସା କଲେ । କିଛି ସ୍ଥିର ନ ହେବାରୁ ବ୍ରହ୍ମା ଓ ବିଷ୍ଣୁଙ୍କ ପରାମର୍ଶ ଲୋଡ଼ିଲେ । ସନ୍ତୁଷ୍ଟ ନ ହୋଇ ଶିବଙ୍କ ନିକଟକୁ ଗଲେ । ଶିବଙ୍କୁ କହିଲେ- ଜ୍ଞାନ ପ୍ରଧାନ ହେଲେହେଁ, ଜ୍ଞାନ ଯେତେବେଳେ କର୍ମର ରୂପାନ୍ତର ଏବଂ ସେହି ଜ୍ଞାନକୁ ଯେତେବେଳେ କର୍ମ କୁହାହୁଏ, ସେତେବେଳେ ଜ୍ଞାନ ହିଁ କର୍ମଦ୍ୱାରା ସିଦ୍ଧିପ୍ରାପ୍ତ ହେବେ । କର୍ମହିଁ ସବୁ । କର୍ମ ବ୍ୟତୀତ ଆଉ କାହାରି ଅସ୍ତିତ୍ୱ ଦେଖାଯାଏନାହିଁ । ବିଦ୍ୟାଭ୍ୟାସ, ଯଜ୍ଞାନୁଷ୍ଠାନ, ଯୋଗାଚରଣ, ସମସ୍ତହିଁ କର୍ମ । ଅକର୍ମୀ ପ୍ରାଣୀ କୁତ୍ରାପି ନାସ୍ତି । କର୍ମହିଁ ପ୍ରକୃତପକ୍ଷେ ମୁକ୍ତିର କାରଣ । କର୍ମ ଉପରେ ଜ୍ଞାନର ପ୍ରାଧାନ୍ୟ କହିବା ଉନ୍ମତ୍ତର ପ୍ରଳାପ- କ୍ରିୟାରୂପଞ୍ଚ ତଜ୍ଜ୍ଞାନଂ କ୍ରିୟା ସୈବ ମୁଚ୍ୟତେ । ତସ୍ମାଦ୍ ସର୍ବାଣି ଭୂତାନି କର୍ମଣାସିଦ୍ଧି (ବାୟୁପୁରାଣ) । କର୍ମୈବବିଶ୍ୱତୋବ୍ୟପି ତଦୃତେ ନାସ୍ତିକିଞ୍ଚନ । ଅଭ୍ୟାସୋ ଯଜ୍ଞକୃତିର୍ଯୋଗାଭ୍ୟାସଃ ଶିବାର୍ଚ୍ଚନମ୍ । --- କର୍ମୈବ ନାକର୍ମୀ ପ୍ରାଣୀ କ୍ୱାପ୍ୟତ୍ରବିଦ୍ୟତେ । --- କାରଣଂ ତସ୍ମାଦନ୍ୟଦୁନ୍ମତ୍ତଚେଷ୍ଟିତମ୍ । (ବାୟୁ ପୁରାଣ- ୧୪୫ ଅଧ୍ୟାୟ ୮-୧୦) ।

କର୍ମ, ଜ୍ଞାନ ଓ ଭକ୍ତି: କେହି କାହାରିକୁ ଛାଡ଼ି ରହି ପାରିବେନାହିଁ । ଲୋକର ପ୍ରଥମରେ ଦର୍ଶନ, ଶ୍ରବଣ ସ୍ୱାଦ୍ୱାଦି କୌଣସି ପଦାର୍ଥର ସମ୍ବନ୍ଧରେ ଗୋଟିଏ ସାଧାରଣ ଧାରଣା ଜନ୍ମେ । ତହୁଁ ତାର ତଦ୍‌ପ୍ରତି ଅନୁରକ୍ତି, ଶ୍ରଦ୍ଧା ଓ ବିରକ୍ତି ବା ଅଶ୍ରଦ୍ଧା ସଙ୍ଗେ ସଙ୍ଗେ ଜନ୍ମେ । ଅନୁରକ୍ତି ବା ଶ୍ରଦ୍ଧା ଜନ୍ମିଲେ ସେ ତାହା ଲାଭ କରିବାକୁ ଆଗ୍ରହୀ ହୁଏ । ସେହି କାମନା ତାକୁ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଏ । ତହୁଁ ସେ କାର୍ଯ୍ୟତତ୍ପର ହୁଏ । ତହୁଁ ଏହାଦ୍ୱାରା ଉତ୍ତରୋତ୍ତର ସେହି ପଦାର୍ଥରେ ଜ୍ଞାନ ଓ ଆସକ୍ତି ଜନ୍ମେ । ତହୁଁ କର୍ମ, ଜ୍ଞାନ ଓ ଭକ୍ତି ପରସ୍ପର ସାପେକ୍ଷ । ପୃଥକ୍ ହେଲେହେଁ ଭେଦ ବିଦ୍ୟମାନ ।

**ଜ୍ଞାନ**: ଯାହାଦ୍ୱାରା ପଦାର୍ଥବିଶେଷର ତତ୍ତ୍ୱ ଜଣାଯାଏ, ତାହା ଜ୍ଞାନ । ପରନ୍ତୁ ଜୀବର ପରମ କର୍ତ୍ତବ୍ୟ ହେଉଛି ତତ୍ତ୍ୱଜିଜ୍ଞାସା । ସଂସାରରେ ଜୀବନ କର୍ମମାନଙ୍କରେ ପ୍ରକୃଷ୍ଟ ପ୍ରୟୋଜନ ନାହିଁ, କିନ୍ତୁ ଅଛି ତତ୍ତ୍ୱ ଜିଜ୍ଞାସାରେ । ଜୀବସ୍ୟ ତତ୍ତ୍ୱଜ୍ଞାନାନାର୍ଥେ । ଯସ୍ୟେହ କର୍ମଭିଃ (ଭାଗବତ ସ୍କ-୧ –୨ଅଧ୍ୟାୟ-) । ସେହି ତତ୍ତ୍ୱ ହେଉଛି ବ୍ରହ୍ମ, ପରମେଶ୍ୱର ଓ ଭଗବାନ । ବଦନ୍ତି ତତ୍ତ୍ୱ ବିଦସ୍ତ ତ୍ତ୍ୱଂ ଯଜ୍ଜ୍ଞାନ- ମଦ୍ୱୟମ୍ । ବ୍ରହ୍ମେତିପରମାତ୍ମେତି ଭଗବାନିତି ଶବ୍ଦ୍ୟତେ (ଭା ୧୨-୧୧) । ଭଗବାନ ଅରୂପ ଓ ଜ୍ଞାନ ସ୍ୱରୂପ ହେଲେହେଁ ତାଙ୍କର ରୂପ କଳ୍ପିତ ହୁଏ । ଶିବମାତ୍ମନିପଶ୍ୟନ୍ତି ପ୍ରତିମାସୁ ନ ଯୋଗିନଃ । ଅଜ୍ଞାନାଂ ଭାବନାର୍ଥାୟ ପ୍ରତିମାଃ ପରିକଳ୍ପିତାଃ- ଜାବାଳଦର୍ଶନୋପନିଷଦ୍ । ଯୋଗୀମାନେ ନିଜଠାରେ ଈଶ୍ୱରଙ୍କୁ ଦେଖନ୍ତି, ମୂର୍ଖଙ୍କର ଈଶ୍ୱର ଭାବନା ନିମିତ୍ତ ପ୍ରତିମା ସବୁ କଳ୍ପିତ । ଯେ ପର୍ଯ୍ୟନ୍ତ ହୃଦୟରେ ଭକ୍ତି ଦୃଢ ଭାବରେ ନ ଜନ୍ମିଛି, ସେପର୍ଯ୍ୟନ୍ତ ସ୍ଥୂଳରୂପ ପୂଜିବାକୁ ହେବ । ଯାବଦ୍ ନଜାୟତେ ପରାବରେଽସ୍ମିନ ବିଶ୍ୱେଶ୍ୱରେ ଦ୍ରଷ୍ଟରି ଭକ୍ତିଯୋଗଃ ତାବଦ୍ ସ୍ଥବୀୟଃ ପୁରୁଷସ୍ୟ ରୂପଂ କ୍ରିୟାବସ୍ଥାନେ ପ୍ରାୟତଃ ସ୍ମରେତ୍ (ଭାଗ-୨-୨-୧୪) ଈଶ୍ୱରଙ୍କର ତିନିଗୋଟି ଶରୀର- କାରଣ, ସୂକ୍ଷ୍ମ ଓ ସ୍ଥୂଳ । କେତେକ ଭଗବାନଙ୍କୁ ନିରାକାର, କେତେକ ସାକାର, କେତେକ ଉଭୟ ନିରାକାର ଓ ସାକାର କହନ୍ତି ।

ସର୍ବପରିପୂର୍ଣ୍ଣସ୍ୟ ପରବ୍ରହ୍ମଣଃ ପରମାର୍ଥତଃ ସାକାରଂ । ବିନା କେବଳ ନିରାକାରତ୍ୱଂ ଯଦ୍ୟଭିମତଂ ତର୍ହି କେବଳ ନିରାକାତ୍ୱଂ ଯଦ୍ୟଭିମତଂ ତର୍ହି କେବଳ ନିରାକାରସ୍ୟ ଗଗନସ୍ୟେବ ପରବ୍ରହ୍ମଣୋଽପି ଜଡ଼ତ୍ୱ ମାପଦ୍ୟେତ । ପରବ୍ରହ୍ମଙ୍କୁ କେବଳ ନିରାକାର କହିଲେ ସେ ଆକାଶତୁଲ୍ୟ ଜଡ଼ ହେବେ । ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦର୍ଶନ ପରେ ଅର୍ଜୁନଙ୍କର ତାଙ୍କଠାରେ ଦୃଢଭକ୍ତି ସହ ଅହୈତୁକ ବିଶ୍ୱାସ ଜନ୍ମିଲା । ତେଣୁ ଜ୍ଞାନ ପରେ ଭକ୍ତି ଜନ୍ମିବାର ଏହା ଏକ ନିଦର୍ଶନ । ସବୁକର୍ମର ପରିସମାପ୍ତି ବା ପରିଣତି ଜ୍ଞାନରେ- ସର୍ବକର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ (ଗୀ ୪-୩୩) । ସାଷ୍ଟାଙ୍ଗ ପ୍ରଣାମ ଜିଜ୍ଞାସା ଓ ସେବାଦ୍ୱାରା ସେହି ଜ୍ଞାନକୁ- ହେ ପାର୍ଥ, ଜାଣ । ତତ୍ତ୍ୱଦର୍ଶୀ ଜ୍ଞାନିଗଣ ତୁମ୍ଭଙ୍କୁ ଭଗବଦ୍ ବିଷୟକ ଜ୍ଞାନ ଉପଦେଶ ଦେବେ । ଏଠାରେ ଗୁରୁଭକ୍ତି ଓ ସେବାରୁ ଜ୍ଞାନଲାଭ- ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା । ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶନଃ (ଗୀ୪-୩୪-) ଜ୍ଞାନଠାରୁ ଆଉ ସଂସାରରେ ପବିତ୍ର କି ଶ୍ରେଷ୍ଠ କିଛିନାହିଁ- ଯୋଗସିଦ୍ଧ ପୁରୁଷ ସ୍ୱୟଂ ସେ ଜ୍ଞାନଲାଭ କରେ । ନହିଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ । ଯତ୍ ସ୍ୱୟଂ ଯୋଗ ସଂସିଦ୍ଧଃ କାଲୋନାତ୍ମନି ବିନ୍ଦତି- (ଗୀ୪-୩) ।

ଶୁଦ୍ଧେ ଚେତସି ତସୈବ ସ୍ୱାତ୍ମଜ୍ଞାନଂ ପ୍ରକାଶତେ । ତସ୍ମାଦ୍‌ଜ୍ଞାନଂ ଭବେଦ୍ ଯୋଗା ଜନ୍ମନୈକେନ ପଦ୍ମଜ- (ଯୋଗଶିକ୍ଷୋପନିଷଦ୍ ୧-୬୫)

ମହେଶ୍ୱର ବ୍ରହ୍ମାଙ୍କୁ କହୁଅଛନ୍ତି, ନିର୍ମଳ ଚିତ୍ତରେ ଆତ୍ମଜ୍ଞାନ ପ୍ରକାଶ ହୁଏ । ହେ ବ୍ରହ୍ମା, ଏକ ଜନ୍ମରେ ଯୋଗରୁ ଜ୍ଞାନ ହୁଏ । ପୁନଶ୍ଚ ଜ୍ଞାନେନୈବ ବିନା ଯୋଗୋନସିଧ୍ୟତି କଦାଚନ । ଜନ୍ମାନ୍ତରୈଶ୍ଚ ନିଭିର୍ଯୋଗାଜ୍ଞାନେନ ଲଭ୍ୟତେ । ଜ୍ଞାନଂ ତୁ ଜନ୍ମ ଜନ୍ମନୈକେନ

ଯୋଗାଦେବ ପ୍ରଜାୟତେ । ପୁନଶ୍ଚ ସେହି ଉପନିଷଦରେ କଥିତ ଅଛି ଯେ, ଜ୍ଞାନ ବିନା ଯୋଗ ସିଦ୍ଧ ହୁଏନାହିଁ । ବହୁ ଜନ୍ମାନ୍ତରରେ ଜ୍ଞାନଦ୍ୱାରା ଯୋଗ ଲାଭ ହୁଏ । ଏକ ଜନ୍ମରେ ଯୋଗରୁ ଜ୍ଞାନ ଜନ୍ମେ । ଜ୍ଞାନରୁ ଯୋଗ ଓ ଯୋଗରୁ ଜ୍ଞାନ ଜନ୍ମେ । ତେଣୁ କର୍ମ ନ ସରିଗଲେ ଜ୍ଞାନ ମଧ ଜନ୍ମେ ନାହିଁ- ଜ୍ଞାନଦ୍ୱାରା ପରମକର୍ମ ଲାଭହୁଏ- ଏହାର ଏହି ମର୍ମ ।

ଗୀତା ୧୩ ଅଧ୍ୟାୟରେ ଭଗବାନ୍ କୃଷ୍ଣଚନ୍ଦ୍ର ଅର୍ଜୁନଙ୍କୁ କହୁଅଛନ୍ତି- ଶରୀର ଓ କ୍ଷେତ୍ରଜ୍ଞ (ଜୀବ) ଏହି ଉଭୟର ପୃଥକ୍ ପୃଥକ୍ ଜ୍ଞାନହିଁ ମୋ ମତରେ ପ୍ରକୃତ ଜ୍ଞାନ ବୋଲି ଜାଣିବ "କ୍ଷେତ୍ର କ୍ଷେତ୍ରଜ୍ଞୟୋ ର୍ଜ୍ଞାନଂଯତ୍ତଜ୍ଜ୍ଞାନଂ ମତଂ (ଗୀ୧୩-୩-) ।

ପୁନଶ୍ଚ ଅମାନିତ୍ୱ ମଦମ୍ଭିତ୍ୱ ମହିଂସା କ୍ଷାନ୍ତିରାର୍ଜବମ୍ । ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହ ଚାନନ୍ୟ ଯୋଗେନ ଭକ୍ତିରବ୍ୟଭିଚାରିଣୀ । ବିଭକ୍ତ-ଦେଶ- ସେବିତ୍ୱମରତିର୍ଜନସଂସଦ । ଅଧ୍ୟାତ୍ମଜ୍ଞାନ ନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶକମ୍ । ଏତଦ୍ ଜ୍ଞାନମିତ ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା (ଗୀତା ୧୩-୮-୧୨) । ସ୍ୱଗୁଣ ଶ୍ଳାଘା-ରାହିତ୍ୟ, ଦମ୍ଭଶୂନ୍ୟତା, ପରପୀଡ଼ାତ୍ୟାଗ, ସହିଷ୍ଣୁତା, ସ୍ଥିରତା, ଆତ୍ମସଂଯମ, ଇନ୍ଦ୍ରିୟ ବିଷୟଭୋଗରେ ବୈରାଗ୍ୟ, ନିରହଙ୍କାର, ଜନ୍ମମୃତ୍ୟୁଜରାବ୍ୟାଧିଜନିତ ଦୁଃଖରୂପ ଦୋଷଦର୍ଶନ, ପୁତ୍ରଦାରାଗୃହାଦିରେ ଆସକ୍ତି ତ୍ୟାଗ, ସେସବୁଙ୍କ ସୁଖରେ ସୁଖୀ, ଦୁଃଖରେ ଦୁଃଖୀ ନ ହେବା ରୂପ ଅନଭିଷଙ୍ଗ, ଇଷ୍ଟାନିଷ୍ଟ ପ୍ରାପ୍ତିରେ ସର୍ବଦା ସମଭାବ- ମୋଠାରେ ସର୍ବାତ୍ମ ଦୃଷ୍ଟିରେ ଏକାନ୍ତ ଭକ୍ତି, ନିର୍ମଳ ସ୍ଥାନରେ ଅବସ୍ଥିତି, ପ୍ରାକୃତ ଜନସମାଜରେ ବିରତି, ଅଧ୍ୟାତ୍ମଜ୍ଞାନରେ ନିତ୍ୟନିଷ୍ଠା ଏବଂ ତତ୍ତ୍ୱଜ୍ଞାନ ନିମିତ୍ତକ ମୋକ୍ଷର ଆଲୋଚନା- ଏ ସବୁ ଜ୍ଞାନ ସାଧନ ଏବଂ ଏହାର ବିପରୀତ ସ୍ୱ ଗୁଣଶ୍ଳାଘାଦି ଜ୍ଞାନବିରୋଧୀ ବୋଲି କଥିତ । ଏ ସବୁ ଜ୍ଞାନ ପ୍ରାପ୍ତିର ଉପାୟରୂପେ କଥିତ । ଏକାନ୍ତ ଭକ୍ତି ଏଠାରେ ଜ୍ଞାନର ସାଧନ ରୂପେ ମଧ କଥିତ । ଏଠାରେ ଜ୍ଞାନର ଅଧୀନ ଭକ୍ତି । ଅମାନିତ୍ୱଠାରୁ ତତ୍ତ୍ୱଜ୍ଞାନାର୍ଥ ଦର୍ଶନ ପର୍ଯ୍ୟନ୍ତ ବିଂଶତି ସଂଖ୍ୟକ ଜ୍ଞାନ କଥିତ । ତତ୍ତ୍ୱ ଅର୍ଥାତ୍ ବ୍ରହ୍ମ, ପରମାତ୍ମା ଭଗବାନ୍ ଲାଭର ଉପାୟ ବୋଲି ଏସବୁ ଜ୍ଞାନ ନିର୍ଦ୍ଦେଶ କରାହୋଇଅଛି । ଏଠାରେ ଜ୍ଞାନ-ସାଧନ ଭକ୍ତିଜ୍ଞାନ ରୂପେ କଥିତ ।

ଗୀତାର ସପ୍ତମ ଅଧ୍ୟାୟରେ କୃଷ୍ଣ ଅର୍ଜୁନକୁ କହୁଅଛନ୍ତି- ଚାରିପ୍ରକାର ମୋର ସ୍ୱୀକୃତି ଭକ୍ତ । ଆର୍ତ୍ତ, ଜିଜ୍ଞାସୁ,ଅର୍ଥାର୍ଥୀ ଓ ଜ୍ଞାନୀ । ସେମାନଙ୍କ ମଧରେ ଜ୍ଞାନୀ ଏକନିଷ୍ଠ ଭକ୍ତ ଓ ନିତ୍ୟ ମତ୍‌ପରାୟଣ । ମୋର ଜ୍ଞାନୀ ଅତିପ୍ରିୟ- ମୋର ଜ୍ଞାନୀ ଆତ୍ମା- ଇତ୍ୟାଦି । ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ । ଆର୍ତ୍ତୋଜିଜ୍ଞାସୁରର୍ଥାର୍ଥୀଜ୍ଞାନୀଚ ଭରତର୍ଷଭ--- ପ୍ରିୟୋହିଜ୍ଞାନିନୋଽତ୍ୟର୍ଥମହଂସଚ ମମପ୍ରିୟଃ, ଏହାଦ୍ୱାରା ଜ୍ଞାନୀଭକ୍ତ ସର୍ବଶ୍ରେଷ୍ଠ ରୂପେ ପ୍ରତିପାଦିତ । ଏହାର ସମର୍ଥନରେ ଭା ୧-୨-୧୨ ଶ୍ଳୋକ-

**ଭକ୍ତି:** ଆତ୍ମାରାମଶ୍ଚାମୁନୟୋନିଗ୍ରନ୍ଥା ଅପ୍ୟୁରୁକ୍ରମେ କୁର୍ବନ୍ତି ହୈତୁକୀଂଭକ୍ତି ମିତ୍‌ଥମ୍ଭୂ ତଗୁଣୋହରି:- ଯେଉଁ ମୁନିମାନେ ବିଷୟାସକ୍ତ ନୁହନ୍ତି ଓ ଆତ୍ମାରେ ପରମାତ୍ମାଙ୍କୁ ଦେଖନ୍ତି, ସେମାନେ ମଧ ବିଷ୍ଣୁଙ୍କଠାରେ ଅପ୍ରୋୟଜନରେ ଭକ୍ତି କରନ୍ତି । ହରି ଏହି

ପ୍ରକାରର ଗୁଣଯୁକ୍ତ ଅଟନ୍ତି (ଅର୍ଥାତ୍ ମୁନିଙ୍କ ହୃଦୟକୁ ଦୃଢ କରି ସ୍ୱ ପ୍ରତି ଆକର୍ଷଣ କରନ୍ତି) ।

ଉକ୍ତି: ସର୍ବୋପାଧିବିନିର୍ମୁକ୍ତଂ ତଦ୍‌ପରତ୍ୱେନ ନିର୍ମଳଂ । ହୃଷୀକେଶ ହୃଷୀକେଶ ସେବନଂ ଭକ୍ତିରୁଚ୍ୟତେ (ନାରଦ ପଞ୍ଚତନ୍ତ୍ର) । ଇନ୍ଦ୍ରିୟଗଣଦ୍ୱାରା ହୃଷୀକେଶଙ୍କୁ ନିଷ୍ଠାର ସହିତ ଭଜନକୁ ଭକ୍ତି କହନ୍ତି । ଏହି ସେବା ସର୍ବୋପାଧି (ସର୍ବଛନ୍ଦ) ଶୂନ୍ୟ, ଅର୍ଥାତ୍ ନିର୍ମଳ । ପୁନଶ୍ଚ ମାହାତ୍ମ୍ୟଜ୍ଞାନଯୁକ୍ତ ସୁଦୃଢ ଅଥଚ ସର୍ବବିଷୟରୁ ଅଧିକ ଯେ ସ୍ନେହ, ତାହାକୁ ଭକ୍ତି କହନ୍ତି । ଏହିପରି ଭକ୍ତି ବ୍ୟତୀତ ପଞ୍ଚବିଧ ମୁକ୍ତି- ସାରୂପ୍ୟ, ସାମୀପ୍ୟ, ସାଲୋକ୍ୟ, ସାର୍ଷ୍ଟି(ସମାନ ଐଶ୍ୱର୍ଯ୍ୟଯୁକ୍ତ) ଓ ସାଯୁଜ୍ୟ କେତେବେଳେହେଁ ଲବ୍‌ଧ ହୁଏନାହିଁ । ଈଶ୍ୱରପରାନରୁକ୍ତିର୍ଭକ୍ତି (ଯୋଗସୂତ୍ର)- ଈଶ୍ୱରଙ୍କଠାରେ ଏକାନ୍ତ ଅନୁରାଗ ହିଁ ପରାଭକ୍ତି- ଅପରାଭକ୍ତି, ପାଦବନ୍ଦନାଦି ଓ ଗୁଣସ୍ତବନାଦି- କାୟମନୋବାକ୍ୟରେ କୃତ ହୁଏ । ପୁନଶ୍ଚ ମନୋଗତିର ବିଚ୍ଛିନ୍ନ ହରୌପ୍ରେମ ପରିପ୍ଲୁତା । ଅଭିସନ୍ଧି ବିନିର୍ମୁକ୍ତଭକ୍ତିର୍ବିଷ୍ଣୁବଶକରୀ (ନାରଦ ପଞ୍ଚରାତ୍ର) । ଅଭିସନ୍ଧିଶୂନ୍ୟ ଏବଂ ପ୍ରେମ ପରିପ୍ଲୁତ ଭଗବାନଙ୍କଠାରେ ମନର ଯେ ଗତି, ତାହାକୁ ଭକ୍ତି କୁହାଯାଏ । ବିଧିମାର୍ଗୀଙ୍କର ପ୍ରେମଭକ୍ତି ମହିମା ଜ୍ଞାନଯୁକ୍ତ । ରାଗାନୁଗାଶ୍ରିତଙ୍କର ପ୍ରେମଭକ୍ତି ମାଧୁର୍ଯ୍ୟ ଗୁଣଯୁକ୍ତ । ସନକ, ସନାତନ, ଉଦ୍ଧବ, ଶୁକଦେବ ପ୍ରଭୃତି ଜ୍ଞାନୀ ପରମଭକ୍ତ । ସାଧାରଣ ଲୋକଙ୍କ ପକ୍ଷରେ ଶୁଦ୍ଧାଭକ୍ତି "ଯେ ଚୌ ଭଗବତା ପ୍ରୋକ୍ତା ଉପାୟା ଆତ୍ମଲବ୍‌ଧୟୋ ଅଜ୍ଞପୁଂସାମବିଦୂଷାଂ ବିଦ୍ଧି ଭାଗବତାନ୍ ହିତାନ୍ (ଭା- ୧୧-୨୩୪)

ଅଜ୍ଞ ଜନଗଣଙ୍କର ମଧ୍ୟ ଅନାୟାସରେ ଆତ୍ମଲାଭ ନିମିତ୍ତ ଭଗବାନ୍ ଯେ ସବୁ ଉପାୟ ନିରୂପଣ କରିଛନ୍ତି, ତାହାହିଁ ଭଗବତ ଧର୍ମ ବୋଲି ଜାଣିବ । ଅଜିତେନ୍ଦ୍ରିୟ ଗୁଣାଶ୍ରିତ ଲୋକଙ୍କର "ଗତି ବିଯୋଣୋଽସ୍ୟାର୍ହତିବେଦ୍ଧୁଂ ବିଭୋଃଆନନ୍ତ ନିବୃତ୍ତତଃ ସୁଖମ୍ । ପ୍ରବର୍ତ୍ତମାନସ୍ୟ ଗୁଣୈରତତଃ ପ୍ରଭୋ ଦର୍ଶୟ ଚେଷ୍ଟିତଂ ବିଭୋ ।" ବ୍ୟାସଙ୍କୁ କହିଲେ ଭଗବାନଙ୍କ ପ୍ରାପ୍ତିରୂପ ଜିତେନ୍ଦ୍ରିୟ ବିଜ୍ଞମାନେ ନିବୃତ୍ତି ମାର୍ଗରେ ବଶୀଭୂତ । ସେମାନଙ୍କ ଗତି ନିମିତ୍ତ ଭଗବାନଙ୍କ ଲୀଳା ବର୍ଣ୍ଣନା କର । ବ୍ୟାସ ଭାଗବତ ରଚନାକଲେ । ସେହି ଲୀଳା ନବଧା ଭକ୍ତିରେ ସାର୍ଥକତା ଲାଭକରେ । "କୀର୍ତ୍ତନଂ ବିଷ୍ଣୋ ସ୍ମରଣଂ ପାଦ ସେବନମ୍ । ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମ ନିବେଦନମ୍ ।" ଏହା ଭକ୍ତିରୂପେ ଗୃହୀତ । ଏ ସବୁର ଚରିତାର୍ଥତା "ଶ୍ରବଣେ ତଦଂଦ୍ର ଭଜନେ ଲକ୍ଷ୍ମୀଃ ପୃଥୁ ଅକ୍ରୁରସ୍ତ୍ୱଭିନ୍ଦନେ-କପିପତି ର୍ଦାସ୍ୟେ ସଖ୍ୟେ ସର୍ବସ୍ୱାତ୍ମନିବେଦନେ ବଳିରଭୂଦ୍ କୃଷ୍ଣାପ୍ତିରେଷାଂ" (ଭା ୯-୫-୨୩) । ଭାଗବତ ଶ୍ରବଣରେ ପରୀକ୍ଷିତ, ଶୁକ; ସ୍ମରଣରେ ପ୍ରହ୍ଲାଦ, ପାଦ ସେବାରେ ବିଦୁର, ପୂଜାରେ ପୃଥୁ, ବନ୍ଦନରେ ଅକ୍ରୁର, ଦାସ୍ୟରେ ହନୁମାନ, ସଖ୍ୟରେ ଅର୍ଜୁନ ଓ ଆତ୍ମ ନିବେଦନରେ ବଳୀ କୃତାର୍ଥ ହେଲେ ଗୋଟିଏ ଗୋଟିଏ ମୁଖ୍ୟ ଭିଭାବରେ ସେବାକରି- ଏମାନଙ୍କର କୃଷ୍ଣପ୍ରାପ୍ତି ହୋଇଥିଲେ ଅନେକାଂଶା ଭକ୍ତି ମହାଭାଗବତ ଅମ୍ବରୀକ୍ଷଙ୍କଦ୍ୱାରା ପ୍ରଦର୍ଶିତ । ସର୍ବେ ମନଃ କୃଷ୍ଣପଦାଗବିନ୍ଦୟୋର୍ବଚାଂସି --ଗୁଣାନୁବର୍ଣ୍ଣନେ । କରୌହରେର୍ମନ୍ଦରମାର୍ଜନ ଶ୍ରୁତିଚକାରଅଚ୍ୟୁତସତ୍କଥୋଦୟେ ।

ଲିଙ୍ଗାଲୟାଦର୍ଶନେ ଦୃଶୌ ତଦ୍‌ଭୃତ୍ୟଗାତ୍ର ସ୍ପର୍ଶେ ସଙ୍ଗମଃ ଘ୍ରାଣଞ୍ଚ ତଦ୍‌ପାଦ ସରୋଜସୌର ଶ୍ରୀମତ୍ତୁଳସ୍ୟା ରସନା ତଦର୍ପିତେ । ପାଦୌହରେଃ ପଦାନୁସରଣେ । ଶିରୋ ହୃଷୀକେଶ ପଦାଭି ବନ୍ଦ କାମଞ୍ଚ ଦାସ୍ୟେ ନତୁ କାମକାମ୍ୟୟା (ଭାଗବତ ୯ମ ଶ୍ଳୋକ)

ମନ ପାଦରେ, ବାକ୍ୟ ଗୁଣ ଗାନରେ, ହସ୍ତ ମନ୍ଦିର ମାର୍ଜ୍ଜନରେ, କର୍ଣ୍ଣ କଥା ଶ୍ରବଣରେ, ଚକ୍ଷୁ ମନ୍ଦିର ଦର୍ଶନରେ, ଅଙ୍ଗସଙ୍ଗ ଗାତ୍ର ସଂସ୍ପର୍ଶରେ, ନାସା ଭଗବତ୍ ପାଦସ୍ଥିତ ସୁଗନ୍ଧ ଗ୍ରହଣରେ, ଜିହ୍ୱା ପ୍ରସାଦ ସେବାରେ, ପାଦ ଗମନରେ, ମସ୍ତକ କୃଷ୍ଣଙ୍କ ପାଦ ପୂଜାରେ, ଦ୍ୱକ ବିଷୟ ଭୋଗରେ ନୁହେଁ, ତାହା କେବଳ—ଦାସ୍ୟର ନିଯୁକ୍ତ । ସେହି ଭକ୍ତିର ମହାତ୍ମ୍ୟ ଭାଗବତରେ କଥିତ:- "ତୁଚ୍ଛଦଧାନାଂ ମୁନୟୋ ବୈରାଗ୍ୟ ଯୁକ୍ତୟା । ପଶ୍ୟନ୍ତି ଚାତ୍ମନାତ୍ମନାଂ ଭକ୍ତ୍ୟା ଗୃହୀତୟା ଯୁକ୍ତୟା । ପଶ୍ୟନ୍ତି ଚାତ୍ମାନାତ୍ମାନଂ ଭକ୍ତ୍ୟା ଗୃହୀତୟା" (ଭା ୧-୨-୧୨) । ବେଦାନୁମୋଦିତ ଜ୍ଞାନଯୁକ୍ତ ଭକ୍ତିଦ୍ୱାରା ଶ୍ରଦ୍ଧାବନ୍ତ ମୁନିମାନେ ଆତ୍ମାରେ ଦେଖନ୍ତି । "ପୁନଃ ନ ସାଧୟତି ମାଂ ଯୋ ନ ସାଂଖ୍ୟ ଧର୍ମ ଉଦ୍ଧବ । ନ ସାଧ ମୃସ୍ତପତ୍ୟଯେକ୍ରିର୍ମଜୋର୍ଜିଣା" (ଭା ୧୧-୧୪-୭) । ଶ୍ରୀକୃଷ୍ଣ କହିଲେ , ଉଦ୍ଧବ ଯେପରି ମୋଠାରେ ବିଶୁଦ୍ଧ ଭକ୍ତିରେ ମୋତେ ବଶ କରିପାରେ, ସେପରି ଯୋଗ, ସାଂଖ୍ୟ, ବର୍ଣ୍ଣାଶ୍ରମ, ବେଦପାଠ, ତପସ୍ୟା ଏବଂ ଦାନ ବଶୀଭୂତ କରିନାହିଁ । ପୁନଶ୍ଚ:- "ଯଦ୍ କର୍ମଭିର୍ଯ୍ୟଦ୍ ତପସା--- । ସ୍ୱର୍ଗାପବର୍ଗଂ ମଦ୍ଧାମ କଥଞ୍ଚିତ ଯଦୁ" (ଭା ୧୧-୨୦-୩୦) । କର୍ମ, ତପସ୍ୟା, ଜ୍ଞାନ, ସଂଖ୍ୟା, ଯୋଗ, ଦାନ, ଧର୍ମ ବା ଅନ୍ୟାନ୍ୟ ଶ୍ରେୟ ସାଧନଦ୍ୱାରା ଜଗତରେ ଯାହା କିଛି ଲବ୍ଧ ହଏ, ମୋର ଭକ୍ତିଯୋଗଦ୍ୱାରା ଅନାୟାସରେ ସେସବୁ ପାଇଥାଏ। ଯଦି କେତେବେଳେ ପ୍ରାର୍ଥନା କରେ, ତେବେ ମୋକ୍ଷ, ଏପରିକି ମୋର ବୈକୁଣ୍ଠଲୋକ ଲାଭ। ଗୀତାରେ ଓ ଭାଗବତରେ ଚିର ଆପତ୍ତି ହେଉଛି, ଶ୍ରେଷ୍ଠ ଭଗବଦ୍ ପ୍ରାପ୍ତିର ସାଧନ । ଯତ୍‌ଶରୋଷି ଦଦାସି ଯତ୍ । ହେ ଅର୍ଜୁନ, ଯାହା କରୁଛ, ଯାହା ଖାଉଛ, ଯାହା ହୋମ କରୁଛ, ଯାହା ଦେଉଛ, ଯାହାକୁ ତପସ୍ୟା କରୁଛ, ତାକୁ ମୋତେ ସମର୍ପଣ କର । "ବାଚା ମନରେନ୍ଦ୍ରିୟେର୍ବା । ବୁଦ୍ଧ୍ୟାସନାବାହ୍ମସ୍ୱଭାବାଦ୍ । କରୋତି ଯଦ୍‌ଯଦ୍ ସକଳଂ ପରସ୍ମୈ ପରାୟଣାୟେତି ସମର୍ପୟେତତ୍" (ଭାଗ ୧୧-୨-୩୬) । ଶିଷ୍ୟ ବିଧିବଶତଃ ତା ସ୍ୱଭାବର ପ୍ରେରଣା ବଶରୁ କାୟ, ମନ, ବାକ୍ୟ, ଇନ୍ଦ୍ରିୟ, ବୁଦ୍ଧି ବା ଚିତ୍ତ ଦ୍ୱାରା ଯେ ସବୁ କର୍ମ କରେ, ସେସବୁ ପରମପୁରୁଷ ନାରାୟଣଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବ । କର୍ମଯୋଗର ଶେଷରେ ଗୀତାରେ ଭଗବାନ ଅର୍ଜୁନଙ୍କୁ କହୁଛନ୍ତି. ତପସ୍ୱୀଙ୍କଠାରୁ, ଜ୍ଞାନୀଙ୍କଠାରୁ ଓ କର୍ମୀଙ୍କଠାରୁ ଶ୍ରଷ୍ଠ ହେଉଛନ୍ତି ଯୋଗୀ। ତହୁଁ ତୁମ୍ଭେ ଯୋଗୀ ହୁଅ, ସବୁ ଯୋଗୀଙ୍କ ମଧ୍ୟରେ ଯେ ଅନ୍ତରରେ ମତ୍‌ପରାୟଣ ହୋଇ ଶ୍ରଦ୍ଧାରେ ମୋତେ ଭଜନକରେ, ସେ ହେଉଛନ୍ତି- "ମନ୍ନିଷ ପରମଭକ୍ତ ଯୋଗିନା ମପିସର୍ବେଷାଂମଦ୍‌ଗତେନାନ୍ତ- ରାତ୍ମନା ଶ୍ରଦ୍ଧାବାନଭଜତେ ଯୋମାସମେଯୁକ୍ତତମୋମତଃ" । ଭଗବାନ କୃଷ୍ଣଚନ୍ଦ୍ର କର୍ମଯୋଗ,ଭକ୍ତିଯୋଗ କହିସାରି, ଶେଷରେ ଏସବୁର ସମନ୍ୱୟ କରି କହିଲେ- "ସର୍ବଧର୍ମାନ୍ ପରିତ୍ୟଜ୍ୟମମେକ ଶରଣମ୍

ବ୍ରଜ, ଅହଂ ତ୍ୱାଂ ସର୍ବ-ପାପେଭ୍ୟଃ ମୋକ୍ଷୟିସାମି ମା ସୁଚଃ ।" ସବୁ ମୌଳିକ କ୍ରିୟାକଳାପ ତ୍ୟାଗକରି ମୋଠାରେ ଶରଣ ପଶ । ମୁଁ ତୁମ୍ଭଙ୍କୁ ସର୍ବ ପାପତାପରୁ ମୁକ୍ତକରି ପରମାନନ୍ଦ ପଦ ପ୍ରଦାନ କରିବି ।

ଭାଗବତରେ ଲିଖିତ ଅଛି ଏବଂ ଏହା ମଧ ଅନୁଭବ ସିଦ୍ଧ ଯେ, ଭଗବାନ୍ ଭକ୍ତର ଅଧୀନ । ତାର ଭୂରିଭୂରି ପ୍ରମାଣ ଅଛି । ବିଷ୍ଣୁଙ୍କର ଦୁର୍ବାସାଙ୍କୁ ଉକ୍ତି- "ଅହଂ ଭକ୍ତି ପରାଧୀନେ ହ୍ୟସ୍ୱତନ୍ତ୍ର ଇବଦ୍ୱିଜ । ସାଧୁଭିର୍ଗ୍ରସ୍ତ ହୃଦୟୋଭକ୍ତୈର୍ଭକ୍ତ ଜନପ୍ରିୟଂ । ନାହଂ ମାତ୍ମାନଂମାଶ ସେ ମଦ୍ ଭକ୍ତୈଃ ସାଧୁଭିର୍ଜନା । ଶ୍ରୀୟମ୍ ଚାତ୍ୟନ୍ତିକାଂ ବ୍ରହ୍ମନ୍ ଯେଷାଂଗତି ରହଃପରା । ଯେ ଦାରାଗାର ପୁତ୍ରପ୍ତାଣାନ୍ ବିତ୍ତମିମଂ ପରାମ୍ । ହିତ୍ୱାମାଂ ଶରଣଂ ଯାତା କଣଂ ତାନ୍ ତ୍ୟକ୍ତୁମୁସହେ । ମୟିନିର୍ବଦ୍ଧ ହୃଦୟାଃ ସାଧବଃ ସମ ଦର୍ଶନାଃ । ବଶୀକୁର୍ବନ୍ତି ମାଂ ଭକ୍ତ୍ୟାସତ୍‌ସ୍ତ୍ରିୟଃ ସତ୍‌ପତିଂ ଯଥା । ମଦ୍ ସେବୟା ପ୍ରଣୀତଂଚ ସାଲୋକ୍ୟାନି ଚତୁଷ୍ଟୟମ ନେଇଛନ୍ତି ସେବୟା। ପୂର୍ଣ୍ଣାଃ କୁତୋଽନ୍ୟଦ୍ କାଳ ବିଦ୍ରୁତମ୍ । ସାଧବୋହୃଦୟଂମହ୍ୟଂ ସାଧୂନାଂ ହୃଦୟଂ ତ୍ୱହମ୍ । ମଦନ୍ୟତେ ନ ଜାନନ୍ତି ନାହଂତେଭ୍ୟୋମନାଗତି । "ହେ ଦୁର୍ବାସା, ମୁଁ ତୁମ୍ଭଙ୍କୁ ରକ୍ଷା କରିପାରିବିନାହିଁ । ମୁଁ ଭକ୍ତର ଅଧୀନ, ମୋର ସ୍ୱାତନ୍ତ୍ର୍ୟ ନାହିଁ । ମୋର ହୃଦୟ ସାଧୁଙ୍କଦ୍ୱାରା ଜଡ଼ିତ । ମୁଁ ଭକ୍ତପ୍ରିୟ । ସାଧୁଭକ୍ତଙ୍କ ବିନା ମୋର ପ୍ରଭୁତ୍ୱ ନାହିଁ । ଯେ ସବୁ ଛାଡ଼ି ମୋତେ ଆଶ୍ରିଛନ୍ତି, ମୁଁ କିପରି ତାଙ୍କୁ ଛାଡ଼ିବି ? ସେମାନେ ମୋତେ ବଦ୍ଧ କରିଛନ୍ତି, ମୋ ସେବାରେ ପ୍ରୀତ ହୋଇ ସେମାନେ ମୁକ୍ତି ଚାହାନ୍ତିନାହିଁ । ସାଧୁମାନେ ମୋର ହୃଦୟ, ମୁଁ ସାଧୁଙ୍କ ହୃଦୟ । ମୋଛଡ଼ା ସେମାନେ କିଛି ଜାଣନ୍ତିନାହିଁ । ତାଙ୍କ ଛଡ଼ା ମୁଁ ସବୁକିଛି ଜାଣିନାହିଁ ।

ପରମ କର୍ମ, ପରମ ଜ୍ଞାନ ଓ ପରମ ଭକ୍ତିର କାର୍ଯ୍ୟ ଏକ- କେବଳ ଗୋଟି ଗୋଟି କରା ପ୍ରାଧାନ୍ୟ ଅର୍ଥବାଦ ଛଳରେ, ଈଶ୍ୱର ପ୍ରାପ୍ତିର ଅନୁକୂଳ ଜ୍ଞାନ, ଈଶ୍ୱରାଶ୍ରିତ କର୍ମ, ଈଶ୍ୱରଙ୍କଠାରେ ତାରତମ୍ୟ ନାହିଁ କହିଲେ ଚଳେ ।

ବେଦ ସର୍ବବିଦ୍ୟାର ଆକାର ରୂପେ ଗୃହୀତ ହେଲେହେଁ, ତାହାର ସ୍ୱରୂପ ନିର୍ଣ୍ଣୟ ମୁଣ୍ଡକାଦିଉପନିଷଦରେ ବର୍ଣ୍ଣିତ ହୋଇଅଛି "ଶୌନକୋହବୈ ମହାଶାଲୋଽଙ୍ଗିରସଂ ବିଧିବଦୂପସନ୍ନଃ ପପ୍ରଛି- କସ୍ମିନ୍ନୁଭଗବୋ ବଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତୀତି-ତସ୍ମୈସହୋବାଚ- ଦ୍ୱେବିଦ୍ୟେବେଦତବ୍ୟେ ଇତିହସ୍ମ ଯଦ୍‌ବେଦବିଦୋବଦନ୍ତି ପରାଚୈବାପରାଚ । ତତ୍ରାପରାଋଗ୍‌ବେଦୋ ଯଜୁର୍ବେଦୋଯଜୁର୍ବେଦଃ ସାମବେଦୋଽ ଅର୍ଥବେଦଃ ଶିକ୍ଷାକଳ୍ପ ବ୍ୟାକରଣଂନିରୁକ୍ତଂଛନ୍ଦୋ ଜ୍ୟୋତିଷମିତି । ଅଥପରା ଯୟାକ୍ଷର ମଧିଗ୍ୟମତେ ।" ଅପରାଦ୍ୱାରା କର୍ମକାଣ୍ଡାତ୍ମକ, ତ୍ରୈଗୁଣ୍ୟ ବିଷୟକ ପ୍ରବୃତ୍ତିମାର୍ଗୀୟ ଷଡଙ୍ଗସହ ଚତୁର୍ବେଦ, ପରା-ବ୍ରହ୍ମଜ୍ଞାନ ବିଷୟକ, ଉପନିଷଦ, ନିବୃତ୍ତମାର୍ଗୀୟ, ନିସ୍ତ୍ରୈଗୁଣ୍ୟ, ଜ୍ଞାନକାଣ୍ଡ । ତହୁଁ ଗୀତାର ଉକ୍ତି- "ତ୍ରୈଗୁଣ୍ୟବିଷୟାବେଦାନିସ୍ତ୍ରୈଗୁଣ୍ୟୋଭବାର୍ଜୁନ- ବେଦସବୁଗୁଣାଶ୍ରିତା" ହେ ଅର୍ଜୁନ, ନିର୍ଗୁଣ ନିଷ୍କମଭାବରେ କାର୍ଯ୍ୟକର । ଏହି ବେଦ ଯେ ଚାରି ଭାଗରେ ବିଭକ୍ତ ହୋଇ ପ୍ରଚଳିତ, ପୂର୍ବେ ତାହା ଏକ ଅଖଣ୍ଡ ଗ୍ରନ୍ଥ ଥିବା ପୁରାଣ ଇତିହାସରୁ ଜଣାଯାଏ ।

ଭଗବାନଙ୍କ ନିଶ୍ୱସିତବେଦ, ଏହା ବହ୍ମାଙ୍କ ପ୍ରତିଭାତ ହେଲା । "ଯୋ ବ୍ରହ୍ମାଣଂବିଦଧାତି ପୂର୍ବଂ ପ୍ରତିଣୋତି ତସ୍ମୈ । ତଂହ ଦେବମାସ ମୁମୁକ୍ଷୁଞଶରଣହଂପ୍ରପଦ୍ୟେ- ଶ୍ୱେତାଶ୍ୱେତର ।" ଯେ ପୂର୍ବେ ବ୍ରହ୍ମାଙ୍କ ସୃଷ୍ଟ ଏବଂ ଯେ ତାଙ୍କ ସମୀପକୁ ବେଦ ପ୍ରେରଣ ଆତ୍ମଜ୍ଞାନରେ ବିରାଜମାନ- ସେହି ଦେବତାଙ୍କୁ ମୁଁ ଶରଣ ପଶୁଛି । ପୁନଶ୍ଚ ନାରାୟଣଙ୍କ ଆଜ୍ଞା ଅପାନ୍ତରତମା ସ୍ୱାୟମ୍ଭୁବ ମନ୍ୱନ୍ତରରେ ବେଦ ଶ୍ରୁତିକଲେ ଏବଂ ତାଙ୍କଦ୍ୱାରା ଶ୍ରୁତି ଭିନ୍ନ ହୋଇଥିଲା । "ଅପାନ୍ତରତମା ସୁତୋ ବାକ୍‌ସମ୍ଭବ ଭୂତଭବ୍ୟଭବିଷ୍ୟଜ୍ଞ ସତ୍ୟବାଦୀ ଦୃଢବ୍ରତଃ । ନତମୂୟର୍ଦ୍ଧ୍ନାଦେବାନାମାଦରବ୍ୟୟଃ । ବେଦା ଶ୍ରୁତିକାର୍ଯ୍ୟାଦ୍ୱୟା ମତିମତାଂବର । ତସ୍ମାଦ୍ କୁରୁ----- ମମୈତଦ୍ ବଚନଂ ମୂନେ । ତେନ ଭିନ୍ନାସ୍ତବ ମନୋଃ ସ୍ୱୟମ୍ଭୁବୋଽନ୍ତରେ- (ମହାଶାନ୍ତି ୩୪୯) । ପୁନଶ୍ଚ ସଂଏବ ସର୍ବଭୂତାନ୍ତରାତ୍ମାଽ ପହତପାପମା ଦେବ ଏକୋ ନାରାୟଣଃ । ଏତାଂବିଦ୍ୟାମପାନ୍ତର ଦଦାବପାନ୍ତରତମୋ ବ୍ରହ୍ମଣେ ବ୍ରହ୍ମା ଘୋରାଙ୍ଗିଂରା ରୈକ୍ୱାୟ ଦଦୌରୈକ୍ୱୋ ରାମଃ ସର୍ବେଭ୍ୟୋ ଦୃତେଭ୍ୟୋ ଦଦାବିତ୍ୟେବଂ ନିର୍ବାଣଂ ଶାସନମିତ ବେଦାନୁଶାସନମିତି ବେଦାନୁଶାସ । ସୁବାଲୋପନିଷଦ୍:- (୭ମ ଖଣ୍ଡ-) ସର୍ବଭୂତାନ୍ତରାତ୍ମା ନାରାୟଣ ଦେବ ଏହି ବ୍ରହ୍ମବିଦ୍ୟା ଅପାନ୍ତରତମା ଦେଲେ । ଅପାନ୍ତରତମା ବ୍ରହ୍ମାଙ୍କୁ, ବ୍ରହ୍ମା ଘୋର ଅଙ୍ଗିଂରା, ଘୋରଅଙ୍ଗିଂରା ରୈକ୍ୱଙ୍କୁ, ରୈକ୍ୱ ରାମଙ୍କୁ, ରାମ ମନୁଷ୍ୟକୁ ଦେଲେ । ଏହା ବ୍ରହ୍ମବିଦ୍ୟା ବିଷୟ ।

ଅତି ପ୍ରାଚୀନ କାଳରୁ ବେଦ, ସାଂଖ୍ୟଯୋଗ (ଭକ୍ତିଯୋଗର ଗ୍ରନ୍ଥ) ଓ ପାଶୁପତି ଜ୍ଞାନ ବିଷୟରେ କୁହାଯାଇଛି । ଯଥା-

ସାଂଖ୍ୟଯୋଗଃ ପାଂଚରାତ୍ରଂ ବେଦାଃ ପାଶୁପତଂ ତଥା ।
--ନ୍ୟେତାନିରାଜର୍ଷ ବିଦ୍ଧି ନାନା ମତାନି ବୈ ।
ଖ୍ୟଂସ୍ୟବକ୍ତ କପିଳଃ ପରାମର୍ଷିଃ ସ ଉଚ୍ୟତେ ।
ହୀରଣ୍ୟ ଗଭୋଯୋଗସ୍ୟ ବେତାନାନ୍ୟଃ ପୁରାତନ ।
ପ୍ରାନ୍ତରମାଶ୍ଚୈବ ବେଦାଚାର୍ଯ ସ ଉଚ୍ୟତେ ।
ପ୍ରାଚୀନ ଗର୍ଭଂ ତମୃଷଂ ପ୍ରବଦନ୍ତୀହକେଚନ ।
ପତି ର୍ଭୂତପତିଃ ଶ୍ରୀକଣ୍ଠୋ ବ୍ରାହ୍ମଣଃ ସୁତଃ ।
--ବାନିବମବ୍ୟଗ୍ରୋ ଜ୍ଞାନଂ ପାଶୁପତଂ ଶିବଃ ।
ପଦିରାତ୍ରସ୍ୟଛତସ୍ନସ୍ୟ ବେଭା ତୁ ଭଗବାନ ସ୍ୱୟମ୍ xx
ଗମଂ ଯଥାଜ୍ଞାନଂ ନିଷ୍ଠାନାରାୟଣ ପ୍ରଭୁଃxxx
ସଂଖ୍ୟଂଚ ଯୋଗଂଚ ସନାତନେ ଦ୍ୱେ
ଦାଶ୍ଚ ସର୍ବେ ନିଖିଳେନ ରାଜନ୍ xx ଇତ୍ୟାଦି ।

ସାଂଖ୍ୟ, ଯୋଗ, ପାଂଚରାତ୍ର, ପାଶୁପତ ଜ୍ଞାନ, ବେଦ ଅତି ପ୍ରାଚୀନ । ନାରାୟଣଙ୍କଠାରୁ ସମସ୍ତ ଉଦ୍‌ଭୂତ । କିନ୍ତୁ ସାଂଖ୍ୟର କପିଳ, ଯୋଗର ହିରଣ୍ୟଗର୍ଭ, ବେଦ- ଅପାନ୍ତରତମା, ପାଶୁପତି ଜ୍ଞାନର ଶିବ, ପାଞ୍ଚରାତ୍ରର ସ୍ୱୟଂ ନାରାୟଣ ସ୍ରଷ୍ଟା । ସାଂଖ୍ୟ, ପାଶୁପତିଜ୍ଞାନର; ଯୋଗ କର୍ମର; ପାଞ୍ଚରାତ୍ର ଭକ୍ତିର ଗ୍ରନ୍ଥ, କର୍ମ, ଜ୍ଞାନ ଓ ଅନ୍ତର

ଅନୁଶୀଳନ ବୈଦିକ କାଳରୁ ଚାଲିଆସିଛି । କର୍ମ, ଭକ୍ତି ଓ ଜ୍ଞାନର ସମନ୍ୱୟ ଗୀତାରେ ହୋଇଅଛି । ଶାସ୍ତ୍ରୋକ୍ତି ଅଛି- ଇତିହାସ ପୁରାଣାଭ୍ୟାଂ ବେଦାର୍ଥଂ ସମୁପବ୍ରଂହୟେତ୍- ଯାହା ବେଦରେ ସାଂକେତିକ ବା ଯାହା ବେଦରେ ପ୍ରସଙ୍ଗର ଅନୁରୋଧ ନ ଥିବାରୁ ସ୍ଥାନ ପାଇ ନାହିଁ, ତାହା ଇତିହାସ ପୁରାଣାଦିଦ୍ୱାରା ପରିପୂରଣ କରିବାକୁ ହେବ । ଇତିହାସ, ପୁରାଣ ବିଷୟ ସେହି ଅଖଣ୍ଡ ବୈଦିକ ଯୁଗରୁ ଚାଲିଆସିଅଛି । ଉପନିଷଦ ଯୁଗ ପରେ ଇତିହାସ ଯୁଗର ପ୍ରବର୍ତ୍ତନ ଓ ପ୍ରସିଦ୍ଧି ହେଲେ ହେଁ, ପୁରାଣମାନଙ୍କ ସୃଷ୍ଟି ଉପନିଷଦ ଯୁଗର ପରେ ନୁହେଁ। କାରଣ ପ୍ରାଚୀନ ଉପନିଷଦମାନଙ୍କରେ- ଯଥା ଛାନ୍ଦୋଗ୍ୟ, ବୃହଦାରଣ୍ୟକ ଓ ମୈତ୍ରାୟଣୀ ଆଦିରେ ଇତିହାସ ପୁରାଣାଦିର ନାମୋଲ୍ଲେଖ ଅଛି । ଯଥା- ଋଗ୍‌ବେଦୋଭଗବୋଽଧ୍ୟେମି ଯର୍ଜୁବେଦଂ ସାମବେଦ ମଥର୍ବାଣଂ ଚତୁର୍ଥମିତିହାସ ପୁରାଣଂ ପଞ୍ଚମଂ ବେଦାନାଂ ବେଦଂ ପିତ୍ର୍ୟରାଶିଂ ଦୈର୍ବନିଧି, ବାକ୍ୟୋବାକ୍ୟ ମେକାୟନଂ, ବେଦବିଦ୍ୟାଂ ବ୍ରହ୍ମବିଦ୍ୟାଂ ଭୂତବିଦ୍ୟାଂ କ୍ଷେତ୍ରବିଦ୍ୟାଂ ସମଦେବ ଜନବିଦ୍ୟାବେତଦ୍‌ଭଗବୋଽଧ୍ୟେମି । (ଛାନ୍ଦୋଗ୍ୟ: ୭ମ ଅଧ୍ୟାୟ, ୨ୟ ବ୍ରାହ୍ମଣ) ପୁନଶ୍ଚ ଯଥା ସ୍ୱୈଧାଗ୍ନେରଭ୍ୟାହିତସ୍ୟ ପୃଥଗ୍ ଧୂମାବିନି ଶ୍ଚରନ୍ତ୍ୟେର୍ବ ବା ଅରେଽସ୍ୟ ମହତୋଭୂତସ୍ୟ ନିଶ୍ୱସିତମେଦ୍ ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ଇତିହାସ ପୁରାଣଂ ବିଦ୍ୟା ଉପନିଷଦଃ ଶ୍ଳୋକାସୂତ୍ରାଣ୍ୟନୁବ୍ୟାଖ୍ୟାନାନି ବ୍ୟାଖ୍ୟାନାନୀଷ୍ଟଂ ହୁତମାଶିତଂ ପାତ୍ରୁତମଚାଂଚ ଲୋକଃ ପରଶ୍ଚ ଲୋକଃ ସର୍ବାଣି ଚ ଭୂତାନ୍ୟସ୍ୟୈବୈତାନି ସର୍ବାଣି ନିଶ୍ୱସିତାନି- (ବୃହଦ୍ ୪-୫) । ମୈତ୍ରାୟଣୀ ଉପନିଷଦ୍‌ରେ ମଧ୍ୟ ୬ଷ୍ଠ ପ୍ରକ୍ଷାପକ ୩୨ ପଦରେ ଇତିହାସ ପୁରାଣାଦିର ଉଲ୍ଲେଖ ଅଛି ।

ବେଦ ଅପହୃତ ହୋଇ ସମୁଦ୍ରରେ ନିକ୍ଷିପ୍ତ ହେବା ଓ ବିଷ୍ଣୁଙ୍କଦ୍ୱାରା ଉଦ୍ଧୃତ ହେବା ପୁରାଣାଦିରେ ଲିଖିତ । ମଧୁକୈଟଭ ବ୍ରହ୍ମାଙ୍କ ପାର୍ଶ୍ୱରୁ ବେଦ ଅପହରଣ କରି ସମୁଦ୍ରରେ ନିକ୍ଷେପ କରିଥିଲେ । ବ୍ରହ୍ମାଙ୍କ ସ୍ତୁତିରେ ବିଷ୍ଣୁ ହୟଶିରା ରୂପଧରି ବେଦକୁ ଉଦ୍ଧାର କଲେ ଓ ମଧୁ କୈଟଭଙ୍କୁ ନାଶକଲେ । (ବିଷ୍ଣୁଙ୍କ ନାଭିରୁ ଉଦ୍‌ଗତ ପଦ୍ମପତ୍ରର ସତ୍ତ୍ୱାଂଶରୁ ବ୍ରହ୍ମା, ତାମସାଂଶରୁ ମଧୁ ଓ ରାଜସାଂଶରୁ କୈଟଭ ଜନ୍ମିଥିଲେ । ମହାଶାନ୍ତି ୩୪୭ ଅଧ୍ୟାୟ ଏବଂ ଭାଗବତ ୧୧ ସ୍କନ୍ଧ ୪ର୍ଥ ଅଧ୍ୟାୟ ମଧ୍ୟ ଦ୍ରଷ୍ଟବ୍ୟ ।) ପୁନଶ୍ଚ ଭଗବତ ୮ମ ସ୍କନ୍ଧ ୨୪ ଅଧ୍ୟାୟରେ ବର୍ଣ୍ଣିତ ଯେ, ହୟଗ୍ରୀବ ଅସୁର ବ୍ରହ୍ମାଙ୍କ ପାର୍ଶ୍ୱରୁ ବେଦକୁ ଅପହରଣ କରି ସମୁଦ୍ରରେ ନିକ୍ଷେପକଲା । ବିଷ୍ଣୁ ମତ୍ସ୍ୟରୂପ ଧରି ହୟଗ୍ରୀବକୁ ନାଶକଲେ ଓ ବେଦ ଉଦ୍ଧାର କରିଥିଲେ । ମତ୍ସ୍ୟରୂପୀ ବିଷ୍ଣୁ ଏକ ଶୃଙ୍ଗରେ ନୌକା ଆକର୍ଷଣକରି ପ୍ରଳୟରୁ ଋଷିଗଣଙ୍କ ସହ ବିଷ୍ଣୁଭକ୍ତ ଓ ତପସାଧକ ଦ୍ରବିଡ଼େଶ୍ୱର ସତ୍ୟବ୍ରତଙ୍କୁ ରକ୍ଷାକରି ତତ୍ତ୍ୱ ଉପଦେଶ ଦେଇଥିଲେ । ଇତ୍ୟୁକ୍ତ ବନ୍ତଂ ନୃପତିଂ ଭଗବାନାଦପୁରୁଷଃ । ମତ୍ସ୍ୟରୂପୀ ମହାମ୍ଭୋଧୌ- ବିହରଂ ସ୍ତତ୍ତ୍ୱମବ୍ରବୀଦ୍ । ପୁରାଣ ସଂହିତଂ ବିଦ୍ୟାଂ ସାଂଖ୍ୟଯୋଗ କ୍ରିୟାବତୀମ୍ । ସତ୍ୟବ୍ରତସ୍ୟରାଜର୍ଷେରାତ୍ମଗୁହ୍ୟମଶେଷତଃ । ବିଷ୍ଣୁଙ୍କ କୃପାରୁ ସେହି ସତ୍ୟବ୍ରତ ପରେ ବୈବସ୍ୱତ ମନୁ ହେଲେ । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଆର୍ଯ୍ୟ ଓ ଦ୍ରାବିଡ଼ଙ୍କର

ସମସଭ୍ୟତା ଥିଲା । ଉଭୟେ କର୍ମ, ଭକ୍ତି ଓ ଜ୍ଞାନର ଅନୁଶୀଳନ କରୁଥିଲେ । କେବଳ ଗୁଣ ଓ ଆଚାରଗତ ପାର୍ଥକ୍ୟ ହେତୁ ବିରୋଧ ଘଟିବା ସମ୍ଭବପର । ଦେବ, ଦୈତ୍ୟ, ଦାନବ, କାଳକେୟ, ସୈଂହିକେୟାଦି ଏକ ଗୋଷ୍ଠିଗତ । ଏହା ପୁରାଣ ଓ ଇତିହାସଦ୍ୱାରା ପ୍ରମାଣିତ । ବ୍ରହ୍ମାଙ୍କର ପ୍ରବୃତ୍ତିମାର୍ଗୀ ସପ୍ତ ମାନସପୁତ୍ର ମରୀଚି, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅଙ୍ଗିରା ଓ ବଶିଷ୍ଠ । ଏମାନେ ପ୍ରଜାପତି, ପ୍ରଜାସୃଷ୍ଟି- କାରକ ଓ ସଂସ୍କାରଧର୍ମ ପ୍ରବର୍ତ୍ତକ ଓ ବେଦାଚାର୍ଯ୍ୟ । ମରୀଚିଙ୍କ ପୁତ୍ର କାଶ୍ୟପ। ତାଙ୍କ ପତ୍ନୀଗଣ ଯଥା- ଦିତି, ଅଦିତି, ଦନୁ, କାଳିକା, ସିଂହିକା, ବିନତା ପ୍ରଭୃତି । ତାଙ୍କ ପୁତ୍ରମାନେ ଦୈତ୍ୟ, ଆଦିତ୍ୟ (ବିଷ୍ଣୁ, ଇନ୍ଦ୍ରାଦି) ଦାନବ, କାଳକେୟ, ସୈଂହିକେୟ (ରାହୁ ପ୍ରଭୃତି) ବୈନତେୟ (ଅରୁଣ, ଗରୁଡ଼) ଏବଂ ଆଦିତ୍ୟଗଣ ସୁର- ଦୈତ୍ୟ; ଦାନବାଦି ଅସୁରରୂପେ ଖ୍ୟାତ । ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବା। ବିଶ୍ରବାଙ୍କ ପୁତ୍ରମାନେ- କୁବେର, କୁମ୍ଭକର୍ଣ୍ଣ ଓ ବିଭୀଷଣ । ତହୁଁ ଏ ସମସ୍ତେ ଗୋଷ୍ଠିଗତ । ଦୈତ୍ୟ, ଦାନବାଦି ଅସୁରଗଣ ଶିବଭକ୍ତ,ଅତି ଅଳ୍ପ ବିଷ୍ଣୁଭକ୍ତ ଥିଲେ । ରୁଦ୍ର ଏକ ସ୍ୱତନ୍ତ୍ର ଗଣର ଅଧିନାୟକ । ସେ ବ୍ରହ୍ମାଙ୍କର ସ୍ୱତନ୍ତ୍ର ମାନସପୁତ୍ର- ସେ ଦୈତ୍ୟ, ଆଦିତ୍ୟ, ଦାନବ ଗଣଭୁକ୍ତ ନୁହଁନ୍ତି। କାରଣ ମହାଭାରତର ଆଦିତ୍ୟସମ୍ଭବ ପର୍ବରେ ଉକ୍ତ ଅଛି - ବ୍ରହ୍ମଣା ମନସାଃ- ବିଦିତାଷଣ୍ମହର୍ଷୟା ଏକାଦଶ ସୁତାଃସ୍ଥାଣୋଃ ଖ୍ୟାତ ତେଜସଃ- ଏହାର ଟୀକାରେ ନୀଳକଣ୍ଠ କହିଛନ୍ତି- ସ୍ଥାଣୁଶ୍ଚସପ୍ତମ ଇତି ବୋଧମ-ବ୍ରହ୍ମାଙ୍କର ସ୍ଥାଣୁ ସପ୍ତମ ରୁଦ୍ର ଶିବଙ୍କର ମହାଶକ୍ତିମତ୍ତା ହେତୁ ସେ ଦେବ ଦେବ ମହାଦେବ ରୂପେ ପୂଜିତ ହେଲେ ।

ଭାରତ ବର୍ଷ ପ୍ରାଚୀନ କାଳରେ ଏକ ବିଶାଳ ସାମ୍ରାଜ୍ୟ ଥିଲା ଓ ତାହା ପଶ୍ଚିମରେ କାଶ୍ୟପ ହ୍ରଦକୁ ସମ୍ଭବତଃ ବ୍ୟାପି ରହିଥିଲା । ସେହି ସାମ୍ରାଜ୍ୟରେ ଆର୍ଯ୍ୟମାନେ ବାସ କରୁଥିଲେ। ତହୁଁ ପାରସ୍ୟବାସୀଙ୍କ ଆଦିପ୍ରାଚୀନ ଧର୍ମଗ୍ରନ୍ଥ ଜେନ୍ଦାବିସ୍ତା ଓ ଭାରତୀୟ ଆର୍ଯ୍ୟଙ୍କ ବେଦ—ଏକ ମୌଳିକ ଗ୍ରନ୍ଥଥିବା ଅନୁମେୟ । ସେହି ଅଖଣ୍ଡ ମୂଳ ଗ୍ରନ୍ଥ ଅପହୃତ ହେବା, ପୁନଶ୍ଚ ଉଦ୍ଧୃତ ହୋଇ କର୍ମୋପଯୋଗିତାରେ ସଂକଳିତ ହେବା ଓ କ୍ରମଶଃ ଆଧୁନିକ ବେଦ ରୂପେ ପ୍ରାପ୍ତ ହେବା ସମ୍ଭବପର । ବୈଦିକ ମୂଳଗ୍ରନ୍ଥ କାଳକ୍ରମେ ମନୁଷ୍ୟମାନଙ୍କର ରୁଚି ଓ ପ୍ରବୃତ୍ତି ଭିନ୍ନତ୍ୱରୁ ଭିନ୍ନଭିନ୍ନ ମାର୍ଗରେ ଆଶ୍ରୟ ହେତୁ ଜେନ୍ଦାବିସ୍ତା ଓ ବେଦର ପାର୍ଥକ୍ୟ ଲକ୍ଷିତ ହେଲା ।

ଋଗ୍‌ବେଦ-ବେଦମାନଙ୍କ ମଧ୍ୟରେ ପ୍ରଥମ ଓ ପ୍ରାଚୀନତମ । ଋଗ୍‌ବେଦର ପାଠରୁ ଜଣାଯାଏ ଯେ, ସେଥିରେ ଯେଉଁ ବିଷୟମାନ ସନ୍ନିହିତ, ସେସବୁ ଏକକାଳୀନ ନୁହେଁ । ସହସ୍ରାବଧି ବର୍ଷର ବିଷୟମାନଙ୍କ ସନ୍ନିବେଶ ହେବାର ଲକ୍ଷିତ ହୁଏ । କାରଣ ପ୍ରକୃତିର ପରାକ୍ରାନ୍ତ ତେଜସ୍ୱୀ ତଥା ଭୀଷଣ ସୌମ୍ୟ ପଦାର୍ଥମାନଙ୍କୁ ଦେଖି ଦେବତା ଜ୍ଞାନରେ ସେମାନଙ୍କ ସ୍ତୁତି ସହ ଗୂଢ ଦାର୍ଶନିକ ବିଷୟମାନଙ୍କର ସମାବେଶହିଁ ତାହାର ପ୍ରକୃଷ୍ଟ ପ୍ରମାଣ ।

ଋଗ୍‌ବେଦୀୟ ଆର୍ଯ୍ୟ ପ୍ରକୃତିସ୍ଥ ତେଜିୟାନ, ପରାକ୍ରାନ୍ତ,ଭୟାବହ ତଥା ସୌମ୍ୟ ପଦାର୍ଥମାନଙ୍କୁ ଭୀତ, ଚକିତ, ବିସ୍ମିତ ଦୃଷ୍ଟିରେ ଦେଖି ନିଜର ନଶ୍ୱରତ୍ୱ ତଥା ଅଳ୍ପ

ଅବବୋଧରେ ସେ ସମସ୍ତଙ୍କୁ ହର୍ତ୍ତା କର୍ତ୍ତା, ଦୈବବିଧାତାମଣି ଦେବତା ସ୍ଥାନରେ ସ୍ତୁତି ପ୍ରାର୍ଥନାଦି କଲା । -ଦୁଃଖ ଯନ୍ତ୍ରଣା,ବିପଦ ଆପଦ, ଅଭାବ ଓ ଭୟ, ଭ୍ରାନ୍ତି ତଥା ଶତ୍ରୁର ଆକ୍ରମଣରୁ ରକ୍ଷା ପାଇଁ ସେମାନଙ୍କ ସାହାଯ୍ୟ ପ୍ରାର୍ଥନା କଲା ଓ ନିଜର ତ୍ରୁଟି, ଅନ୍ୟାୟ ଅପରାଧ ସବୁ ମାର୍ଜନା କରିବାକୁ 'ଲୋଡ଼ିଥିଲା । ସେ ମଣିଥିଲା- ଏ ଦେବତାଙ୍କ ସନ୍ତୋଷରେ ପରମମଙ୍ଗଳ ଓ କ୍ରୋଧରେ ସତ୍ୟାନାଶ (ମହାନାସ)ସୁନିଶ୍ଚିତ । ସ୍ତୁତି ପ୍ରାର୍ଥନା କୃପାଭିକ୍ଷାଦି ଭୀତି ତଥା ଅମୂଳକ । ଦେବତାମାନଙ୍କ ପ୍ରୀତି ସଂପାଦନାର୍ଥ ତାର ଖାଦ୍ୟପେୟ ଅର୍ପଣ କଲା । ଭାରତ ଭୂମିସ୍ଥ କେତେକ ଗୋଷ୍ଠୀକୁ ଆର୍ଯ୍ୟମାନେ ଯୁଦ୍ଧରେ ପରାସ୍ତ କରି ଅରଣ୍ୟ ପର୍ବତ ଗୁହାକୁ ତଡ଼ିଦେଲେ- ଯେ ନେମା ବିଶ୍ୱାନା କୃତାନି । ଯ ଦାସବର୍ଣ୍ଣମଧରଂ ଗୁହାକଃ- (ଋଗ: ଇନ୍ଦ୍ରସୂକ୍ତ) । ଯେ ଇନ୍ଦ୍ରଦେବ ଏହି କମ୍ପନଶୀଳ ପୃଥ୍ୱୀକୁ ଦୃଢ଼ଭାବରେ ସ୍ଥିର କଲେ ଓ ନୀଚବର୍ଣ୍ଣର ମଣିଷମାନଙ୍କୁ ଗୁହାସ୍ଥ କରିଥିଲେ । କେତେକ ଅନାର୍ଯ୍ୟ ଆର୍ଯ୍ୟଙ୍କ ବଶତା ସ୍ୱୀକାର କରି ତାଙ୍କ ସେବାରେ ନିଯୁକ୍ତ ହେଲେ । ଅନାର୍ଯ୍ୟଙ୍କ ସଂଖ୍ୟା ଅତ୍ୟାଧିକ । ସେମାନଙ୍କୁ ସର୍ବତୋଭାବେ ବଶୀଭୂତ କରିବା ଅସମ୍ଭବ । ଏକ ଦେଶରେ ବସତି ଥିବା ହେତୁ ଆର୍ଯ୍ୟ ଅନାର୍ଯ୍ୟଙ୍କ ସମ୍ପର୍କ ଓ ସଂଘର୍ଷ ଘଟିବା ସ୍ୱଭାବିକ । ତହୁଁ ଆର୍ଯ୍ୟମାନେ ଅନାର୍ଯ୍ୟଙ୍କ ଆଚାର ବ୍ୟବହାର, କ୍ରିୟାକଳାପ ତଥା ଧର୍ମ ଭାବରୁ କିଛି କିଛି ଗ୍ରହଣ କଲେ। ସେମାନଙ୍କ ସହିତ ଏକରକମ ସମ୍ବନ୍ଧ ସ୍ଥାପକ କଲେ- ମନ୍ତ୍ର, ମହୌଷଧ, କୁହୁକ, ଇନ୍ଦ୍ରଜାଲ, ଭୂତ ପ୍ରେତ, ସର୍ପାଦି ପୂଜା ପ୍ରଭୃତି ।

କେତେକଙ୍କ ମତରେ ଶିବ ଅନାର୍ଯ୍ୟଙ୍କ ଦେବତା ଥିଲେ । ପରେ ଆର୍ଯ୍ୟମାନେ ତାଙ୍କୁ ନିଜର ଉପାସ୍ୟ ଦେବତା କଲେ । ଏହା ବିଚାର୍ଯ୍ୟ । ପରେ ଅନାର୍ଯ୍ୟମାନେ ତାଙ୍କର ଭକ୍ତିଭାବରେ ନିଜର ଦେବତାଙ୍କୁ ପକ୍ଷୀ, ପଶୁ, ନର ପ୍ରଭୃତି ବଳିପ୍ରଦାନ କରୁଥିଲେ ଓ ଆଜି ମଧ କରନ୍ତି । ଆର୍ଯ୍ୟମାନେ ମଧ ପରବର୍ତ୍ତୀ କାଳରେ ଯଜ୍ଞରେ ପଶୁବଳି ଓ ନରବଳି ପର୍ଯ୍ୟନ୍ତ ପ୍ରଦାନ କରୁଥିଲେ । ପୁରାଣପାଠରୁ ଜଣାଯାଏ ଯେ, ସତ୍ୟଯୁଗରେ ଯଜ୍ଞ ପ୍ରଧାନ ଥିଲା । ତ୍ରେତାଯୁଗର ପ୍ରାରମ୍ଭରେ ସ୍ୱୟଂଭୂବ ସୃଷ୍ଟିରେ ଯଜ୍ଞର ପ୍ରଥମ ପରିବର୍ତ୍ତନ ହେଲା । ପ୍ରଥମେ ଯଜ୍ଞ ବିଧିରେ ପଶୁ ମାରଣ ନ ଥିଲା, ତାହା ସାତ୍ତ୍ୱିକ ଥିଲା । ପରବର୍ତ୍ତୀ ଯୁଗରେ ପଶୁବଳି ପ୍ରବର୍ତ୍ତ ହେଲା । କାରଣ କାଳ ବିଶେଷରେ ଇନ୍ଦ୍ର ଦେବଗଣଙ୍କ ସହ ଯଜ୍ଞକରଣରେ ପ୍ରବୃତ୍ତ ହେଲେ । ମହର୍ଷିଗଣ ତାର ବିରୋଧ କରି କହିଲେ, ଧର୍ମାଭିପ୍ରାୟରେ ଜୀବହିଂସା ପ୍ରବଳ ଅଧର୍ମ । ଯଜ୍ଞରେ ପଶୁବଧ ଅବୈଧ । ତ୍ରିବର୍ଷ ସଂରକ୍ଷିତ ଅଙ୍କୁରୋଦ୍‌ଗମରେ ଅକ୍ଷମ ବୀଜଦ୍ୱାରା ଯଜ୍ଞ କରଣୀୟ । ସେଥିରେ ହିଂସାର ଗନ୍ଧନାହିଁ- (ବ୍ରହ୍ମାଣ୍ଡ ପୁରାଣ: ୬୩ ଅଧାୟ) । ପୁନଶ୍ଚ ବାୟୁପୁରାଣ ୫୭ ଅଧାୟରେ ଲିଖିତ ଅଛି , ମହର୍ଷିଗଣ ଅଧ୍ୱର୍ଯ୍ୟଙ୍କୁ ପଶୁପ୍ରୋକ୍ଷଣୋଦ୍ୟତ ଦେଖି ସେହିଦିନ ପଶୁଗଣଙ୍କ ପ୍ରତି କରୁଣାବଶତଃ ଏକ ସ୍ୱରରେ କହିଲେ- ହେ ଇନ୍ଦ୍ର! ଏ ତୁମ୍ଭର କି ପ୍ରକାର ଯଜ୍ଞ ବିଧାନ । ଏହା ବଳବାନର ଅଧର୍ମ, ତୁମ୍ଭେ ଧର୍ମ କାମନାରେ ହିଂସା କରୁଅଛ, ଏହା ଅଧର୍ମ । ହିଂସା କଦାପି ଧର୍ମ ହୋଇପାରେନାହିଁ । ହେ ସୁରରାଜ! ଯେବେ ଆଗମ ବିଧାନରେ ଯଜ୍ଞ କରିବାକୁ ଚାହଁ, ଯଜ୍ଞବୀଜଦ୍ୱାରା ଯଜ୍ଞ କରିପାର । ସେଥିରେ ବିଧି

ପ୍ରତିପାଳନ, ଅନ୍ୟ ଅବ୍ୟୟଧର୍ମ ଲାଭ ହେବ । କିନ୍ତୁ ହିଂସା ହେବନାହିଁ । ହେ ଇନ୍ଦ୍ର! ପୁରାକାଳରେ ସ୍ୱୟଂଭୁ ବ୍ରହ୍ମା ତ୍ରିବର୍ଷ ପୁରାତନ ବୀଜଦ୍ୱାରା ଯଜ୍ଞର ବିଧାନ କରିଅଛନ୍ତି । ଏହା ମହାନ୍ ଧର୍ମ ।

ଇନ୍ଦ୍ରଙ୍କ ସହ ଏ ବିଷୟରେ ମୀମାଂସା ନିମିତ୍ତ ଉପରିଚୟ ବସୁଙ୍କୁ ପ୍ରଶ୍ନ କଲେ । ସେ ଇନ୍ଦ୍ରଙ୍କ କାର୍ଯ୍ୟକୁ ଅନୁମୋଦନ କରିବାରୁ, ଅର୍ଥାତ୍ ହିଂସାକୁ ସମର୍ଥନ କରିବାରୁ, ଋଷିଙ୍କ ଶାପରେ ରସାତଳଗାମୀ ହେଲେ । "ଅଧର୍ମୋଧର୍ମଘାତାୟ ପ୍ରାରବ୍ଧା ପଶୁଭିସ୍ତ୍ୱୟା । ନାୟଂଧର୍ମୋ ହ୍ୟଧର୍ମୋଽୟଂ ନ ହିଂସା ଧର୍ମ ଉଚ୍ୟତେ । ଆଗମେନ ଭବାନଯଜ୍ଞଂ କରୋତୁ ଯଦି ହେଚ୍ଛିସି । ବିଧି ଦୃଷ୍ଟେନ ଯଜ୍ଞେନ ଧର୍ମମବ୍ୟୟ ହେତୁନୋ । ଯଜ୍ଞବୀଜୈଃ ସୁର ଶ୍ରେଷ୍ଠ ଯେଷ୍ଣୁ-ହିଂସା ର୍ନବିଦ୍ୟତେ । ତ୍ରିବର୍ଷଂ ପରମଂକାଳଂମୃଷି ଟୈରପ୍ରରୋହିଭିଃ । ଏଷଧାର୍ମୋମହାନିନ୍ଦ ସ୍ୱୟଂଭୂ ବିହିତଃ ପୁରା (ବାୟୁ ୫୭-୯୮-୧୦୧) । ହନୁମାନ୍ ଭୀମଙ୍କୁ କହୁଅଛନ୍ତି (ବନପର୍ବ ୧୪୯ ଅଧ୍ୟାୟ-) ସମାଶ୍ରୟଂ ସମାଚାରଂ ସମଜ୍ଞାନଞ୍ଚ କେବଳଂ । ତଦ୍ଧାହି ସମଧର୍ମାଣୋବର୍ଣ୍ଣାଧର୍ମାନବାପ୍ନୁବନ୍ xx ଆତ୍ମଯୋଗ ସମାଯୁକ୍ତ ଧର୍ମୋଽୟଂ କୃତଲକ୍ଷଣଃ xx ଏତଦ୍ କୃତଯୁଗଂ ନାମତ୍ରୈଗୁଣ୍ୟ ପରିବର୍ଜ୍ଜିତମ୍ ।" ତ୍ରେଣମପି ନିବୋଧ ତ୍ୱଂ ଯସ୍ମିନ୍ ସତ୍ରଂ ପ୍ରବର୍ତ୍ତତେ । "ବ୍ରହ୍ମା ସବୁ ବର୍ଣ୍ଣର ଆଶ୍ରୟ ଥିଲେ । ସମସ୍ତଙ୍କର ସମାନ ଆଚାର, ସମାନ ଜ୍ଞାନ, ସମାନ କର୍ମ ଓ ବର୍ଣ୍ଣାନୁଯାୟୀ ଧର୍ମଲାଭ କରୁଥିଲେ । ସବୁ ବର୍ଣ୍ଣର ଲୋକେ ଏକ ବେଦ ଅନୁଯାୟୀ ଅଧ୍ୟାତ୍ମ ଯୋଗଯୁକ୍ତ ଥିଲେ । ସତ୍ୟଯୁଗ ତ୍ରୈଗୁଣ୍ୟବର୍ଜ୍ଜିତ ଥିଲା । ତ୍ରେତା ଯୁଗରେ ଯଜ୍ଞର ପ୍ରବର୍ତ୍ତନ ହେଲା । ପୁନଶ୍ଚ ମହାଭାରତର ଶାନ୍ତିପର୍ବର ୩୪୦ ଅଧ୍ୟାୟରେ" ଇଦଂ କୃତ ଯୁଗଂ ନାମ କାଳଃ ଶ୍ରେଷ୍ଠଃ ପ୍ରବର୍ତ୍ତତଃ । ଅହିଂସ୍ୟା ଯଜ୍ଞପଶବୋ ଯୁଗେଽସ୍ମିନ୍ ତଦନ୍ୟଥା । ଚତୁଷ୍ପାଦ୍ ସଂଜ୍ଞକୋଧର୍ମୋ ଭବିଷ୍ୟତ୍ୟେତ୍ରବୈ- ସୁରାଃ । ତତସ୍ତ୍ରୋତା ଯୁଗଂ ନାମ ତ୍ରୟୀତତ୍ର ଭବିଷ୍ୟତା ପ୍ରୋକ୍ଷିତ । ଯତ୍ର ପଶବୋଃ ବଧଂପ୍ରାପୁସ୍ୟନ୍ତି ବୈମଖେ । ସଂପ୍ରତି ସବୁକାଳ ମଧ୍ୟରେ ଏହି ସତ୍ୟଯୁଗ ପ୍ରବର୍ତ୍ତିତ ହୋଇଅଛି । ଏ ଯୁଗରେ ଯଜ୍ଞୀୟ ପଶୁଗଣ ଅହିଂସ୍ୟ ରହିବେ, ଏହାର ଅନ୍ୟଥା ହେବନାହିଁ । ହେ ଦେବଗଣ। ଏହି ସତ୍ୟଯୁଗରେ ଧର୍ମ ସଂପୂର୍ଣ୍ଣ ଚତୁଷ୍ପାଦ ରହିବ, ଅନନ୍ତର ତ୍ରେତାଯୁଗ ପ୍ରବର୍ତ୍ତିତ ହେବ, ସେଥିରେ ତ୍ରୟୀ (କର୍ମ, ଜ୍ଞାନ ଓ ଉପାସନା କାଣ୍ଡାତ୍ମକ) ବେଦ ହେବ, ଯଜ୍ଞରେ ପଶୁମାନେ ପ୍ରୋକ୍ଷିତ ହୋଇ ବାଧାପ୍ରାପ୍ତ ହେବେ (୩୪୦-୮୨-୮୪) । ଉପରିଲିଖିତ ଉକ୍ତିଗୁଡ଼ିକରୁ ସ୍ପଷ୍ଟତଃ ଜଣାଗଲା, ବେଦ ଏକ ଅଖଣ୍ଡଗ୍ରନ୍ଥ ଥିଲା। ପଶୁମାରଣ ନ ଥିଲା । ତ୍ରେତାଯୁଗରେ ତାର ଆରମ୍ଭ ହେଲା- ଅପାନ୍ତରତମା ପ୍ରଥମରେ ବେଦକୁ ବିଭକ୍ତ କରିଥିଲେ- ତ୍ରେତା ଯୁଗରେ ତ୍ରୟୀ ହେଲା । ଇତିପୂର୍ବେ, ଅର୍ଥାତ୍ ସତ୍ୟଯୁଗରେ ଅପହୃତ ହୋଇଛି ତ୍ରେତାଯୁଗରେ ଯଜ୍ଞ ପ୍ରବର୍ତ୍ତନର ବହୁକାଳ ପରେ, ଦ୍ୱାପର ଯୁଗରେ କୃଷ୍ଣଦ୍ୱୈପାୟନ ବ୍ୟାସ ସୁସମ୍ପାଦନାର୍ଥ କର୍ମକାଣ୍ଡର ଅନୁରୋଧରେ ବେଦ ଚାରି ଭାଗରେ ବିଭକ୍ତ କଲେ । "ଦ୍ୱାପର ସମନୁପ୍ରାପ୍ତେ ଯୁଗ ପର୍ଯ୍ୟତେ । ବ୍ୟଦଧାତ୍ ଯଜ୍ଞ ସଂୟତୌ ବେଦ ଚତୁର୍ବିଧମ୍- (ଭାଗ- ୧ମ ସ୍କନ୍ଧ) । ଏଥିରୁ ଅନୁମିତ- ପ୍ରାଚୀନ ଅଖଣ୍ଡ ବେଦରୁ ଜ୍ଞାନକାଣ୍ଡଗତ ମାର୍ଗ ନିବୃତ୍ତ । ମାର୍ଗର କେତେକ

ବିଷୟ ଓ ଅନ୍ୟ କେତେକ ବିଷୟ ଏହି ବେଦମାନଙ୍କରେ ପରିଷ୍କୃତ ଓ କଥିତ ହୋଇଅଛି ଯେ, ସୃଷ୍ଟିର ପ୍ରାରମ୍ଭରୁ ପ୍ରବୃତ୍ତି ଓ ନିବୃତ୍ତି ମାର୍ଗର ପ୍ରବର୍ତ୍ତନ ହେଲା। ପରିଷ୍କୃତ କାଳରେ ବ୍ରାହ୍ମଣମାନେ କର୍ମକାଣ୍ଡରେ ବିଶେଷ ରହିବାରୁ ଯୋଗ ସାଂଖ୍ୟାଦି ଜ୍ଞାନମାର୍ଗଗତ ବିଷୟ ଅବହେଳିତ ଓ ଲୁପ୍ତ ପ୍ରାୟ ହୋଇପଡ଼ିଲା। ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନକୁ ସ୍ପଷ୍ଟ କହି ଅଛନ୍ତି-

"ସକାଳେନେହ ମହତା ଯୋଗୋନଷ୍ଟଃ ପରନ୍ତପ- (ଗୀତା୪-୨)। କ୍ରମଶଃ *

* ଏହିଠାରେ 'କ୍ରମଶଃ' ଲେଖାଯାଇଛି। ଅର୍ଥାତ୍, ଏଥିରେ କ୍ରମିକତା ରହିଛି। ମାତ୍ର ଏହା ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶିତ ହୋଇନାହିଁ। କୌଣସି କାରଣରୁ ଅସଂପୂର୍ଣ୍ଣ ରହିଛି।

# ପ୍ରଚ୍ଛନ୍ନ

ଏହି ଜଗତ ଜଡ଼ ଓ ଚେତନ ପଦାର୍ଥମାନଙ୍କରେ ପରିପୂର୍ଣ୍ଣ । ମୃର୍ତ୍ତିକା, ପାଷାଣ ପର୍ବତ- ଜଡ଼; ଉଦ୍ଭିଦଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ –ଚେତନ । ଏମାନଙ୍କ ମଧ୍ୟରେ କେତେକ ଚଳ ଓ କେତେକ ଅଚଳ । ମୃତ୍ତିକା ପାଷାଣାଦି; ତୃଣ, ଲତା ବୃକ୍ଷାଦି ଅଚଳ, ଚଳତ୍‌ଶକ୍ତିରହିତ । କୀଟ, ପତଙ୍ଗ, ପକ୍ଷୀ, ସରୀସୃପ, ପଶୁ, ମନୁଷ୍ୟ- ଚଳ ।

ଅଚଳଙ୍କ ମଧ୍ୟରେ ତୃଣ, ଲତା ଓ ବୃକ୍ଷାଦିଙ୍କର ଜୀବନ ଅଛି । ଅନ୍ତଃସଂଜ୍ଞା ଅଛି । ଚଳ-ପ୍ରାଣୀଙ୍କର ଶବ୍ଦ ଅଛି- ମନୁଷ୍ୟଙ୍କର ଯେ ଶବ୍ଦ ସେ କହିବାର ଶକ୍ତି- ମନୁଷ୍ୟ ଭିନ୍ନ କୀଟଙ୍କ ଠାରୁ ପଶୁପର୍ଯ୍ୟନ୍ତ ଯେ ଶବ୍ଦ କରନ୍ତି, ତାହା ମନୁଷ୍ୟ ବୁଝିପାରେ ନାହିଁ । କିନ୍ତୁ ସେମାନଙ୍କଦ୍ୱାରା ଉଚ୍ଚାରିତ ଶବ୍ଦମାନଙ୍କର ଅର୍ଥ ଥିବା ସୁନିଶ୍ଚିତ । ଭିନ୍ନଭିନ୍ନ ସମୟରେ ଭିନ୍ନଭିନ୍ନ କାର୍ଯ୍ୟ ଲାଗି ଯେଉଁ ଶବ୍ଦମାନ କରନ୍ତି, ସେମାନଙ୍କର ପାର୍ଥକ୍ୟ ନିଶ୍ଚୟ ଅଛି । ଜଣେ ସାହେବ ଆଫ୍ରିକାର ଅରଣ୍ୟରେ ରହି ମର୍କଟମାନଙ୍କର ଭିନ୍ନଭିନ୍ନ ଶବ୍ଦମାନଙ୍କର ଭିନ୍ନଭିନ୍ନ ଅଭିପ୍ରାୟ ଉଚ୍ଚାରିତ ହେବା ସ୍ଥିର ନିର୍ଣ୍ଣୟ କରି ତାହାର ସଙ୍କେତ ପ୍ରଦର୍ଶନ କରିଅଛନ୍ତି । ସେ ସବୁ ଭିନ୍ନଭିନ୍ନ ପ୍ରୟୋଜନରେ, ଭିନ୍ନଭିନ୍ନ ଶବ୍ଦ ଉଚ୍ଚାରଣରେ, ଭିନ୍ନଭିନ୍ନ ଅର୍ଥଦ୍ୟୋତକ । କିନ୍ତୁ ଏହା ସାଧାରଣ ମାନବଙ୍କ ପ୍ରତି ପ୍ରଚ୍ଛନ୍ନ, ଗୂଢ । ଯେପରି ମନୁଷ୍ୟମାନଙ୍କ ମଧ୍ୟରେ ଶକ୍ତିର ତାରତମ୍ୟ ଅଛି- ସେହିପରି ପ୍ରତ୍ୟେକ ଅଚଳ ଓ ଚଳମାନଙ୍କ ମଧ୍ୟରେ ଶକ୍ତିର ତାରତମ୍ୟ ରହିବା ସ୍ୱାଭାବିକ । ଅଚଳ ପଦାର୍ଥମାନଙ୍କ ମଧ୍ୟରେ ଶକ୍ତିବିଶେଷ ଚାଳନାର ପ୍ରତିବନ୍ଧକ ଥିବାରୁ ବା କୌଣସି ସ୍ୱଭାବଗତ ଧର୍ମ ହେତୁ ସେମାନେ ଗତି ଶକ୍ତିରହିତ। କିନ୍ତୁ ଏପରି ଏକ ଶକ୍ତି ସ୍ୱୀକାର କରିବାକୁ ହେବ, ଯଦ୍ଦ୍ୱାରା ତା'ର ବୃଦ୍ଧି ହୁଏ । ସେ ଶକ୍ତିର ସ୍ୱରୂପ ଓ କାର୍ଯ୍ୟକାରିତା ମନୁଷ୍ୟକୁ ପ୍ରଚ୍ଛନ୍ନ । ଭୌତିକ ଜଡ଼ ପଦାର୍ଥ ଓ ଶକ୍ତି ବିଶେଷର ଘାତପ୍ରତିଘାତରୁ ପ୍ରାଣର ଉଦ୍ଭବ । ଶକ୍ତି ଅଣୁ ପରମାଣୁରେ ବିଶେଷ ଯୋଗାଯୋଗ ହେତୁ କାର୍ଯ୍ୟକାରୀ ହୋଇ ପଦାର୍ଥମାନଙ୍କରେ ସଂହତି ଘଟାଇ ରୂପ ପ୍ରଦାନ କରିଅଛି । ସେହି ଶକ୍ତିକୁ ମଧ୍ୟ ଚିତ୍ ବା ବ୍ରହ୍ମ ଆଖ୍ୟା ପ୍ରଦତ୍ତ ହୁଏ । ସେହି ଶକ୍ତି ବିକାଶର ତାରତମ୍ୟରେ ପଦାର୍ଥମାନଙ୍କ ମଧ୍ୟରେ ତାରତମ୍ୟ ଲକ୍ଷିତ ହୁଏ । ତେଣୁ ଚିତ୍, ଅଚିତ୍ ଓ ଚିଦଚିତ୍- ଏହି ତିନୋଟିକୁ ସ୍ୱୀକାର କରିବାକୁ ହେବ ।

ପ୍ରାକୃତିକ ରୀତିରେ ଅବ୍ୟକ୍ତ-ବ୍ୟକ୍ତ, ଅବ୍ୟାକୃତ-ବ୍ୟାକୃତ, ପ୍ରଚ୍ଛନ୍ନ-ଅପ୍ରଚ୍ଛନ୍ନ ହେଉଅଛି । ଏହି ବିଧି ପ୍ରକୃତିର ଧର୍ମ- ଏହା ମନୁଷ୍ୟକୁ ପ୍ରଚ୍ଛନ୍ନ । ବେଦପାଠରୁ ଜଣାଯାଏ- ପ୍ରକୃତିଗତ ବିଶ୍ୱଶକ୍ତିର ବହିର୍ଦୃଶ୍ୟମାନ କେତେକ ବିଶାଳ, ଶକ୍ତିମନ୍ତ,

ତେଜୀୟାନ୍ ପଦାର୍ଥ ଦେଖି ମାନବ ବିସ୍ମିତ, ଚକିତ, ଭୟତ୍ରସ୍ତ ହୋଇ ସେସବୁଙ୍କୁ ଅଗ୍ନି, ବାୟୁ, ସୂର୍ଯ୍ୟ, ଦ୍ୟାବାପୃଥିବୀ, ଇନ୍ଦ୍ର, ରୁଦ୍ର, ବିଷ୍ଣୁ, ସବିତା ପ୍ରଭୃତି ଆଖ୍ୟାରେ ଦେବତା ମଣି ନିଜର ଅଭାବ ଅନଟନ, ଦୁଃଖ ଦୁର୍ଦ୍ଦଶା, ବିପଦ ଆପଦର ମୋଚନ ନିମିତ୍ତ ସ୍ତୁତିକଲା- ଏହି ବିଶ୍ୱ ଶକ୍ତିର ସ୍ୱରୂପ ମାନବପ୍ରତି ପ୍ରଚ୍ଛନ୍ନ । କେଉଁ ଶକ୍ତି ବଳରେ ଏମାନେ ଏପରି, ତାହା ମାନବ ବୁଦ୍ଧିର ଅଗୋଚର । କାରଣ ତାହା ପ୍ରଚ୍ଛନ୍ନ ଭାବରେ ସ୍ଥିତ, କିନ୍ତୁ ତାହାର କାର୍ଯ୍ୟ ଗୋଚରୀଭୂତ ।

ସେହି ଶକ୍ତିର ବିକାଶ ଭୂତ, ଇନ୍ଦ୍ର, ଅଗ୍ନି, ବରୁଣ, ରୁଦ୍ରଙ୍କୁ ଜଗତର ଆଦିକର୍ତ୍ତାମଣି ତାଙ୍କର ପ୍ରୀତି ନିମିତ୍ତ ନିଜର ରୀତି ଅନୁସାରେ ତାଙ୍କୁ ଖାଦ୍ୟ, ପେୟ ଓ ବଳି ପ୍ରଦାନ କଲା । ସେହି ସବୁ କାର୍ଯ୍ୟ ଭୀତି ଓ ଭକ୍ତି ଜନିତ । ସେ ଯଜ୍ଞ କଲା- ବଳି ଦେଲା, ନରବଳି ପର୍ଯ୍ୟନ୍ତ ଅର୍ପଣ କଲା- ନିଜର ଆତ୍ମୋତ୍ସର୍ଗ ପରିବର୍ତ୍ତରେ ଇତର ଜୀବ ପ୍ରଦାନ କଲା- ହିଂସା ବୃତ୍ତି ଅବଲମ୍ବନ କଲା । କେତେକଙ୍କୁ ତାହା ଭଲ ବୋଧ ହେଲାନାହିଁ, କେତେକ ସେ ଅର୍ଥ ସାପେକ୍ଷ ଯଜ୍ଞ କରିପାରିଲେ ନାହିଁ, କେତେକ ଦେଖିଲେ ଯେ ଏହି ହିଂସାତ୍ମକ କାର୍ଯ୍ୟରେ ଶାନ୍ତି ନାହିଁ । ଏମାନଙ୍କ ମଧ୍ୟରୁ ଅଧିକାଂଶ ବୁଦ୍ଧିବନ୍ତ । ନିଜର ବୁଦ୍ଧି ଚାଳନା କରି କର୍ମ ମାର୍ଗରୁ ପ୍ରବୃତ୍ତି ପନ୍ଥା ଛାଡ଼ି, ନିବୃତ୍ତିମାର୍ଗର ଜ୍ଞାନର ଚର୍ଚ୍ଚାକଲା । ତହୁଁ ବେଦର ଉକ୍ତି ହେଲା 'ମା ହିଂ ସ୍ୟାତ୍' । ଗୋଽଘ୍ନ୍ୟଃ । ଏହା ନିବୃତ୍ତିମାର୍ଗର ଉକ୍ତି । ପ୍ରବୃତ୍ତିମାର୍ଗର ଉକ୍ତି ମଧ୍ୟ ବେଦରେ ଅଛି । ଗାମାଲେଭତ; ମେହାକ୍ଷଂ ବା ମହାଜଂ ବା- ଏହି ଦୁଇମାର୍ଗର ଲୋକଙ୍କ ଉକ୍ତି ବେଦରେ ଅଛି । କିନ୍ତୁ ନିବୃତ୍ତିମାର୍ଗର ଲୋକଙ୍କ ସଂଖ୍ୟା ସ୍ୱଳ୍ପ:- ନିବୃତ୍ତିମାର୍ଗର ଲୋକେ ସ୍ଥିର ନିର୍ଣ୍ଣୟ କଲେ, ସେହି ପରମଶକ୍ତିମାନ କେତେବେଳେ ହେଲେ ହିଂସାତ୍ମକ ବଳିକ୍ରିୟାରେ ମଙ୍ଗଳପ୍ରଦ ହେବେ ନାହିଁ । ତହୁଁ ଉପନିଷଦ ଓ ଦର୍ଶନର ସୃଷ୍ଟି । ଉପନିଷଦ ଜ୍ଞାନଚର୍ଚ୍ଚା କରେ । ଭକ୍ତିର ମଧ୍ୟ ସ୍ଥାନଅଛି- ଭୋଗ ଛାଡ଼ି ମୋକ୍ଷ ନିମିତ୍ତ ଉପନିଷଦ ଓ ଦର୍ଶନ ଅଭିପ୍ରେତ ।

ଉପନିଷଦମାନ ସେହି ପ୍ରଚ୍ଛନ୍ନ ବିଷୟ ପ୍ରାପ୍ତି ନିମିତ୍ତ ନେତିନେତି ପ୍ରୟୋଗ କରି ଶେଷରେ ଯାହା ରହିଲା, ସେହି ସେ ପ୍ରଚ୍ଛନ୍ନ ବୋଲି ସ୍ଥିର କଲେ । କହିଲେ- ସେ ଅରୂପ ଓ ଜ୍ଞାନମୟ । ଦର୍ଶନ ବାରଗୋଟି- ୬ଟି ନାସ୍ତିକ, ୬ଟି ଆସ୍ତିକ । ଆସ୍ତିକଦର୍ଶନର ଅର୍ଥ, ଯାହା ବେଦଉପରେ ପ୍ରତିଷ୍ଠିତ । ଆସ୍ତିକ ଦର୍ଶନର ଅର୍ଥ ନୁହେଁ, ଈଶ୍ୱର ପ୍ରତିପାଦକ ଶାସ୍ତ୍ର; ଆସ୍ତିକଦର୍ଶକମାନେ ନିଜନିଜର ମୋକ୍ଷର ଉପାୟ ନିର୍ଦ୍ଧାରଣ କଲେ- ଯୋଗ- ଯମ, ନିୟମ, ଆସନ, ପ୍ରାଣାୟମ, ପ୍ରତ୍ୟାହାର, ଧ୍ୟାନ, ଧାରଣା, ସମାଧି ଦ୍ୱାରା- ସାଂଖ୍ୟ ପଞ୍ଚବିଂଶତି ତତ୍ତ୍ୱଦ୍ୱାରା, ନ୍ୟାୟ ବୈଶେଷିକ- ପଦାର୍ଥ ତତ୍ତ୍ୱ ଅବବୋଧ ଦ୍ୱାରା, ପୂର୍ବ ମୀମାଂସା- ଯଜ୍ଞାଦିସାଧନାଦ୍ୱାରା (ଧର୍ମଚର୍ଯ୍ୟାଦ୍ୱାରା) ଉତ୍ତର ମୀମାଂସା ବେଦାନ୍ତ ବ୍ରହ୍ମ ପ୍ରତିପାଦନ ଦ୍ୱାରା ।

ବେଦାନ୍ତ ବ୍ୟତୀତ ଅନ୍ୟ ଆସ୍ତିକ ଦର୍ଶନ ଶାସ୍ତ୍ରମାନଙ୍କରେ ଈଶ୍ୱର ବ୍ରହ୍ମ ପ୍ରତିପାଦନ ଗୌଣ ବା ଶୂନ୍ୟ । ତହୁଁ ଜଗତର କର୍ତ୍ତା, ସ୍ରଷ୍ଟା ବିଷୟରେ ସେମାନେ ବିଶେଷ ଯୋର ଦେଇନାହାନ୍ତି- ତହୁଁ ତାହା ଶୁଷ୍କ ଓ ନୀରସ । ନାସ୍ତିକ ଦର୍ଶନ- ଚାର୍ବାକ ତ

ଘୋର ପ୍ରବୃତ୍ତିମାର୍ଗର ଦର୍ଶନ । ଅବଶ୍ୟ ତାର ପ୍ରାଦୁର୍ଭାବର ଆବଶ୍ୟକତା ଥିଲା । ବିଷର ବିଷ ଔଷଧ ପରି- ଯେତେବେଳେ ଘୋର ପରୋକ୍ଷବାଦ ବିରାଜମାନ କଲା- ତାର ବିପରୀତାତ୍ମକ ଭାବ ଉପୁଜିବା ପ୍ରକୃତିସିଦ୍ଧ । ଉଭୟର ସଂଘର୍ଷରେ ମଧ୍ୟମ ମାର୍ଗ ଅବଲମ୍ବନ ସ୍ୱଭାବସିଦ୍ଧ । କିନ୍ତୁ ପ୍ରତ୍ୟକ୍ଷଦ୍ୱାରା କାର୍ଯ୍ୟ ହୋଇନାହିଁ- ପରୋକ୍ଷ ସ୍ୱୀକାର୍ଯ୍ୟ ।

**ଅନ୍ୟ ପଂଚଦର୍ଶନ**: ବୌଦ୍ଧ ଚାରି- ଯୋଗାଚାର, ମାଧ୍ୟମିକ, ବୈଭାଷିକ, ସୌତ୍ରାନ୍ତିକ- ଜୈନ ଏବଂ ଆର୍ହତ ।

**ବୌଦ୍ଧ ଦର୍ଶନ**: ସାଂଖ୍ୟ ଓ ଯୋଗର ଶିକ୍ଷା ଉପରେ ପ୍ରତିଷ୍ଠିତ- ଆର୍ହତ ମଧ୍ୟ ତାହା । ଶାକ୍ୟସିଂହ ବୁଦ୍ଧ ବେଦର ନିବୃତ୍ତି ମାର୍ଗ ଓ ସାଂଖ୍ୟ ଏବଂ ଯୋଗର ଶିକ୍ଷା ଉପରେ ନିଜର ଧର୍ମ ପ୍ରତିଷ୍ଠିତ କଲେ । ମହାବୀରଙ୍କ ଜୈନ ଧର୍ମ ନୂତନ ନୁହେଁ- ତାହା ସନାତନୀ ନିବୃତ୍ତି ମାର୍ଗ- କେବଳ କେତେକ ନୂତନ ପଦ୍ଧତି ଏହି ଧର୍ମରେ ଗ୍ରହଣ କଲେ ।

**ବୌଦ୍ଧ ଓ ଜୈନ ଧର୍ମ**: ପ୍ରାଚୀନ ସନାତନ ଧର୍ମର ସନ୍ତାନ- ପ୍ରଚ୍ଛନ୍ନ ସନାତନ ଧର୍ମ ।

ଯେପରି ମିତାକ୍ଷର ବିଧିରେ ପୁତ୍ର ପିତାଙ୍କଠାରୁ ପୃଥକ ହୋଇ ନିଜର ପୈତୃକ ସମ୍ପତ୍ତିର ଅଧିକାରୀ ହୁଏ ଏବଂ ତାର ଜୀବିତ ଅବସ୍ଥାରେ ନିଜର ଶକ୍ତି ବଳରେ ତହିଁରେ କିଛି ଯୋଗ କରାଇ ନିଜର ସ୍ୱତନ୍ତ୍ର ସମ୍ପତ୍ତି ବୋଲାଏ, ସେହିପରି ଜୈନ ଓ ବୌଦ୍ଧଧର୍ମ ।

ଅହିଂସା, ଯାହା ବୌଦ୍ଧ ଓ ଜୈନ ଧର୍ମରେ ଉଦ୍‌ଘୋଷିତ- ତାହା କିଛି ନୂତନ ନୁହେଁ । ଅହିଂସା ବିଷୟ ବେଦରେ ଅଛି, ଉପନିଷଦରେ ମଧ୍ୟ ଅଛି ।

**ଛାନ୍ଦୋଗ୍ୟଉପନିଷଦ** ବୁଦ୍ଧଦେବ ଓ ମହାବୀର ବର୍ଦ୍ଧମାନଙ୍କ ଆବିର୍ଭାବର ପ୍ରାୟ ୪୦୦ ବର୍ଷର ପୂର୍ବ ବିଷୟ । ସେଥିରେ ଦେବକୀ ପୁତ୍ର କୃଷ୍ଣ ଅହିଂସା ଧର୍ମ ସହିତ ଅନ୍ୟ ବିଷୟମାନ ଘୋର ଅଙ୍ଗିରସଙ୍କଠାରୁ ଶିକ୍ଷା କରିଥିଲେ । ଅନ୍ୟ ବିଷୟମାନ, ଯଥା- ତପସ୍ୟା, ଦାନ, ଆର୍ଜବ, ଅହିଂସା, ସତ୍ୟବଚନ ପ୍ରଭୃତି ।

ଏହାଠାରୁ ବେଶି କିଛି ଜୈନ ଓ ବୌଦ୍ଧ ଧର୍ମରେ ନାହିଁ । କିନ୍ତୁ ଲୋକେ ବେଦରେ ଆସ୍ଥା ରଖିବାରୁ ଯଜ୍ଞ କ୍ରିୟାର ହିଂସାରୁ ନିବୃତ୍ତ ହେଲେନାହିଁ । ତହୁଁ ବୁଦ୍ଧ- ଈଶ୍ୱର, ଆତ୍ମା ଓ ବେଦ ସ୍ୱୀକାର କଲେନାହିଁ । କିନ୍ତୁ ଏହି ଦୁଇ ଧର୍ମ ପ୍ରଚ୍ଛନ୍ନ ସନାତନ ଧର୍ମ ।

ଉତ୍କଳରେ ପ୍ରଥମରେ ସନାତନ ଧର୍ମ, ତତ୍ପରେ ଜୈନ, ଶୈବ, ଶାକ୍ତ, ବୈଷ୍ଣବ ଧର୍ମର ପ୍ରସାର ହେଲା ।

କେଉଁ ଧର୍ମ, କେଉଁ ମତବାଦ ସ୍ୱତନ୍ତ୍ର ନୁହେଁ! ଶୈବ, ଶାକ୍ତ, ବୈଷ୍ଣବ ଧର୍ମମାନଙ୍କରେ ମଧ୍ୟ ଅପର ଧର୍ମର ପ୍ରଭାବ ଅଛି । ଗୋଟିଏ ଉଦାହରଣରୁ ତାହା ପ୍ରତିପନ୍ନ ହେବ । ବୈଷ୍ଣବ ଧର୍ମ – ଏହି ଧର୍ମରେ କଥିତ ଅଛି ଯେ; ରାଧା ଭକ୍ତ ଶିରୋମଣି- ଏବଂ ରାଧାଙ୍କ ଭକ୍ତ ବୈଷ୍ଣବମାନଙ୍କର ଆଦର୍ଶ . । ଗୋପୀଙ୍କ ସହ ରାଧା ଦୁର୍ଗା ଓ ମହାଦେବଙ୍କୁ ଉପାସନା କରି ଶ୍ରୀକୃଷ୍ଣଙ୍କୁ ପାଇଥିଲେ । ରାଧା ମଧ୍ୟ ସୂର୍ଯ୍ୟ ପୂଜା କରୁଥିଲେ । ସମସ୍ତ ପୂଜାରେ ଗଣପତିଙ୍କୁ ପ୍ରଥମେ ସ୍ଥାପି ତାଙ୍କର ଅର୍ଚ୍ଚନା କରିବାକୁ

ହୁଏ । ବୈଷ୍ଣବ ଧର୍ମ ତ ସ୍ୱତନ୍ତ୍ର ହେଲାନାହିଁ, ଏଥିରେ ଅନ୍ୟ ଚାରିଦେବଙ୍କର ପୂଜାର ସ୍ଥାନ ଅଛି । ତହୁଁ ବୈଷ୍ଣବ ଧର୍ମକୁ ମଧ ପ୍ରଚ୍ଛନ୍ନ ଶାକ୍ତଧର୍ମ କହିବାକୁ ହେବ କହିଲେ ଯେ ଦୋଷ ହେବ, ତାହା କୁହାଯାଉନାହିଁ । କାରଣ ମହାମାୟା ଦୁର୍ଗା ପରା ରାସ-ଲୀଳାର ବିଧାତ୍ରୀ-ରାସଲୀଳା ରହସ୍ୟର ଉଦ୍‌ଘାଟନକାରିଣୀ ବିଧାତ୍ରୀ । ରାସଲୀଳା ରହସ୍ୟର ଉଦ୍‌ଘାଟନକାରିଣୀ ହେଉଛନ୍ତି ମହାମାୟା ଦୁର୍ଗା । ପୁନଶ୍ଚ ସବୁ ପୁରାଣରେ- କି ଶାକ୍ତ, କି ଶୈବ, କି ବୈଷ୍ଣବ- ସର୍ବତ୍ର ଦୁର୍ଗା ବିଷ୍ଣୁଙ୍କ ଶକ୍ତି ରୂପେ କଥିତ । ଏ ବିଷୟ ଉତ୍କଳୀ ଭଲ ଜାଣନ୍ତି । କାରଣ ଅନୁକୂଳ କଲାବେଳେ ଉତ୍କଳୀ ଦୁର୍ଗାମାଧବ ନାମୋଚ୍ଚାରଣ କରେ । ଆହୁରି ମଧ ଆମ ଓଡ଼ିଶାର ପଞ୍ଚସଖାଙ୍କ ଧର୍ମର ଗୂଢ କଥା ଅଛି । ଆଗେ ଅଣପୁରୁଷା ହେବୁ- ତା ବାଦ୍ ମାଇକିନିଆ ହେବୁ- ତାପରେ ତତ୍ତ୍ୱମୟ କୃଷ୍ଣ କି ଜଗନ୍ନାଥଙ୍କୁ ପାଇବୁ । ନିର୍ଗୁଣ, ନିଷ୍କାମ- ଶିବଭାବ ପ୍ରଥମେ ଲାଭ କରିବ । ତତ୍ପରେ- ସୁଭଦ୍ରା ବା ରାଧାଭାବ ଓ ବ୍ରହ୍ମସ୍ୱରୂପ । ଅନୁରାଗ-ମୟ ହୃଦୟ ହେଲେ ଯାଇଁ କୃଷ୍ଣ ବା ଜଗନ୍ନାଥ ଲଭିବୁ । ଶାକ୍ତ ନ ହେଲେ ବୈଷ୍ଣବ ହୋଇପାରିବ ନାହିଁ । ଅବଶ୍ୟ ସେ ଶାକ୍ତ- ସତ୍ତ୍ୱମୟୀ ଦେବୀ ଦୁର୍ଗା । ଦୁର୍ଗାଙ୍କ ରଜୋମୟୀ ବା ତମୋମୟୀ ମୂର୍ତ୍ତିଙ୍କର ଉପାସକ ସେ ନୁହେଁ । ଗାୟତ୍ରୀ ବେଦମାତା ଆରାଧନାକାରୀ ବିପ୍ର ମାତ୍ରେ ଶାକ୍ତ । ସେ ଶୈବ ନୁହେଁ, କି ବୈଷ୍ଣବ ନୁହେଁ ।

ବ୍ରାହ୍ମଣାଃ ଶାକ୍ତିକାଃ ସର୍ବେଃ ନ ଶୈବା ନଚ ବୈଷ୍ଣବାଃ
କ୍ଷତ ଉପାସତେ ଦେବୀଂ ଗାୟତ୍ରୀଂ ବେଦମାତରମ୍-
ଜନ୍ମାନ୍ତର ସହସ୍ରେଣ ସମାରାଧ ବୃଷଧ୍ୱଜଜମ୍ ।
ବୈଷ୍ଣବତ୍ୱଂ ଲଭେଦ୍ଧୀମାନ୍ ସର୍ବପାପ କ୍ଷୟେ ସତି ।
(ଆଦି ବରାହ ପୁରାଣୟ)

ଏହାକୁ କ'ଣ ପ୍ରଚ୍ଛନ୍ନ ଶୈବ କହିବା ?

ଏଠାରେ ଗାୟତ୍ରୀ- ବେଦମାତା ଶକ୍ତିଙ୍କ ପ୍ରଶସ୍ତି କଣ୍ଠେ କୁହାଯାଇ ଅଛି। ବୈଷ୍ଣବମାନେ ରାଧାଙ୍କ ଅନୁଗ୍ରହକୁ ବେଶି ଅପେକ୍ଷା କରନ୍ତି ।

ପୁନଶ୍ଚ-

ହରି ଭକ୍ତି ପ୍ରଦାତ୍ରୀ ସା- ବିଷ୍ଣୁ ମାୟା ସନାତନୀ
ସା ଚ ଯା ନନୁଗୃହ୍ଣାତି ତେଭ୍ୟୋ ଭକ୍ତିଂ ଦଦାତି ଚ ।
(ବ୍ରହ୍ମବୈବର୍ତ୍ତ ପୁରାଣ)

ପୁନଶ୍ଚ-

ମାୟା ନାରାୟଣୀ ମାତା
ସର୍ବେ ତାଂ କୃଷ୍ଣ ଭକ୍ତଦା
ନ କୃଷ୍ଣ ଭକ୍ତିଂ ପ୍ରାପ୍ନୋତି ବିନା ମାୟା ନିଷେବଣମ୍ ।
(ବ୍ରହ୍ମବୈବର୍ତ୍ତ ପୁରାଣ)

ବୌଦ୍ଧଧର୍ମ ଓ ଜୈନଧର୍ମ ଯେପରି ପ୍ରଚ୍ଛନ୍ନ ସାଂଖ୍ୟ ବା ଯୋଗ ଧର୍ମ, କାରଣ ସାଂଖ୍ୟ – ବହୁ ପୁରୁଷ ଏକ ପ୍ରକୃତି, ସେହିପରି ବହୁ ଜୀବ- ଏକ ପ୍ରକୃତି ବୌଦ୍ଧ ଓ ଜୈନ ଧର୍ମ ସ୍ୱୀକାର କରେ । ଜୀବର ସିଦ୍ଧିରେ ମୁକ୍ତି ।

ଶଙ୍କରାଚାର୍ଯ୍ୟଙ୍କ ମତ ପ୍ରଚ୍ଛନ୍ନ- ବୌଦ୍ଧ ମତ ରୂପେ ବିଷ୍ଣୁ ପୁରାଣରେ ଲିଖିତ ।

ମାୟାବାଦ ଅସତ୍‌ଶାସ୍ତ୍ର, ତାହା ପ୍ରଚ୍ଛନ୍ନ ବୌଦ୍ଧ ମତ । ବୁଦ୍ଧଙ୍କ ଶୂନ୍ୟ ହେଉଛି ଶଙ୍କରଙ୍କ ବ୍ରହ୍ମ- ତହୁଁ ଦ୍ୱୈତବାଦ ପ୍ରତିପାଦକ । ବିଷ୍ଣୁପୁରାଣକାର ଏହା କହିଲେ- ବୁଦ୍ଧଦେବଙ୍କ ଶୂନ୍ୟ ଯେ, ବ୍ୟାବହାରିକ ଶୂନ୍ୟ ତା ନୁହେଁ । ସେ ଯାହା ହେଉ, ଶଙ୍କରଙ୍କ ବ୍ରହ୍ମତ୍ୱ ପ୍ରାପ୍ତି ଓ ବୁଦ୍ଧଙ୍କର ଶୂନ୍ୟତ୍ୱପ୍ରାପ୍ତି ବା ନିର୍ବାଣ ପ୍ରାପ୍ତିରେ ଯେ ଐକ୍ୟ ନାହିଁ, ତାହା ନୁହେଁ; କିନ୍ତୁ ବ୍ରହ୍ମତ୍ୱ ପ୍ରାପ୍ତିର କିଛି ବିଶେଷତ୍ୱ ଅଛି । ପୁନଶ୍ଚ ଜୀବର ବ୍ରହ୍ମ ସ୍ୱରୂପ ପ୍ରାପ୍ତି ଜନସାଧାରଣଙ୍କ ବୋଧଗମ୍ୟ ନୁହେଁ ଏବଂ ଅଦ୍ୱୈତବାଦ ଅତି ଦୁରୂହ ବିଷୟ । କିନ୍ତୁ ତାହାହିଁ ଭାଗବତକାର ମଧ୍ୟ କହି ଅଛନ୍ତି । ଯେଉଁ ଭାଗବତ ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନାତ୍ମକ ଓ ବିଷ୍ଣୁପୁରାଣଠାରୁ ବୈଷ୍ଣବଙ୍କଦ୍ୱାରା ବହୁ ଆଦୃତ ।

ଯତ୍ରେମେ ସଦ ସଦ୍ ରୂପେ ପ୍ରତିଷିଦ୍ଧେ ସ୍ୱ ସିଂବିଦା<br>
ଅବିଦ୍ୟୟାତ୍ମନି କୃତେ ଇତି ହେ ବ୍ରହ୍ମ ଦର୍ଶନମ୍ ।

ଏହି ଭାଗବତ କହେ- ଭଗବାନ୍ ଅରୂପ ଓ ଚିଦାତ୍ମା । ତାଙ୍କର ରାମକୃଷ୍ଣାଦି ରୂପ ମାୟିକ । ଦ୍ରଷ୍ଟାଙ୍କ ଠାରେ (ଅରୂପ ଜ୍ଞାନମୟ ଭଗବାନଙ୍କ ଠାରେ ଦୃଶ୍ୟତ୍ୱ ଅବୃଦ୍ଧି ଦ୍ୱାରା ଆରୋପିତ ହେବା ମାତ୍ର) ଯେତେବେଳେ ଭଗବାନଙ୍କ ସ୍ଥୂଳ ଓ ସୂକ୍ଷ୍ମ ରୂପ ଆତ୍ମଜ୍ଞାନଦ୍ୱାରା ପ୍ରତିବଦ୍ଧ ହୁଏ- ଯେଉଁ ରୂପ ଦ୍ୱୟ ଆତ୍ମାରେ ଅବିଦ୍ୟାଦ୍ୱାରା କୃତ ବା ଆରୋପିତ, ସେତେବେଳେ ବ୍ରହ୍ମଦର୍ଶନ (ଜୀବବ୍ରହ୍ମ ଏବ ଭବତି) ଅର୍ଥାତ୍ ଜୀବ ବ୍ରହ୍ମ ସ୍ୱରୂପ ପ୍ରାପ୍ତ ହୁଏ । ଏହି ପ୍ରସଙ୍ଗରେ ଗୋଟିଏ ବଡ଼ କୌତୂହଳମୟ ବିଷୟ ଅଛି । ବଲ୍ଲଭଦେବ ପୁରୀଧାମକୁ ଆସି ଶ୍ରୀ ଚୈତନ୍ୟଚନ୍ଦ୍ରଙ୍କୁ କହିଲେ ଯେ, ସେ ଭାଗବତର ଏକ ଟୀକା କରିଅଛନ୍ତି ଓ ସ୍ଥଳେ ସ୍ଥଳେ ଶ୍ରୀଧରଙ୍କ ଟୀକାକୁ ସଂଶୋଧନ କରିଅଛନ୍ତି । ତହୁଁ ଶ୍ରୀଚୈତନ୍ୟ କହିଲେ- ଶ୍ରୀଧରଙ୍କ କୃପାରୁ ମୋର ଭାଗବତରେ ପ୍ରବେଶ । ଅର୍ଥାତ୍ ଶ୍ରୀଧର ମୋର ଗୁରୁକଳ୍ପ । ଯେ ଶ୍ରୀଧର ଟୀକା ଅବଲମ୍ବନ ନ କରି ଅନ୍ୟତ୍ର ଭାଗବତର ଅର୍ଥ ନିମିତ୍ତ ଅନ୍ୟ ଆଶ୍ରୟ କରେ "ବେଶ୍ୟାର ଭିତରେ ତାରେ କରିଯେ ଗଣନ । ଶ୍ରୀଧରଙ୍କ 'ବ୍ରହ୍ମଦର୍ଶନ' ଅର୍ଥ, ଜୀବ ବ୍ରହ୍ମସ୍ୱରୂପ ପ୍ରାପ୍ତ ହୁଏ । ଏହାଦ୍ୱାରା ଶ୍ରୀଧର ଅଦ୍ୱୈତବାଦୀ ବୋଲି ସ୍ପଷ୍ଟ ଜଣାଯାଏ । ଶ୍ରୀଧର ତହୁଁ ମାୟାବାଦୀ ହେଲେ । ଶ୍ରୀଚୈତନ୍ୟ ଶ୍ରୀଧରଙ୍କ ମତକୁ ପୂର୍ଣ୍ଣ ସମର୍ଥନ କରିଥିବାରୁ ସେ ମଧ୍ୟ ମାୟାବାଦୀ ହେଲେ । ପ୍ରଚ୍ଛନ୍ନ ଦ୍ୱୈତବାଦୀ ହେଲେ । ପୁନଶ୍ଚ ନଗେନ୍ଦ୍ର ନାଥ ବସୁ ଓଡ଼ିଶାର ପଂଚସଖାଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ଥିବାର କହିଅଛନ୍ତି । ଯେପରି ଶଙ୍କର ପ୍ରଚ୍ଛନ୍ନ ବୌଦ୍ଧ, ସେହିପରି ଉତ୍କଳର ପଂଚସଖା ପ୍ରଚ୍ଛନ୍ନ ବୌଦ୍ଧ ଥିଲେ । ଶଙ୍କର ଯଦି ପ୍ରଚ୍ଛନ୍ନ ବୌଦ୍ଧ, ଶ୍ରୀଧର ପ୍ରଚ୍ଛନ୍ନ ବୌଦ୍ଧ, ଶ୍ରୀଚୈତନ୍ୟ ପ୍ରଚ୍ଛନ୍ନ ବୌଦ୍ଧ ଓ ଓଡ଼ିଶାର ପଂଚସଖା ପ୍ରଚ୍ଛନ୍ନ ବୌଦ୍ଧ । ଉତ୍କଳର ବୈଷ୍ଣବପ୍ରବର କ୍ଷଣଜନ୍ମା, ରାମାନନ୍ଦ ରାୟ ଶ୍ରୀଚୈତନ୍ୟଚନ୍ଦ୍ରଙ୍କୁ ବ୍ରଜଲୀଳାର ଗୂଢତତ୍ତ୍ୱ ବ୍ୟାଖ୍ୟାନ

କରିଥିଲେ । ସେ ଥିଲେ ଚୈତନ୍ୟଚନ୍ଦ୍ରଙ୍କ ଅନ୍ତରଙ୍ଗ ସଖା । ରାୟ ରାମାନନ୍ଦ ବୈଷ୍ଣବ କୁଳର ଗୁରୁରୂପେ ବିବେଚିତ । ରାମାନନ୍ଦଙ୍କର ଓ ଶ୍ରୀଚୈତନ୍ୟଚନ୍ଦ୍ରଙ୍କର ଏକ ମତବାଦ । ଅଚିନ୍ତ୍ୟ ଭେଦାଭେଦ- ଜୀବ ଓ ପରମ ମଧ୍ୟରେ ଭେଦ ଅଛି ଓ ଅଭେଦ ମଧ୍ୟ ଅଛି । ତାହା କଳନା କରିବା ସାଧାରଣ ବୁଦ୍ଧିର ଅଗମ୍ୟ । ଅଚିନ୍ତ୍ୟ ଭେଦାଭେଦବାଦକୁ ମଧ୍ୟ ପ୍ରଚ୍ଛନ୍ନ ଅଦ୍ୱୈତବାଦ- ପ୍ରଚ୍ଛନ୍ନ ବୌଦ୍ଧମତ । ପ୍ରଚ୍ଛନ୍ନଶାଙ୍କର ମତ ଲୋକେ କହିବେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କିନ୍ତୁ ଭାବିବାକୁ ହେବ ଯେ, କୌଣସି ମତବାଦ ସ୍ୱତନ୍ତ୍ର, ନିରପେକ୍ଷ ହୋଇପାରେନାହିଁ । ବୈଷ୍ଣବ ଧର୍ମରେ ଅନ୍ୟ ଚାରିବେଦଙ୍କ ପୂଜାର ବିଧି ମଧ୍ୟ ଅଛି । ତହୁଁ ଗୋଟିଏ ବିଷୟକୁ ପ୍ରଚ୍ଛନ୍ନ ଅମୁକ କହିବାରେ ଦୋଷ ହୋଇ ନ ପାରେ । କିନ୍ତୁ କହିବା ସମୀଚୀନ ନୁହେଁ । ତହୁଁ ଧୀରସ୍ଥିର ଭାବରେ ବିଚାର କଲେ ପ୍ରକୃତ ତଥ୍ୟ ପ୍ରକାଶ ପାଏ । କିନ୍ତୁ ପାରମ୍ପରିକ ଗତିପ୍ରତି ଲକ୍ଷ୍ୟ ନରଖି ଏକ ବିଷୟର ଉଦ୍ଦେଶ୍ୟ ଅନୁଧାନ କରି ଗୋଟିଏ ମତ ପ୍ରକାଶ କରିବା ସମୀଚୀନ ନୁହେଁ ।

# ବେଦ ଓ ଉପନିଷଦରେ ହିମାଳୟ

ହିମାଳୟ, ଏହା ହିମର, ତୁଷାରର, ବରଫର ସ୍ଥାନ । ଅର୍ଥାତ୍ ବରଫ ପ୍ରଚୁର ପରିମାଣରେ ଏଠାରେ ବିଦ୍ୟମାନ । ଭାରତବର୍ଷର ଉତ୍ତରାଞ୍ଚଳରେ ଏହାର ଅବସ୍ଥିତି । ଏହି ଦେଶ ପୂର୍ବେ ଅଜନାଭ ନାମରେ କଥିତ ହେଉଥିଲା । ପ୍ରକୃତିର ଅଥବା ପୃଥିବୀର ନାଭିକେନ୍ଦ୍ର, ମଧ୍ୟସ୍ଥଳ ବା ଶୀର୍ଷସ୍ଥଳ । ପରେ ଏହା ଭାରତ ନାମରେ ଅଭିହିତ ହେଲା । ଋଷଭଦେବ ଆଦିଜୀନ ବା ବାସୁଦେବ ଅବତାରଙ୍କ ଜ୍ୟେଷ୍ଠପୁତ୍ର ଭରତ(ଭାଗବତ)- ଦୁଷ୍ମନ୍ତ - ଶକୁନ୍ତଳାଙ୍କ ପୁତ୍ର ଭରତ(ମହାଭାରତ) । ଏହାଙ୍କଦ୍ୱାରା ଶାସିତ ଦେଶ ଏହାଙ୍କ ନାମରେ ନାମିତ ହେଲା । ପୃଥିବୀ ମଧ୍ୟରେ ଭାରତ ପବିତ୍ର । ଭାରତମାତାଙ୍କର ହିମାଳୟ ହେଉଛି ଶୁଭ୍ର ହୀରକପ୍ରଭ ମୁକୁଟ । ଏହା ପୃଥିବୀର ସର୍ବୋଚ୍ଚ ପର୍ବତ । ଏହି ହିମାଳୟର ଦୀର୍ଘତା ୧୫୦୦ ମାଇଲ୍ । ଦେବଙ୍କର ପ୍ରଧାନ ସପ୍ତଶିଖା ସଦୃଶ ହିମାଚଳର ଉଜ୍ଜ୍ୱଳଶୃଙ୍ଗ ବିଦ୍ୟମାନ- ଧବଳଗିରି, କାଞ୍ଚନଜଙ୍ଘା, ନନ୍ଦାଦେବୀ, ନଙ୍ଗା, କାମେତ, ଉଡବିନ୍, ଅଷ୍ଟେନ ଓ ଏଭରେଷ୍ଟ ବା ଗୌରୀଶଙ୍କର । ଏମାନଙ୍କର ଉଚ୍ଚତା ୨୬୮୬୮ ଫୁଟରୁ ୨୯୦୦୨ ଫୁଟ । ଗୌରୀଶଙ୍କର ସର୍ବୋଚ୍ଚ ଅଟେ ।

ହିମାଳୟର ଉତ୍ତରକୁ ଲାଗି ପବିତ୍ର ମାନସରୋବର ଓ କୈଳାସ ପର୍ବତ । ଏହି ସ୍ଥଳୀମାନ ଅତି ପବିତ୍ର । ପୁରାଣମାନଙ୍କରେ ବହୁଶଃ ବର୍ଣ୍ଣିତ । ଏହି ହିମାଚଳର ପାର୍ବତ୍ୟ ଅଞ୍ଚଳଗୁଡ଼ିକ ଦେବତା, ଯକ୍ଷ, ଗନ୍ଧର୍ବ ଓ କିନ୍ନରମାନଙ୍କର ଲୀଳାଭୂମି । ବଦ୍ରିନାଥ, ହରିଦ୍ୱାର ପ୍ରଭୃତି ଏହି ପାର୍ବତ୍ୟ ଅଞ୍ଚଳରେ । ଯୋଗୀ ଓ ଋଷିମାନେ ଏହି ଅଞ୍ଚଳମାନଙ୍କରେ ତପସାଧନ କରନ୍ତି ।

ଏହି ହିମାଚଳ ଦେବାତ୍ମା, ହିମାଚଳ,
ଯଂ ସର୍ବଶୈଳାଃ ପରିକଳ୍ପ୍ୟ ବତ୍ସଂ
ମେରୌସ୍ଥିତୋ ଦୋଗ୍‌ଧରି ଦୋହଦକ୍ଷେ
ଭାସ୍ୱନ୍ତି ରତ୍ନାନି ମହୌଷଧୀଶ୍ଚ
ପୃଥୂପଦିଷ୍ଟାଂ ଦୁଦୁହୁର୍ଧରିତ୍ରୀମ୍ ।

ପର୍ବତମାନେ ଯାହାକୁ ବତ୍ସରୂପେ କଳ୍ପନାକରି ଦୋଗ୍‌ଧାମେରୁଙ୍କ ବିଦ୍ୟମାନତାରେ ପୃଥୁଙ୍କଦ୍ୱାରା ଚାଳିତ ହୋଇ ରତ୍ନ ଓ ଔଷଧି ଦୋହନ କରିଥିଲେ ।

ହିମାଚଳର ଅଧିଦେବ ପିତୃଗଣଙ୍କ କନ୍ୟା ମେନାଙ୍କୁ ବିବାହ କରିଥିଲେ । ମେନାଙ୍କ ଗର୍ଭରୁ ମୈନାକ ନାମକ ପର୍ବତ, ଏକ ପୁତ୍ର ଓ ଗଙ୍ଗା ତଥା ପାର୍ବତୀ ଦୁଇ କନ୍ୟା ଜାତ ହୋଇଥିଲେ । ଗଙ୍ଗା ଓ ପାର୍ବତୀ ମହାଦେବଙ୍କ ପତ୍ନୀ । ପୁରାଣ ଓ କାବ୍ୟମାନଙ୍କରେ ହିମାଳୟର ବର୍ଣ୍ଣନା ଅଛି । କାଳିଦାସ କୁମାରସମ୍ଭବ ଓ ମେଘଦୂତରେ ଏହି ଅଞ୍ଚଳର ପ୍ରଶସ୍ତିମାନ ଗାନ କରିଅଛନ୍ତି । କୁବେରଙ୍କ ପୁରୀ ଅଳକା । ହିମାଳୟ ଉପରିଭାଗରେ ଅଳକାନନ୍ଦା ନଦୀତଟରେ ଅବସ୍ଥିତ । କୈଳାସ ହିମାଳୟର ଶୃଙ୍ଗବିଶେଷ । ଏହାର ଉଚ୍ଚତା ୨୭୯୦୦ଫୁଟ । ଏହା ମାନସରୋବରର ଉତ୍ତରରେ ବିଦ୍ୟମାନ । ହିନ୍ଦୁଶାସ୍ତ୍ର ଅନୁସାରେ ତଥା ପ୍ରଚଳିତ ସଂସ୍କାର ଅନୁସାରେ- ଭାରତୀୟ ଆର୍ଯ୍ୟଙ୍କର ଏହା ଅତିଶୟ ପବିତ୍ର ସ୍ଥାନ । ଏହା ମହାଦେବଙ୍କର ଅଧିଷ୍ଠାନ । ଯକ୍ଷରାଜ କୁବେରଙ୍କ ଏହା ବାସସ୍ଥାନ । ଏହା ସ୍ଫଟିକମୟ ବା ଏହା ସର୍ବଦା କେଳିମୟ ।

ଭାରତର ଅତି ପବିତ୍ର ନଦୀ ଗଙ୍ଗୋତ୍ତରୀ ବା ଗୋମୁଖୀରେ ଉତ୍ପନ୍ନ ହୋଇ ଦେବପ୍ରୟାଗ ପର୍ଯ୍ୟନ୍ତ ଭାଗୀରଥୀ ନାମ ଧାରଣ କରିଅଛି । ଏହିଠାରେ ଅଳକାନନ୍ଦା ମିଶିଛି । ଏହାକୁ ମଧ୍ୟ ଗଙ୍ଗା କହନ୍ତି । ଭାଗୀରଥୀ ଓ ଅଳକାନନ୍ଦା ଦୁହେଁ ମିଳି ଗଙ୍ଗା ନାମରେ କଥିତ । ହରିଦ୍ୱାରରେ ଏ ସମତଳ ଭୂମିରେ ପତିତ । ଅପର ପବିତ୍ର ଯମୁନା ନଦୀ ମଧ୍ୟ ହିମାଳୟରୁ ବାହାରି ପ୍ରୟାଗରେ ଗଙ୍ଗାଠାରେ ମିଶିଅଛି । ବେଦୋକ୍ତ ସରସ୍ୱତୀ ନଦୀ ହିମାଚଳସ୍ଥିତ ସିମଳା ସମୀପସ୍ଥ ପାର୍ବତ୍ୟମାଳରୁ ବାହାରି ପ୍ରୟାଗଠାରେ ଗଙ୍ଗା ଓ ଯମୁନା ସଙ୍ଗରେ ମିଶି ତ୍ରିବେଣୀ ନାମ ଧାରଣ କରିଛନ୍ତି । ସିନ୍ଧୁନଦୀ ମାନସରୋବର ଉତ୍ତରସ୍ଥିତ ପାର୍ବତ୍ୟ ଅଞ୍ଚଳରୁ ଉଦ୍ଭୁତ ହୋଇ ରତ୍ନାକର(ଆରବସାଗର)ରେ ପତିତ ହୋଇଅଛି । ବ୍ରହ୍ମପୁତ୍ରନଦୀ ହିମାଳୟର ଗୋଟିଏ ଶିଖରରୁ ବାହାରି ହିମାଳୟର ଉତ୍ତରଦିଗବାଟେ ଆସି, ତିବ୍ବତ ହୋଇ ଆସାମର ସମତଳଭୂମିରେ ଆସି ମିଶିଛି । ପୌରାଣିକ କଥା ଅଛି ଯେ, ପରଶୁରାମ ବ୍ରହ୍ମକୁଣ୍ଡ କି ମାନସ ସରୋବରେ ସ୍ନାନକରି ମାତୃହତ୍ୟା ପାପରୁ ମୁକ୍ତହେବାରୁ, କୁଠାରଦ୍ୱାରା ଖନନକରି ଏହି ଜଳସ୍ରୋତ ଆଣିଥିଲେ । ଏହିହେତୁ ଏହାର ନାମ ହେଲା ବ୍ରହ୍ମପୁତ୍ର । ପୁନଶ୍ଚ ଶତଦ୍ରୁ- ସିନ୍ଧୁ- ନଦୀର ଉପନଦୀ । ମାନସ ସରୋବରରୁ ଏହାର ଉତ୍ପତ୍ତି । ଏହି ନଦୀ ଦକ୍ଷିଣ ଓ ପଶ୍ଚିମ ଦିଗକୁ ବହି ହିମାଳୟ ଭେଦ ପୂର୍ବକ ହିମାଳୟର ଦକ୍ଷିଣରେ ସିନ୍ଧୁ ନଦୀରେ ମିଶିଅଛି । ମହାଭାରତରେ କଥିତ ଅଛି ଯେ, ବଶିଷ୍ଠଙ୍କ ଏକଶତ ପୁତ୍ରଙ୍କୁ ବିଶ୍ୱାମିତ୍ର ରାକ୍ଷସ ବିଷ୍ଟ ସୂର୍ଯ୍ୟବଂଶୀ ରାଜା କଲ୍ମାଷ ଦେବଙ୍କଦ୍ୱାରା ଭକ୍ଷଣ କରାଇବାରୁ ବଶିଷ୍ଠ ଶୋକାକୁଳ ହୋଇ ପ୍ରାଣତ୍ୟାଗ କରିବାକୁ ଉଦ୍ୟତ ହେଲେ । ସେ ଦେଖିଲେ ଯେ, ବର୍ଷାକାଳରେ ଗୋଟିଏ ଖରସ୍ରୋତା ନଦୀ ତଟସ୍ଥ ବୃକ୍ଷମାନଙ୍କୁ ହରଣ କରିନେବା ଦେଖି ନିଜକୁ ଦୃଢଭାବରେ ପାଶରେ ଆବଦ୍ଧପୂର୍ବକ ସେହି ନଦୀଜଳରେ ନିମଗ୍ନ ହେଲେ । ସେହି ନଦୀ ତାଙ୍କର ରଜ୍ଜୁ ଛେଦନପୂର୍ବକ ତାହାଙ୍କୁ ପାଶମୁକ୍ତ କରି ସ୍ଥଳ-ଭୂମିରେ ତ୍ୟାଗକଲା । ତହୁଁ ସେ ପାଶରୁ ମୁକ୍ତ ହେବାରୁ ସେହି ନଦୀର ନାମ ବିପାଶା ରଖିଲେ । ଏହି ନଦୀ ଶତଦ୍ରୁର ଉପନଦୀ । ଏହା ମଧ୍ୟ ହିମାଚଳ-ମାଳରୁ ବାହାରିଛି ।

ଶୋକାକୁଳ ବଶିଷ୍ଠ ଇତସ୍ତତଃ ପରିଭ୍ରମଣ କରିବାକୁ ଲାଗିଲେ । ଏକଦା ହୈମବତୀ ନାମ୍ନୀ ନଦୀ(ହିମାଳୟରୁ ବାହାରିବା ନଦୀ) ଭୀଷଣ କୁମ୍ଭୀରସମାକୁଳା । ସେହି ଭୟଙ୍କରୀ ନଦୀରେ ବଶିଷ୍ଠ ନିଜେ ଡେଇଁ ପଡ଼ିଲେ । ସେ ନଦୀ ପ୍ରଚଣ୍ଡ ଅଗ୍ନିସମ ତେଜଯୁକ୍ତ ବଶିଷ୍ଠଙ୍କ ଶରୀରକୁ ଧାରଣ କରି ନପାରି ଶତଧାରାରେ ପ୍ରବାହିତ ହେଲା । ତେଣୁ ତାହାର ନାମ ଶତଦ୍ରୁ ହେଲା । ଏହି ନଦୀ ହିମାଳୟ ପର୍ବତରେ ଉତ୍ତରସ୍ଥ ମାନସରୋବର ପଶ୍ଚିମସ୍ଥ ରାବଣ ହ୍ରଦରୁ ବାହାରି, କିଛିଦୂର ପଶ୍ଚିମକୁ ଯାଇ, ହିମାଳୟ ଭେଦକରି ସିମଳା ପାହାଡ଼ ପାଖଦେଇ ଚେନାବ ନଦୀରେ ମିଳି, ପୁଣି ସିନ୍ଧୁ ନଦୀରେ ମିଳିତ ହୋଇଅଛି ।

ମହାଭାରତ ପଞ୍ଚମବେଦ ରୂପେ ଗୃହୀତ । ପୁରାଣମାନେ ମଧ୍ୟ ବ୍ୟାପକ ଅର୍ଥରେ ବେଦରୂପେ ଗୃହୀତ । କାରଣ-

ଇତିହାସପୁରାଣାଭ୍ୟାଂ ବେଦଂ ସମୁପବୃଂହୟେତ୍
ବିଭେତ୍ୟଳ୍ପ ଶ୍ରୁତାହ ବେଦୋ ମାମୟଂ ପ୍ରହରିଷ୍ୟତ- ।

ଇତିହାସ ଓ ପୁରାଣମାନଙ୍କଦ୍ୱାରା, ବେଦରେ ଯାହା ସଂକେତିକ, ତାହା ବିସ୍ତରଭାବରେ କଥିତ । ପୁନଶ୍ଚ ଯେଉଁ ବିଷୟ ଆଧୁନିକ ପ୍ରଚଳିତ ବେଦରେ ନାହିଁ, ତାହା ଇତିହାସ । ପୁରାଣଦ୍ୱାରା ବିଦିତ ହେବ ।

କେନୋପନିଷଦରେ ଲିଖିତ ଅଛି ଯେ-

ଦେବଗଣ ନିଜ ନିଜକୁ ବଡ଼ମଣି ବ୍ରହ୍ମର ମହତ୍ତ୍ୱ ଅବବୋଧ କରିପାରି ନ ଥିଲେ । ଅଗ୍ନି, ବାୟୁଙ୍କ ଅସାମର୍ଥ୍ୟ ପ୍ରକାଶ ହୁଅନ୍ତେ, ତହୁଁ ଇନ୍ଦ୍ରଙ୍କୁ ଦେବତାମାନେ କହିଲେ- ଜାଣ କିଏ ଯକ୍ଷ(ପୂଜ୍ୟ) । ଇନ୍ଦ୍ର ଗଲେ, କିନ୍ତୁ ସେ ତିରୋହିତ ହେଲେ । ସେ ଇନ୍ଦ୍ର ସେହି ଆକାଶରେ ବହୁ ଶୋଭାମୟୀ ହିମବାନଙ୍କ କନ୍ୟା ଉମାଙ୍କ ନିକଟକୁ ଗଲେ ଓ ତାହାଙ୍କୁ କହିଲେ- କିଏ ଯକ୍ଷ(ପୂଜ୍ୟ) । ସେ କହିଲେ- ଏ ବ୍ରହ୍ମ ଇତ୍ୟାଦି । (କେନୋପନିଷଦ୍ ୩ - ୪ର୍ଥ ଖଣ୍ଡ) । ଶତଦ୍ରୁଙ୍କୁ ହୈମବତୀ କୁହାଯାଇଛି । ସେହିପରି ଏଠାରେ ହୈମବତୀ ଅର୍ଥ ହିମାଚଳଙ୍କ କନ୍ୟା, ସୁବର୍ଣ୍ଣମୟୀ – ନୁହନ୍ତି ।

ବେଦର ୧୦ମ ମଣ୍ଡଳ ୧୦ମ ଅଧ୍ୟାୟ ୧୨୧-୪ର୍ଥ ମନ୍ତ୍ରରେ ହିମବାନ୍ ହିମାଚଳଙ୍କ ନାମ ହୈମବନ୍ତ ।

" ଯସ୍ୟେମେ ହିମବନ୍ତୋ ମହିତ୍ୱା ଯସ୍ୟ ସମୁଦ୍ରଂ ରସୟାସହାହୁ"

ହିମ କି ପରଫ ଅଛି ବୋଲି ହିମବାନ୍ । ବହୁବଚନଦ୍ୱାରା ସବୁ ପର୍ବତ ଲକ୍ଷିତ ହୁଅନ୍ତି । ସେମାନଙ୍କଦ୍ୱାରା ଉପଲକ୍ଷିତ ଏହି ଦୃଶ୍ୟମାନ ପର୍ବତ ସବୁ ପ୍ରଜାପତିଙ୍କର ମାହାତ୍ମ୍ୟ ଓ ଐଶ୍ୱର୍ଯ୍ୟକୁ କହୁଅଛନ୍ତି । ଏହାଦ୍ୱାରା ସୃଷ୍ଟି ହେବା ହେତୁ, ସେହିପରି ଉଚ୍ଚତାରେ ଅବସ୍ଥିତ ହେତୁ, ନଦୀମାନଙ୍କ ସହ ସମୁଦ୍ର ମଧ୍ୟ ତାଙ୍କ ମାହାତ୍ମ୍ୟ ପ୍ରକାଶ କରୁଅଛି, ଇତ୍ୟାଦି । ହିମାଚଳ ପର୍ବତମାନେ ଏହି ଚଳନଶୀଳ ପୃଥିବୀର ସ୍ତମ୍ଭରୂପ । ତାକୁ ସ୍ଥିର କି ଦୃଢ କରି ରଖି ଅଛନ୍ତି । ଏହା ବେଦ ୨ୟ ମଣ୍ଡଳ ୨ୟ ଅଧ୍ୟାୟ ୧୨ ସୂକ୍ତର ୪ର୍ଥ ଶ୍ଳୋକ-

"ଯେନେମା ବିଶ୍ୱା ଚ୍ୟବନା କୃତାନି
ଯୋ ଦାସଂ ବର୍ଣ୍ଣଂ ଅଧରଂ ଗୁହାକଃ ।"

ଯେଉଁ ଇନ୍ଦ୍ରଙ୍କଦ୍ୱାରା ଏହି ନଶ୍ୱର ଚଳମାନ ଭୁବନ ସବୁ ସ୍ଥିର କରାଗଲେ, ଯେ ଦାସ ଶୂଦାଦି ଦସ୍ୟୁଙ୍କୁ ମଧ୍ୟ ଗୂଢ ସ୍ଥାନରେ ନରକରେ ବା ରଖାଇଥିଲେ । ପୁନଶ୍ଚ ୧୦ ମ ମଣ୍ଡଳ ୧୦ମ ଅଧ୍ୟାୟ ୧୨୧ ସୂକ୍ତର ୫ମ ମନ୍ତ୍ରରେ- ଯେନ ଦୌରୁଗ୍ରା ପୃଥିବୀ ଚ ଦୃହ୍ଳା ।

ଯେନ ସ୍ୱ ସ୍ତଭିତଂ ଯେନ ନାକଃ
ଯୋ ଅନ୍ତରୀକ୍ଷେ ରାଜସୋ ବିମାନଃ
ତସ୍ମୈ ଦେବାୟ ହବିଷା ବିଧେମ ।

ଯେଉଁ ପ୍ରଜାପତିଙ୍କଦ୍ୱାରା ଅନ୍ତରୀକ୍ଷ ଗମନଯୋଗ୍ୟ, ଅଗହନରୂପ, ଭୂମି ସ୍ଥିରୀକୃତ, ସ୍ୱର୍ଗ ସ୍ତବ୍ଧ ନିଶ୍ଚଳ କି ଦୃଢ କରାଗଲା । (ଅର୍ଥାତ୍ ଯେପରି ନ ପଡ଼େ), ସେହିପରି ଉପରିଭାଗରେ ରଖି ଆଦିତ୍ୟଙ୍କୁ ସ୍ଥୀରୀକୃତ କଲେ, ଯେ ଉଦକର ନିର୍ମାତା, ସେହି ପ୍ରଜାପତିଙ୍କୁ ପୁରୋଡାଶରେ ଆମ୍ଭେ ଋତ୍ୱିକଗଣ ସେବା କରୁଛୁଁ ।

ପୁନଶ୍ଚ ହିମାଳୟ ଯେଉଁ ସ୍ଥାନରେ ଅବସ୍ଥିତ, ତାହା ଜଳମୟ ସମୁଦ୍ର- ଥିଲା- ବହୁ ସହସ୍ର ବର୍ଷ ପୂର୍ବେ ହିମାଳୟ ଉତ୍ଥିତ ହୋଇଅଛି । ଯେଉଁ ବିଶାଳ ନଦୀମାନ ଉଦ୍ଭୂତ, ସେମାନେ ଜଳପ୍ରସ୍ରବଣରୂପ ଭୂତଳରୁ ସେହି ପାର୍ବତ୍ୟଅଞ୍ଚଳରୁ ଜାତ ବୋଲି ଅନୁମିତ ହୁଅନ୍ତି ।*

*ଆକାଶବାଣୀ ସୌଜନ୍ୟରୁ

# Kalinga and Telingana

It is a matter of great surprise that many writers including Cunningham and Mc'Crindle could hold the view that the word Telengana is the modified or corrupted form of Trikalinga. The Kalingas are a distinct people from the Telingas or Telegus and that they were almost always enimical towards each other. The Telegus are the Andhras. For some time they exercised sway over the Kalingas, and the Kalingas also, in their turn, conquered the Andharas. But it would be quite wrong to say that the Andhars are the Kalingas and the Kalingas are Andhars. Inscriptions, ancient records, the **Mahabharat**, the **Puranas** etc. all testify to their distinct existences.

According to Pliny, Kalinga was divided into three parts. The upper Kalinga consisted of those lands that are now known as Singhbhum, Manbhum, Dhalbhum, Midnapur and the southern and western parts of the modern Bengal and went by the name of Kalinga Gangridai. At one time the capital of Kalinga was Sinhapur which was so named after its founder Sinha Bahu, the father of Vijaya Sinha, the first recorded sovereign of Ceylon.

The king of Kalinga is called in the **Mahabharat** a Paurava, a descendant of Puru of the lunar line. Duryodhana married the Kalinga princes, Chitrangada. From **Hatigumpha** inscription we learn that Ketubhadra-Ketuman of the **Mahabharat**- was the ancestor of the **Aryan** dynasty of Kalinga. From Pliny's Geography we come to know that Midnapur,

Balasore, Cuttack, Puri, Ganjam, Vizag, Chikakole etc., and even the lands beyond the Godavari belonged to Kalinga. From the edict of Asoka it is known that just beyond the land of the Kalingas towards the south was the principality of the Andhras, that just beyond the latter was the independent kingdoms of the **Cholas** and the **Pandyas** extending as far south as Tamraparni.

[According to the **Puranas** the Udras were a people that at first occupied a country which consisted of the western part of Midnapur, Manbhum, Singbhum and Bankura. (Cunningham's Ancient Geography, edited by S.N. Majumdar). The Utkal country extended from Balasore to Lohardaga and Sirguja (C.A.G.Ed. by S.N. Majumdar). It is quite probable that Kalinga was overrun by the **Odras** at a later time, and then at a still later period the Utkalas, most probably, under the Kosala kings became the lords of Kalinga.]

Kharavela, the Kalinga monarch, undertook an expedition to the kingdom of one Satakarni, the then Andhra king of the Deccan and terrorized the city of the **mushikas**, a people living near about modern Hydrabad in the Deccan, according to Mr. Jayaswal and living further south, according to the late Mr. R.D. Banerjee. The king of the Pandyas paid tribute to Kharavela.

According to Yuan Chwang, Orissa or Kalinga was divided into three distinct parts:-U-cha (Odra), which refers to northern Orissa, Kong-yu-to (Kongoda or Kungada) which refers to the country south of the Chilika lake and ki-ling-kia (Kalinga). Andhra and Kosala were quite distinct from them and have been described separately. Even in the $7^{th}$ century Kaling which was nearly 300 miles to the south west of Kongada was quite separate from Andhra or Teligana proper, which is mentioned and described separately by Yuan-Chwang. Andhra or Autolo was 150 miles south of Kosala or the Chhatisgarh Division of the Central Provinces, while Kalinga was nearly 300 miles to the

south east of Kosala. The position indicated is, according to the late R.D. Banerjee of Mohenjo-doro fame, that of the country between the Godavari and the Penner for Andhra and Dhanakatka, Ganjam and Vizagapatam for Kalinga and the Chhatisgarh and Bastar for Kosala.

Mahabhaba Gupta, Mahasiva Gupta, Jajati styled themselves as masters of Trikalinga country.

ସୋମକୁଳତିଳକ ତ୍ରିକଳିଙ୍ଗାଧିପତିଃ ଶ୍ରୀମଦ୍ଯଯାତି ରାଜ etc. etc.

The **Varmans** were the masters of Kalinga for more than 300 years upto the time of Cholagangadeva. The **Gangavansi** and the **Suryavansi** kings of Orissa were masters of the Kalinga Empire. Their rule extended from the Ganges to the Godavari and even far towards the south.

Even when the **Varmans** and the **Gangavansi** rulers ruled in Kalinga, Andhra or Telingana had its separate existence.

**Ekavali**- a work on poetics, by Vidyadhar of Orissa is a panegyric of the King Narasinha I. (According to some Narasinha II) Where the King Narasinha is addressed as Kalingeswara and Utkaleswar (as King of Kalingas in 40 slokas and King of Utkal in 10 slokas). From the Bhubaneswar Stone Inscription inscribed during the reign of this Narasinha Deva, it is clear that he had mastery over **Chola, Pandya** and **Kanchi**.

Viswanath Kaviraj, some years after wrote a drama named **Narasinha Vijaya**. Unfortunately, the manuscript has not yet been discovered. In his **Sahitya Darpan** he addresses the king Narasinha as Trikalinga Bhumitilak.

ଧାରେମାଲେ ନବଲ୍ଲିକାସମୁଦୟୋ ହସ୍ତେ ସିତାବ୍ଜି ରହମ୍
ହାରଃ କରାଠ ତ ଦେ ପୟେ ଘରେ ଯୁଗେ ଶ୍ରୀଖଣ୍ଡଲିପୋ ଘନଃ
ଏକୋପି ତ୍ରିକାଲାଂ ଭୂମି ତିଳକଃ ତ୍ଵଦ୍ କୀର୍ତିଦା ଶିବୟୋ
ଦାତମର୍ ଓନତାଂ ପୁରନ୍ଦରପୁରି ବମତ୍ରୁପା ବିମହେ ।

(Chap.IVth S.D.) In the 10th chapter of the same book we find another sloka addressed to the same King Narasinha .

ସ୍ରାହବେ ଭାଗଦୁନ୍ଦରାଙ୍ଗମରାଡଲରାହବେ

ଶ୍ରୀନୃସିଂହଭୂମିପାଳ ସ୍ୱସ୍ତସ୍ତୁ ତବ ବାହବେ

It is very likely that these two slokas belong to that **Narasinha Vijaya Natak**. In the fourth chapter of the same book there is a reference to the king Allaudin Khilji .

ସନ୍ଧୌ ସର୍ବସ୍ୱହରଂବିମ୍ରହେ ପ୍ରାସନିଗ୍ରହ
ଧାଲାପଦିନ ନୃପତୌନସନ୍ଧି ନ ଚ ବିଗ୍ରହ

It is very likely that Viswanath was contemporary of Narasinha II the son of Bhanudeva. Kalinga or Utkal under Narasinha II did not lose her independence when all other parts of India were subjugated by Allaudin Khilji.

Some years after, Vidyanath the court poet of Prataprudra, the Andhra king of Warnagala wrote a book on poetics just in the line of **Ekavali** a panegyric of his patron. In this work in the **Natakaprakarana** in second act the Prakrit form of Trilinga is given as Telanga. ମହନ୍ତୋ କ୍ଖୁ ଏସୋ ତେଲଙ୍ଗାକସୁଭାଦନମ (ଉଛାହୋ **Prataprudra Kalyan Natak, Gopal Narayan Co. edition**)but the prakrit in Prataprudra **Vasobhushan** is slightly different. It reads thus :- ମହନ୍ତୋ ଖୁ ଏସୋ ତିଲଙ୍ଗାଲୁଭଦାନା ମୁତାହୋ(Kamala Sankar Trivedi's Edition) Its Sanskrit rendering being ମହାନ ଖଲ୍ଵେଷ ତ୍ରିଲିଙ୍ଗ ସୁମଟାନାସୁସ୍ଵାହଃ । In the same act.ତୁରଙ୍ଗରଙ୍ଗାଶ୍ରୀଲିଙ୍ଗବୀପତେଃ । In the 3rd act ପ୍ରତୀପଦ୍ରୁଭୂପାଳାନ କ୍ଷୁକାସାଖିଲିଙ୍ଗସୌନିକାଉ ---In the fourth act ତ୍ରିଲିଙ୍ଗନଗରାନୁଗୀଦୃ-- In the **Arthalankara** Chapter.

ହୀପୈକ୍ଷରେନ୍ଦ୍ରିୟର୍ଧରଗିଧରୀୟ ଭିର୍ବାରିଭିରୁର୍ମି ------
ନାଗାୟୁଧର୍ବ୍ୟଲଜଲଗ୍ରହୈବାବଲମ୍ ତ୍ରିଲଙ୍ଗାଧିପତେର୍ଦ୍ଦୁରାପଂ

The commentary is ତ୍ରିଲିଙ୍ଗାଧିପତେର୍ନବ୍ୟାଧେସବି ସ୍ୱରସ୍ୟ again in the same chapter.

Here below a sloka is given from Prataprudra **Yashobhushan** which defines the excat position of the Trilinga country.

ଯୌ ର୍ଦ୍ଦେସାଶ୍ରୀଭିରେକ୍ଷ ୟାତି ମହତୋ ସ୍ୱୟାତିଂ ତ୍ରିଲିଙ୍ଗାରୂ—
ଯେଷାଂ କାକତୀରାଜକୀର୍ତ୍ତିବିଭବୈଃ କୈଳାସଶୈଳାଃ କୃତାଃ
ତେ ଦେବାଃ ପ୍ରସରତୁପ୍ରସାଦମଧୁରାଃ ଶ୍ରୀଶୈଳକାଳେଶ୍ୱର-

The Sanskrit commentator Kumaraswami, the son of Mallinath comments on this sloka as such ତ୍ରୟୋ ଲିଙ୍ଗରୂପାଃ ଶ୍ରୀଶୈଳନାଥାଦୟୋ ଯାସିପ୍ରନ୍ ଦେଶେ ସ୍ପୈ ତ୍ରିଲାଙ୍ଗୋଃଦେଶ ଇତ୍ୟର୍ଥଃ । It means, in brief, that the country is known as Trilinga on account of the three famous **lingas** of Srisaila, Kaleswar and Draksharama. [Srisaila in Warangal, Kaleswar- the temple at Kalahaster in the North Arcot District, Draksharama in the Godavari District].

This clearly shows that the Trilinga or Andhra country is quite different from Kalinga.

Again in that work of Vidyanath, the king Prataprudra is said to have subdued Kalinga.

In the Nataka Prakarana:-

୧. ଯୁଦ୍ଧାୟ ସମନ୍ୟନ୍ତ କଳୀଙ୍ଗାଃ ସ୍ଫୁଟପୌରୁଷାଃ। 3 Act 7 Sloka

୨. ସଂଗ୍ରମୋ କଳୀଙ୍ଗୌର୍ବଲୀବିଷ୍କିମକରୋଦ୍ ବୀରସ୍ୱହୃଦସ୍ୟ ଖଣ୍ଡଃ। Act Slokas 8,

୩. କାମୀଲାଃ ଶ୍ରୀତପଲ୍ଲୟଃ କୃତୟସୋମଙ୍ଗା କଳୀଙ୍ଗାସ୍ୱପି। Act 3- 18 Sloka

୪. କାଳୀଗାତ୍ର ନିପୀଦ କୋ- ଦୁରେ ଭବାନ୍ଧସ୍ୱର। 5th 16 Sloka

**Arthalankar** chapter:-

ଜବାପି କବାପି କଳିଙ୍ଗମାଳବମହାରାପ୍ଲ୍ନାଷ୍ଣବଷ୍ଣାହବୋ
ଭୁପାସ୍ତାଦୁସୌସ୍ମ ବୈଭବସମା
ଲୀନାଃ କାକତୀବୀରସ୍ତୁ ନୃପେଯର୍ୟୁହପ୍ରପଞ୍ଚାଶ୍ରୀୟା
ନିଃସୀମେ ବଳବାରୀଦ୍ଧୌ ବିଦଧତେ ପୁଣ୍ଡି ନ ----

This king Prataprudra had to fight with the **Mahamedans** hard. In 1303 the **Mahamadans** invaded the Trilinga country; but were forced to retreat. In 1310 they invaded it again under Malik Kafur and compelled Prataprudra to pay tribute. In 1316 year Allaudin died. Prataprudra made himself independent. In 1321 Ulugh Khan went to conquer Warangul but was unsuccessful. In 1323 Warrangal was captured and Prataprudra was imprisoned and sent to Delhi. His court poet Vidyanath has eulogized his patron rather too unduly, for he did not conquer Kalinga at all.

A copper plate inscription of 1458 A.D. of Mumudi-Telegu, chief in the district of Rajmahendri, contains the

following sloka which also clearly defines the position of Telingana.

ପଶ୍ରାଦ୍ ପୁରସାଦପା ସସ୍ୟ ଦେଶୌ
ସ୍ୱୟାତୌ ମହାରା
ସ୍ରବାଗୁଦକ୍ ପାରା
ଦେଶାଃ ସ ତଦାଦ୍ଧି ତ୍ରୈଲଙ୍ଗନାମା ||

That country, on the west and the east of which are Maharasthra and Kalinga respectively and on the south and the north are Pandya and Kanyakubja respectively, of the name of Trailanga is situated.

In the time of Kapilendra, the powerful monarch of Orissa from 1435 A.D. to 1470 Telingana was distinct from Kalinga. The Burhan-i-ma'asir which can be utilized as a source of information for Kapilendra's reign states that the leader of the **Hindu** chief of the highland of Telingana or that part of the Telegu country which lay above the ghats towards the latter part of the 3rd decade of the 15th century was an Oriya. Kapileswar is not mentioned by name but the statement in the **Musalman** history that the number of elephants possessed by this Oriya chief proves that he was not ordinary chief but the great **Gajapati** king himself. This statement proves that soon after his accession Kapilendra was in possession of the Telegu country not only the flat coast land between the foot of the Eastern Ghats and the Bay, but also the greater position of the edge of the Deccan plateau. This is regarded by late R.D. Bajerjee as just the beginning of Kapilendra's activities outside Orissa proper. Thus according to the Burhan-i-ma'a sir, Telingana was distinct from Kalinga. This is also corroborated by another work, 'Tarikhi Firishta'. According to the latter Humayun Shah Bahamaṇi desired to consolidate the conquest of Warangal or Ekasila-nagari by subduing the outlying districts. Khwaja-i-Jahan was sent with a large army to capture Devar-kenda. The Telegu chief appeared to Kapilendra for help who was the former's suzerain.

Kapilendra surprised the **Mussalman** army of Khwajah-i-jahan who was compelled to seek safety In flight. The Bahamanis never again attempted to conquer any part of Telingana during the lifetime of Kapilendra. Thus we see that Telingana was different from Kalinga in the time of Kapilendra, the Trikalingadhipati although it accepted his suzerainty. In assigning reason for the interference of Muhammed Shah Bahamani in the affairs of the Orissa empire after the death of Kapilendra (1470 A.D.) the Bushan-i-malasir again states in A.H. 875 (A.D. 1470) the queen mother Makhdumuh Jahan died and the Sultan Muhammad Shah Bahamani assumed the reins of Government. In the midst of these affairs a messenger arrived from Telingana and informed the Sultan that the Raja of Orissa, who was the principal Raja of Telingana was dead. This shows that though Telingana had come under the ruler of Orissa, yet it was not identical with Orissa or Kalinga.

From all that has been given above one can clearly see that the Kalingas were a distrinct people from the Telingas. The view that Telingana is the corrupted or modified form of Trikalinga is wrong.

# ଏକାବଳୀ

ଭାରତ ବର୍ଷୀୟ କବିମାନଙ୍କର ସମୟ ନିର୍ଣ୍ଣୟ କରିବା ନିମନ୍ତେ କୌଣସି ଐତିହାସିକ ପ୍ରମାଣ ମିଳୁନାହିଁ । କାରଣ ଭାରତବର୍ଷର ଲୋକମାନଙ୍କର ଚକ୍ଷୁରେ ଏହି ସଂସାର ଗୋଟିଏ ବନ୍ଧନର ସ୍ଥଳ ଏବଂ ମାୟାଦ୍ୱାରା ଜଡ଼ୀଭୂତ ଏହି ସଂସାରରୁ ମୁକ୍ତ ହୋଇ ସଦାନନ୍ଦମୟ ରୋଗଶୋକଜରାମରଣ- ବିବର୍ଜିତ ପୁଣ୍ୟମୟ ଧାମ ପ୍ରାପ୍ତହେବା ଉଦ୍ଦେଶ୍ୟରେ ସେମାନେ ସେମାନଙ୍କର ଜୀବନ ଯାତ୍ରା ନିର୍ବାହ କରୁଥିଲେ । ଐହିକ କାର୍ଯ୍ୟାବଳି ପ୍ରତି ବିଶେଷ କିଛି ଦୃଷ୍ଟି ରଖୁ ନ ଥିବା ହେତୁ ସେମାନେ ନିଜର ଇତିହାସ ଓ ଭବିଷ୍ୟତକୁ ରଖି ଯାଇନାହାନ୍ତି । କାଳିଦାସ ଓ ଭବଭୂତି ପ୍ରଭୃତିଙ୍କର ସମୟ ଏପର୍ଯ୍ୟନ୍ତ ନିଃସନ୍ଦେହ ଭାବରେ ସ୍ଥିର ହୋଇନାହିଁ । ଯେ କିଛି ସମୟ ନିର୍ଦ୍ଧାରିତ ହୋଇଅଛି, ତାହା କେବଳ ଆନୁମାନିକ । ଭାରତ ସାହିତ୍ୟାକାଶର ଉଜ୍ଜ୍ୱଳତମ ନକ୍ଷତ୍ର କେଉଁ ସମୟରେ ଆବିର୍ଭୂତ ହୋଇଥିଲେ, କେବେ ବା ତିରୋହିତ ହୋଇଥିଲେ, ଏହା ବର୍ତ୍ତମାନ କେହି କହି ପାରିବେନାହିଁ । ଜନ୍ମମୃତ୍ୟୁର ଦିନ ଜାଣିବା ତ ଦୂର କଥା; ସେ କେଉଁ ଶତାବ୍ଦୀର ଲୋକ, ଏହା ମଧ୍ୟ ଏପର୍ଯ୍ୟନ୍ତ ସ୍ଥିରୀକୃତ ହୋଇପାରିଲାନାହିଁ । କେତେକ ସୁବିଜ୍ଞ ଲୋକଙ୍କ ମତରେ କାଳିଦାସ ପଞ୍ଚଶତ ଖ୍ରୀଷ୍ଟାବ୍ଦର ଲୋକ । ଅନ୍ୟ କେତେକଙ୍କ ମତରେ ସେ ଷଷ୍ଠଶତ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଅପର କେତେକ ଆଧୁନିକ ତତ୍ତ୍ୱଜିଜ୍ଞାସୁ ପ୍ରଧାନ ପଣ୍ଡିତଙ୍କ ମତରେ ସେ ଖ୍ରୀଷ୍ଟପୂର୍ବ ଏକଶତ ଖ୍ରୀଷ୍ଟାବ୍ଦୀରେ ଭାରତର କାବ୍ୟ ନାଟକ କ୍ଷେତ୍ରକୁ ଅଳଙ୍କରଣ କରିଥିଲେ । କିଏ ବା ଏକାଦଶଶତ ଖ୍ରୀଷ୍ଟାବ୍ଦରେ, କିଏ ବା ଚତୁଃଶତ ଖ୍ରୀଷ୍ଟାବ୍ଦରେ ତାଙ୍କୁ ନେଇ ରଖୁଅଛନ୍ତି, ତାହାର ସୁମାରି ନାହିଁ ।

ବର୍ତ୍ତମାନ କେବଳ ତାମ୍ରଲିପି, ପ୍ରସ୍ତର ଖୋଦିତ ଅନୁଶାସନ ଓ ଆଭ୍ୟନ୍ତରିକ ପ୍ରମାଣାଦିକୁ ନେଇ ବାଟ ଚାଲିବୁଁ । ଏହି ପ୍ରମାଣାଦି ଆମ୍ଭମାନଙ୍କୁ କୌଣସି ଲୋକର ଜନ୍ମ ମୃତ୍ୟୁର ସାମ୍ବତ୍ସରିକ ବା ଦୈନିକ ସମୟ ନିର୍ଦ୍ଦେଶ କରାଇ ଦିଏନାହିଁ, କିନ୍ତୁ ସେ କେଉଁ ଶତାବ୍ଦୀର ଲୋକ ତାହା କହିଦେବାକୁ ସମର୍ଥ ହୋଇପାରେ । ମାନ୍ୟବର ବିଜ୍ଞ ସୁଲେଖକ ଶ୍ରୀଯୁକ୍ତ ବାବୁ ଚନ୍ଦ୍ରମୋହନ ମହାରଣାଙ୍କ "ସାହିତ୍ୟଦର୍ପଣକାର" ପ୍ରବନ୍ଧ ପାଠକରି ଆମ୍ଭେମାନେ ଆପଣାକୁ ଗୌରାବାନ୍ୱିତ ମନେ କରିଅଛୁଁ । ବିଶ୍ୱନାଥ କବିରାଜ ଜଣେ ଉତ୍କଳ ବ୍ରାହ୍ମଣ, ଏହା ବର୍ତ୍ତମାନ ସର୍ବ-ବିଜ୍ଞଜନ-ସମ୍ମତ । କୌଣସି ଲୋକ ଏଥିରେ ଦ୍ୱୈଧୀ ଭାବ ଦେଖାଇ ପାରିବେନାହିଁ । ଅନୈକ୍ୟ ଭାବ ଖଣ୍ଡନ କରିବାକୁ ଶତ ଶତ ଶାଣିତ ଖଡ୍ଗ

ରଖା ହୋଇଅଛି । ସେସବୁ ପ୍ରମାଣ ଦେବାର ବର୍ତ୍ତମାନ ସମୟ ନୁହେଁ । କାରଣ ବିଜ୍ଞ ଲେଖକ ମହାଶୟ ଅନେକ ପ୍ରମାଣ ପ୍ରଦାନ କରିଅଛନ୍ତି । **ସାହିତ୍ୟଦର୍ପଣର** କିଞ୍ଚିତ୍ ଗୁଣାଖ୍ୟାନ କରି ନିଜର ପନ୍ଥାକୁ ଧରିବି । J.R.Ballantyne ସାହେବ **ସାହିତ୍ୟଦର୍ପଣର** ବିଜ୍ଞାପନ(advertisement)ରେ **କାବ୍ୟପ୍ରକାଶ** ଓ **ସାହିତ୍ୟଦର୍ପଣ** ବିଷୟରେ କହିଅଛନ୍ତି "Both works are held high esteem, but that of Viswanath, the more recent and the more copious of the two- is generally admitted as the standard of taste among the learned Hindus". ଭାରତର ପ୍ରାୟ ସମସ୍ତ ସଂସ୍କୃତ ବିଦ୍ୟାଳୟରେ **ସାହିତ୍ୟଦର୍ପଣ** ପଢା ହୁଏ । ଆଧୁନିକ ଟୀକାକାରମାନେ **ସାହିତ୍ୟଦର୍ପଣରୁ** ବିଶେଷ ବୃତ୍ତି ଉଦ୍ଧାର କରନ୍ତି । ସୁଲେଖକ ମହୋଦୟ ଲେଖିଅଛନ୍ତି ଯେ, ବିଶ୍ୱନାଥ କବିରାଜ ଚତୁର୍ଦ୍ଦଶ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ପ୍ରତାପ ନରସିଂହଦେବଙ୍କର ସମସାମୟିକ ଥିଲେ । କାରଣ **ନରସିଂହବିଜୟନାଟକ** ପ୍ରତାପ ସିଂହଦେବଙ୍କ ଓ୍ୱରାଙ୍ଗଲ ଜୟ ପ୍ରତି ଲେଖା ହୋଇଅଛି । ବିଶ୍ୱନାଥ କବିରାଜଙ୍କର ବୃଦ୍ଧ ପ୍ରପିତାମହ ନାରାୟଣ ଦାସ ଲାଙ୍ଗୁଳାନରସିଂହଦେବଙ୍କ ସମୟର ଲୋକ ବୋଲି କହିଅଛନ୍ତି । ଏ ସମୟ ଯେ ନିଃସନ୍ଦେହ ଭାବରେ ନିର୍ଦ୍ଧାରିତ ହେଲା, ଏହା ପାଠକମାନେ ମନେ କରିବେନାହିଁ । ଠିକ୍ ସମୟ ଲେଖିବା ସହଜ ବ୍ୟାପାର ନୁହେଁ । ଆମ୍ଭେମାନେ ଠିକ୍ ସମୟ ନିର୍ଦ୍ଧାରଣ କରିପାରିବାନାହିଁ ବୋଲି ଯେ ଏ ପ୍ରକାର କାର୍ଯ୍ୟରୁ ବିରତ ହେବା, ଏହା ମୋ କ୍ଷୁଦ୍ର ବୁଦ୍ଧିରେ ଯୁକ୍ତିସଙ୍ଗତ ନୁହେଁ । ଆମ୍ଭେମାନେ ସତ୍ୟର ଯେତେଦୂର ସମୀପବର୍ତ୍ତୀ ହେବା, ତେତେଦୂର ଆମ୍ଭମାନଙ୍କ ମନରୁ ସନ୍ଦେହକାଳିମା ବିଦୂରିତ ହେବ ଏବଂ ହୃଦୟ ଶାନ୍ତିରସରେ ପ୍ଳାବିତ ହେବ ।

ବିଶ୍ୱନାଥ କବିରାଜ ଉତ୍କଳର ଏକମାତ୍ର ପ୍ରଧାନ ଅଳଂକାର ଶାସ୍ତ୍ର ଲେଖକ ନୁହନ୍ତି; ଏକାବଳୀର ରଚୟିତା ମଧ୍ୟ ଜଣେ ପ୍ରଧାନ ଆଳଙ୍କାରିକ ଏବଂ ଉତ୍କଳମାତାର ଜଣେ ଅତୀବ ପ୍ରିୟତମ ପୁତ୍ର । ଏହି ଏକାବଳୀକାର ଜଣେ ଅସାମାନ୍ୟ ପଣ୍ଡିତ ଥିଲେ ଏବଂ ଅନେକ ଶାସ୍ତ୍ରରେ ତାଙ୍କର ପ୍ରାବିଣ୍ୟ ଥିବାର ପ୍ରମାଣ ମିଳୁଅଛି । ଏକାବଳୀରେ ଯେ ସମସ୍ତ ଶ୍ଳୋକ ଉଦାହରଣ-ରୂପରେ-ବ୍ୟବହୃତ ହୋଇଅଛି, ତାହା କେବଳ ନରସିଂହଦେବଙ୍କର ଯଶୋଗାନ କରୁଅଛି । ତାଙ୍କର ଉଦାହରଣମାନ ଅନ୍ୟାନ୍ୟ ଆଳଂକାରିକଙ୍କ ଉଦାହରଣ ପରି ଭିନ୍ନଭିନ୍ନ ପୁସ୍ତକମାନଙ୍କରୁ ଉଦ୍ଧୃତ ହୋଇନାହିଁ; କିନ୍ତୁ ଯେ ଲକ୍ଷଣରେ ଯେ କବିତା ଆବଶ୍ୟକ, ସେ ସେହିପରି କବିତା ସ୍ୱୀୟ ଅଗାଧ ପାଣ୍ଡିତ୍ୟ ବଳରେ ନରସିଂହଦେବଙ୍କୁ ଲକ୍ଷ୍ୟକରି ଲେଖିଅଛନ୍ତି । ଏ କି ସାମାନ୍ୟ ଶକ୍ତି! ଏ ଶକ୍ତି ସାଧାରଣ ପଣ୍ଡିତଙ୍କଠାରେ ଦେଖା ହୁଏନାହିଁ । ସାହିତ୍ୟ ଲେଖକଙ୍କ ମଧ୍ୟରେ ଅଳଂକାରଶାସ୍ତ୍ରକାର ଖୁବ୍ କମ୍ ଦେଖାହୁଅନ୍ତି । ଆଳଂକାରିକମାନେ ମଧ୍ୟ ନାଟକାଦି ଲେଖିପାରନ୍ତି; କିନ୍ତୁ ସେ ନାଟକାଦିରେ ଅଳଂକାର ଶାସ୍ତ୍ରର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ସନ୍ନିବିଷ୍ଟ ହୋଇପାରେନାହିଁ । ଏହି ଅଭାବ ଦୂରୀକରଣ କରିବା ମାନସରେ ଏକାବଳୀର ପ୍ରାଚୀନ ଆଳଙ୍କାରିକ ପନ୍ଥା ନ ଧରି ସ୍ୱୀୟ କବିତାରେ ପୁସ୍ତକ ପୂର୍ଣ୍ଣ କରିଅଛନ୍ତି । ଏହି ଏକାବଳୀର

ଟୀକାକାର ଆମ୍ଭମାନଙ୍କର ସେହି ପୂର୍ବପରିଚିତ ମଲ୍ଲିନାଥ; ଯେଉଁ ମଲ୍ଲିନାଥ **ରଘୁବଂଶ**, **କୁମାରସମ୍ଭବ**, **ମେଘଦୂତ**, **କିରାତ**, **ଶିଶୁପାଳବଧ** ପ୍ରଭୃତି ପ୍ରଧାନ କାବ୍ୟମାନଙ୍କର ଟୀକାକାର, ସେହି ମଲ୍ଲିନାଥ ଏହି **ଏକାବଳୀ**ର ମଧ ଟୀକାକାର । **ଏକାବଳୀ** ମଙ୍ଗଳାଚରଣରେ ଯେ ଶ୍ଳୋକମାନ ଅଛି, ତାହାର ଶେଷ ଦୁଇଶ୍ଳୋକ ପାଠକଲେ ଟୀକାକାରମାନଙ୍କର ପରିଚୟ ମିଳିବ ।

ମଲ୍ଲିନାଥ କବିଃ ସୋଽୟମେକାବଲ୍ୟାମଳଂକୃତୌ
ଟୀକାରଦ୍ଧଂ ନିବଧ୍ନାତିଂ ତରଳଂ ନାମ ନାମତଃ ।
ଏକାବଳୀ ଗୁଣବତୀୟମଳଂକ୍ରିୟାପି
ଯଦୈଶସାଦଜନି କୋଷଗୃହେଷୁ ଗୁପ୍ତା
କଣ୍ଠେଷୁ ତାଦ୍ୟ ହୃଦୟେଷୁ ଚ ଧାର୍ଯ୍ୟାତାଂ ବୈ ।

ଏ ପ୍ରତି ମଧ ଲୋକଙ୍କର କୌଣସି କାରଣବଶତଃ ସନ୍ଦେହ ଜନ୍ମିପାରେ ଏବଂ କହିପାରନ୍ତି ଯେ, ସେ ମଲ୍ଲିନାଥ ଏ ଏକାବଳୀର ଟୀକାକାର ନୁହନ୍ତି । କିନ୍ତୁ ଏ ଭ୍ରମ ଖଣ୍ଡନ କରିବାକୁ ମଧ ନଜିରମାନ ଥୁଆ ହୋଇଅଛି । ମଲ୍ଲିନାଥେ ତାଙ୍କର **ମେଘଦୂତ**, **ଶିଶୁପାଳବଧ**, **କୁମାରସମ୍ଭବ**ବାଦିର ଟୀକାମାନଙ୍କରେ ଏକାବଳୀର ସାହାଯ୍ୟ ଗ୍ରହଣ କରିଅଛନ୍ତି । ମେଘଦୂତ ଶ୍ଳୋ।୪୩ କ- "ତ୍ୱନ୍ନିଷ୍ୟନ୍ଦୋଚ୍ଛ୍ୱସିତ............ କାନନୋଦୁମ୍ବରାଣାଂ" ଟୀକାରେ ତଦୁକ୍ତମେକାବଲ୍ୟାମ୍, "ଯଦି ବାଚ୍ୟସ୍ୟ ବଚନଂ ସ୍ୟାଦବାଚ୍ୟ ବଚନଂ ହି ତତ୍" ଇତି, ଶିଶୁପାଳବଧର ଦ୍ୱିତୀୟ ସର୍ଗ, ଶ୍ଳୋ ୭୭କର ଟୀକାରେ **ପରିଣାମାଳଙ୍କାର** ନିର୍ଦ୍ଦେଶ କରି "ଆରୋପ୍ୟମାଣସ୍ୟ ପ୍ରକୃତୋପ ଯୋଗିତ୍ୱେ ପରିଣାମ" ଇତି ଲକ୍ଷଣାତ୍, **ଶିଶୁପାଳବଧ**, ଚତୁର୍ଥ ସର୍ଗ, ୫୪ ଶ୍ଳୋକର ଟୀକାରେ ମଧ ଏହି ଉକ୍ତି ଅଛି । ଏକାବଳୀର ଅଷ୍ଟମ ଉନ୍ମେଷରେ ପରିଣାମଳଙ୍କାର ପ୍ରତି ଯେ ବୃତ୍ତି ଏବଂ ବୃତ୍ତିର ଯେ କାରିକା ଅଛି, ତାହା ପାଠକଲେ ପ୍ରକୃତ କଥା ଜଣା ପଡ଼ିବ ।

ବୃତ୍ତିଂ- ତଂ ପରିଣାମଂ ଦ୍ୱିବିଧଂ କଥୟନ୍ତ୍ୟାରୋପ୍ୟଣମ୍ୟା
ପରିଣମତି ଯତ୍ର ବିଷୟଃ ପ୍ରସ୍ତୁତ କାର୍ଯ୍ୟୋପଯୋଗାୟ ।

କାରିକା- "ଏଷ ନ ରୂପକଂ । ଆରୋପ୍ୟମାଣସ୍ୟ ପ୍ରକୃତୋପଭଙ୍ଗକତ୍ୱେନ" । ବିଶ୍ୱନାଥ କବିରାଜ ତାଙ୍କର **ସାହିତ୍ୟଦର୍ପଣ**ରେ ଏହି ସ୍ଥଳରେ ଏକାବଳୀର ସାହାଯ୍ୟ ଗ୍ରହଣ କରିଅଛନ୍ତି ବୋଲି ଅନୁମିତ ହେଉଅଛି । ଏହି ଏକାବଳୀକାରଙ୍କର ନାମ ବିଦ୍ୟାଧର- ଇତି ଶ୍ରୀମତୋ ମହାମହେଶ୍ୱରାସ୍ୟ କବେ ବିଦ୍ୟାଧରସ୍ୟ କୃତାବେକାବଳୀ ନାମ୍ନ୍ୟଳଙ୍କାର ଶାସ୍ତ୍ରେ ଇତ୍ୟାଦି- ବିଦ୍ୟାଧର ନରସିଂହ-ଦେବଙ୍କର ରାଜସଭାରେ ପ୍ରଧାନ ପଣ୍ଡିତ ଥିଲେ ବୋଲି ତାଙ୍କ ଲେଖାରୁ ଜଣା ପଡୁଅଛି ।

ଏଷଃ ବିଦ୍ୟାଧରେସ୍ତୱଷୁ କାନ୍ତାସମ୍ମିତଲକ୍ଷଣଂ
କରୋମି ନରସିଂହସ୍ୟ ଚାଟୁଶ୍ଳୋକାନୁଦାହାରନ୍ ।୧ ।
ଅନ୍ତରେଣ ନରସିଂହ ଭୂପତିଂ ମମ ବାଙ୍ମୟୋଚିତଃ
ଚନ୍ଦ୍ରଚୂଡ଼ମପହାୟ ଜାହ୍ନବୀ ବାରି ବୋଢୁମପରଃ କ ଈଶ୍ୱରଃ ।୨ ।

ଦଦ୍‌ମାତାଙ୍ଗା କନକଶିଖରୀ ସପ୍ତୟଃ ସପ୍ତସପ୍ତେଃ
ଚିନ୍ତାରତ୍ନେଃ ଦିବିଚରତରୁଃ ଶ୍ରୀନୃସିଂହ କ୍ଷିତୀନ୍ଦ୍ରଃ
ଅଦ୍ୟାପେ ତତ୍ ସକଳମକୁଥା ନାର୍ଥି ସାଦିତ୍ୟପାର୍ଥଂ
ସ୍ତେନାୟଂ ତେ ବିଚରଣକଳା କୌଶଳେନାବଲେପଃ ।୩ ।
ବାରଶ୍ରୀସୁରସାଭିସାରରଚନୀନିର୍ମାଣକର୍ମାନ୍ତକ-
ଛାୟାକନ୍ଦଳିତ ଧ୍ୱକାରକଳିକାତାପିଚ୍ଛତାଶାଞ୍ଚକଃ
ଛୀୟାଦୁକୁଳଭୂମିପାଳ ଭବତଃ ଖଡ୍ଗୋ ରଣପ୍ରାଙ୍ଗଣେ
ଶତ୍ରୁକ୍ଷୌଣୀଭୃତାମମର୍ତ୍ତ୍ୟନଗରୀ ଯାତ୍ରାସୁ କାର୍ତ୍ତାନ୍ତିକ ।
ମଦକ୍ଷୀବ କ୍ଷୌଣୀପତି ପରିଷଦା ଯୋଧନ-ମହୀ
ଜୟାଙ୍କ ଶ୍ରୀଶଙ୍କାବହଗୁଣ କିଣଶ୍ରେଣି-ଲଳିତଃ ।
ଭୁବୋ ଭାରଂ ବୋଢୁଂ ଭୁଜଗପତିଭୋଗପ୍ରତିଭଟୟ
ସ୍ତ୍ରିଲୋକାକଲ୍ୟାଣଂ ଜୟତି ତବ ଦୋରୁତ୍କଳପତେ ।

ଏହିପରି ଶ୍ଳୋକମାନଙ୍କଦ୍ୱାରା ପୁସ୍ତକଟି ପୂର୍ଣ୍ଣ ହୋଇଅଛି । ଏହି କେତେଗୁଡ଼ିଏ କେବଳ ପରିଚୟାର୍ଥେ ପ୍ରଦତ୍ତ ହେଲା । ଏହି ଶ୍ଳୋକମାନଙ୍କର ପାଠରୁ ଜଣା ହେଉଅଛି ଯେ, ବିଦ୍ୟାଧର କୌଣସି ନା କୌଣସି ନରସିଂହଦେବଙ୍କର ସାମସମୟିକ ଥିଲେ । ଏ ଯଶୋଗାନ ପ୍ରତ୍ୟକ୍ଷ, ପରୋକ୍ଷ ନୁହେଁ । ପରୋକ୍ଷରେ ଏପରି ଉକ୍ତି ହୋଇ ନ ଥାଆନ୍ତି । ବର୍ତ୍ତମାନ ଜିଜ୍ଞାସ୍ୟ, ଏ ନରସିଂହଦେବ କିଏ? ବିଦ୍ୟାଧର କେଉଁ ନରସିଂହଦେବଙ୍କର ଯଶୋଗାନ କରିଅଛନ୍ତି? ନରସିଂହ ନାମଧାରୀ ଜଣେ ରାଜା ଉତ୍କଳ ରାଜସିଂହାସନର ଶ୍ରୀବୃଦ୍ଧି କରିଥିବା ବିଷୟ Robert Sewell(ରବର୍ଟ ସିବେଲ) ସାହେବ ଲେଖିଅଛନ୍ତି ।

| | |
|---|---|
| ନରସିଂହଦେବ | ଖ୍ରୀଷ୍ଟପୂର୍ବ ୪୨୧-୩୦୬ |
| ନରସଂହଦେବ କେଶରୀ | ଖ୍ରୀଷ୍ଟାବ୍ଦ ୧୦୧୩-୧୦୨୪ |
| ଲାଙ୍ଗୁଳା ନରସିଂହ | ଖ୍ରୀଷ୍ଟାବ୍ଦ ୧୨୩୭-୧୨୨୮ |
| କେଶରୀ ନରସିଂହ | ଖ୍ରୀଷ୍ଟାବ୍ଦ ୧୨୮୨-୧୩୦୭ |
| ପ୍ରତାପ ନରସିଂହ | ଖ୍ରୀଷ୍ଟାବ୍ଦ ୧୩୦୭-୧୩୨୭ |
| କପିଳ ନରସିଂହ | ଖ୍ରୀଷ୍ଟାବ୍ଦ ୧୩୨୯-୧୩୩୮ |
| ନରସିଂହ ଜେନା | ଖ୍ରୀଷ୍ଟାବ୍ଦ ୧୫୪୯-୧୫୫୫ |
| ନରସିଂହଦେବ | ଖ୍ରୀଷ୍ଟାବ୍ଦ ୧୬୨୮-୧୬୫୫ |

ବର୍ତ୍ତମାନ ଆମ୍ଭମାନଙ୍କର ଦେଖିବା ଉଚିତ୍, ବିଦ୍ୟାଧର କେଉଁ ଶତାବ୍ଦୀର ଲୋକ । ଏହା ପ୍ରଥମେ ଠିକ୍ ନ ହେଲେ ଆମ୍ଭେମାନେ କୌଣସି ସିଦ୍ଧାନ୍ତରେ ଉପସ୍ଥିତ ହୋଇ ପାରିବୁନାହିଁ । ଆଭ୍ୟନ୍ତରିକ ବା ପୁସ୍ତକଗତ ପ୍ରମାଣ ଆଶ୍ରୟ ବ୍ୟତୀତ ଆଉ ଅନ୍ୟ କୌଣସି ଉପାୟ ନାହିଁ । ବିଦ୍ୟାଧର କବି ତାଙ୍କର ଏକାବଳୀର ପ୍ରାରମ୍ଭରେ ଲେଖିଅଛନ୍ତି, "ଶ୍ରୀହର୍ଷ ଶ୍ରିୟମଭୂତାଂ ହରିହରୌ ଲେଭେଽର୍ଜୁନକ୍ଷ୍ମାଭୁଜଃ" । ଅର୍ଜୁନ ମାଳବରାଜ ଅଟନ୍ତି, ୧୨୭୨ ବିକ୍ରମାବ୍ଦ ୧୨୧୭ ଚିତ୍ରମାବ୍ଦରେ ସେ ରାଜା ଥିଲେ ବୋଲି ଆଧୁନିକ

ବିଜ୍ଞପଣ୍ଡିତମାନେ ସ୍ଥିର କରିଅଛନ୍ତି ୧୨୭୨ ଖ୍ରୀଷ୍ଟାବ୍ଦ ସଙ୍ଗେ ସମାନ ଅଟେ । ଅର୍ଜୁନ ଏବଂ ହରିହର ତ୍ରୟୋଦଶ ଲୋକ ଥିବାର ପ୍ରମାଣ ମିଳିଲା । ଶ୍ରୀହର୍ଷଃ ଏକାଦଶ ଶତାବ୍ଦୀର କବି ବୋଲି ସ୍ଥିରୀକୃତ ହୋଇଅଛି । ମମ୍ମଟ ଏକାଦଶ ଶତ ଖ୍ରୀଷ୍ଟାବ୍ଦର ଚରମ ଭାଗରେ ବା ଦ୍ୱାଦଶ ଶତ ଖ୍ରୀଷ୍ଟାବ୍ଦ ପ୍ରଥମ ଭାଗରେ କାବ୍ୟପ୍ରକାଶ ଲେଖିଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ, ବିଦ୍ୟାଧର ପ୍ରଥମ ଦୁଇ ନରସିଂହଙ୍କ ସମୟରେ ଜନ୍ମଗ୍ରହଣ କରି ନ ଥିଲେ । ଅବଶିଷ୍ଟ ଛଅଜଣ ରାଜା ୪୦୦ ବର୍ଷ ମଧ୍ୟରେ ରାଜତ୍ୱ କରିଥିଲେ, ଅତଏବ କେଉଁ ଶତାବ୍ଦୀରେ ଆମ୍ଭମାନଙ୍କର ବିଦ୍ୟାଧର ଏକାବଳୀ ଲେଖିଥିଲେ ? ସିଂହଭୂପାଳ ତାଙ୍କ ରସାର୍ଣ୍ଣବସୁଧାକରରେ ଏକାବଳୀର ନାମ ଉଲ୍ଲେଖ କରିଅଛନ୍ତି । ସିଂହଭୂପାଳ ଚତୁର୍ଦ୍ଦଶ ଶତାବ୍ଦୀର ଲୋକ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଏକାବଳୀର ଟୀକାକାର ମଲ୍ଲିନାଥ ଚତୁର୍ଦ୍ଦଶ ଶତ ଖ୍ରୀଷ୍ଟାବ୍ଦରେ ଶେଷପାଦର ଲୋକ, ଏହା ଆଧୁନିକ ପଣ୍ଡିତମାନେ ନିର୍ଦ୍ଧାରଣ କରିଅଛନ୍ତି । ବର୍ତ୍ତମାନ ଉତ୍ତମରୂପରେ ଜଣାପଡ଼ିଲା ଯେ, ବିଦ୍ୟାଧର ତ୍ରୟୋଦଶ ଶତ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ଓ ଚତୁର୍ଦ୍ଦଶ ଶତ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ଉତ୍କଳର ପ୍ରତାପାନ୍ୱିତ ରାଜା ନରସିଂହଦେବଙ୍କର ପଣ୍ଡିତ ସଭାର ଶ୍ରୀବର୍ଦ୍ଧନ କରିଥିଲେ । ହଣ୍ଟର ଓ ସିବେଲ୍ ସାହେବଙ୍କ ମତରେ ୧୨୮୨ ଠାରୁ ୧୩୦୭ ବା ୧୩୦୯ ପର୍ଯ୍ୟନ୍ତ କେଶରୀ ନରସିଂହ ଏବଂ ୧୩୦୭ ବା ୧୩୦୯ ଠାରୁ ୧୩୨୭ ପର୍ଯ୍ୟନ୍ତ ପ୍ରତାପ ନରସିଂହ ଉତ୍କଳର ରାଜାଥିଲେ । ପ୍ରତାପ ନରସିଂହ ଆଲ୍ଲାଉଦ୍ଦିନ ବାଦ୍‌ଶାହାଙ୍କ ସେନାପତି କାଫୁରଙ୍କ ସହଚର୍ଯ୍ୟରେ ଉରାଙ୍ଗୁଲ ରାଜ୍ୟ ଜୟ କରିଥିବା ପ୍ୟାରୀମୋହନ ବାବୁ ତାଙ୍କ ଉତ୍କଳ ଇତିହାସରେ ଲେଖିଅଛନ୍ତି । ଦକ୍ଷିଣସ୍ଥ ଉରାଙ୍ଗୁଳ ରାଜ୍ୟର ରାଜାମାନଙ୍କ ଉପାଧି ହମ୍ମୀର । ନରସିଂହଦେବ ହମ୍ମୀରଙ୍କର ଦର୍ପଦଳନ କରିଥିବା କଥା ଏକାବଳୀରେ ଲିଖିତ ଅଛି ।

(୧) ହମ୍ମୀର ମାନମର୍ଦ୍ଦନ ଖେଳତି ଖଉସ୍ତବାରି ନାରୀଷୁ

(୨) ହମ୍ମୀର ମାନମର୍ଦ୍ଦନ ଭବତସ୍ତେଜୋ ବିଭାବସୁଂ ଜୟତି

(୩) ହଦ୍ ସେନା ବିଜୟୋତ୍ସବ ବ୍ୟତିରେକ ବ୍ୟାପ୍ତଂ ବିୟନ୍ମଣ୍ଡଳଂ

ହମ୍ମୀର କ୍ଷିତିପାଳ ଚେତସି ପରଂ ନୀଳିନ୍ୟମୁନ୍ମୀଳିତଂ

ନ୍ୟାୟଚନ୍ଦ୍ର ସୁରି ନାମରେ ଜଣେ ଦାକ୍ଷିଣାତ୍ୟ ପଣ୍ଡିତ ହମ୍ମୀର ମହାକାବ୍ୟ ଲେଖି ଏହି ହମ୍ମୀରଙ୍କର ଗୁଣ କୀର୍ତ୍ତନ କରିଅଛନ୍ତି । ୧୨୮୩ ଖ୍ରୀଷ୍ଟାବ୍ଦରେ ଏହି ହମ୍ମୀର ରତ୍ନ-ସମ୍ଭକୁର ଦୁର୍ଗରେ ରହି ଆଲ୍ଲାଉଦ୍ଦିନଙ୍କ ଆକ୍ରମଣକୁ ବ୍ୟର୍ଥ କରି ଦେଇଥିଲେ । କିନ୍ତୁ ୧୩୧୦ ସାଲରେ ହମ୍ମୀର ଆଲ୍ଲାଉଦ୍ଦିନଙ୍କ ସେନାପତି କାଫୁର ଏବଂ ନରସିଂହଙ୍କଦ୍ୱାରା ପରାସ୍ତ ହେଲେ ଏବଂ ରତ୍ନସ୍ତମ୍ଭର ଦୁର୍ଗ ସେମାନଙ୍କର ହସ୍ତଗତ ହେଲା । (ଫେରସ୍ତା ତାଙ୍କ ଇତିହାସରେ ଲେଖିଛନ୍ତି ଯେ ଓଡ଼ିଶା ରାଜାଙ୍କ କ୍ଷମତା ଦାକ୍ଷିଣାତ୍ୟରେ କୃଷ୍ଣା ପର୍ଯ୍ୟନ୍ତ ପ୍ରକାଶ ପାଉଥିଲା, ଓଡ଼ିଷ୍ୟା ରାଜାଙ୍କ ଅଧୀନରେ ଦାକ୍ଷିଣାତ୍ୟରେ ଅନେକ କରଦ ରାଜ୍ୟ ଅଟେ; ଏହି ରାଜାଙ୍କୁ ସେ ଓଡ଼ିଆ ବୋଲି କହି ଅଛନ୍ତି; ଏହି ସୁରଙ୍କର ପୂର୍ବପୁରୁଷ

ଆୟମାନଙ୍କର ଏକାବଳୀର ହମ୍ମୀର । (Sterling's Orissa P.77 ) ତାହା ହେଲେ ବିଦ୍ୟାଧର ପ୍ରତାପ ନରସିଂହଙ୍କର ସାମସମୟିକ ଥିଲେ ।

ବଙ୍ଗର ଅସିଆଟିକ୍ ସୋସାଇଟି(The Asiatic Society of Bengal)ଙ୍କ ଦ୍ୱାରା ମୁଦ୍ରିତ ୧୮୯ ସାଲ ଓ ୧୮୯୬ ସାଲର ପତ୍ରିକାରେ ଦ୍ୱିତୀୟ ନରସିଂହଦେବ ଏବଂ ଚତୁର୍ଥ ନରସିଂହଦେବ (କେବଳ ଗଙ୍ଗାବଂଶୀୟ)ଙ୍କର ତାମ୍ରଲିପିର ଲିଖିତ ବିଷୟ ଛପା ହୋଇଅଛି । ଏହାଦ୍ୱାରା ଆମ୍ଭେମାନେ ଉତ୍କଳ ରାଜାମାନଙ୍କ ରାଜତ୍ୱକାଳ ସମ୍ବନ୍ଧରେ ନୂତନ ସମ୍ବାଦ ପ୍ରାପ୍ତ ହେଉଅଛୁଁ । ଚତୁର୍ଥ ନରସିଂହଙ୍କ ତାମ୍ରଲିପିରେ ୧୩୧୬ ଶକାବ୍ଦ ଶୁକ୍ଳଚୈତ୍ର ତ୍ରୟୋଦଶୀ ତିଥି ଲେଖାଅଛି; ଏହା ଇଂରାଜି ନଭେମ୍ବର ତା ୨୩ ତାରିଖ ୧୩୯୫ ସାଲ ସଙ୍ଗେ ସମାନ ଅଟେ । ଦ୍ୱିତୀୟ ନରସିଂହଦେବଙ୍କ ତାମ୍ରଲିପିରେ "ଅସ୍ତି ସପ୍ତ ଦଶୋତ୍ତର ଦ୍ୱାଦଶ ଶତ ଶକବତ୍ସରେ ଚତୁର୍ଦ୍ଦଶ ଭୁବନାଧିପତ୍ୟାଦି ବିଭୂଦାବଳୀ ବିରାଜମାନଃ ଶ୍ରୀ ବୀର ନରସିଂହଦେବ ମହୀପତିଃ ସ୍ୱରାଜ୍ୟସ୍ୟୈକତ୍ରିଂଶତ୍ୟଙ୍କେର-ଲିଖ୍ୟମାନେ ସିଂହ ଶୁକ୍ଳ ଷଷ୍ଠ୍ୟାଂ ସୋମବାରେ" ଏହା ଇଂରାଜି ଅଗଷ୍ଟ ତା ୬ ରିଖ ୧୨୯୬ ମସିହା- ଏହାଙ୍କର ବ୧୭ର୍ଷ ରାଜତ୍ୱ ସମୟରେ ଏ ତାମ୍ରଲିପି ଲେଖା ହୋଇଅଛି, ତାହାହେଲେ ଦ୍ୱିତୀୟ ନରସିଂହଦେବ ୧୨୮୦ ସାଲରେ ରାଜସିଂହାସନ ଆରୋହଣ କରିଥିଲେ । ତାମ୍ରଲିପିମାନଙ୍କରୁ ମିଳିଥିବା ରାଜାମାନଙ୍କର ରାଜତ୍ୱ ସମୟ ନିମ୍ନରେ ଦିଆଗଲା:

ଚୋଡ଼ଗଙ୍ଗଦେବ ବ୨୦ର୍ଷ, କୋମାର୍ଣ୍ଣ ବ୧୦ର୍ଷ, ରାଘବ ବ୧୦ର୍ଷ, ଦ୍ୱିତୀୟ ରାଜରାଜ ବ୧୭ର୍ଷ, ଦ୍ୱିତୀୟ ଅନଙ୍ଗଭୀମଦେବ ବ୩୪ର୍ଷ, ପ୍ରଥମ ନରସିଂହଦେବ ବ୩୩ର୍ଷ, ପ୍ରଥମ ଭାନୁଦେବ ବ୧୮ର୍ଷ, ଦ୍ୱିତୀୟ ନରସିଂହଦେବ ବ୩୪ର୍ଷ, ଦ୍ୱିତୀୟ ଭାନୁଦେବ ବ୨୪ର୍ଷ, ତୃତୀୟ ଭାନୁଦେବ ବ୨୬ର୍ଷ; ଚତୁର୍ଥ ନରସିଂହଦେବ ୧୩୯୭; ଦ୍ୱିତୀୟ ନରସିଂହଦେବଙ୍କର ରାଜତ୍ୱ ପ୍ରାରମ୍ଭ ୧୨୮୦ ସାଲରେ । ଏହିଠାରୁ ହିସାବ କରିନେଲେ ଆମ୍ଭେମାନେ ଏହି ତଳଲିଖିତ ସମୟର ବିବରଣ ପ୍ରାପ୍ତ ହେଉଅଛୁଁ; ପ୍ରଥମ ନରସଂହଦେବ ୧୨୨୯-୧୨୬୨, ଦ୍ୱିତୀୟ ନରସିଂହ ୧୨୮୦-୧୩୨୪; ତୃତୀୟ ନରସିଂହ ୧୩୩୮-୧୩୬୨; ଚତୁର୍ଥ ନରସିଂହ ୧୩୮୮-୧୩୯୭- ଏହି ହିସାବ ଧରି ବାଟ ଚାଲିଲେ ଆମ୍ଭେମାନେ ବିଦ୍ୟାଧରଙ୍କୁ କେଶରୀ ନରସିଂହଙ୍କର ସାମସମୟିକ ବୋଲି କହିବୁଁ । କାରଣ ବିଦ୍ୟାଧର ତ୍ରୟୋଦଶ ଶତାବ୍ଦୀର ଶେଷପାଦର ଓ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମପାଦର ଲୋକ ବୋଲି ପୂର୍ବେ ନିର୍ଦ୍ଦିଷ୍ଟ ହୋଇଅଛି- ତେବେ ବିଶ୍ୱନାଥ କବିରାଜ କେଉଁ ସମୟର ଲୋକ ? ବିଦ୍ୟାଧର ଓ ବିଶ୍ୱନାଥ କି ଏକ ସମୟର ଲୋକ । ଏକ ସମୟର ଲୋକ ଉଭୟେ ହୋଇପାରନ୍ତି ନାହିଁ; କାରଣ ମଲ୍ଲିନାଥ ତାଙ୍କ ଟୀକାମାନଙ୍କରେ ବିଶ୍ୱନାଥ କବିରାଜଙ୍କର ସାହିତ୍ୟଦର୍ପଣରୁ କୌଣସି ବୃତ୍ତି ବା କାରିକା, କୌଣସି ସ୍ଥଳରେ ଉଦ୍ଧାର କରିନାହାନ୍ତି ଏବଂ ମଲ୍ଲିନାଥ ତାଙ୍କର ଏକାବଳୀର ଟୀକାରେ ସାହିତ୍ୟଦର୍ପଣକାରଙ୍କର ନାମ ଉଲ୍ଲେଖ କରିଥିବାର ଦେଖା ହେଉନାହିଁ । ଯେ ଅଳଂକାରଶାସ୍ତ୍ର ଆଜି ଭାରତର ଚତୁର୍ଦ୍ଦିଗରେ ପାଠ୍ୟପୁସ୍ତକ, ଏବଂ ଯେଉଁ ଅଳଂକାର

ପୁସ୍ତକ ପାଠ ନ କଲେ ସଂସ୍କୃତ କାବ୍ୟଶିକ୍ଷା ସାଙ୍ଗ ହେଉନାହିଁ ଏବଂ ଯେ ପୁସ୍ତକ ଗୁଣରେ ଏକାବଳୀଠାରୁ ମଧ୍ୟ ଅଧିକ, ଏପରି ଉତ୍କୃଷ୍ଟ ଅଳଂକାରଶାସ୍ତ୍ରକୁ ମଲ୍ଲିନାଥ କି ନିମନ୍ତେ ଉପେକ୍ଷା କଲେ; ଏଥିରୁ ଅନୁମିତ ହେଉଅଛି ଯେ ବିଶ୍ୱନାଥ କବିରାଜ ଚତୁର୍ଦ୍ଦଶ ଶତ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦର ଲୋକ ନୁହନ୍ତି । ତାଙ୍କ ବୃଦ୍ଧ ପ୍ରପିତାମହ ନାରାୟଣ ଦାସ ଓ ତାଙ୍କର ବ୍ୟବଧାନ ବ୧୦ର୍ଷ ମଧ୍ୟରେ, ଏହି ଅନୁସାରେ ଦେଖିଲେ ନାରାୟଣ ଦାସ ଲାଙ୍ଗୁଳା ନରସିଂହଙ୍କର ସାମସମୟିକ ଏବଂ ବିଶ୍ୱନାଥ କବିରାଜ ପ୍ରତାପନରସିଂହଙ୍କର ସାମସମୟିକ ହୋଇପାରନ୍ତି । ବିଶ୍ୱନାଥ କବିରାଜ ଚତୁର୍ଦ୍ଦଶ ଶତାବ୍ଦୀର ଶେଷପାଦର ଲୋକ । ନରସିଂହବିଜୟ ନାଟକ ନୂତନ ହିସାବାନୁସାରେ ପ୍ରତାପକେଶରୀଙ୍କ ସମୟରେ ଲେଖା ହୋଇଅଛି । କିନ୍ତୁ ଦାକ୍ଷିଣାତ୍ୟ ଜୟ ପ୍ରତାପନରସିଂହ ସମୟରେ ହୋଇନାହିଁ; ତାଙ୍କର ପିତାମହ କେଶରୀ ନରସିଂହଙ୍କ ସମୟରେ ହୋଇଅଛି । ତେବେ ନରସିଂହବିଜୟ ନାଟକ ଉରଗୁଳ ଜୟ ସମୟରେ ବା ଦୁଇ ଚାରି ବର୍ଷ ପରେ ଲେଖା ହୋଇନାହିଁ । ଏଥିରୁ ବୁଝା ହେଉଅଛି ଯେ ଯେଉଁ ନରସିଂହବିଜୟ ନାଟକ ତାଙ୍କ ରାଜତ୍ୱ କାଳରେ ଲେଖା ହୋଇନାହିଁ ବା ବିଶ୍ୱନାଥ କବିରାଜ ସେ ସମୟର ମଧ୍ୟ ଲୋକ ନୁହନ୍ତି ।

Asiatic Society ଯେ ନୂତନ ସମ୍ବାଦ ଆମ୍ଭମାନଙ୍କୁ ପ୍ରଦାନ କରି ଅଛନ୍ତି ତାହା Hunter ସାହେବ, Sewell ସାହେବ ଏବଂ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ମତ ସଙ୍ଗରେ ଐକ୍ୟ ହେଉନାହିଁ । ପୁରାତନ ମତାନୁସାରେ ଆମ୍ଭେମାନେ ବିଶ୍ୱନାଥ କବିରାଜଙ୍କର ବୃଦ୍ଧ ପ୍ରପିତାମହଙ୍କୁ ନରସିଂହଦେବକେଶରୀଙ୍କର ସାମସମୟିକ(୧୨୮୨-୧୩୦୭) ଏବଂ ବିଶ୍ୱନାଥ କବିରାଜଙ୍କୁ ୧୩୬୦ ଖ୍ରୀଷ୍ଟାବ୍ଦରୁ ୧୪୧୦ ବା ୧୪୧୫ ମଧ୍ୟରେ ଉତ୍କଳର କବି ଥିବାର ଅନୁମାନ କରୁଅଛୁଁ ।

ଅତ୍ୟନ୍ତ ଦୁଃଖର ବିଷୟ ଯେ ବିଦ୍ୟାଧରଙ୍କର କି ଉପାଧି ଓ ବିଦ୍ୟାଧର କେଉଁ ସମୟରେ ଓ କେଉଁ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ, ତାହା ଜାଣିବାର ଉପାୟ ନାହିଁ । ଯଦ୍ୟାପି କେହି କେହି ଏହି ସମ୍ବାଦ ପ୍ରଦାନ କରିପାରନ୍ତି, ତାହାହେଲେ ଆମ୍ଭେମାନେ ତାଙ୍କଠାରେ ଚିରଋଣୀ ହେବୁ ।

# ଓଡ଼ିଶାରେ ପୁରାଣ ସାହିତ୍ୟର ବୈଶିଷ୍ଟ୍ୟ

ଆଜିକାଲିର ଓଡ଼ିଶା ପ୍ରାଚୀନ କାଳର କଳିଙ୍ଗଖଣ୍ଡର ଅନେକାଂଶ ଓ ଉତ୍କଳଖଣ୍ଡର କେତେକ ଅଂଶରେ ଗଠିତ । ଓଡ଼ିଶାର ପୁରାଣ ସାହିତ୍ୟ ବିଷୟରେ କହିବା ପୂର୍ବରୁ ପ୍ରାଚୀନ ଉତ୍କଳ, କଳିଙ୍ଗର ଶିକ୍ଷା ଓ ସଂସ୍କୃତି ତଥା ସଭ୍ୟତା ବିଷୟରେ କିଛି ଜାଣିବା ଉଚିତ । ସଂସ୍କୃତ ପୁରାଣ, ଇତିହାସ ତଥା ବେଦର ପାଠରୁ ଜଣାଯାଏ ଯେ, ଏହି ଭୂଖଣ୍ଡ ଅତି ପ୍ରାଚୀନକାଳରୁ ପ୍ରସିଦ୍ଧି ଲାଭ କରିଅଛି । ସତ୍ୟଯୁଗର ଗୟାସୁର ଶରୀରର ପ୍ରାୟ ତୃତୀୟ/ଚତୁର୍ଥାଂଶ ଏହି ଖଣ୍ଡରେ ଅବସ୍ଥିତ । ଗୟାର ଶରୀର ଅତି ପବିତ୍ର । ଏହି ପବିତ୍ର ଶରୀର ଉପରେ ବ୍ରହ୍ମା ତଥା ଦେବଗଣ ଯଜ୍ଞ ସମ୍ପାଦନ କରିଥିଲେ । ବେଦରେ ମଧ ଜଗନ୍ନାଥଙ୍କର ବିଷୟ ଉଲ୍ଲେଖ ରହିଛି ।

ଅଦଃ ଯଦ୍‌ଦାରୁ ପ୍ଲବତେ ।

ଋଗ୍‌ବେଦର ଦଶମମଣ୍ଡଳର ଏହି ସୂକ୍ତ ଅନ୍ତତଃ ୩୫୦୦ ବା ୪୦୦୦ ବର୍ଷର ବିଷୟ । ମହାଭାରତର ବନପର୍ବରେ ବର୍ଣ୍ଣିତ ହୋଇଛି ଯେ, ଧର୍ମ ଯାଜପୁରରେ ଯଜ୍ଞ କରିଥିଲେ ଏବଂ ସେହି ଯଜ୍ଞରେ ବଳୀ ମହାଦେବଙ୍କୁ ବଳାତ୍କାରରେ ହରଣ କରିଥିଲେ । ତହୁଁ ଦେବତାମାନେ ପ୍ରତିଜ୍ଞା କରି କହିଲେ- ଆପଣଙ୍କୁ ଯଜ୍ଞରେ ଉତ୍କୃଷ୍ଟ ଭାଗ ଆଜିଠାରୁ ଦିଆଯିବ । ଏଥିରୁ ଜଣାଯାଏ ଯେ, ମହାଦେବଙ୍କର ଯଜ୍ଞରେ ଭାଗ ନଥିଲା; କିନ୍ତୁ ପୁରାଣଶାସ୍ତ୍ର ତଥା ବେଦପାଠରୁ ଜଣାଯାଏ ଯେ, ରୁଦ୍ରଙ୍କର ବୈଦିକ କାଳରୁ ଯଜ୍ଞରେ ଭାଗ ଅଛି । କିନ୍ତୁ ଋଷି, ଅପ୍‌ସରାଦ୍ୱାରା ସମାଧିଚ୍ୟୁତ ହୋଇ ସେ କେତେକ କାଳ ଅତିବାହିତ କଲେ । ତତ୍ପରେ ନିଜର ସ୍ଖଳନ ବୁଝି ପଶ୍ଚାତ୍ତାପ କରି ଜଗନ୍ନାଥ ଧାମରେ ଆସି ତପସ୍ୟା କଲେ । ଉକ୍ତ ଅପ୍‌ସରା ଭୟଭୀତ ହୋଇ ସ୍ୱସ୍ଥାନକୁ ପ୍ରୟାଣ କରିବା ସମୟରେ ତାହାର ଗର୍ଭସ୍ରାବ ହୁଏ ଏବଂ ତାହା ବୃକ୍ଷାଗ୍ରରେ ପତିତ ହୁଏ । ତାହା ବାର୍କ୍ଷୟୀ ନାମ୍ନୀ ରୂପେ କନ୍ୟାରେ ପରିଣତ ହେଲା ଏବଂ ସହି ବାର୍କ୍ଷେୟୀଙ୍କୁ ଦଶ ପ୍ରାଚେତସଃ ବିବାହ କଲେ ଏବଂ ତାଙ୍କଠାରୁ ଦକ୍ଷ ଜାତ ହେଲେ । ସେହି ଦକ୍ଷ ମହାଦେବଙ୍କର ଶ୍ୱଶୁର ଓ ସତୀଙ୍କର ପିତା । ବେଦରେ କଳିଙ୍ଗର ନାମ ଉଲ୍ଲେଖ ନ ଥିଲେ ହେଁ ଦୀର୍ଘତମା

ଋଷିଙ୍କର ସୂକ୍ତ ବେଦରେ ପରିଦୃଷ୍ଟ ହୁଏ । ସେହି ଦୀର୍ଘତମା ଋଷିଙ୍କର ଔରସରୁ ଅସୁରରାଜ ବଳୀଙ୍କର ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରୁ କ୍ଷତ୍ରଜ ସନ୍ତାନ ଅଙ୍ଗ, ବଙ୍ଗ, କଳିଙ୍ଗ ଆଦି ପୁତ୍ର ଜାତ ହୋଇଥିଲେ । ମନୁଙ୍କ ପୁତ୍ର ନ ଥିବାରୁ ସେ ବଶିଷ୍ଠଙ୍କଦ୍ୱାରା ପୁତ୍ରେଷ୍ଟି ଯଜ୍ଞ କରାଇଲେ । କିନ୍ତୁ ଯଜ୍ଞର ଫଳରେ ଏକ କନ୍ୟା ଜାତ ହେଲା । ଏପରି ଅଦ୍ଭୁତ ଫଳର ବିଷୟ ଜିଜ୍ଞାସା କରନ୍ତେ ବଶିଷ୍ଠ ମନୁଙ୍କୁ କହିଲେ, ତୁମର ପତ୍ନୀ ଶତରୂପାଙ୍କର ଅନୁରୋଧରେ ଏହା ମୁଁ କରିଅଛି । ମନୁ ବିମନା ହୁଅନ୍ତେ ବଶିଷ୍ଠ ବିଷ୍ଣୁଙ୍କ ପ୍ରସାଦରୁ ସେହି କନ୍ୟା ବିକଳ୍ପରେ ପୁରୁଷତ୍ୱ ପ୍ରାପ୍ତ ହୋଇଥିଲା । ପୁରୁଷାବସ୍ଥାରେ ତାଙ୍କର ନାମ କନ୍ୟା ରୂପରେ ଇଳା ଓ ପୁରୁଷ ଭାବରେ ସୁଦ୍ୟୁମ୍ନ ନାମ ଧାରଣ କଲା । ସୁଦ୍ୟୁମ୍ନଙ୍କର ତିନିଗୋଟି ପୁତ୍ର- ଉତ୍କଳ, ଗୟ, ବିନତାଶ୍ୱ ବା ବିମଳ । ରାଜା ସୁଦ୍ୟୁମ୍ନ ହରପାର୍ବତୀଙ୍କ ବନରେ ମୃଗୟାବସରରେ ପ୍ରବେଶ କରି ସପରିବାର ସ୍ତ୍ରୀତ୍ୱ ଲାଭ କଲେ ଏବଂ ସୁଦ୍ୟୁମ୍ନ ଇଳା ନାମରେ କଥିତ ହେଲେ । ସେହି ଇଳା ବେଶରେ ଚନ୍ଦ୍ରଙ୍କର ପୁତ୍ର ବୁଦ୍ଧଙ୍କର ପତ୍ନୀତ୍ୱ ସ୍ୱୀକାର କରି ପୁରୁରବାଙ୍କୁ ଜନ୍ମ ଦେଇଥିଲେ । ପୁରୁରବା ଚନ୍ଦ୍ରବଂଶର ଆଦି ପୁରୁଷ । ବହୁକାଳ ପରେ ମନୁଙ୍କର ଦଶୋଟି ପୁତ୍ର ଜାତ ହେଲେ । ଇକ୍ଷ୍ୱାକୁ ତନ୍ମଧ୍ୟରେ ଶ୍ରେଷ୍ଠ । ଦର୍ଶନ ନିମିତ୍ତ ମହାତ୍ମା, ଋଷି, କାର୍ତ୍ତିକେୟାଦି ଦେବଗଣ ଓ ଯୁଧିଷ୍ଠିରାଦି ରାଜନ୍ୟବର୍ଗ ମହେନ୍ଦ୍ରାଚଳକୁ ଯାତ୍ରା କରିଥିଲେ । ଯେଉଁ ଉତ୍କଳ ଖଣ୍ଡ ପ୍ରବୃତ୍ତ ମାର୍ଗରେ ବହୁ ପରାକାଷ୍ଠା ଲାଭ କରିଥିଲା, ସେହି ଉତ୍କଳଖଣ୍ଡ ନିବୃତ୍ତି ମାର୍ଗର ଚରମ ସୀମାରେ ଉପସ୍ଥିତ ହେଲା । ପୁନଶ୍ଚ ଜୈନ ପୁରାଣରୁ ବିଦିତ ହୁଏ ଯେ, ମହାବୀର ଓ ବୁଦ୍ଧଦେବଙ୍କର ପ୍ରାୟ ୨୦୦/୩୦୦ ବର୍ଷ ପୂର୍ବେ ମହାତ୍ମା ପରେଶନାଥ ଉତ୍କଳ ଖଣ୍ଡର ପଦାର୍ପଣ କରି ସ୍ୱ ଧର୍ମମତ ପ୍ରଚାର କରିଥିଲେ । ମହାବୀର ତାଙ୍କର ବାଲ୍ୟକାଳରେ କଳିଙ୍ଗ ରାଜଭବନରେ ଅବସ୍ଥାନ କରୁଥିଲେ । କାରଣ ସେ ଲିଚ୍ଛବୀ ବଂଶୀୟ ରାଜପୁତ୍ର ଓ ସେହି ରାଜବଂଶ ସହିତ କଳିଙ୍ଗ ରାଜବଂଶର ମୈତ୍ରୀ ଥିଲା । ମହାବୀର ବର୍ତ୍ତମାନ ସନ୍ନ୍ୟାସ ଗ୍ରହଣାନ୍ତର କଳିଙ୍ଗୋତ୍କଳ ଖଣ୍ଡରେ ସ୍ୱ ଧର୍ମମତ ପ୍ରଚାର କରିଥିଲେ ।

ବ୍ରାହ୍ମଣ୍ୟଧର୍ମ ତଥା ଜୈନଧର୍ମ ସମଭାବରେ ଏହି ଭୂଖଣ୍ଡରେ ଗତି କରୁଥିଲା । ତତ୍ପରେ ବୁଦ୍ଧଙ୍କର ବାମଦନ୍ତ କ୍ଷେମରାଜ ମହାମୁନି କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ଅର୍ପଣ କରିବାରୁ ତାହା କଳିଙ୍ଗରେ ପୂଜିତ ହେଲା ଏବଂ ସେହି ଦନ୍ତକୁ ଭାରତର ସର୍ବାଞ୍ଚଳର ଲୋକେ ଓ ରାଜ ବଂଶୀୟ ବ୍ୟକ୍ତିମାନେ ଆସି କଳିଙ୍ଗ ନଗରରେ ପୂଜା କରୁଥିଲେ । ଅଶୋକ କଳିଙ୍ଗ ଜୟ ପରେ ଏହି କଳିଙ୍ଗୋତ୍କଳ ଖଣ୍ଡରେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ଅଶୋକଙ୍କର ପ୍ରାୟ ୯୦ବର୍ଷ ପରେ ସମ୍ରାଟ ଖାରବେଳ ଏହି କଳିଙ୍ଗୋତ୍କଳ ଖଣ୍ଡରେ ଜୈନଧର୍ମର ପ୍ରଚାର କଲେ । ଇକ୍ଷ୍ୱାକୁ ସୂର୍ଯ୍ୟ ବଂଶର ଆଦି ପୁରୁଷ । ଭାଗବତରେ ପୁନଶ୍ଚ ଲିଖିତ ଅଛି ଯେ, ଧ୍ରୁବଙ୍କର ବାୟୁପୁତ୍ରୀ ଇଳା ନାମ୍ନୀ ପତ୍ନୀଙ୍କ ଗର୍ଭରୁ ଉତ୍କଳ ନାମକ ପୁତ୍ର ଜାତ ହୋଇଥିଲେ । ସୁଦ୍ୟୁମ୍ନ ଉତ୍କଳକୁ ଉତ୍କଳ ରାଜ୍ୟ, ଗୟକୁ ଗୟ ରାଜ୍ୟ ଓ ବନତାଶ୍ୱଙ୍କୁ ତତ୍ପଶ୍ଚିମବର୍ତ୍ତୀ ଭୂଖଣ୍ଡରେ ରାଜତ୍ୱ କରିବାକୁ ଦେଇଥିଲେ ଏବଂ ପୁରୁ ରାଜାଙ୍କ ପ୍ରତିଷ୍ଠାନ ପୁରୀରେ ଆଧିପତ୍ୟ ପ୍ରଦାନ କରିଥିଲେ । ଦୀର୍ଘତମାଙ୍କର ପୁତ୍ର କଳିଙ୍ଗ

ହେଲେହେଁ ଐଳ ପୁରୁରବାଙ୍କର ବଂଶର ଅନ୍ୟଶାଖା ତିତିକ୍ଷୁଙ୍କର ବଂଶଧର କଳିଙ୍ଗ, କଳିଙ୍ଗ ରାଜ୍ୟର ପ୍ରତିଷ୍ଠାତା ଥିଲେ । ଏହିସବୁ ପୂର୍ବ ଲିଖିତ ବିଷୟାବଳିକୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଆହ୍ଲାବାଦ (ପ୍ରତିଷ୍ଠାନପୁର) ପୂର୍ବାଞ୍ଚଳ ଲଗାଏତ ଗୋଦାବରୀ ପର୍ଯ୍ୟନ୍ତ ଭୂମଣ୍ଡଳରେ ଶିକ୍ଷା, ସଭ୍ୟତା ଓ ସଂସ୍କୃତି ପ୍ରାୟ ଏକ ଧରଣର । ଏହି ପୂର୍ବାଞ୍ଚଳ ମଧ୍ୟରେ ଉତ୍କଳଖଣ୍ଡରେ ପ୍ରବୃତ୍ତିମାର୍ଗ ଓ ନିବୃତ୍ତିମାର୍ଗଗତ ଧର୍ମବିଷୟକ ବହୁ ଅନୁଷ୍ଠାନ ସଙ୍ଗଠିତ ହୋଇଅଛି । ପ୍ରବୃତ୍ତିମାର୍ଗର ବିଷୟ ପୂର୍ବେ କୁହାଯାଇ ଅଛି । ପ୍ରବୃତ୍ତିମାର୍ଗର ପ୍ରବଳ ଅନୁରାଗୀ ବୀର ପରଶୁରାମ ରାମଚନ୍ଦ୍ରଙ୍କଦ୍ୱାରା ହତ ହୋଇଥିଲେ । କିନ୍ତୁ ଭଗବାନ ରାମଚନ୍ଦ୍ର କ୍ଷାତ୍ର ବୃତ୍ତ୍ୟାବଲମ୍ବୀ ବ୍ରହ୍ମ, ସେ ତାଙ୍କୁ ବ୍ରାହ୍ମଣ୍ୟଭାବ ପ୍ରଦାନ କଲେ । ତହୁଁ ପରଶୁରାମ ନିଜର ବିଷମ ଭ୍ରାନ୍ତି ଉପଲବ୍ଧି କରି ଏହି କଳିଙ୍ଗ ଖଣ୍ଡର ମହେନ୍ଦ୍ରାଚଳରେ ଅବସ୍ଥାନ କରି ନିବୃତ୍ତି ମାର୍ଗର ପ୍ରଧାନ ଉପଦେଷ୍ଟା ଓ ଗୁରୁ ରୂପେ ଆତ୍ମାରାମତ୍ୱ ପ୍ରାପ୍ତ ହୋଇଥିଲେ । ସେହି ପର୍ଶୁରାମଙ୍କ କ୍ଷୀଣତ୍ୱ ଲାଭକଲା ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବା ତତ୍‌କିଞ୍ଚିତ ପୂର୍ବ କାଳରେ ଏହି ଭୂଖଣ୍ଡ ଆନ୍ଧ୍ରଙ୍କଦ୍ୱାରା ଅଧିକୃତ ହୁଏ । ଖ୍ରୀଷ୍ଟୀୟ ୨୦୦ ବା ୨୫୦ ଅବ୍ଦରେ ନାଗାର୍ଜ୍ଜୁନ ଏହି ଭୂଖଣ୍ଡରେ ବୌଦ୍ଧଧର୍ମ ମହାଯାନ ଶାଖା ପ୍ରବଳ ଭାବରେ ପ୍ରବର୍ତ୍ତିତ କରାଇଥିଲେ । ପୂର୍ବୋକ୍ତ ବିଷୟାବଳିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଏହି ଭୂଖଣ୍ଡରେ ବ୍ରାହ୍ମଣ୍ୟଧର୍ମ, ଜୈନଧର୍ମ ଓ ବୌଦ୍ଧଧର୍ମର ଯୁଗପତ୍ ବିକାଶ ଲାଭ କରିଥିଲା । ମହାଯାନର ଶାଖା ବଜ୍ରଯାନ ତଥା ସହଜଯାନ ପ୍ରବଳ ଭାବରେ ଓଡ଼ିଶାରେ ପ୍ରସାର ଲାଭକଲା ।

କାଳର କୁଟିଳ ଗତିରେ ବୌଦ୍ଧ ଧର୍ମର ଅବସାନ ହେଲା । ବ୍ରାହ୍ମଣ୍ୟଧର୍ମର ଉପଦେଷ୍ଟା ଓ ଗୁରୁମାନଙ୍କର ଆବିର୍ଭାବ, ଶଙ୍କରାଚାର୍ଯ୍ୟ ପ୍ରମୁଖଙ୍କଦ୍ୱାରା ପୁନର୍ବାର ବ୍ରାହ୍ମଣ୍ୟଧର୍ମ ପରାକାଷ୍ଠା ଲାଭକଲା । ଏହାରି ଫଳରେ ଶୈବଧର୍ମର ପ୍ରତିଷ୍ଠା ହେଲା ଏବଂ ପରେ ପରେ ବୌଦ୍ଧଧର୍ମର କିଛି ପ୍ରଭାବ ସହିତ ଶାକ୍ତଧର୍ମ ପ୍ରବର୍ତ୍ତିତ ହେଲା । ବିଚାର କଲେ ସ୍ପଷ୍ଟ ଜଣାଯାଏ, ବୌଦ୍ଧଧର୍ମର ମୁଦ୍ରାଙ୍କ ଶୈବଧର୍ମ ଓ ଶାକ୍ତଧର୍ମ ଉପରେ ନିହିତ । ଶାକ୍ତଧର୍ମ ପରେ ବୈଷ୍ଣବଧର୍ମର ପ୍ରସାର ହେଲା । ରାମ ତଥା କୃଷ୍ଣଙ୍କର ଉପାସନା କ୍ରମାନ୍ୱୟରେ ଏହି ଭୂଖଣ୍ଡରେ ପ୍ରବର୍ତ୍ତିତ ହେଲା ।

ବୈଷ୍ଣବଧର୍ମରେ ଉକ୍ତ ଧର୍ମମାନଙ୍କର ପ୍ରଭାବ ଅଳ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । ବିଶେଷତଃ, ବୈଷ୍ଣବ ଧର୍ମରେ ପଂଚଦେବତାଙ୍କର ଉପାସନା ସନ୍ନିହିତ । କାରଣ ତାନ୍ତ୍ରିକ ଉପାସନାରେ ଗଣପତିଙ୍କର ପୂଜା ପ୍ରଥମ ବିଧେୟ । ବୈଷ୍ଣବଧର୍ମର ପରମ ଭକ୍ତ ଗୋପୀ ପରିକରା ରାଧା ସୂର୍ଯ୍ୟଙ୍କର ଉପାସନା କରିଥିଲେ । ପୁନଶ୍ଚ ଗୋପୀମାନଙ୍କ ସହିତ ରାଧା ଗୋପେଶ୍ୱର ମହାଦେବ ତଥା ଅମ୍ବିକାଙ୍କ ଉପାସନା କରି କୃଷ୍ଣଙ୍କର ସାନ୍ନିଧ ଲାଭ କରିଥିଲେ ।

ଉପରକଥିତ ବିଷୟାବଳିକୁ ଦୃଷ୍ଟିରେ ରଖି ଉତ୍କଳର ପୁରାଣ ଇତିହାସ ଆଲୋଚନା କରିବାକୁ ହେବ । କାରଣ ଉତ୍କଳର ପୁରାଣ ଇତିହାସର ବୈଶିଷ୍ଟ୍ୟ ଅଛି ।

# ସାରଳା ଦାସ

ଆମର ଓଡ଼ିଶାରେ ଯେ ମହାଭାରତ ଘରେ ଘରେ ପଠିତ ଏବଂ ବିଶେଷ ଲୋକପ୍ରିୟ, ତାହା ଭାରତର ପ୍ରାଦେଶିକ ଭାଷାରେ ଲିଖିତ ଗ୍ରନ୍ଥମାନଙ୍କଠାରୁ ଅତି ପ୍ରାଚୀନ । ବଙ୍ଗଦେଶରେ ଯେ ସମୟରେ ମହାଭାରତର ପ୍ରସାର ନ ଥିଲା, ସେସମୟରେ ସାରଳା ଦାସଙ୍କ ମହାଭାରତ ଅନୂଦିତ ହୋଇ ସେହି ଦେଶରେ ପଠିତ ହେଉଥିଲା, ସେ ମହାଭାରତ ସଂସ୍କୃତ ବ୍ୟାସକୃତ ମହାଭାରତର ଅବିକଳ ଅନୁବାଦ ନୁହେଁ । ସେହି ମହାଭାରତ ଲେଖକ ସଂସ୍କୃତ ବିଦ୍ୟା ମୂଳହୁଁ ଜାଣି ନ ଥିଲେ । ସଂସ୍କୃତ ବିଦ୍ୟାରେ ଅପ୍ରବୀଣ ଲୋକ କିପରି ଏ ଭଳି ବିଶାଳ ଗ୍ରନ୍ଥ ଲେଖିଲେ, ତାହା ଅତି ଆଶ୍ଚର୍ଯ୍ୟର ବିଷୟ । ଆଶ୍ଚର୍ଯ୍ୟର କଥା କିଛି ନୁହେଁ । ଯାହାଙ୍କ ପ୍ରତି ଦେବଦେବୀ ପ୍ରସନ୍ନ ଏବଂ ଯେ ସ୍ୱୟଂ ପ୍ରତିଭାସମ୍ପନ୍ନ, ସେ ପ୍ରକୃତିର ଗର୍ଭରୁ ଉପାଦାନ ସଂଗ୍ରହ କରି ବିଶାଳ ସାହିତ୍ୟ ରାଜ୍ୟ ନିର୍ମାଣ କରିପାରେ । ମୁସଲମାନ ଧର୍ମର ପ୍ରବର୍ତ୍ତକ ମହମ୍ମଦ, ରାମକୃଷ୍ଣ ଦେବ ମଧ୍ୟ ନିରକ୍ଷର ଥିଲେ । ସେମାନେ ଯେପରି ଧର୍ମରାଜ୍ୟରେ ବିପ୍ଳବ ଆଣି ପାରିଥିଲେ, ସେପରି ଆମର ସେହି ମହାଭାରତକାର ଏହି ଉତ୍କଳଖଣ୍ଡରେ ଏକ ଅପୂର୍ବ ବିପ୍ଳବ ସଂଘଟନ କରି ପାରିଥିଲେ । ସେ ନିଜକୁ କହିଛନ୍ତି:-

ଜନ୍ମେ କୃଷିକାରୀ ନ ଜାଣେ ଶାସ୍ତ୍ରବିଧି

ସେ କୃଷିକାରୀ ଥିଲେ । ଦୁଃଖର କଥା, ଆଜିକାଲି କୃଷିକାରୀଙ୍କୁ ଶୂଦ୍ର କୁହାଯାଉଛି । କିନ୍ତୁ ସେମାନେ ପ୍ରକୃତରେ ବୈଶ୍ୟ । କାରଣ ମନ୍ୱାଦି ସ୍ମୃତିକାର କହିଅଛନ୍ତି- କୃଷି, ଗୋପାଳନ, ଓ ବାଣିଜ୍ୟକାରୀମାନେ ବର୍ଣ୍ଣରେ ବୈଶ୍ୟ । ଆମର ମହାଭାରତକାର ନିଜକୁ ଶୂଦ୍ର ବୋଲି କହି ନିଜର ହୀନତ୍ୱ ପ୍ରତିପାଦନ କରିଅଛନ୍ତି । ଏହା ମହାପୁରୁଷଙ୍କର ଧର୍ମ । ମହାପ୍ରଭୁ ଚୈତନ୍ୟଚନ୍ଦ୍ର କହିଛନ୍ତି –

ତୃଣଦପି ସୁନୀଚେନ ତରୋରପି ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହିତଃ ।

ଯେଉଁମାନେ ଦେବଦେବୀ ଭକ୍ତ, ସେମାନେ ନିଜକୁ ତୃଣଠାରୁ ହୀନ ମନେକରନ୍ତି । ସେହି ମହାତ୍ମା ଆମ ଦେଶରେ ମୁନି ଆଖ୍ୟା ପ୍ରାପ୍ତ ହୋଇଛନ୍ତି । ଉତ୍କଳରେ ନାନା ବିଶିଷ୍ଟ ଲୋକ ନାନା ଆଖ୍ୟା ପ୍ରାପ୍ତ ହୋଇଅଛନ୍ତି । କିନ୍ତୁ ମୁନି ଆଖ୍ୟା ପ୍ରାପ୍ତ ହୋଇଅଛନ୍ତି ସେହି ମହାମାନବ । ତାଙ୍କର ନାମ ସିଦ୍ଧେଶ୍ୱର ପରିଡା । ସେ ଶାରଳା ଦେବୀଙ୍କର ଐକାନ୍ତିକ ଭକ୍ତ ଥିବାରୁ ନିଜକୁ ଶାରଳାଙ୍କର ଦାସାନୁଦାସ ବୋଲି କହିଅଛନ୍ତି। 'ପରିଡ଼ା' ଏ ଉପାଧି ଆଜିକାଲି ଲୋକେ ହୀନ ଦୃଷ୍ଟିରେ ଦେଖନ୍ତି ଏବଂ କେତେକ 'ପରିଡ଼ା' ନିଜକୁ 'ପରିଜା' ଆଖ୍ୟା ଦେଇ ଆତ୍ମସମ୍ମାନ ପ୍ରଦର୍ଶନ କରୁଛନ୍ତି । କିନ୍ତୁ 'ପରିଡ଼ା' 'ପରିରାୟ' ଶବ୍ଦର ଅପଭ୍ରଂଷ । ମାଦଳାପାଞ୍ଜିରେ ପରିରୟ କଥା ଉଲ୍ଲେଖ ଅଛି, ଏବଂ ଏମାନେ କ୍ଷତ୍ରିୟ । କାଳକ୍ରମେ କେତେକ କ୍ଷତ୍ରିୟ ବୃତ୍ତିଭ୍ରଷ୍ଟହୋଇ କୃଷି ବାଣିଜ୍ୟାଦି ଅବଲମ୍ବନ କରିବା ସମ୍ଭବପର ଏବଂ କେତେକ ଶୂଦ୍ର-ଜାତୀୟ ମଧ୍ୟ ପରିଡ଼ା ଉପାଧି ଧାରଣ କରିବାର ଦେଖାଯାଏ । ଖୁବ୍ ସମ୍ଭବତଃ ସାରଳା ଦାସ କ୍ଷତ୍ରିୟ ବଂଶ ସମ୍ଭୂତ କୃଷିବୃତ୍ତି ସମ୍ପନ୍ନ ବ୍ୟକ୍ତିଥିଲେ । କାରଣ ପୂର୍ବ ଜନ୍ମର ସଂସ୍କାର ନ ଥିଲେ, ଏପରି ଅଦ୍ଭୁତ ବିଶାଳ ମହାଭାରତ ଗ୍ରନ୍ଥ ଲେଖିବା ସମ୍ଭବପର ହୋଇ ନ ଥାନ୍ତା ।

ଦୁଃଖର କଥା- ଆମ ଦେଶରେ ବହୁତ ଲୋକ ନିଜକୁ ସାହିତ୍ୟିକ ମନେକରି ଗର୍ବ ଅନୁଭବ କରନ୍ତି । କିନ୍ତୁ ସାରଳା ଦାସଙ୍କ ମହାଭାରତ ପାଠକରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟରେ ଯେ ପାରଦର୍ଶୀ ହେବାକୁ ଚାହିଁବ, ସେ ସାରଳା ଦାସଙ୍କ ଭାଗବତ ପଢ଼ିବ । ଏ ଗ୍ରନ୍ଥମାନ ପାଠ ନ କଲେ ପ୍ରକୃତରେ ଲୋକ ଓଡ଼ିଆ ସାହିତ୍ୟର ପୂର୍ଣ୍ଣ ପରିଚୟ ପାଇ ପାରିବନାହିଁ । ଦୁଃଖର କଥା- ଭାରତର ଅତି ପ୍ରାଚୀନ ଅମୂଲ୍ୟ ପ୍ରାକୃତ ଭାଷାରେ ଲିଖିତ ବିଶାଳ ଗ୍ରନ୍ଥର ଏ ପର୍ଯ୍ୟନ୍ତ ଶୁଦ୍ଧ ସଂସ୍କରଣ ସଂକଳିତ ଓ ପ୍ରକାଶିତ ହୋଇନାହିଁ । ବଜାରରେ ଯେ ଗ୍ରନ୍ଥ ମିଳେ, ସେହି ଗ୍ରନ୍ଥରେ ସାରଳା ଦାସଙ୍କ ଅସ୍ତିତ୍ୱ ୮।୧୦ ପଣ ଅଛି। ସାରଳା ଦାସ ନିଜ ମହାଭାରତକୁ ଦାଣ୍ଡିବୃତ୍ତରେ ଲେଖିଥିଲେ । ସେହି ଦାଣ୍ଡିବୃତ୍ତକୁ ଆମ ଦେଶର ପ୍ରାରମ୍ଭିକ ଲେଖକ କାଟିକୁଟି ଏକ ଅଦ୍ଭୁତ କୌଶଳ ପ୍ରଦର୍ଶନ କରିଛନ୍ତି । ସାରଳା ମହାଭାରତରେ ଯେ ଅପୂର୍ବ ଶବ୍ଦାବଳୀ ଅଛି, ତାହା ଉଦ୍ଧାର କଲେ ଆମ ଦେଶର ଅନେକ ବିଷୟରେ ଅଭାବ ପରିପୂରଣ ହେବ ।

## ଧର୍ମଭାବ

ସାରଳା ଦାସ ଦେବୀଙ୍କର ଭକ୍ତ ହେଲେହେଁ ସୂର୍ଯ୍ୟ, ଶିବ, ବିଷ୍ଣୁ, ଜଗନ୍ନାଥ, ରାମ, ଅଗ୍ନି, ପ୍ରଭୃତିଙ୍କୁ ଏକ ଭାବରେ ସ୍ତୁତି କରିଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ଉତ୍କଳର ଧାର୍ମିକମାନେ ଏକଦେଶଦର୍ଶୀ ନ ଥିଲେ । ବୈଦିକସୂକ୍ତର ଅର୍ଥ 'ଏକଂ ଶଦ୍‌ବିପ୍ରା ବହୁଧା ବଦନ୍ତି । ସେହି ପରମାତ୍ମା ପରମେଶ୍ୱର ଏକ । ତାଙ୍କୁ ପଣ୍ଡିତମାନେ ନାନା ନାମରେ କହିଥାନ୍ତି । ପ୍ରକୃତ ଧାର୍ମିକ ଯେ ସେ ସର୍ବତ୍ର ଭଗବଦ୍ ସତ୍ତା ଅନୁଭବ କରେ ଏବଂ ଯେଉଁଠାରେ ମହାଶକ୍ତି ଦେଖେ ଏବଂ ତାଙ୍କୁ ଭଗବାନଙ୍କର ପ୍ରତୀକରୂପେ ଗ୍ରହଣ

କରେ ଓ ଆତ୍ମପ୍ରସାଦ ଅନୁଭବ କରେ । ଆମ ଉତ୍କଳରେ ଧର୍ମଭାବର ସଂକୀର୍ଣ୍ଣତା ନାହିଁ । କାରଣ ଅନ୍ୟ ଦେଶରେ ଶୈବ, ଶାକ୍ତ, ବୈଷ୍ଣବମାନଙ୍କ ମଧ୍ୟରେ ଘୋର ବିବାଦ ପରିଦୃଷ୍ଟ ହୁଏ । କିନ୍ତୁ ଉତ୍କଳରେ ସେ ଭାବ ସମ୍ଭବେ ନାହିଁ । କାରଣ ଶିବ, ବିଷ୍ଣୁ, ଶକ୍ତି, ଗଣେଶ, ସୂର୍ଯ୍ୟ- ଏହି ପଞ୍ଚ ଦେବତାଙ୍କୁ ଉତ୍କଳୀ ଜଗନ୍ନାଥଙ୍କ ରୂପରେ ଦେଖେ ଏବଂ ସେପରି ଦେଖି ସେ ପୂଜା ପ୍ରବର୍ତ୍ତନ କରାଇ ଭାରତ ଓ ଜଗତରେ ସମ୍ମାନୀୟ ସ୍ଥାନ ପାଇପାରିଛି । ତହୁଁ ଭାରତର ଅନ୍ୟାନ୍ୟ ପଞ୍ଚଦେବତା ଉପାଶକମାନେ ଜଗନ୍ନାଥ ଦେବଙ୍କ ଶରୀରରେ ନିଜ ନିଜର ଦେବତାର ପ୍ରକାଶ ଦେଖି ପାରିଛନ୍ତି । ସେହି ସାରଳା ଦାସ ଜଗନ୍ନାଥଙ୍କୁ ବୁଦ୍ଧ ଆଖ୍ୟା ପ୍ରଦାନ କରିଅଛନ୍ତି, ଏବଂ ଉତ୍କଳର ଅନେକ ଭକ୍ତ ଓ କବି ଜଗନ୍ନାଥଙ୍କୁ ବୁଦ୍ଧ ମୂର୍ତ୍ତି ରୂପ ଦେଖିଅଛନ୍ତି । ଅବଶ୍ୟ କେତେକ ଜଗନ୍ନାଥଙ୍କୁ ଶାକ୍ୟସିଂହ ବୁଦ୍ଧ ବୋଲି ସ୍ୱୀକାର କରନ୍ତିନାହିଁ । ପରଂବ୍ରହ୍ମ ଶୁଦ୍ଧ, ବୁଦ୍ଧ, ନିତ୍ୟ ବୋଲି କହନ୍ତି । ଏ ବିଷୟରେ ମଧ୍ୟ ଜଗନ୍ନାଥ ଦାସ ପ୍ରକାରାନ୍ତରେ ବୁଦ୍ଧଙ୍କୁ ଜଗନ୍ନାଥ ବୋଲି ସ୍ୱୀକାର କରି ଏବଂ ବୁଦ୍ଧଙ୍କୁ ଶ୍ରେଷ୍ଠ ଅବତାର ମଣି ଏକାଦଶସ୍କନ୍ଧରେ କହିଛନ୍ତି ।

ପ୍ରବୁଦ୍ଧ ବୁଦ୍ଧ ଅବତାରେ
ଜ୍ଞାନ ବିସ୍ତାର ଏ ସଂସାର ।

ବୌଦ୍ଧଧର୍ମ ଓ ଜୈନଧର୍ମ ସ୍ୱତନ୍ତ୍ର ଧର୍ମ ନୁହଁନ୍ତି । ତାହା ବ୍ରାହ୍ମଣ୍ୟ ଧର୍ମର ସନ୍ତାନ । ପୁତ୍ର ପିତାଠାରୁ ପୃଥକ ହୋଇ ନିଜର ପ୍ରାପ୍ୟ ଗ୍ରହଣପୂର୍ବକ ସ୍ୱ ଜୀବିତାବସ୍ଥାରେ ଯାହା କିଛି ଅର୍ଜନ କରି ନିଜ ସଙ୍ଗେ ଯୋଗକରି ଯେ ସମ୍ପତ୍ତିର ଅଧିକାରୀ ହୁଏ, ସେହିପରି ବୁଦ୍ଧ ଓ ମହାବୀର ବ୍ରାହ୍ମଣ୍ୟଧର୍ମର କେତେକ ଯୋଗକରି ନୂତନ ପ୍ରଥାର ପ୍ରବର୍ତ୍ତନ କଲେ । ଆମର ଉତ୍କଳଖଣ୍ଡ ବୌଦ୍ଧ ଓ ଜୈନ ଧର୍ମର ଲୀଳାସ୍ଥଳି ଥିଲା । ତହୁଁ ଜୈନଧର୍ମ, ବୌଦ୍ଧଧର୍ମ ଓ ବ୍ରହ୍ମଣ୍ୟଧର୍ମ ମଧ୍ୟରେ ଆଦାନ ପ୍ରଦାନ ହେବା ସୁନିଶ୍ଚିତ । ଶିବଙ୍କର ମୂର୍ତ୍ତି ବହୁ ଅଂଶରେ ବୁଦ୍ଧଙ୍କ ମୂର୍ତ୍ତିଦ୍ୱାରା ପ୍ରଭାବିତ ଏବଂ କାଳୀମୂର୍ତ୍ତି ବୌଦ୍ଧମୂର୍ତ୍ତି ବୋଲି ବର୍ତ୍ତମାନ ପ୍ରମାଣିତ ହେଲାଣି ।

ଶାକ୍ତ ଓ ଶୈବଧର୍ମରେ ବୌଦ୍ଧଧର୍ମର ପ୍ରଭାବ ପରିଲିଖିତ ହୁଏ । ବୈଷ୍ଣବଧର୍ମରେ ମଧ୍ୟ ବୌଦ୍ଧଧର୍ମର ପ୍ରଭାବ ସୁସ୍ପଷ୍ଟ ପରିଦୃଷ୍ଟ । ବୌଦ୍ଧଧର୍ମର ମହାଯାନ ଶାଖା ବଜ୍ରଯାନପନ୍ଥୀ । ମହାଯାନର ଚର୍ଯ୍ୟାରେ ଅନ୍ତରଙ୍ଗ ଓ ବହିରଙ୍ଗ ଭାବ ଅଛି । ବହିରଙ୍ଗ କ୍ରିୟାକଳାପ ଅତି ଖରାପ । ସେହି ବହିରଙ୍ଗ କ୍ରିୟାକଳାପରେ ଲୋକେ ପର ସ୍ତ୍ରୀ ରମଣ କରିବାରେ ଏବଂ ପୁରୁଷ ପର ସ୍ତ୍ରୀ ଓ ପର ସ୍ତ୍ରୀ ପରପୁରୁଷ ରମଣ କରିବାରେ କୁଣ୍ଠାବୋଧ କରେନାହିଁ । ତହୁଁ ଏହି ପରକୀୟା ପ୍ରୀତିକୁ ଉନ୍ନତ ଭାବରେ ଅବସ୍ଥାପିତ କରିବାକୁ ଯାଇ ମହାପ୍ରାଣ ଧାର୍ମିକ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ପରପୁରୁଷ ଓ ଜୀବଙ୍କୁ ପରସ୍ତ୍ରୀ ରୂପେ ପରିକଳ୍ପନା କରି ଗୋପୀକୃଷ୍ଣଙ୍କର ଲୀଳାମୂଳକ ଗ୍ରନ୍ଥ ପ୍ରଣୟନ କଲେ । ଏହି ପରକୀୟା ପ୍ରୀତିର ପ୍ରବର୍ତ୍ତନରେ ଦେଶର ମଙ୍ଗଳ ସାଧିତ ହେଲା । ଏହି ସହଜଯାନର ପ୍ରଭାବ ଆମ୍ଭେମାନେ ସାରଳା ଦାସଙ୍କର ଗ୍ରନ୍ଥରେ ଦେଖିବାକୁ ପାଉ । ସାରଳା ଦାସଙ୍କ ସୃଷ୍ଟି ପ୍ରକ୍ରିୟା ସହଜଯାନର ମତାନୁମୋଦିତ ଏବଂ ଦ୍ରୋଣାଦିଙ୍କର ଜନ୍ମ

ବୃତ୍ତାନ୍ତ,ବୃଦ୍ଧା କୁନ୍ତୀଙ୍କର କାମ ପ୍ରବୃତ୍ତି, ଯୁଧିଷ୍ଠିରଙ୍କର ଯାଜପୁରରେ ସୋହାଣୀ କନ୍ୟାର ବିବାହାଦିରେ ସେହି ସହଜଯାନର ପ୍ରଭାବ ପରିଲକ୍ଷିତ ହୁଏ । ସଂସ୍କୃତ ମହାଭାରତ ମୂଳରେ ଲିଖିତ ଅଛି ଯେ, ମହାଭାରତର ଅନେକ ସଂସ୍କରଣରେ ଲିଖିତ ହୋଇଥିଲା- ମର୍ତ୍ତ୍ୟରେ ଲକ୍ଷେ ଶ୍ଳୋକ, ଗନ୍ଧର୍ବ, ଯକ୍ଷ ଓ ଦେବତାଙ୍କ ନିମିତ୍ତ ୫।୧୦ ଲକ୍ଷ ପ୍ରଭୃତିରେ ମହାଭାରତ ଲିଖିତ ହୋଇ, ଶେଷରେ ଲୋକମାନଙ୍କରେ ପ୍ରଚଳିତ ହୋଇଥିଲା । ବର୍ତ୍ତମାନ ଆମ୍ଭେମାନେ ଶୁଣିବାକୁ ପାଉଁ, ପ୍ରଚଳିତ ସାରଳା ମହାଭାରତରେ କେତେକ ଅଦ୍ଭୁତ ଉପାଦାନ ଅଛି, ଯାହା କି ଆମେ ସଂସ୍କୃତ ମହାଭାରତରେ ଦେଖିବାକୁ ପାଉନାହୁଁ। ସାଧାରଣତଃ ଆମ୍ଭେମାନେ ମୁନିଙ୍କ ଏହା କଳ୍ପନା-ପ୍ରସୂତ ବୋଲି ଧରିଥାଉ । କିନ୍ତୁ ଅନ୍ୟାନ୍ୟ ସ୍ଥାନମାନଙ୍କର ମହାଭାରତ ସହିତ ସାରଳା ମହାଭାରତ ତୁଳନା କରି ପାଠକଲେ କେତେକ ଉପାଖ୍ୟାନମାନଙ୍କର ସମତା ମିଳିପାରେ । ଦୁଃଖର କଥା, ଆମ୍ଭେ ଏ ବିଷୟରେ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ନ ହୋଇ ସେ ସବୁକୁ କାଳ୍ପନିକ କହିବାକୁ ବାଧ୍ୟ । ସାରଳା ଦାସ ବ୍ୟାସଙ୍କର ମାତା ସତ୍ୟବତୀଙ୍କୁ ଶାନ୍ତନୁଙ୍କର ସ୍ତ୍ରୀ ନ କରି ପରାଶରଙ୍କର ସ୍ତ୍ରୀ ରୂପେ ରଖି ଅଛନ୍ତି । କିନ୍ତୁ ସଂସ୍କୃତ ମହାଭାରତରେ ସତ୍ୟବତୀ ପରକାଳରେ ଶାନ୍ତନୁଙ୍କୁ ବିବାହ କରିଥିଲେ ଏବଂ ସେହି ସତ୍ୟବତୀଙ୍କ ଗର୍ଭରୁ ଶାନ୍ତନୁଙ୍କ ଔରସରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ ଗଙ୍ଗାଙ୍କର ଶାନ୍ତନୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଆଉ ଦାର ପରିଗ୍ରହ କରିନଥିଲେ । କୌଣସି ସ୍ତ୍ରୀ ଗର୍ଭରୁ ଜାତ ନ ହୋଇ ଶାନ୍ତନୁଙ୍କ ଚିତ୍ରପ୍ରତିମା ଆଲିଙ୍ଗନରୁ ସ୍ଖଳିତ ଶକ୍ତିରୁ ସଇନ୍ଦୁ ପୁତ୍ର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜାତ ହୋଇଥିଲେ ।

ଖଳିକାରର ଜନ୍ମ ସେ ଅଦ୍ଭୁତ ପ୍ରକାରର କରାଇ ଅଛନ୍ତି । ଦୂତୀଙ୍କ ସହ କୃଷ୍ଣଙ୍କ ଗୋପନ ପ୍ରଣୟରୁ ଜାତ ଯେ ପୁତ୍ର, ସେହି ଖଳିକାର ହୋଇ ବିଦୁରଙ୍କର ଆଦେଶରେ ଜତୁଗୃହରୁ ସିନ୍ଧିଗାତ ନଦୀ ପର୍ଯ୍ୟନ୍ତ ଖୋଳି ଦେଇଥିଲା । କୁମ୍ଭୀରାସୁରର ନଦୀ ଗର୍ଭରେ ଆବିର୍ଭାବ ଏବଂ ମାତା ଓ ଭ୍ରାତାମାନଙ୍କୁ ଭୀମସେନର କୁମ୍ଭୀର ଗର୍ଭରେ ଅର୍ପଣ ପ୍ରସ୍ତାବ ଓ ପରେ କୁମ୍ଭୀର ଭକ୍ଷ୍ୟତ୍ୱ ସ୍ୱୀକାର କରି କୁମ୍ଭୀରକୁ ନାଶ କରିବା ଓ ଅରଣ୍ୟରେ ଭ୍ରାତାମାନଙ୍କ ସହ ଯୋଗଦେବା, ହିଡ଼ିମ୍ବାସୁର ବଧ ପରେ ଭୀମର ଶିବପୁରରେ ରାଜା ହେବା ଏବଂ ଚଣ୍ଡାଳମାନଙ୍କୁ ପରାସ୍ତ କରିବା, ପାତାଳପୁରରେ ନାଗକନ୍ୟାକୁ ବିବାହକରି ପୁତ୍ର ଉତ୍ପାଦନ କରିବା, ଗାନ୍ଧାରୀଙ୍କର ବିବାହ ପ୍ରସ୍ତାବମାତ୍ରେ ବରପାତ୍ରମାନଙ୍କର ମୃତ୍ୟୁ ଘଟିବା ଏବଂ ଧୃତରାଷ୍ଟ୍ରଙ୍କର ବିବାହ ପ୍ରସ୍ତାବରେ କନ୍ୟାମାନଙ୍କର ମୃତ୍ୟୁ ଘଟିବା ଯୋଗୁଁ – ବ୍ୟାସଙ୍କ ଆଦେଶରେ ସୁବଳ ରାଜଙ୍କର ସାହାଡ଼ାଗଛକୁ ଗାନ୍ଧାରୀଙ୍କୁ ବିବାହ କରିବା ଓ ସାହାଡ଼ାଗଛ ଜଳିଯିବା ଏବଂ ତତ୍‌ପରେ ଧୃତରାଷ୍ଟ୍ରଙ୍କୁ ବିବାହ କରିଇବା, ସଭାରେ ଦୁର୍ଯ୍ୟୋଧନଙ୍କୁ ଭୀମର କ୍ରୋଧ ଏବଂ କୃଷ୍ଣଙ୍କର ନିର୍ଦ୍ଦେଶରେ ଦୁର୍ଯ୍ୟୋଧନ ଗୋଳକପୁତ୍ର ଆଖ୍ୟାର ମାତାଙ୍କଠାରୁ କାରଣ ବୁଝି ନିଜର ମାତାମହ ଏବଂ ଶହେ ମାମୁଙ୍କୁ ବନ୍ଦିଶାଳାରେ ଭର୍ତ୍ତିକରାଇ ଅଳ୍ପ ଆହାର ଯୋଗାଇବାରେ କେବଳ ଶକୁନିର ବୁଦ୍ଧି ବିଚକ୍ଷଣତା ବିଷୟ ଜାଣିପାରି ବନ୍ଦିଗୃହରୁ ତାଙ୍କୁ ଉଦ୍ଧାର କରି ନିଜର ମନ୍ତ୍ରୀ କରିବା ପ୍ରଭୃତି

ବର୍ଣ୍ଣନା ସାରଳା ଦାସଙ୍କ  କବି-କଳ୍ପନା ସମ୍ଭୂତ । ଶକୁନିର ଆପାତଃ ଦୁର୍ଯ୍ୟୋଧନର ହିତାକାଙ୍କ୍ଷୀ ହୋଇ ତାହାର ବଂଶକୁ ନାଶକରିବା ଯେ ସୈତାନ ଚରିତ୍ରର ଚିତ୍ରଣ ସାରଳାମୁନି କରିଅଛନ୍ତି, ତାହା ତୁଳନାରେ ଜଗତ ବିଖ୍ୟାତ ସେକ୍‌ସପିଅରଙ୍କ ସୈତାନ ଚରିତ "ଇଆଗୋ" କିଛି ନୁହେଁ କହିଲେ ଚଳେ।

ଖାଣ୍ଡବବନରେ ନବଗୁଂଜରର ଆବିର୍ଭାବ, ଦ୍ରୋଣ ଏବଂ କର୍ଣ୍ଣଙ୍କ ହସ୍ତରୁ ଅର୍ଜୁନର ରଥ ରକ୍ଷାକରିବା ନିମିତ୍ତ ହନୁମାନର ରଥକୁ ପାତାଳକୁ ଚାପିବା, ବେଲାବଳୀର ଏକ ଦିନରେ କୌରବ ସୈନ୍ୟଙ୍କୁ ନାଶ କରିବା ପ୍ରସ୍ତାବ ଶ୍ରବଣ କରିବା, ଶ୍ରବଣକରି କୃଷ୍ଣଚନ୍ଦ୍ରଙ୍କଦ୍ୱାରା ବେଲାବଳୀର ଶିରଚ୍ଛେଦ ହୋଇ ସ୍ତମ୍ଭଉପରେ ସ୍ଥାପିତ ହେବା, ନକୁଳ ଓ ଅର୍ଜୁନଙ୍କଦ୍ୱାରା ପ୍ରସଙ୍ଗ ବିଶେଷମାନଙ୍କରେ ପୃଥିବୀକୁ ସ୍ୱ-ଅସ୍ତ୍ରମାନଙ୍କରେ ଟୋଳି ରଖିବା, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ କରିବା, ନଳରାଜାଙ୍କର ନେପାଳ ଜୟ କରିବା, ଯୁଧିଷ୍ଠିରଙ୍କର ସାହାଣୀ କନ୍ୟାଙ୍କୁ ବିବାହ କରିବା ଏବଂ ଅର୍ଜୁନର କଳବଳାରେ କଳିକୁ ବାନ୍ଧିରଖିବା ଇତ୍ୟାଦି ଅଦ୍ଭୁତ ଉପାଖ୍ୟାନ ମୁନିଙ୍କର ମହାକଳ୍ପନା ପ୍ରସୂତ । ପୁନଶ୍ଚ ସାରଳା ଦାସଙ୍କର ଜ୍ୟୋତିଷଜ୍ଞାନ, ଗୋ-ଚିକିତ୍ସା ପ୍ରଭୃତି ବିଦ୍ୟାରେ ଜ୍ଞାନର ଯେ ସଂକେତ ପାଉ, ତାହା ତାଙ୍କର ଅଦ୍ଭୁତ ସଂଗ୍ରାହିକା ଶକ୍ତି-ପ୍ରସୂତ । ତାଙ୍କର ବିଲଙ୍କାରାମାୟଣ  ଓ ଚଣ୍ଡୀପୁରାଣ ଯୁଦ୍ଧ ବର୍ଣ୍ଣନାମାନଙ୍କରେ, ବିଶେଷତଃ ମହାଭାରତରେ ବଳରାମ ଏବଂ ମହାଦେବଙ୍କ ଯୁଦ୍ଧବର୍ଣ୍ଣନାରେ ସେ ଶବ୍ଦମାନଙ୍କର ଏ କୁହୁକ ପ୍ରଦର୍ଶନ କରିଅଛନ୍ତି ।

ସେ ସ୍ତ୍ରୀ ଚରିତ୍ର ଯାହା ବର୍ଣ୍ଣନା କରିଅଛନ୍ତି, ତାହା ବାସ୍ତବ ଓ ତତ୍‌କାଳୀନ ସମାଜର ଜୀବନ୍ତ ଆଲେଖ୍ୟ । ସାରାଳା ଦାସ କେଉଁ କାଳର ଲୋକ ଥିଲେ, ସେ ବିଷୟରେ ପଦେ ଅଧେ କହିବା ସମୀଚୀନ ମନେକରୁ  । ଯେଉଁମାନେ ସାରାଳା ଦାସଙ୍କ ମହାଭାରତ ମୂଳପୋଥି ପଢିଛନ୍ତି, ସେମାନେ ଆମ୍ଭମାନଙ୍କ ସହ ଏକମତ  ହେବେ ଯେ, ତାଙ୍କ ଭାଷା ସରଳ , ସହଜ ଓ ପ୍ରାକୃତିକ । ତାହା ସଂସ୍କୃତ-ମୂର୍ଚ୍ଛିତ ନୁହେଁ ଏବଂ ତାହା ପ୍ରାଚୀନ ଉତ୍କଳର ପ୍ରଚଳିତ ପ୍ରାକୃତର ବିକାଶ-ସମ୍ଭୂତ । ଅବଶ୍ୟ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ପରେ, ସଂସ୍କୃତ ଭାଷାର ପ୍ରବଳ ପରିବର୍ତ୍ତନ ଫଳରେ ଉତ୍କଳ ଭାଷାରେ କେତେକାଂଶରେ ପ୍ରଭାବ ପଡ଼ିଥିବା ସମ୍ଭବପର । କିନ୍ତୁ  ସାରଳା ଦାସଙ୍କ ଭାଷାରେ ସେତେ ପ୍ରଭାବ ଦେଖିବାକୁ ପାଉନା । ପ୍ରାକୃତ ତୁଲ୍ୟ ଲୋକଙ୍କର ନାମ ଯଥା – ଯୁଯେଷ୍ଠି, କୋଏନ୍ତା ଏବଂ ଅନ୍ୟାନ୍ୟ ଶବ୍ଦ ତାକୁ, ମୁକୁ, କିସବେ ପ୍ରଭୃତି ଶବ୍ଦ- ଯାହା ସାରାଳା ଦାସଙ୍କ ରାମାୟଣରେ ଦେଖିବାକୁ ପାଉ, ତାହା ବଳରାମ ଦାସଙ୍କ ମହାଭାରତରେ ଦେଖିବାକୁ ପାଉନା। ଯେଉଁମାନେ ସାରଳା  ଦାସଙ୍କୁ କପିଳେନ୍ଦ୍ର ଦେବଙ୍କ ସମସାମୟିକ ବୋଲି କହନ୍ତି, ସେମାନଙ୍କର ବୁଝିବା ଉଚିତ ଯେ, ବଳରାମ ଦାସ ପୁରୁଷୋତ୍ତମ ଦେବଙ୍କ ଅନ୍ତିମ କାଳରେ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ପ୍ରାକ୍ କାଳରେ ରାମାୟଣ ଲେଖା ଶେଷ କରିଥିଲେ । ତେଣୁ ସାରଳା ଦାସଙ୍କ ଓ ବଳରାମ ଦାସଙ୍କ ସମୟର ବ୍ୟବଧାନ ୪୦/୫୦ ବର୍ଷ ଭିତରେ ପଡୁଅଛି । ୪୦/୫୦ ବର୍ଷ ମଧ୍ୟରେ ଭାଷାର ଏପରି ପାର୍ଥକ୍ୟ ଲକ୍ଷିତ ହେବା ଅସମ୍ଭବ । ଭାଷା ବଳରାମ ଦାସଙ୍କ କାଳରେ ଏକ ରକମ ସାହିତ୍ୟିକ ଛଟା

ତଥା ସଂସ୍କୃତ ମୂର୍ଚ୍ଛିତ ଭାବ- ପ୍ରାୟ ହୋଇଥିଲା । ଆମ୍ଭମାନଙ୍କ ମତରେ ଆଭ୍ୟନ୍ତରୀଣ ପ୍ରମାଣ ବଳରୁ ସାରଳା ଦାସ ଓ ବଳରାମ ଦାସଙ୍କ ମଧ୍ୟରେ ସମୟର ବ୍ୟବଧାନ ପ୍ରାୟ ଏକଶତ ବର୍ଷରୁ ଊର୍ଦ୍ଧ୍ୱ । ସାରଳା ଦାସ କପିଳ ନରସିଂହ ଦେବ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମରେ ରାଜତ୍ୱ କରୁଥିଲେ ଏବଂ ଦୁର୍ଯ୍ୟୋଧନ ସ୍ୱୟମ୍ବର କାଳରେ ସାରଳା ଦାସ ଯାହା ନିର୍ଦ୍ଦେଶ କରିଅଛନ୍ତି, ତାହା କପିଳ ନରସିଂହ ଦେବଙ୍କ ଅଭିଷେକ କାଳ ସହ ସମାନ ଘଟୁଅଛି ଏବଂ ସେ ନିଜ ଗ୍ରନ୍ଥରେ ନରସିଂହ ଦେବଙ୍କୁ ଲକ୍ଷ୍ୟକରି କପିଳେଶ୍ୱର ଦେବ ବୋଲି କହିଅଛନ୍ତି ।

କେତେକ ସମାଲୋଚକ କହନ୍ତି ଯେ, ସାରଳାଦାସ ସଂସ୍କୃତ ମହାଭାରତର ଶାନ୍ତିପର୍ବ ଓ ଅନୁଶାସନପର୍ବ ନିଜ ମହାଭାରତରେ ସ୍ଥାନ ନ ଦେଇ ବଡ ଅଭାବ ରଖି ଯାଇଅଛନ୍ତି । ତାଙ୍କ ନ ଦେବାର କାରଣ, ସେ ସଂସ୍କୃତ ମହାଭାରତ ପାଠକରି ନ ଥିଲେ ଏବଂ ସାଧାରଣତଃ ବୀରପୁରୁଷମାନଙ୍କର ଜୀବନୀ ଚରିତ ବର୍ଣ୍ଣନାଦ୍ୱାରା ସାଧାରଣ ଲୋକଙ୍କୁ ଧର୍ମପଥରେ ଓ ନ୍ୟାୟପଥରେ ଚାଳିତ କରିବା ସହଜ ପନ୍ଥା ମନେକରି ସେ ସବୁ ଗୂଢ ବିଷୟ ଓ ଧର୍ମାଧର୍ମ ବିଷୟ ପରିହାର କରିଅଛନ୍ତି । ପରିଶେଷରେ ଆମ୍ଭମାନଙ୍କର ଏତିକି ବକ୍ତବ୍ୟ ଯେ, ମାନବ ଜୀବନର ପରିଚାଳନା ନାନାବିଧ ଉପଯୋଗୀ ବାର୍ତ୍ତା ସେ ନିଜର ପ୍ରତିଭା ବଳରେ ଦିବ୍ୟଜନଙ୍କ ମୁଖରୁ ଓ ପ୍ରକୃତି ଗର୍ଭରୁ ଗ୍ରହଣକରି ଦେଶବାସୀଙ୍କୁ ଏକ ଅମୂଲ୍ୟ ବିଶାଳ ଗ୍ରନ୍ଥ ପ୍ରଦାନ କରିଅଛନ୍ତି ଏବଂ ଏହା କରିବାଦ୍ୱାରା ସେ ପରବର୍ତ୍ତୀ ଗୋପୀଦାସ, ବିଶ୍ୱମ୍ଭର ଦାସ, ପୀତାମ୍ବର ଦାସ ପ୍ରମୁଖ ପ୍ରାଚୀନ କାଳର ଅନେକ କୃତବିଦ୍ୟ କବି ଲେଖକଙ୍କୁ ଏବଂ ଆଧୁନିକ ଯୁଗର ରାଧାନାଥଙ୍କୁ ପ୍ରଭାବିତ କରି ନିଜର ଦିବ୍ୟ ମହତ୍ତ୍ୱର ପରିଚୟ ଦେଇଛନ୍ତି ।

# ଓଡ଼ିଆ ସାହିତ୍ୟର ବିକାଶଧାରା
## (ପୂର୍ବ-ମଧ୍ୟକାଳୀନ)

ସାରଳା ଦାସ ଉତ୍କଳର ଆଦିକବି । ଆମେ ଯଦି ତାଙ୍କୁ ଆଦିକବି ନ କହି ଆଦି ମହାକବି କହିବା, ତା'ହେଲେ ମଧ୍ୟ କିଛି ଅତ୍ୟୁକ୍ତି ହେବନାହିଁ । କାରଣ ଉତ୍କଳୀୟ କାବ୍ୟଧାରାର ଆଦିସ୍ରୋତ ଏଯାବତ୍ ଉପଲବ୍ଧ ହୋଇପାରିନାହିଁ । ସାରଳା ଦାସଙ୍କର ପୂର୍ବ ସାହିତ୍ୟ ରୂପେ 'ବୌଦ୍ଧଗାନ ଓ ଦୋହା' ପରି ରଚନା ଉପଲବ୍ଧ । ନିୟମିତ ଶୃଙ୍ଖଳାବଦ୍ଧ ତଥା ଛନ୍ଦବଦ୍ଧ କବିତା (ଯାହାଦ୍ୱାରା ଓଡ଼ିଆ ସାହିତ୍ୟର ଚରମ ଅଭିବୃଦ୍ଧି ଘଟିଥିଲା)ର ରଚନା ବତ୍ସା ଦାସ କରିଥିଲେ । ଅବଶ୍ୟ 'କଳସା ଚଉତିଶା'ର ସର୍ଜନା 'ବୌଦ୍ଧଗାନ ଓ ଦୋହା' ପରେ ହୋଇଥିଲା । ଏହି ଦୃଷ୍ଟିକୋଣରୁ ବିଚାରକଲେ, ଛନ୍ଦବଦ୍ଧ କବିତା ରଚନାରେ ବତ୍ସା ଦାସଙ୍କୁ ଆମେ ଆଦିକବିର ଆଖ୍ୟା ଦେଇପାରୁ । କିନ୍ତୁ ରଚନାଶୈଳୀ ଓ ରୀତି, ଯାହା ହେଉନା କାହିଁକି, 'ବୌଦ୍ଧଗାନ ଓ ଦୋହା' ରଚୟିତାମାନେ ସର୍ବପ୍ରଥମ ଓଡ଼ିଆ ଭାଷାରେ ସାହିତ୍ୟ ସର୍ଜନା କରିଥିଲେ- ଏଥିରେ ଦ୍ୱିରୁକ୍ତି ନାହିଁ । ସେଥିପାଇଁ 'ଦାଣ୍ଡିବୃତ୍ତ' (ରଚନାଶୈଳୀ ବିଷମବର୍ଣ୍ଣ ବିଶିଷ୍ଟ ଦୁଇଦୁଇ ବାକ୍ୟର ପଦ) ଅନୁସାରେ 'ବୌଦ୍ଧଗାନ ଓ ଦୋହା', ତଥା ଛନ୍ଦବଦ୍ଧ କବିତା ଶୈଳୀ ଦୃଷ୍ଟିରୁ 'କଳସା ଚଉତିଶା'ର ରଚୟିତା ବତ୍ସା ଦାସଙ୍କୁ ଆଦିକବିର ଆଖ୍ୟା ଦିଆଯାଇପାରେ । 'ବୌଦ୍ଧଗାନ ଓ ଦୋହା'ରୁ ପ୍ରାଚୀନୋତ୍ତର କବିତା ଓ 'କଳସା ଚଉତିଶା'ର ପ୍ରାଚୀନୋତ୍ତର ଚଉତିଶା ଏଯାବତ୍ ଉପଲବ୍ଧ ହୋଇପାରିନାହିଁ । ସେଥିପାଇଁ ଉତ୍କଳର ଆଦିକବିଙ୍କ ବିଷୟରେ ଉପରେ ଯାହା କୁହାଯାଇଛି, ତାହା ଭୁଲ ପ୍ରମାଣିତ ହେବନାହିଁ । ଏ ସମ୍ବନ୍ଧରେ ଆଉ ଗୋଟିଏ କଥା ମଧ୍ୟ ବିଚାର୍ଯ୍ୟ । ଓଡ଼ିଶାର ସର୍ବପ୍ରାଚୀନ ଛନ୍ଦବଦ୍ଧ କାବ୍ୟ 'ରାମବିଭା'ରେ ପ୍ରଯୁକ୍ତ 'କଳସା ଚଉତିଶା' ବୃତ୍ତ ଛଡ଼ା ମେଢତୋଳା ବୃତ୍ତ, ଚକ୍ରକେଳୀ ବୃତ୍ତ, ମୁନିବରବାଣୀ ବୃତ୍ତ, ସଙ୍ଗମତିଆରି ବାଣୀବୃତ୍ତ ଆଦି ଉଲ୍ଲେଖନୀୟ । ଏହାର କାରଣ ହେଉଛି ଯେ, ଏହି କାବ୍ୟଗୁଡ଼ିକରେ କେତେକ ଛନ୍ଦ ଉପରୋକ୍ତ ବୃତ୍ତ ଅନୁସାରେ ନିଯୋଜିତ ହୋଇଛି । ଏଥିମଧ୍ୟରୁ କେବଳ କଳସାର ମୂଳଗୀତ ଉପଲବ୍ଧ । ଅନ୍ୟଗୁଡ଼ିକ ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଛନ୍ତି । ଏହିଭଳି କିଛି ଗ୍ରନ୍ଥ ଆମର

ହସ୍ତଗତ ହେଲେ, ହୁଏତ ଓଡ଼ିଆ କବି ଓ କାବ୍ୟର ସମୟ ।ନିରୂପଣ ଆମପାଇଁ ସହଜସାଧ୍ୟ ହୋଇଯିବ ।

**ସୋମନାଥବ୍ରତର ଅଜ୍ଞାତନାମା ଲେଖକ (୧୪ଶ ଶତାବ୍ଦୀର ଉତ୍ତରାର୍ଦ୍ଧ)**

ସାରଳା ଦାସଙ୍କ ପୂର୍ବରୁ ଜଣେ ଅଜ୍ଞାତନାମା କବି ସୋମନାଥ ବ୍ରତକଥା ନାମକ ଗୋଟିଏ ଛୋଟ ଗଦ୍ୟ ପୁସ୍ତକ ଲେଖିଥିଲେ । ଉତ୍କଳ ଭୂମିରେ ଦଶମ ଶତାବ୍ଦୀରୁ ନେଇ ଚଉଦ ଶତାବ୍ଦୀ ପର୍ଯ୍ୟନ୍ତ ଶୈବଧର୍ମର ପ୍ରାଧାନ୍ୟ ଥିଲା । ଏଠିକାର ଅଧିକାଂଶ ଶିବ ମନ୍ଦିରର ନିର୍ମାଣ ଏହି ସମୟ ମଧ୍ୟରେ ହୋଇଥିଲା । ଅନୁମାନ କରାଯାଏ ଯେ, ନାରାୟଣାନନ୍ଦ ଅବଧୂତସ୍ୱାମୀଙ୍କର ପ୍ରସିଦ୍ଧ ଗଦ୍ୟକାବ୍ୟ 'ରୁଦ୍ରସୁଧାନିଧି'ର ପ୍ରଣୟନ ମଧ୍ୟ ଏହି ସମୟରେ ହୋଇଥିଲା ।

ଶିବ ପରମବ୍ରହ୍ମ, ଆଶୁତୋଷ ତଥା ବରଦାତା ଅଟନ୍ତି । ଉତ୍କଳୀୟ ହିନ୍ଦୁ ପରିବାରର ଗୃହିଣୀମାନେ ତାଙ୍କୁ ପ୍ରସନ୍ନକରିବା ନିମନ୍ତେ 'ସୋମନାଥ ବ୍ରତ' କରିଥାନ୍ତି । ଏହି ଅବସରରେ ପୁରୋହିତମାନେ ବ୍ରତକଥାଟିକୁ ପଢି ଶୁଣାନ୍ତି । ଉତ୍କଳ ଭୂମିରେ ଅନେକ ବ୍ରତ ଓ ବ୍ରତକଥା ପ୍ରଚଳିତ । ଏଥିମଧ୍ୟରୁ 'ସୋମନାଥ ବ୍ରତକଥା' ପ୍ରାଚୀନତମ । ତଳେ ସୋମନାଥବ୍ରତକଥାର କିଛି ଅଂଶ ଦିଆଯାଉଛି । ଏହାକୁ 'ରୁଦ୍ରସୁଧାନିଧି' ପରର ଓଡ଼ିଆ ପ୍ରାଚୀନ ଗଦ୍ୟ ରୂପ ବୋଲି ଗ୍ରହଣ କରାଯାଇଛି ।

"ପରମେଶ୍ୱର କହନ୍ତି, ଦେବି ଶୁଣନ୍ତି । ଶୁଣ ଦେବି ପାର୍ବତୀ ମାଳବ ବୋଲି ଦେଶ ତହିଁ ପାଟଳି ବୋଲି ନଗ୍ର ତହିଁ ବୀର ବିକ୍ରମାଦିତ ବୋଲି ରାଜା । ସେ ରାଜା ମହାପ୍ରତାପୀ । ସେ କଟକର ଅନେକ ମହିମା । ଘରେ ଘରେ ସୁବର୍ଣ୍ଣ କଳସ ବସାନ୍ତି । ଧବଳମୟେ ପୁର, ଅତିସୁନ୍ଦର । ସୁବର୍ଣ୍ଣ କଳସ ଉପରେ ନେତ ପତାକା ଉଡ଼ାନ୍ତି । ଚଉରାଶି ହାଟ ବସାନ୍ତି । ମେଢ ମଣ୍ଡପ ଅଟଳି ଦେଉଳ ଜଗତୀ କୂପ ପୁଷ୍କରିଣୀ ଅତି ଅଳ୍ପ ଲୋକେ ବସାନ୍ତି । ହସ୍ତୀଙ୍କର ଘଣ୍ଟାରବ ଘୋଡ଼ାଙ୍କର ଖୁରିଖୁରାରବ ପଦାତିଙ୍କର ମୁଖରବ । ଚତୁରଙ୍ଗ ବଳ ନବକୋଟି ଭଣ୍ଡାର । ଅନେକ ରାଜାମାନେ ସେ ରାଜାକୁ ଖଟନ୍ତି ।

**ଭୁବନେଶ୍ୱର ଶିଳାଲିପି (୧୩ଶ ଶତାବ୍ଦୀ)**

"ସ୍ୱସ୍ତ ଶ୍ରୀ ବୀରନରନାର ସୀଂହଦେବ ପ୍ରବୃଧମାନ ବୀଜେ ରାଜେ ସଂବତ ୧୧ଶ୍ରାହି କାତ୍ତ୍ରୀକ କ୍ରୀଷ୍ଣ ସାତ ରଖିବାରେ ଶ୍ରୀ କୀତ୍ତିବାସ କ୍ଷେତ୍ରଂ ସୀଦ୍ଧେଶ୍ୱର ମଠର ବଡ଼ ନରସିଂହ ଦେବଙ୍କର ଆଶ କାମାର୍ଥ ପୂର୍ବକେ ବାଘମରା ବାରବାଟି ଭୂମି ଏକାଦଶ ରୂଦ୍ରଭାଷା ଦେବା ଭୂମି ସଂମଧେ ତପରାଜ ମହାମୁନି । ଦୁଗାଭଟ ଆଚାର୍ଯ୍ୟ କେ ବଳା କଲା । ଏ ମାଢ ସତ ଦେଢ ୧୫୦ ଉନ୍ନଶ୍ୱର ନାୟକଙ୍କର ଚହ ଘେତଲ୍ଲା ଏ ମାତ୍ର ଦଶ ଧାନ୍ୟ ପୌଟି ତ୍ରିଃସେକ ତପରାଜ ମହାମୁନି । ଏ ଦୁଇ ଧାନ୍ୟ ସୁନା ଦୁଗାଭଟେ ଉନ୍ନେଶ୍ୱର ନାଏକଙ୍କ ଦେଇ ଅଙ୍କ କଲା ।"

ତ୍ରୟୋଦଶ ଶତାବ୍ଦୀର ଏହି ଶିଳାଲେଖର ଭାଷାଠାରୁ 'ସୋମନାଥବ୍ରତ କଥା'ର ଭାଷା ଅଧିକ ଉନ୍ନତ ଓ ବିକଶିତ । ସାରଳା ଦାସଙ୍କର ପରବର୍ତ୍ତୀ ସାହିତ୍ୟିକ ଭାଷାର ଦୃଷ୍ଟାନ୍ତ ସ୍ୱରୂପ ଏହି ଉଦ୍ଧୃତାଂଶର ଗଣନା କରାଯାଏ ।

**ମାର୍କଣ୍ଡ ଦାସ:** ମହାକବି ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟରେ ମାର୍କଣ୍ଡ ଦାସଙ୍କର ମଧୁରଗାନ ଶୁଣିବାକୁ ମିଳିଥିଲା । ଓଡ଼ିଶାରେ ପ୍ରତ୍ୟେକ କବିତାରେ ମର୍ଯ୍ୟାଦା ପୁରୁଷତ୍ତମ ଶ୍ରୀରାମଚନ୍ଦ୍ର ତଥା ଲୀଳାପୁରୁଷ ଶ୍ରୀକୃଷ୍ଣଙ୍କର ଚରିତ୍ର ପ୍ରାୟତଃ ଦେଖିବାକୁ ମିଳିଥାଏ । ଆଦି ମହାକବିଙ୍କ ପରେ ମାର୍କଣ୍ଡ ଦାସ ବିଷ୍ଣୁଙ୍କ ଅବତାର ରାମ ଏବଂ କୃଷ୍ଣଙ୍କ ବିଷୟକୁ ନେଇ କାବ୍ୟ ରଚନା କଲେ ।

ମାର୍କଣ୍ଡ ଦାସଙ୍କଦ୍ୱାରା ପ୍ରଣୀତ 'କେଶବ କୋଇଲି' ଉତ୍କଳର ଘରେ ଘରେ ପରିଚିତ ଏବଂ ସମାଦୃତ' । ବସନ୍ତର ଆଗମନ ସମୟରେ କୋଇଲି ତାର ମଧୁର କୁହୁକୁହୁ କୂଜନରେ ଧରାକୁ ଅପୂର୍ବ ଆନନ୍ଦରେ ଭରିଦଏ । ପୁରୁଷ ଓ ସ୍ତ୍ରୀ ଉଭୟ ଚଳ ଚଞ୍ଚଳ ହୋଇଉଠନ୍ତି ଏବଂ ସେମାନଙ୍କର ଶୁପ୍ତ ଭାବରାଶି ଜାଗ୍ରତ ହୁଏ । ସେମାନେ କୋଇଲିକୁ ନିଜ ହୃଦୟର କରୁଣ ଏବଂ ବିଷାଦପୂର୍ଣ୍ଣ ଘଟଣାଗୁଡ଼ିକ କହିଦେଲେ, ସେମାନଙ୍କୁ ଲାଗେ, ସତେଯେପରି ଦୁଃଖ ସାମାନ୍ୟ ଲାଘବ ହୋଇଯାଇଛି । ଓଡ଼ିଆ କବି କୋଇଲିକୁ ପୁତ୍ର-ବିହର-ବିଧୂରା-ମାତା ତଥା କାନ୍ତାବିରହାବିଧୂରା । କାନ୍ତର ଶୋକର ଭାବ ମର୍ମଜ୍ଞ ରୂପରେ ଚିତ୍ରିତ କରନ୍ତି । ସେଥିପାଇଁ ସେମାନେ କୋଇଲିକୁ ସମ୍ବୋଧନ କରି ଅନେକ କାବ୍ୟ, କବିତା ରଚନା କରିଯାଇଛନ୍ତି । ମାର୍କଣ୍ଡ ଦାସଙ୍କ ଦ୍ୱାରା ରଚିତ 'କେଶବ କୋଇଲି' ଓଡ଼ିଆ ସାହିତ୍ୟର ପ୍ରଥମ 'କୋଇଲି କବିତା' । ମଥୁରା ଗମନ ବେଳେ ଶ୍ରୀକୃଷ୍ଣଙ୍କ ବରହରେ ଆତୁର ମାତା ଯଶୋଦାଙ୍କର ହୃଦୟ ବିଦାରକ ଆକୁଳ, କରୁଣ ଉଚ୍ଛ୍ୱାସରେ ପରିପୂର୍ଣ୍ଣ ଏହି କବିତାଟି ଚଉତିଶା ନିୟମ ଅନୁସାରେ ଲେଖାଯାଇଛି । ଏହାର ପ୍ରତ୍ୟେକ ପଦରେ ବାତ୍ସଲ୍ୟ ରସର ମନ୍ଦାକିନୀ ପ୍ରଭାହିତ, ଯାହା ପ୍ରତ୍ୟେକ ହୃଦୟକୁ ଛୁଇଁପାରେ । ଇଂରାଜୀ କବି ଶେଲି କହିଛନ୍ତି ।

"କରୁଣା ପୂର୍ଣ୍ଣ ଭାବ ହିଁ ସାହିତ୍ୟର ମଧୁରତମ କବିତା" - (Our sweetest songs are those tell of saddest thought) ଏହାକୁ ଆଧାର କରି କୁହାଯାଇପାରେ ଯେ, 'କେଶବ କୋଇଲି' ଆକାର ଦୃଷ୍ଟିରୁ ଛୋଟ ହେଲେ ମଧ ମଧୁରତମ କାବ୍ୟରେ ପରିଗଣିତ ହୁଏ । ନିମ୍ନୋକ୍ତ ପଂକ୍ତିଗୁଡ଼ିକରୁ ବାତ୍ସଲ୍ୟ ରସର ଭାବସୌନ୍ଦର୍ଯ୍ୟ ଫୁଟିଉଠେ ।

ଖଣ୍ଡକ୍ଷୀର ଦେବି ମୁଁ କାହାକୁ
ଖାଇବାର ପୁତ୍ର ଗଲା ମଥୁରାପୁରକୁ, ଲୋ କୋଇଲି ।
କୋଇଲି ଗଲା ପୁତ୍ର ବାହୁଡ଼ି ନୋଇଲା
ଗହନ ତ ବୃନ୍ଦାବନ ଶୋଭା ନପାଇଲା, ଲୋ କୋଇଲି ।
କୋଇଲି ଘର ମୋର ନ ମଣନ୍ତି ନନ୍ଦ
ଘଟଣ ନ ଦିଶେ ପୁଅ ନ ଥିଲେ ଗୋବିନ୍ଦ, ଲୋ କୋଇଲି ।

କୋଇଲି ନନ୍ଦ ଦେହ ପାଷାଣେ ଗଢ଼ିଲା
ନୟନେ କଜ୍ଜଳ ଦେଇ ରଥେ ବସାଇଲା, ଲୋ କୋଇଲି ।
(କେଶବ କୋଇଲି)

ତାଙ୍କର ଅନ୍ୟତମ ଗ୍ରନ୍ଥଟି 'ମହାଭାଷ' । ଏଥିରେ ପରମବ୍ରହ୍ମ ଶ୍ରୀରାମଙ୍କର ମହିମାର ବର୍ଣ୍ଣନା କରାଯାଇଛି । 'ଶ୍ରୀରାମଚନ୍ଦ୍ରଙ୍କୁ ଧ୍ୟାନକଲେ ମନୁଷ୍ୟର ଜ୍ଞାନ ଉଦୟ ହୋଇଥାଏ ।' । ଏହା ହିଁ ଏ ଗ୍ରନ୍ଥର ମୂଳ ବିଷୟ । କୈଳାସ ପର୍ବତରେ ଏକାନ୍ତରେ ବସି ମହାଦେବ ପାର୍ବତୀଙ୍କୁ ବ୍ରହ୍ମଜ୍ଞାନର କଥା କହୁଥିଲେ । ଏହି କଥା ଶୁଣୁଶୁଣୁ ଯେତେବେଳେ ମଝିରେ ପାର୍ବତୀଙ୍କର ଆଖି ଲାଗିଗଲେ, ସେତେବେଳେ ଶୁକପକ୍ଷୀ ରୂପରେ ମୁନି ଶୁକଦେବ ବୃକ୍ଷ କୋଟରରେ ରହି ହୁଙ୍କାର କରି ପୂରା କଥାଟି ଶୁଣିଲେ । ଏହା ଜାଣିବା ମାତ୍ରେ ମହାଦେବ ତାଙ୍କୁ ହତ୍ୟା କରିବାପାଇଁ ଉଦ୍ୟତ ହେଲେ । କିନ୍ତୁ ଶୁକଦେବ ସେହି ସ୍ଥାନରୁ ଦଉଡ଼ି ପଳାଇ ଯିବାକୁ କ୍ଷମ ହେଲେ ଏବଂ ପରେ ଲବ୍ଧ ବ୍ରହ୍ମଜ୍ଞାନକୁ ସେ ସର୍ବତ୍ର ପ୍ରଚାରିତ କଲେ । ଶୁକଦେବଙ୍କଦ୍ୱାରା ଉପଦେଶ ମାଧ୍ୟମରେ 'ମହାଭାଷ' ତତ୍ତ୍ୱଜ୍ଞାନ ବିଷୟର ଏକ ଉଚ୍ଚକୋଟିର ଗ୍ରନ୍ଥ । ଏହି ମହାଭାଷରେ ପରମବ୍ରହ୍ମ ଶ୍ରୀରାମଚନ୍ଦ୍ରଙ୍କର ଉଦ୍ଦେଶ୍ୟରେ କଥାଟି କୁହାଯାଇଛି । କିନ୍ତୁ ମାର୍କଣ୍ଡ ଦାସଦ୍ୱାରା ରଚିତ 'କେଶବ କୋଇଲି' ତାଠାରୁ ଅଧିକ ଲୋକପ୍ରିୟତା ଏବଂ ପ୍ରସିଦ୍ଧି ଲାଭକରିଥିଲା ।

ଏହା ପରେପରେ ମହାପୁରୁଷ ଜଗନ୍ନାଥ ଦାସ ଏହି କାବ୍ୟଟିର ବ୍ୟାଖ୍ୟାକରି 'ଅର୍ଥକୋଇଲି'ର ସର୍ଜନା କରିଥିଲେ । କେଶବ କୋଇଲି ଯଦି ସର୍ବତ୍ର ପ୍ରସିଦ୍ଧି ନ ପାଇଥା'ନ୍ତା, ତେବେ ବୋଧହୁଏ ମହାପୁରୁଷ ଜଗନ୍ନାଥ ଏ କ୍ଷୁଦ୍ର ଗ୍ରନ୍ଥଟିକୁ ଏତେ ମହତ୍ତ୍ୱ ଦେଇନଥାନ୍ତେ । ଯେକୌଣସି କାବ୍ୟକୁ ପ୍ରସିଦ୍ଧି ପାଇବାକୁ ହେଲେ ଅତି କମ୍‌ରେ ୫୦ ବର୍ଷ ପାଖାପାଖି ଲାଗିଯାଏ । ଏହି ଦୃଷ୍ଟିରୁ ଅନୁମାନ କରାଯାଏ ଯେ, ମହାପୁରୁଷ ଜଗନ୍ନାଥ ଦାସ ୩୦ ବର୍ଷ ବୟସରେ 'ଅର୍ଥ କୋଇଲି' ରଚନା କରିଥିଲେ । ତେବେ କେଶବ କୋଇଲିର ରଚନା ସମୟକୁ ଆମେ ସନ ୧୪୨୨ କୁ ଧରିପାରିବା ।

ଅର୍ଜ୍ଜୁନ ଦାସ: ପ୍ରସିଦ୍ଧ ମହାକାବ୍ୟ 'ରାମବିଭା' ର ରଚୟିତା ଅର୍ଜ୍ଜୁନ ଦାସ । ତାଙ୍କର ଜନ୍ମ ସମୟ ସନ ୧୪୨୦ ରୁ ୧୪୩୦ ମଧ୍ୟରେ ବୋଲି ବିବେଚନା କରାଯାଏ । ଅନୁମାନ ହୁଏ, ସେସମୟରେ ଉପଲବ୍ଧ ଛନ୍ଦବଦ୍ଧ କାବ୍ୟ ମଧ୍ୟରୁ 'ରାମବିଭା' ସବୁଠାରୁ ପ୍ରାଚୀନ । ଅର୍ଜ୍ଜୁନ ଦାସଙ୍କର ପରବର୍ତ୍ତୀ କବି ନରସିଂହ ସେଣ, ଦେବଦୁର୍ଲ୍ଲଭ ଦାସ ଏବଂ ବୃନ୍ଦାବନ ଦାସ ଆଦି କବି ନିଜନିଜ କାବ୍ୟର ଅନେକ ଛନ୍ଦକୁ 'ରାମବିଭା' ଅନୁସାରେ ଗାଇବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । ତେଣୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ଏହି କବିମାନଙ୍କ ସମୟରେ 'ରାମବିଭା' କାବ୍ୟ ଅତ୍ୟନ୍ତ ପ୍ରସିଦ୍ଧ ଏବଂ ଜନପ୍ରିୟ ହୋଇପାରିଥିଲା । ଏମାନଙ୍କ ରଚନାରେ ଏଭଳି ଅନେକ ଘଟଣାର ବର୍ଣ୍ଣନା ହୋଇଛି, ଯାହାର ମୂଳଗୀତ ବର୍ତ୍ତମାନ ସୁଦ୍ଧା ଅପ୍ରାପ୍ୟ ହୋଇ ରହିଛି । 'ରାମବିଭା'ରେ **ମଢିଆଳ, ଆଚେବଳ, ମେହ୍ଳ, କାଳନ୍ତ, ପ୍ରତନ୍ତ** ଆଦି ପ୍ରାଚୀନ ଶବ୍ଦର ପ୍ରୟୋଗ କରାଯାଇଛି । ପରବର୍ତ୍ତୀ କବିମାନଙ୍କ ରଚନାରେ କ୍ରମେ ଏହି ଶବ୍ଦଗୁଡ଼ିକ

ବିଲୁପ୍ତ ହୋଇଗଲା । ଅର୍ଜୁନ ଦାସ ଜଗନ୍ନାଥଙ୍କୁ ଅବତାରୀ ରୂପରେ ବର୍ଣ୍ଣନା କରିଛନ୍ତି । ସେ ରାମଚନ୍ଦ୍ରଙ୍କ ରୂପରେ ଅବତାର ଗ୍ରହଣ କରିଥିଲେ ବୋଲି ଅର୍ଜୁନ ଦାସ ମତପୋଷଣ କରନ୍ତି । ନିଜ କାବ୍ୟର ପ୍ରଥମ ଛାନ୍ଦରେ ସେ ଜଗନ୍ନାଥଙ୍କର ସ୍ତୁତି କରି କହିଛନ୍ତି ଯେ: -

ଅବନୋଛଲେଣ ଜଗନ୍ନାଥ ହୁଏ ଜାତ ।
ଦଶରଥ ନୃପତିର ହୁଏ ଚାରିପୁତ୍ର ।।

ଅର୍ଜୁନ ଦାସଙ୍କ କାବ୍ୟ କବିତାରେ ବାତ୍ସଲ୍ୟ, କରୁଣ, ବୀର ଆଦି ରସର ସମାବେଶ ହୋଇଅଛି, କିନ୍ତୁ ଶୃଙ୍ଗାର ରସର ପ୍ରାଧାନ୍ୟ ସର୍ବତ୍ର ପରିଲକ୍ଷିତ କରାଯାଏ । ଉଦାହରଣ ସ୍ୱରୂପ ନିମ୍ନୋକ୍ତ ଅଂଶକୁ ଆମେ ଦେଖିପାରିବା ।

**କୌଶଲ୍ୟାଙ୍କ କାରୁଣ୍ୟ-**

କିସ କହିଲୁ ବାବୁ ରଘୁମଣି । ମୁଁ ତ କାତର ହେଉଅଛି ଶୁଣି ।।
ତୋର ଏକା ପଲଙ୍କେ ଦେହ ଲାଗି । ଜଣେ ଛାଡ଼ିଲେ ମୋର ନିଦ୍ରା ଭାଙ୍ଗି ।।
ତୁ ଯେ ମୃଗୟା ଯାଇଥାଉ ବନ । ଅଧବାଟରେ ଥାଏ ମୋର ମନ ।।
ମୁଁହି କେମନ୍ତେ ତୋତେ ଦେବି ଛାଡ଼ି । ମୋର ଶିରେ ଆକାଶ ପଡୁମାଡ଼ି ।।

**ଶ୍ରୀରାମ ସ୍ୱରୂପ ବର୍ଣ୍ଣନା:**

ନୀଳ ଜଳଧର କାନ୍ତି ରୁଚିର ଶରୀର ଭ୍ରାନ୍ତି
ନୟନ କମଳଫୁଲ ରୂପେ ଅତୁଲ୍ୟ ଏ
ଦକ୍ଷିଣ ପୀତ ଦୁକୂଳ ମଉଳି ମାଧବୀ ଚୂଳ
କଟକରେ ପରବେଶ ମହନ ବେଶ ଏ
ଅରୁଣ କୋମଳ ଆଖି ଅମରେ କାତର ଦେଖି
ପ୍ରସନ୍ନ ବଦନ ତା'ର ମୂରତି ସାର ଏ ।

ଅହଲ୍ୟାଙ୍କ ଗର୍ଭବୃତ୍ତାନ୍ତ ପ୍ରସଙ୍ଗରେ ଯେଉଁଭଳି ଭାବରେ ବାଳି ଏବଂ ସୁଗ୍ରୀବଙ୍କ ଜନ୍ମ ବୃତ୍ତାନ୍ତର ବର୍ଣ୍ଣନା ମିଳେ, ସେହିଭଳି ଭାବ ଅର୍ଜୁନ ଦାସଙ୍କ ସାହିତ୍ୟରେ ମଧ ପରିଲକ୍ଷିତ ହୋଇଥାଏ । ତାଙ୍କ ପରବର୍ତ୍ତୀ କାଳରେ ବଳରାମ ଦାସ ମଧ ଅନୁରୂପ ବର୍ଣ୍ଣନା ଜଗମୋହନ ରାମାୟଣରେ କହିଛନ୍ତି । ଅର୍ଜୁନ ଦାସ ହନୁମାନଙ୍କ ମାତାଙ୍କୁ ଅଞ୍ଜନା ବୋଲି ସମ୍ବୋଧିତ ନ କରି ଯମଜାନୀ କହିଛନ୍ତି । ତାଙ୍କ ମତାନୁସାରେ, ଅଞ୍ଜନାଙ୍କ ଜନ୍ମ ଅହଲ୍ୟାଙ୍କ ଗର୍ଭରୁ ହୋଇଥିଲା । ତାଙ୍କ ପିତାଙ୍କ ନାମ ଗୌତମ । 'ରାମବିଭା'ର ଭାଷାଶୈଳୀ, ଶବ୍ଦାଳଙ୍କାର ଏବଂ ଅର୍ଥାଳଙ୍କାର ଉତ୍କୃଷ୍ଟ ମାନର ।

ଏହା କହିବା ବାହୁଲ୍ୟ ଯେ, ତାଙ୍କ ସମୟରେ ଓଡ଼ିଶାରେ ଶାକ୍ତଧର୍ମ ଏବଂ ବୈଷ୍ଣବଧର୍ମର ପ୍ରାଧାନ୍ୟ ଥିଲା । ଭୁବନେଶ୍ୱରର ଶିଳାଲେଖ, କଳସା ଚୌତିଶା, ରୁଦ୍ରସୁଧାନିଧି ଆଦିରେ ଶୈବଧର୍ମର ମହିମା ବର୍ଣ୍ଣନା କରାଯାଇଅଛି । ସାରଳା ଦାସଙ୍କ ମହାଭାରତ, ଚଣ୍ଡିପୁରାଣ, ବିଲଙ୍କାରାମାୟଣରେ ଶାକ୍ତଧର୍ମ ଲକ୍ଷିତ ହୁଏ । ମାର୍କଣ୍ଡ ଦାସ, ଅର୍ଜୁନ ଦାସ ଏବଂ ତାଙ୍କ ପରବର୍ତ୍ତୀ କବି କୋବିଦଗଣ ରାମ, କୃଷ୍ଣ ଏବଂ ବିଷ୍ଣୁଙ୍କୁ ଅବତାର ରୂପେ ବିବେଚନା କରି ସେମାନଙ୍କର ସମାନ ଭାବରେ ପୂଜା କରିଛନ୍ତି ।

**କପିଳେନ୍ଦ୍ରଦେବ:** ଓଡ଼ିଆ ସୂର୍ଯ୍ୟବଂଶୀ ରାଜାମାନଙ୍କର ଶାସନ କପିଳେନ୍ଦ୍ରଦେବଙ୍କଠାରୁ ଆରମ୍ଭ ହୁଏ। ସୂର୍ଯ୍ୟବଂଶୀ ରାଜାମାନଙ୍କର ସମୟସୀମା ୧୪୩୫ ରୁ ୧୫୪୦ ମସିହା ପର୍ଯ୍ୟନ୍ତ ବୋଲି ଉଲ୍ଲେଖ କରାଯାଇଛି। ଏହି ବଂଶର ପ୍ରଥମ ରାଜା କପିଳେନ୍ଦ୍ରଦେବ (୧୪୩୫।୧୪୬୮)। କପିଳେନ୍ଦ୍ର ଦେବ 'ପର୍ଶୁରାମ ବିଜୟ' ନାମକ ଗୋଟିଏ ସଂସ୍କୃତ ନାଟକ ରଚନା କରିଥିଲେ। ଏହି ନାଟକଟି ଅମର ରାଗରେ ଲେଖା ଯାଇଥିଲା, ଯାହାର ଏକ ଉଦାହରଣ ତଳେ ଦିଆଯାଉଛି। ଏଥିରୁ ଜଣାପଡ଼େ ଯେ 'ବୌଦ୍ଧଗାନ ଓ ଦୋହା' ଯୁଗରେ ଧାର୍ମିକ ଗୀତ ଓ ପୁରାଣ ଆଦି ଦାଣ୍ଡିବୃତ୍ତରେ ଲେଖାହେଲେ ମଧ୍ୟ ନିର୍ଦ୍ଦିଷ୍ଟ ସ୍ୱରବଦ୍ଧ ସଂଗୀତର ଅଭାବ ନଥିଲା। ଏଥି ପୂର୍ବରୁ ବତ୍ସାଦାସଙ୍କ ଦ୍ୱାରା ରଚିତ 'କଳସା ଚଉତିଶା' ବିଷୟରେ କୁହାଯାଇସାରିଛି। 'କଳସା ଚଉତିଶା' ଭଳି ଲମ୍ବାଗୀତ ରଚନାକୁ ଉତ୍କଳରେ ଛାନ୍ଦ ବା ଗୀତ କୁହନ୍ତି। କିନ୍ତୁ ଶୃଙ୍ଖଳିତ ଏବଂ ନିର୍ଦ୍ଦିଷ୍ଟ ସ୍ୱରବଦ୍ଧ ଲଘୁ ରଚନା ହିଁ ସଂଗୀତ ଅଟେ।

**କପିଳେନ୍ଦ୍ରଦେବ ଦ୍ୱାରା ରଚିତ ଗୀତ:**

(ଅମର ରାଗେଣ ଗୀୟତେ)

କେବଣ ମୁନି କୁମର ପରଶୁ ଦକ୍ଷିଣ କର
ବାମେଣ ଶୋହେ ଧନୁଶର ନା
କୋପେଣ ବୋଲଇ ବୀରତ ତୁ ଯେ ମୋ ବଧିଲୁ ତାତ
ଆଜ ତୋର ଛେଦିବଇଁ ମାଥ ନା
ଶୁଣ ରାଜନ ହୋ, କିଏ ତୋର ରାଜ୍ୟେ ବ୍ରହ୍ମ ବଧେନା।୧।
ଏ ତୋର ଚନ୍ଦ୍ରବଦନ ମେଘେ ମୋ ମନ ନା
ଆବର ଦେଖ ଅରଷ୍ଟି ରାଜ୍ୟେ ତୋ ରୁଧିରବୃଷ୍ଟି
ପୁର ବେଢି ରୋଦନ୍ତି ଶୃଗାଳ ନା ।୨।

**ଦାମୋଦର ଦାସ:** ଦାମୋଦର ଦାସ କପିଳେନ୍ଦ୍ର ଦେବଙ୍କର ସମସାମୟିକ। ସେ 'ରସକୂଲ୍ୟା ଚଉତିଶା' ନାମକ ପ୍ରସିଦ୍ଧ କାବ୍ୟଗ୍ରନ୍ଥ ରଚନା କରିଥିଲେ। ଏହି ଚଉତିଶାରେ କୃଷ୍ଣଙ୍କ ପ୍ରତି ରାଧାଙ୍କର ନବାନୁରାଗ, ଉଚ୍ଚାଟ, ଉଦ୍‌ବେଗ ଏବଂ ଦୂତୀଦ୍ୱାରା ଦୁଇଜଣଙ୍କର ମିଳନର ଘଟଣାମାନ ବର୍ଣ୍ଣିତ ଅଛି। କବି ଦାମୋଦର ଶ୍ରୀରାଧାଙ୍କର ନବାନୁରାଗକୁ ସୁଲଳିତ ଏବଂ ପରିମାର୍ଜିତ ଭାଷାଦ୍ୱାରା ଏକ ଦକ୍ଷ ଚିତ୍ରକର ପରି ଚିତ୍ରିତ କରିଛନ୍ତି। ଚଉତିଶାର ଭାଷା ଅଧ୍ୟୟନରୁ ଏହା ସ୍ପଷ୍ଟ ହୋଇଯାଏ ଯେ, ଓଡ଼ିଆଭାଷା କିଭଳି କ୍ରମଶଃ ତା'ର କମନୀୟ ରୂପ ଧାରଣ କରିଛି। ଏହି ଗ୍ରନ୍ଥରେ ରସର ଆଧିକ୍ୟ ରହିଛି। ସେଥିପାଇଁ କବି ଏହାକୁ 'ରସକୂଲ୍ୟା ଚଉତିଶା' ନାମରେ ଆଖ୍ୟାୟିତ କରିଛନ୍ତି।

ଏହି କାବ୍ୟରେ ପ୍ରୟୋଗ କରାଯାଇଥିବା ବୃତ୍ତ, କବିଙ୍କର ନିଜସ୍ୱ ସୃଷ୍ଟି। ଓଡ଼ିଆ ସାହିତ୍ୟପାଇଁ ଏହା ଏକ ଅଭିନବ ପ୍ରୟୋଗ। ପରବର୍ତ୍ତୀ କବିମାନେ ଏହି

ରଚନାର ଅନୁସରଣ କଲେ ଏବଂ ଆଧୁନିକ ଯୁଗର କବିମାନେ ମଧ୍ୟ ଏହି ଜନପ୍ରିୟ ବାଣୀକୁ ଶ୍ରଦ୍ଧାର ସହ ଗ୍ରହଣ କଲେ ।

ଏହା ପୂର୍ବରୁ ବତ୍ସାଦାସଙ୍କର 'କଳସାବୃତ୍ତ' ବିଷୟରେ କିଛି ଚର୍ଚ୍ଚା ହୋଇସାରିଛି । ଓଡ଼ିଆ ସଙ୍ଗୀତରେ ମୂର୍ଚ୍ଛନାମୟ ଗୀତ ରଚନାପାଇଁ ଭାଷାର ଶ୍ରେଷ୍ଠ କବିମାନେ କଳସା ତଥା ରସକୂଲ୍ୟା ଭଳି ବୃତ୍ତର ଆବିଷ୍କାର କରିଥିଲେ । ନିଜ ସଂଗୀତାତ୍ମକ ବୈଶିଷ୍ଟ୍ୟପାଇଁ ଓଡ଼ିଆରେ ଏ ବୃତ୍ତ ସ୍ୱାଭାବିକ ଭାବେ ସ୍ୱତଃସ୍ଫୂର୍ତ୍ତ । ପରବର୍ତ୍ତୀ ସାହିତ୍ୟ ଏହି କବିମାନଙ୍କ ପାଖରେ ଚିରଋଣୀ । ରସକୂଲ୍ୟାର ନିମ୍ନୋକ୍ତ ପଂକ୍ତିଗୁଡ଼ିକ ଦ୍ରଷ୍ଟବ୍ୟ:

ଚାଲ ସହଚରି ! ଚାନ୍ଦ ଚହଟ ଚଉବର୍ଗଦାନୀ ନୀପ ନିକଟ
ଚଞ୍ଚଳାପତିଙ୍କ ପାଶେ ଜଣାଇ ଚାଣ୍ଡେ ଘେନିଆସ ପହଣ୍ଡ ମଣାଇ
ଚତୁରାନନ ଯା ଦାସ ଗୋ
ଚନ୍ଦ୍ରଶେଖର ପଲକ ନ ଟଳଇ ଚାହିଁ ଚକ୍ରଧର ବେଶ ଗୋ ।

କିଛି ସମାଲୋଚକ ଏ ମତ ପୋଷଣ କରନ୍ତି ଯେ, ଚୈତନ୍ୟଦେବଙ୍କର ଆଗମନ ପୂର୍ବରୁ ରାଧାକୃଷ୍ଣଙ୍କ ପ୍ରେମର କବିତା ଓଡ଼ିଆରେ ଲେଖାଯାଇ ନ ଥିଲା । କିନ୍ତୁ କବି ଦାମୋଦରଙ୍କ ଚଉତିଶା ଏହି ତଥ୍ୟକୁ ଭୁଲ ପ୍ରମାଣିତ କରିଛି ।

**ନୀଳାମ୍ବର ଦାସ:** ଦାମୋଦର ଦାସଙ୍କ ଭଳି ନୀଳାମ୍ବର ଦାସ ମଧ୍ୟ କପିଳେନ୍ଦ୍ରଦେବଙ୍କର ସମସାମୟିକ । ସେ 'ଜୈମିନି ଭାରତ, ପଦ୍ମପୁରାଣ, ରୁଦ୍ରସ୍ତୁତି, ତଥା ଦେଉଳତୋଳା ରଚନା କରିଥିଲେ । 'ଜୈମିନି ଭାରତ ଏବଂ ପଦ୍ମପୁରାଣ'ରେ କେତେଗୁଡ଼ିଏ ଉପାଖ୍ୟାନକୁ ନିଜ କଳ୍ପନାର ରସରେ ଭରିଥିଲେ ଏବଂ କିଛି ଘଟଣାକୁ ଉତ୍କଳର ପରମ୍ପରାରୁ ଗ୍ରହଣ କରିଥିଲେ । ତାଙ୍କ କାବ୍ୟ କବିତାର ଭାଷା ସରଳ, ତରଳ ଏବଂ ସାବଲୀଳ । ସେ କେବଳ ଶ୍ରୀକୃଷ୍ଣଙ୍କର ହିଁ ଲୀଳାଗାନ କରିଛନ୍ତି । ତାଙ୍କ ରଚନାରେ ଶ୍ରୀରାଧାକୃଷ୍ଣଙ୍କର ଯୁଗଳ ରୂପର ରସମାଧୁରୀର ବର୍ଣ୍ଣନା ଦେଖିବାକୁ ମିଳେ ।

ବଂକିମ ଚାହାଣି ତା'ର ଅଂଜନ ନୟନ
ଦୁଇ ପାଖ ଜନେ ଦେଖି ହୋଇବେ ଉଛନ ।
ରସାଣିଲା ତୀକ୍ଷ୍ଣ ଶର ଅଟଇ ସେ ପୁଣି
ଯାହାକୁ ବିନ୍ଧଇ ସେହି ଲୋଟଇ ଧରଣୀ । (ପଦ୍ମପୁରାଣ)

**ଚୈତନ୍ୟ ଦାସ:** ଚୈତନ୍ୟ ଦାସ ବୌଦ୍ଧଧର୍ମର ମହାଯାନ ଶାଖାଦ୍ୱାରା ପ୍ରଭାବିତ ବୈଷ୍ଣବ ଅଟନ୍ତି । ତାଙ୍କଦ୍ୱାରା ରଚିତ 'ବିଷ୍ଣୁଗର୍ଭପୁରାଣ' ତଥା 'ନିର୍ଗୁଣ ମହାତ୍ମ୍ୟ' ନାମକ ଦୁଇଟି ପୁସ୍ତକର ଉଦ୍ଭାବନ କରାଯାଇସାରିଲାଣି । ଉତ୍କଳରେ ବହୁକାଳ ପର୍ଯ୍ୟନ୍ତ ମହାଜନ ମତର ପ୍ରାବଲ୍ୟ ଥିଲା । କିନ୍ତୁ ଏହି ମତକୁ ଆଧାର କରି ସାହିତ୍ୟଗ୍ରନ୍ଥ ଏଯାବତ ମିଳି ପାରିନାହିଁ । ଏହି ଦୃଷ୍ଟିରୁ 'ବିଷ୍ଣୁଗର୍ଭପୁରାଣ' ଆମକୁ ଅନେକ ସଂକେତ ଦିଏ । ତେଣୁ କହିବା ବାହୁଲ୍ୟ ଯେ, ଗ୍ରନ୍ଥଟିର ଉପାଦେୟତା କେତେ ଅଧିକ । ବ୍ରାହ୍ମଣ୍ୟଧର୍ମର ଆଘାତରେ ଯେତେବେଳେ ବୌଦ୍ଧଧର୍ମର ଅସ୍ତିତ୍ୱ ଲୋପ ପାଇବାକୁ ବସିଲା,

ସେତେବେଳେ ମହାଯାନ ପନ୍ଥାର ଆବିର୍ଭାବ ହେଲା । 'ବିଷ୍ଣୁଗର୍ଭପୁରାଣ'ରେ ଲିଖିତ ସୃଷ୍ଟିତତ୍ତ୍ୱ ମହାଯାନି ସୃଷ୍ଟିତତ୍ତ୍ୱର ଅନୁରୂପ ।

'ବିଷ୍ଣୁଗର୍ଭପୁରାଣ'ରେ ଉଲ୍ଲେଖ ଅଛି ଯେ, ଅଲେଖରୁ ସମ୍ପୂର୍ଣ୍ଣ ସୃଷ୍ଟି ନିଃସୃତ ହୋଇଛି । ଅଲେଖର ରୂପ, ବର୍ଣ୍ଣ, ଚିହ୍ନ କିଛି ନାହିଁ । ସେ ନିର୍ଗୁଣ ଓ ନିରାକାର । ଅଲେଖ ଶୂନ୍ୟ ସହ ମିଶି ମହାଶୂନ୍ୟରେ ନିବାସ କରନ୍ତି । ସୃଷ୍ଟିକର୍ତ୍ତାଙ୍କ ଇଚ୍ଛା ଅନୁସାରେ ଅଲେଖ ମହାବିଷ୍ଣୁ ରୂପେ ଆବିର୍ଭୂତ ହୋଇ ନିଜ ଗର୍ଭରେ କୋଟିବ୍ରହ୍ମଣ୍ଡର ସର୍ଜନ କରନ୍ତି । ଅତଏବ ତା'ର ଗର୍ଭକୁ ବିଷ୍ଣୁଗର୍ଭ ବୋଲି କୁହାଯାଏ । ବିଷ୍ଣୁଗର୍ଭପୁରାଣରେ ସନକ ବକ୍ତା ତଥା ସୌନକ ଶ୍ରୋତା । ଅଲେଖ ଉତ୍ତର, ଦକ୍ଷିଣ ଆଦି ଚାରିଦିଗ ଏବଂ ଉପର ଓ ତଳ ପାଇଁ ବିଶିଷ୍ଟ ରଙ୍ଗର ଛଅଟି ବିଷ୍ଣୁ ଏବଂ ତାଙ୍କ ପାଇଁ କେବଳ ଚାରିଟି ବ୍ରହ୍ମାଙ୍କର ସର୍ଜନା କରିଥିଲେ । ଚୈତନ୍ୟ ଦାସ ନିର୍ଗୁଣ ଓ ନିରାକାରର ଉପାସକ ହେଲେ ମଧ୍ୟ ସଗୁଣ ରୂପର ଉପାସନାକୁ ସ୍ୱୀକାର କରିଛନ୍ତି । ତାଙ୍କ ମତାନୁସାରେ— ଜୀବାତ୍ମାର ବନ୍ଧନ ମାୟା ଓ କାଳଦ୍ୱାରା ସଂଗଠିତ ହୁଏ । ଯୋଗ ସାଧନାଦ୍ୱାରା ଅଲେଖର ସ୍ୱରୂପ ଦର୍ଶନ ହୋଇଗଲେ, ଜୀବାତ୍ମା ମୁକ୍ତି ଲାଭକରେ ଓ ଯୋଗ ସାଧନାପାଇଁ ମନୁଷ୍ୟ ଶରୀରରେ ଷଡଚକ୍ରର ସାଧନ ଏକାନ୍ତ ଜରୁରୀ ।

**ଅଲେଖର ସଗୁଣ ପ୍ରକାଶ:**

ଅଲେଖ ପୁରୁଷ ଇଏ ଅଟଇ ମହାଶୂନ୍ୟ
ଆକାର ନାହିଁ ଅଣାକାର ତାହାର ପରମାଣ ।
ତେଣୁକରି ଅଲେଖ ମନରେ ବିଚାରିଲେ
ଆକାର ସ୍ୱରୂପ ତ ନୋହିଲା ମୋର ତୁଲେ ।
ଆକାର ସ୍ୱରୂପମାନ ହୋଇବ ଯେଉଁ ରୂପେ
ସେହି ବିଧିମାନ ମୁଁ କରିବି ଯଥା କଳ୍ପେ ।
ଏତେ ବୋଲି ଅଲେଖ ମାୟାକୁ ଜାତ କଲା
ସେ ମାୟା ଜାତ ହୋଇ କଳ୍ପଲତା ଧଇଲା ।
ପ୍ରଥମେ ଆକାରକ ଯେ ଧଇଲେ ନିରାକାର ।
ନିରାକାର ତହୁଁ ଆକାର ଧଇଲା ବେଦବର ।
ବ୍ରହ୍ମାଙ୍କର ତହୁଁ ଯେ ଆକାର ସୃଷ୍ଟିମାନେ
ତହୁଂ ଆକାର ରୂପେ ହୋଇଲେ ଲୋକ ରକ୍ଷାପାଳ ଗଣେ ।
ଏମନ୍ତ ଭାବେ ଅରୂପ ରୂପ ପ୍ରକାଶିଲା
ସେ ରୂପରେ ଆସି ଅଲେଖ ଗୁପତେ ଲୀଳାକଲା ।

**ବିଷ୍ଣୁଗର୍ଭ:**

ରଖରଖ ବୋଲନ୍ତେ ଏକ ଜ୍ୟୋତି ପ୍ରଭାମଣ୍ଡଳ
ପ୍ରଳୟ ଜଳରେ ଆସି ହୋଇଲା ମତେ ସ୍ଥଳ ।
ଯେଉଂ ରୂପେ କୈବର୍ତ୍ତ ଜଳରେ ମୀନ ଧରେ

ସେ ଜ୍ୟୋତିପ୍ରଭା କଲା ମୋତେ ସେହି ପରକାରେ ।
ସେ ଜ୍ୟୋତି ପ୍ରଭା ହେଲା ଯେସନେ ମହାଜାଲ
ଛାଣିକରି ମୋତେ ନେଇ ଲାଗାଇଲା କୂଳ ।
ଦେଖି ଆଚମ୍ବିତ ଯେ-ନୋଇଲି ମନର
ମୋତେ ଲାଗିଲା ଯେସନ ସ୍ୱପ୍ନର ଆକାର ।
ସ୍ୱପ୍ନେ ଦେଖି ଯେହ୍ନେ ଅଦଭୁତ କର୍ମମାନ
ଚେତି ବସିଲେ ଯେସନ ନୁହଇ ପରମାଣ ।

ଚୈତନ୍ୟ ଦାସଙ୍କର ମତାନୁସାରେ, ବିଷ୍ଣୁଗର୍ଭରେ ଲୀନ ହେବାର ଅର୍ଥ, କାଳ ଓ ମାୟାର ପ୍ରଭାବରୁ ମୁକ୍ତିଲାଭ କରିବା । ପରବର୍ତ୍ତୀ ଯୁଗରେ ମହିମାଗୋସାଇଁ ଅଲେଖତତ୍ତ୍ୱକୁ ଗ୍ରହଣକରି ମହିମାଧର୍ମର ପ୍ରଚାର କଲେ । ତାଙ୍କ ପରବର୍ତ୍ତୀ ମହିମା ଧର୍ମାବଲମ୍ବୀ ଚୈତନ୍ୟଦାସଙ୍କ ସୃଷ୍ଟିତତ୍ତ୍ୱର ବିଚାରଧାରାକୁ ଗ୍ରହଣ ନ କରି, ହିନ୍ଦୁପୁରାଣ ସୃଷ୍ଟିତତ୍ତ୍ୱକୁ ବିଶେଷ ଗୁରୁତ୍ୱ ଦେଇଥିଲେ । ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଯେ କ୍ରମଶଃ ସମୟ ପ୍ରଭାବରେ ଅଲେଖପନ୍ଥୀ ହିନ୍ଦୁପୁରାଣଶ୍ରୟୀ ହୋଇଗଲେ ।

ଚୈତନ୍ୟ ଦାସଙ୍କ ପ୍ରଣୀତ 'ନିର୍ଗୁଣ ମହାତ୍ମ୍ୟ' ତାଙ୍କର ଧର୍ମମତ ଏବଂ ପ୍ରତିଭା- ଦୁଇଟିର ପରିଚାୟକ । ଏହି ଗ୍ରନ୍ଥରେ ସେ ଦୃଢ ମତ ପୋଷଣ କରି କହିଛନ୍ତି ଯେ, ବୁଦ୍ଧ ହିଁ ଅଲେଖ(ପରମବ୍ରହ୍ମ)ର ଅବତାର ଅଟନ୍ତି । ଅନ୍ୟ ଅବତାରମାନେ ନିଜ କୃତ୍ୟପାଇଁ ପ୍ରାୟଶ୍ଚିତ କରିଛନ୍ତି । କିନ୍ତୁ ବୁଦ୍ଧ ନିତ୍ୟ, ଶୁଦ୍ଧ ଓ ପୂର୍ଣ୍ଣ ଥିଲେ । ବିଷ୍ଣୁଗର୍ଭପୁରାଣ ଏବଂ ନିର୍ଗୁଣମହାତ୍ମ୍ୟ କୁ ପାଠକଲେ ସ୍ପଷ୍ଟ ଜଣାପଡ଼େ ଯେ, ମହାଯାନ ଧର୍ମମତ ଓ ବୈଷ୍ଣବଧର୍ମ ମତରେ ସମନ୍ୱୟ ସ୍ଥାପିତ କରିବାପାଇଁ ସାଧକ ଚୈତନ୍ୟ ଦାସ ନିଜ ଲେଖନୀ ଚଳାଇଥିଲେ । ବୋଧହୁଏ, ତାଙ୍କ ପୂର୍ବରୁ ବୌଦ୍ଧଧର୍ମାବଲମ୍ବୀ ଓ ପରେ ହିନ୍ଦୁ ବୈଷ୍ଣବଧର୍ମ ପ୍ରତି ଆକୃଷ୍ଟ ହେଉଥିବା ଲୋକମାନେ ଚୈତନ୍ୟ ଦାସଙ୍କଦ୍ୱାରା ପ୍ରତିପାଦିତ ତତ୍ତ୍ୱର ଅନୁସରଣ କରି ନିଜ ଧର୍ମଧାରଣାକୁ ନିୟନ୍ତ୍ରିତ କରୁଥିଲେ । ସେମାନଙ୍କପାଇଁ ଏହିଭଳି ଗୋଟିଏ ଗ୍ରନ୍ଥର ଆବଶ୍ୟକତା ରହିଥିଲା । ଆଜି ମଧ୍ୟ ନିରାକାରବାଦୀ ମହିମାଧର୍ମୀ ଏହି ଗ୍ରନ୍ଥଦ୍ୱୟକୁ ଆଦର କରନ୍ତି । ଓଡ଼ିଆ ସାହିତ୍ୟର ଇତିହାସ ଉତ୍କଳର ଭିନ୍ନଭିନ୍ନ ଯୁଗରେ ପ୍ରତିଷ୍ଠିତ ଭିନ୍ନଭିନ୍ନ ଧର୍ମର ଇତିହାସ ଅଟେ । 'ବୌଦ୍ଧଗାନ ଦୋହା', ବିଷ୍ଣୁଗର୍ଭ ପୁରାଣ ଓ ନିର୍ଗୁଣମହାତ୍ମ୍ୟ ଉତ୍କଳରେ ବୌଦ୍ଧଧର୍ମର ଭିନ୍ନଭିନ୍ନ ଅବସ୍ଥାର ପରିଚାୟକ ।

ନିର୍ଗୁଣମହାତ୍ମ୍ୟର ନିମ୍ନଲିଖିତ ପଂକ୍ତିଗୁଡ଼ିକୁ ଆମେ ଦୃଷ୍ଟାନ୍ତସ୍ୱରୂପ ଦେଖିପାରିବା ।

**ଜ୍ଞାନ ଓ କର୍ମ:**

କାଷ୍ଠ ଭିତରେ ଅଗ୍ନିଥାଇ । କାଷ୍ଠକୁ ନ ପାରଇ ଦହି ।।
ମନ୍ଥିଲେ କରି ବାହୁବଳ । ତକ୍ଷଣ ଜନ୍ମଇ ଅନଳ ।।
ଜନ୍ମେଣ ଧରେ ତେଜ ଭସ୍ମ । ଲକ୍ଷଣେ କାଷ୍ଠ କରେ ଭସ୍ମ ।।
ସେହି ପ୍ରକାରେ ଦେବହରି । ଅଗ୍ନିର ସ୍ୱରୂପେ ଭୂତେ ପୂରି ।।

ଜ୍ଞାନ ମନ୍ଥନ କଲେ ନିତ୍ୟ । ପ୍ରକାଶ ହୁଅନ୍ତି ପଞ୍ଚଭୂତେ ।।
ତେବେ ସେ ପାପକୁ ନାଶଇ। ଜୀବକୁ ଅଭୟ କରାଇ ।।

**କର୍ମକାଣ୍ଡର ନିନ୍ଦା:**

କର୍ମ ଦେଖାଇ ବେଦ କହେ । କର୍ମପ୍ରାଣୀଙ୍କ ମନ ମୋହେ।।
କହୁଛି ଜୀବ ମୁକ୍ତି ଖୋଜି । ଜୀବ କର୍ମ ନ ପାରେ ବୁଝି ।।
ଜୀବ ପରମ କର୍ମ କରେ । ସେ କର୍ମ ଫଳ କ୍ଷରେ ବଳେ ।।
ତରିବା ଲାଭେ ଥାଇ ଆସେ। ବାହୁଡ଼ି ହୁଅଇ ନିରାଶେ ।।

**କବି ପରିଚୟ:**

ଶୂଦ୍ର କୁଳେ ମୋ ଅବତାର । ଜାତି ମୋହର ମାଳାକାର ।।
ଯେ ମୋତେ ଦେଲା ଜନ୍ମ କର୍ମ । କହିବି ମାତା ପିତା ନାମ ।।
ଦାଦୀଙ୍କ ନାମ ଧର୍ମୋତ୍ତର । ପିତାଙ୍କ ନାମ ବୁଦ୍ଧେଶ୍ୱର ।।
ମାତାଙ୍କ ନାମ ମେଘାବତୀ । ସେ ମୋତେ ଜନ୍ମ କଲେ କ୍ଷିତି ।।
ଗୁରୁଙ୍କ ନାମ ଧ୍ୟାନଦାସ । ସେ ଦେଲେ ଜ୍ଞାନ ଉପଦେଶ ।।

ବୀରସିଂହ: ବୀରସିଂହ ସିଦ୍ଧ ବୌଦ୍ଧସନ୍ନ୍ୟାସୀ(ନାଗାନ୍ତି ବୌଦ୍ଧ) ଥିଲେ । ତାଙ୍କର ଆଶ୍ରମ ପୁରୀ ଜିଲ୍ଲାର ପ୍ରାଚୀ ନଦୀ କୂଳରେ ଥିଲା । ସେ ତାମିଲ ଦେଶର ନିବାସୀ ଥିଲେ ଓ ରସାୟନ ବିଦ୍ୟାରେ ନିପୁଣ ଥିଲେ ।

ପଞ୍ଚଦଶ ଶତାବ୍ଦୀରେ କବି ଅଚ୍ୟୁତାନନ୍ଦ ଦାସ ସ୍ୱରଚିତ 'ଶୂନ୍ୟ ସଂହିତା'ରେ ଲେଖିଛନ୍ତି ଯେ, ବୀରସିଂହ, ଲୋହିଦାସ ଏବଂ ବାଳିଙ୍ଗାଦାସ ଆଦି ବୌଦ୍ଧଯୋଗୀ ପ୍ରାଚୀନଦୀ କୂଳରେ ନିଜନିଜର ଆଶ୍ରମ କରି ଯୋଗାଭ୍ୟାସରେ ନିମଗ୍ନ ରହୁଥିଲେ । ବୀରସିଂହଦ୍ୱାରା ଓଡ଼ିଆ ଭାଷାରେ ଲିଖିତ ଗୋଟିଏ 'ଚଉତିଶା' ପ୍ରାପ୍ତ ହୋଇଛି । ଏହି ଚଉତିଶାଟି ରହସ୍ୟବାଦରେ ପରିପୂର୍ଣ୍ଣ ।

ବାଳିଙ୍ଗାଦାସ: ବାଳିଙ୍ଗି ଦାସ ମଧ୍ୟ ଜଣେ ସିଦ୍ଧ ବୌଦ୍ଧଯୋଗୀ ଥିଲେ । ତାଙ୍କଦ୍ୱାରା ରଚିତ 'ଆଗତଭବିଷ୍ୟ' ପୁସ୍ତକଟି ବେଶ୍ ପ୍ରସିଦ୍ଧି ଲାଭ କରିଥିଲା । ଏହି ପୁସ୍ତକଟିରେ ସେ ରହସ୍ୟବାଦୀ ଢଙ୍ଗରେ ଅନେକ ଭବିଷ୍ୟବାଣୀ କରିଛନ୍ତି । ଏହାର ଭାଷା ସରଳ ଏବଂ ବୋଧଗମ୍ୟ ।

**ପଞ୍ଚସଖା ବା ପଞ୍ଚ ମହାପୁରୁଷ:** ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ - ପଞ୍ଚସଖା ମହାପୁରୁଷ ନାମରେ ପ୍ରସିଦ୍ଧ । ଉତ୍କଳରେ ପ୍ରତାପରୁଦ୍ରଦେବଙ୍କ ରାଜ୍ୟକାଳରେ ବୈଷ୍ଣବଧର୍ମର ଅଭ୍ୟୁଦୟ ଘଟିଥିଲା । ପ୍ରତାପରୁଦ୍ରଦେବ ସୂର୍ଯ୍ୟବଂଶୀ ରାଜା ଥିଲେ । ତାଙ୍କର ଶାସନ କାଳ ୧୫୧୫ -୧୫୪୦ ପର୍ଯ୍ୟନ୍ତ ଥିଲା । ତାଙ୍କ ଶାସନ କାଳରେ ଶ୍ରୀଚୈତନ୍ୟଦେବଙ୍କର ଉତ୍କଳଭୂମିକୁ ଶୁଭାଗମନ ହୋଇଥିଲା । ସେ ଉତ୍କଳଭୂମିରେ ପଚିଶ ବର୍ଷ ପର୍ଯ୍ୟନ୍ତ ବାସ କରିଥିଲେ । ସେ ଉତ୍କଳରେ ଶୁଦ୍ଧଭକ୍ତି ଧାରାର ପ୍ରଚାରକ ଥିଲେ । କୁହାଯାଏ ଯେ, ଉତ୍କଳରେ ଆରମ୍ଭରୁ ବୌଦ୍ଧଧର୍ମର ମହାଯାନ ଶାଖାର ପ୍ରଭାବ ଥିଲା ଏବଂ ଏହି ଧାରାଦ୍ୱାରା ପ୍ରଭାବିତ ହୋଇ

କବି ଚୈତନ୍ୟ ଦାସ 'ବିଷ୍ଣୁଗର୍ଭପୁରାଣ' ଓ 'ନିର୍ଗୁଣମହାତ୍ମ୍ୟ' ରଚନା କରିଥିଲେ । ବୌଦ୍ଧଧର୍ମର ବଜ୍ରଯାନ ଶାଖାର ପ୍ରଭାବ ମଧ୍ୟ ଉତ୍କଳରେ ଥିଲା । ସେଥିପାଇଁ ଶୁଦ୍ଧଭକ୍ତି ଧାରା ସହିତ ଯୋଗମିଶ୍ରିତ ଓ ଜ୍ଞାନମିଶ୍ରିତ ଭକ୍ତିଧାରା ମଧ୍ୟ ପ୍ରବାହିତ ହେଲା । ଗୋରଖ, ମଲ୍ଲିନାଥ, ବୀରସିଂହ ଓ ବାଳିଙ୍ଗା ଦାସ ପ୍ରଭୃତି ଏହି ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତିଧାରାଦ୍ୱାରା ପ୍ରଭାବିତ ହୋଇଥିଲେ । ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଏବଂ ଅନନ୍ତ ଦାସ- ପ୍ରତ୍ୟେକ ଜଣେ ଜଣେ ସିଦ୍ଧଯୋଗୀ ଏବଂ କବି ଥିଲେ । ସାଧନାପନ୍ଥା ଏବଂ ଗୁରୁମନ୍ତ୍ରରେ ଏମାନଙ୍କ ମଧ୍ୟରେ ସାମାନ୍ୟ ପ୍ରଭେଦ ଥିଲା, କିନ୍ତୁ ଏହି ପଞ୍ଚ ମହାପୁରୁଷ ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତିଧାରାର ସୁଦକ୍ଷ ପରିଚାଳକ ଥିଲେ ।

'ବୌଦ୍ଧଗାନ ଓ ଦୋହା' ଯୁଗରୁ ଆରମ୍ଭକରି ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳରେ ପ୍ରଚଳିତ ଜାତୀୟ ପରମ୍ପରାର ଅନୁଧ୍ୟାନ ଆମେ କିଞ୍ଚିତ ମାତ୍ରାରେ କଲୁ । ଏହି ଉତ୍କଳୀୟମାନେ ଶୁଦ୍ଧଭକ୍ତି ଧାରାର ଉପାସକ ନ ଥିଲେ । କିନ୍ତୁ ସେମାନେ ଏହାର ବିରୋଧ ମଧ୍ୟ କରୁନଥିଲେ । ଏମାନେ ଯୋଗନିଷ୍ଠ ସାଧକ ଥିଲେ । ଏହି କବିମାନଙ୍କର ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତି ସାଧନାରେ ଏତେ ସାମ୍ୟ ଥିଲା ଯେ, ସେମାନେ ଉତ୍କଳରେ ପଞ୍ଚଶାଖା (ଏକ ମହାବୃକ୍ଷର ପାଞ୍ଚଅଂଶ) ରୂପରେ ବିଖ୍ୟାତ ହେଲେ । ସେମାନଙ୍କର ମତ ଥିଲା— ଶୁଦ୍ଧଭକ୍ତିରେ ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତିର ସମାହାର ହେଲେ ଜୀବନ ପରମଗତିକୁ ପ୍ରାପ୍ତ ହୁଏ । ଏମାନେ ଶ୍ରୀଚୈତନ୍ୟଙ୍କୁ ଗୁରୁରୂପେ ଗ୍ରହଣ କରିଥିଲେ । ସେଥିପାଇଁ ଶ୍ରୀଚୈତନ୍ୟଦେବ ମଧ୍ୟ ଏହି ପଞ୍ଚସଖା କବିମାନଙ୍କର ସାଧନା ପଦ୍ଧତିକୁ ଖୋଲାଖୋଲି ଭାବେ ସ୍ୱୀକାର କରିଛନ୍ତି । ସେମାନେ ଚୈତନ୍ୟଦେବଙ୍କର ପଞ୍ଚସଖା ରୂପେ ବିଖ୍ୟାତ ହେଲେ । ଏହି ପଞ୍ଚସଖାମାନଙ୍କର ଧର୍ମଧାରାରେ ସେତେବେଳର ବ୍ରାହ୍ମଣମଣ୍ଡଳୀ ଅସହିଷ୍ଣୁ ହୋଇପଡ଼ିଥିଲେ । ସେମାନେ ରାଜାଙ୍କ ପାଖକୁ ଯାଇ ଏମାନଙ୍କର ଯୋଗମିଶ୍ରିତ ଏବଂ ଜ୍ଞାନମିଶ୍ରିତ ଭକ୍ତିର ତୀବ୍ର ନିନ୍ଦା କରିଥିଲେ ଏବଂ ପଞ୍ଚସଖାମାନେ ଯେଉଁ ସିଦ୍ଧିଲାଭ କଥା କହୁଥିଲେ, ତା' ଉପରେ ମଧ୍ୟ ସନ୍ଦେହ ପ୍ରକାଶକରି ପ୍ରଶ୍ନଚିହ୍ନ ଲଗାଇଥିଲେ । ସେଥିପାଇଁ ଏହି ପଞ୍ଚସଖାମାନଙ୍କୁ କଠୋର ପରୀକ୍ଷାରେ ସମ୍ମୁଖୀନ ହେବାକୁ ପଡ଼ିଥିଲା । ରାଜା ଏମାନଙ୍କର ବାରମ୍ବାର ପରୀକ୍ଷା ନେଇଥିଲେ ଏବଂ ପରିଶେଷରେ ସେମାନଙ୍କର ଭକ୍ତିଧାରାରେ କୌଣସି ପ୍ରକାରର କଳଙ୍କ ନାହିଁ ବୋଲି କହିଥିଲେ । କେବଳ ଏତିକି ନୁହେଁ, ରାଜା ଏମାନଙ୍କୁ ନିଜର ଗୁରୁ ଭଳି ସମ୍ମାନ ଦେଲେ । ଏହି ପଞ୍ଚସଖା ସମୟରୁ ଆଜି ପର୍ଯ୍ୟନ୍ତ ଉତ୍କଳରେ ଶୁଦ୍ଧଭକ୍ତି ସହିତ ଯୋଗ ବା ଜ୍ଞାନମିଶ୍ରିତଭକ୍ତି ଅଖଣ୍ଡଧାରାରେ ପ୍ରବାହିତ ହେଉଅଛି । ଉତ୍କଳର ବୈଷ୍ଣବଧର୍ମାବଲମ୍ବୀ ଶୁଦ୍ଧଭକ୍ତି ଓ ଯୋଗ –ଜ୍ଞାନ-ମିଶ୍ରିତ ଭକ୍ତି, ଉଭୟ ଧାରାରେ ବିଶ୍ୱାସ କରିଛନ୍ତି । ଏହାର ପ୍ରଭାବରେ ବ୍ରିଟିସଯୁଗ ପୂର୍ବରୁ ଓଡ଼ିଶାରେ ଧାର୍ମିକ ସାହିତ୍ୟ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ପଞ୍ଚସାଖା ବା ପଞ୍ଚ ମହାପୁରୁଷ ଏ ସମୟର ପ୍ରତିଭାଶାଳୀ କବି ଥିଲେ । ସେମାନେ ନିଜ ଧର୍ମମତର ସ୍ଥାପନା ନିମନ୍ତେ ଅନେକ

ପ୍ରଭାବଶାଳୀ ସାହିତ୍ୟର ସର୍ଜନା କରିଥିଲେ । ଉତ୍କଳର ଜାତୀୟ ଜୀବନ ଉପରେ ପ୍ରଥମେ ଜୈନଧର୍ମ ଓ ତା'ପରେ ମହାଯାନ ଓ ବଜ୍ରଯାନର ପ୍ରଭାବ ପଡ଼ିଥିଲା । ଏହି ବିଷୟକୁ ମହାପୁରୁଷ ଅଚ୍ୟୁତାନନ୍ଦ ଦାସ ମଧ୍ୟ ତାଙ୍କ ରଚନାର ବିଭିନ୍ନ ସ୍ଥାନରେ ଉଲ୍ଲେଖ କରିଛନ୍ତି । ପଞ୍ଚସଖା ବଜ୍ରଯାନ ଧାରାର ପ୍ରବୃତ୍ତିମାର୍ଗରୁ ପ୍ରଭାବ ଗ୍ରହଣ ନ କରି ତା'ର ନିବୃତ୍ତିମାର୍ଗ ପ୍ରତି ଆକୃଷ୍ଟ ହୋଇଥିଲେ । ଏ ପଞ୍ଚ ମହାପୁରୁଷଙ୍କର କୌଣସି କୃତିରେ ସ୍ୱେଚ୍ଛାଚାରର ସମର୍ଥନ କରାଯାଇନାହିଁ । ଇନ୍ଦ୍ରିୟଦମନ ହିଁ ସେମାନଙ୍କର ମୂଳ ଲକ୍ଷ୍ୟ ଥିଲା ।

ଏହି ପରିପ୍ରେକ୍ଷୀରେ ଉଲ୍ଲେଖ କରାଯାଇପାରେ ଯେ, ଶ୍ରୀଚୈତନ୍ୟ ଏହି ପଞ୍ଚସଖା କବିଙ୍କର ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତିଧାରାକୁ ସ୍ୱୀକାର କରିଥିଲେ । ଶ୍ରୀଚୈତନ୍ୟ ସେହି ସମୟରେ ଅନ୍ୟତମ ମହାପୁରୁଷ ଜଗନ୍ନାଥ ଦାସଙ୍କୁ ମଧ୍ୟ ଅତ୍ୟନ୍ତ ଉଚ୍ଚ ସ୍ଥାନରେ ରଖିଥିଲେ । ସେଥିପାଇଁ ତାଙ୍କର ବଂଶଜମାନେ ତାଙ୍କର ବିରୋଧ କରିଥିଲେ ଏବଂ ପ୍ରତିବାଦ ସ୍ୱରୂପ ସେମାନେ ପୁରୀଧାମ ତ୍ୟାଗକରି ବୃନ୍ଦାବନ ଚାଲିଯାଇଥିଲେ । ବୈଷ୍ଣବ ସମ୍ପ୍ରଦାୟର ସ୍ୱୀକୃତ ମହାମନ୍ତ୍ରକୁ ସେମାନେ ସ୍ୱୀକାର କରିଥିଲେ ।

ହରେ ରାମ ହରେ ରାମ ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।

କୁ ବଦଳାଇ

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

କରିଦେଲେ ।

କୃଷ୍ଣ ଦାସ କବିରାଜଙ୍କର 'ଚୈତନ୍ୟଚରିତାମୃତ', ବୃନ୍ଦାବନ ଦାସଙ୍କର 'ଚୈତନ୍ୟ ଭାଗବତ' ଏବଂ ଲୋଚନ ଦାସଙ୍କର 'ଚୈତନ୍ୟ ମଙ୍ଗଳ' ଆଦି ବଙ୍ଗୀୟ ଗ୍ରନ୍ଥ ଉପରେ ପ୍ରସିଦ୍ଧ ପଞ୍ଚସଖାମାନଙ୍କର ପ୍ରଭାବର ଉଲ୍ଲେଖ କରାଯାଇଛି । ତା'ର କାରଣଟି ସୁସ୍ପଷ୍ଟ ।

ପଞ୍ଚସଖାଙ୍କର ପରବର୍ତ୍ତୀ କବି ଦିବାକର ଦାସ ସ୍ୱରଚିତ କାବ୍ୟ 'ଜଗନ୍ନାଥଚରିତାମୃତ' ରେ ଶ୍ରୀଚୈତନ୍ୟଦେବ ଏବଂ ମହାପୁରୁଷ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ନିମ୍ନଲିଖିତ ପଙ୍କ୍ତିମାନ ଲେଖିଛନ୍ତି:

ବୈଷ୍ଣବ ବୃନ୍ଦ ଯେତେ ଥିଲେ । ଦେଖି ଏମନ୍ତ ବିଚାରିଲେ ।।
ଉତ୍କଳୀ ବ୍ରାହ୍ମଣ ସଂଗତେ । ଭାବ ବଢ଼ାଇଲେ ନିରତେ ।।
ଏହି ରାଜ୍ୟରେ ଏ ରହିବେ । ଉତ୍କଳୀ କର୍ମ ଆଚରିବେ ।।
ଏ ସଙ୍ଗ ଛଡ଼ାଇବା ଆମ୍ଭେ । ଏମନ୍ତ ବିଚାରି ଆରମ୍ଭେ ।।
ବୋଇଲେ ଉତ୍କଳୀ ବ୍ରାହ୍ମଣ । ଅଣ ଉପଦେଶି ଆପଣ ।।
ଏହାକୁ କର୍ମ କରିବାରେ । ନିଷେଧ ଅଛଇ ଶାସ୍ତ୍ରରେ ।।

X X X

ଅତିବଡ଼ି ବୋଲି ବୋଲନ୍ତେ । ବୈଷ୍ଣବ ଦୁଃଖ କଲେ ଚିତେ ।।
ଓଡ଼ିଆ ବ୍ରାହ୍ମଣ ଅଣାଇ । ବୋଇଲେ ଅତିବଡ଼ ଏହି ।।
ଆଜ ପର୍ଯ୍ୟନ୍ତ ସେବାକଲୁ । ସମସ୍ତେ ସାନପଦେ ଗଲୁ ।।
ଏହାଙ୍କ ସଙ୍ଗେ ଯେବେ ଥିବା । ଏହି କଥାସିନା ଶୁଣିବା ।।
ପୁରଷତ୍ତମେ ଯେତେ ଗତି । ସେ କଥା ଛାଡ଼ି ଅନ୍ୟରୀତି ।।
ହରେ ରାମ କୃଷ୍ଣ ଛାଡ଼ିଲେ । ହରେ ରାମ କୃଷ୍ଣ ଭାବିଲେ ।।
ଯୁଗଳ ଗାୟତ୍ରୀ ଛାଡ଼ିଲେ । କାମ ଗାୟତ୍ରୀ ଆଶ୍ରେ କଲେ ।।
ହରି ମନ୍ଦିର ତ୍ୟାଗ କଲେ । କବି ତିଳକ ଆରାଧିଲେ ।।
ଛାଡ଼ି ଜଗନ୍ନାଥ ମୂରତି । ମଦନ ମୋହନ ପୀରତି ।।
କଳପତରୁ ଆଶ୍ରେ ଛାଡ଼ି । କଦମ୍ବ ତଳେ ଥାନ୍ତି ପଡ଼ି।।

ଉପର୍ଯ୍ୟୁକ୍ତ ବିଷୟକୁ ଦୃଷ୍ଟିରେ ରଖି ଆମ୍ଭକୁ ପଞ୍ଚସଖା ସାହିତ୍ୟ ଏବଂ ତନ୍ମଧ୍ୟରେ ଥିବା ଧର୍ମାଭାବର ବିଚାର କରିବାକୁ ପଡ଼ିବ । କେବଳ ଉତ୍କଳରେ ପଞ୍ଚସଖା ଯୁଗର ଉଦୟ ହୋଇଥିଲା । ଏହିଁ ବିଷୟରେ କବୀର, ନାନକ, ସୁରଦାସ ଓ ତୁଳସୀ ଦାସଙ୍କର ପବିତ୍ର ଧାର୍ମିକ ସାହିତ୍ୟ ସ୍ମରଣଯୋଗ୍ୟ ଅଟେ ।

ବଳରାମ ଦାସ: ବଳରାମ ଦାସ ପଞ୍ଚସଖାମାନଙ୍କ ଭିତରେ ସର୍ବଜ୍ୟେଷ୍ଠ ଥିଲେ । ତାଙ୍କର ଜନ୍ମ ସନ୍ ୧୪୭୨ରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଏବଂ ମାତାଙ୍କ ନାମ ଜମ୍ବୁବତୀ । ସୋମନାଥ ଉତ୍କଳର ଗଜପତି ମହାରାଜାଙ୍କର ଅନ୍ୟତମ ମନ୍ତ୍ରୀ ଥିଲେ । ବଳରାମ ଦାସ ଯୋଗ ଓ ଜ୍ଞାନମିଶ୍ରିତ ଭକ୍ତିଦ୍ୱାରା ସାଧନାକରି ସିଦ୍ଧିଲାଭ କରିଥିଲେ । ଚୈତନ୍ୟ ଦେବଙ୍କର ଉତ୍କଳ ଆଗମନ ପୂର୍ବରୁ ବଳରାମ ଦାସଙ୍କୁ କିଛି କିଛି ଖ୍ୟାତି ମିଳି ସାରିଥିଲା । ଶ୍ରୀଚୈତନ୍ୟଙ୍କ ପୁରୀ ଆଗମନ ପରେ ସେ ଚୈତନ୍ୟଙ୍କ ନିର୍ଦ୍ଦେଶାନୁସାରେ ଜଗନ୍ନାଥ ଦାସଙ୍କୁ ଦୀକ୍ଷାପ୍ରଦାନ କରିଥିଲେ । ବଳରାମ ଦାସଙ୍କ ଭିତରେ ଭକ୍ତିର ବିହ୍ୱଳତା ଦେଖି ଶ୍ରୀଚୈତନ୍ୟ ତାଙ୍କୁ ମତ୍ତ ବଳରାମ ଦାସ ବୋଲି ଆଖ୍ୟା ଦେଇଥିଲେ । ଉତ୍କଳର, ଗଜପତି ପ୍ରତାପରୁଦ୍ର ଦେବଙ୍କର ରାଜଦରବାରରେ ତାଙ୍କୁ ନିଜ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ଅନେକ ସିଦ୍ଧି ବା ଅଲୌକିକ ଶକ୍ତିର ପ୍ରମାଣ ଦେବାକୁ ପଡ଼ିଥିଲା । ବଳରାମ ଅନେକ ଗ୍ରନ୍ଥ ଓ କବିତା ରଚନା କରିଥିଲେ । ଯଥା । 'ଜଗମୋହନ ରାମାୟଣ, ଶ୍ରୀମଦ୍‌ଭାଗବତ ଗୀତା, ବେଦାନ୍ତସାର, ବଟଅବକାଶ, ଭାବସମୁଦ୍ର, ଗୁପ୍ତଗୀତା, ବ୍ରହ୍ମାଣ୍ଡଭୂଗୋଳ, ବେଢ଼ାପରିକ୍ରମା, କମଳଲୋଚନ ଚଉତିଶା, କାନ୍ତକୋଇଲି' ଆଦି ।

ବଳରାମ ଦାସଙ୍କଦ୍ୱାରା ରଚିତ 'ଜଗମୋହନ ରାମାୟଣ' ଓଡ଼ିଶାର ଏକ ଲୋକପ୍ରିୟ କୃତି । ସାରଳା ମହାଭାରତ ଭଳି ଏହା ଦାଣ୍ଡିବୃତ୍ତରେ ଲେଖା ଯାଇଥିଲା । ଅର୍ଥାତ୍ ଗୋଟିଏ ପଦରେ ଦୁଇ ଦୁଇଟି ବାକ୍ୟ ଥାଇ ମଧ୍ୟ ସେମାନଙ୍କର ବର୍ଣ୍ଣସଂଖ୍ୟା ସମାନ ନ ଥିଲା । ପୂର୍ବରୁ କୁହାଯାଇଛି ଯେ, 'ବୌଦ୍ଧଗାନ ଓ ଦୋହା' ରଚନା ଠାରୁ

ଆଜିପର୍ଯ୍ୟନ୍ତ ଧର୍ମସାହିତ୍ୟ ରଚନା କଲାବେଳେ ଏହି ବୃତ୍ତର ପ୍ରୟୋଗ ହୋଇଥାଏ । ଅନୁମାନ ହୁଏ ଯେ, ସଂସ୍କୃତର 'ଦଣ୍ଡକାବୃତ୍ତ'ରୁ ଦାଣ୍ଡିବୃତ୍ତ ଶବ୍ଦର ନିର୍ମାଣ ହୋଇଅଛି ।

'ଜଗମୋହନ ରାମାୟଣ' ସଂସ୍କୃତର 'ବାଲ୍ମୀକି ରାମାୟଣ'ର ଅନୁବାଦ ନୁହେଁ । ଏହି ଗ୍ରନ୍ଥଟି ହିନ୍ଦୀର ତୁଳସୀ ରାମାୟଣ ଏବଂ କମ୍ବ ରାମାୟଣ ଭଳି ଏକ ସ୍ୱତନ୍ତ୍ର ଗ୍ରନ୍ଥ । ଅବଶ୍ୟ ମୂଳ ବିଷୟବସ୍ତୁଟି 'ବାଲ୍ମୀକି ରାମାୟଣ'ରୁ ଗୃହୀତ । କିନ୍ତୁ ତା'ର ଅନେକ ଘଟଣାକୁ କବି ନିଜର କଳ୍ପନାଦ୍ୱାରା ପ୍ରସାରିତ କରିଛନ୍ତି । ଜଗମୋହନ ରାମାୟଣ ଉତ୍କଳୀୟ ଜୀବନଧାରା ସହିତ ଏଭଳି ଭାବରେ ଜଡ଼ିତ ଯେ, ମନେହୁଏ ସେ ଏହି କାବ୍ୟ ମାଧମରେ ଓଡ଼ିଆ ଜାତିର ହୃଦୟର କଥା ଲିପିବଦ୍ଧ କରିଯାଇଛନ୍ତି । ଓଡ଼ିଆ ସାହିତ୍ୟରେ ଏ ଗ୍ରନ୍ଥ ଅତ୍ୟନ୍ତ ମୂଲ୍ୟବାନ । ପରବର୍ତ୍ତୀ ଯୁଗରେ କୃଷ୍ଣମୋହନ ପଟ୍ଟନାୟକ ଆଦି ଅନେକ କବି ମୂଳ ରାମାୟଣର ଅନୁସରଣ କରି ରାମାୟଣ ରଚନା କରିଥିଲେ । କିନ୍ତୁ ଜଗମୋହନ ରାମାୟଣ ଭଳି କୌଣସି ରାମାୟଣ ଲୋକପ୍ରିୟ ହୋଇପାରିନାହିଁ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ବୈଦେହୀଶବିଳାସ' ମହାକାବ୍ୟର ଆରମ୍ଭରେ ବଳରାମ ଦାସଙ୍କୁ ଜନ ପରିଚିତ କୃପାସିଦ୍ଧ ଆଖ୍ୟା ଦେଇ ନିଜ ଭାବବ୍ୟକ୍ତ କରି କହିଛନ୍ତି ଯେ, ସେ ଜଗମୋହନ ରାମାୟଣର ଋଣୀ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ କୃପାରୁ ସିଦ୍ଧ ବଳରାମ ଦାସ ଗଜପତି ପ୍ରତାପରୁଦ୍ରଦେବଙ୍କଦ୍ୱାରା ପରମଗୁରୁ ରୂପେ ସମ୍ମାନିତ ହୋଇଥିଲେ । ସେ ମହାପୁରୁଷ ଜଗନ୍ନାଥ ଦାସଙ୍କର ମଧ୍ୟ ଗୁରୁ ଥିଲେ । ବଳରାମ ଦାସ ବିରଚିତ ଜଗମୋହନ ରାମାୟଣ, ସାରଳା ଦାସଙ୍କ ମହାଭାରତ ପରି ଓଡ଼ିଆ ଜାତିର ଏକ ଅମୂଲ୍ୟ ନିଧି । ଦୁଇଟିଯାକ ମହାକାବ୍ୟର ରଚୟିତା ଯୁଗଯୁଗ ଧରି ଓଡ଼ିଆ ଜାତିର ନମସ୍ୟ ହୋଇରହିବେ । କାରଣ ଭାରତର ଦୁଇଟି ପ୍ରସିଦ୍ଧ ମହାକାବ୍ୟ ଓଡ଼ିଶାରେ ରଚିତ ଓ ଓଡ଼ିଆ ଜାତିର ବୀରତ୍ୱ, ପରମ୍ପରା, ଧର୍ମଧାରଣା ଆଦିକୁ ସନ୍ନିବେଶ କରି ଉତ୍କଳୀୟ ଜାତୀୟ ଜୀବନକୁ ଦୃଢ ରୂପରେ ପ୍ରତିଷ୍ଠିତ କରିଛନ୍ତି । କହିବା ବାହୁଲ୍ୟ ଯେ, ୟୁରୋପୀୟ ଜୀବନରେ ଓଡ଼ଶୀ ଓ ଇଲିୟଡକୁ ଯେଉଁଭଳି ସମ୍ମାନ ଦିଆଯାଇଛି, ଠିକ୍ ସେଇଭଳି ଓଡ଼ିଆ ସମାଜରେ ସାରଳା ମହାଭାରତ ଓ ଦାଣ୍ଡିରାମାୟଣ ସଦାସର୍ବଦା ସମ୍ମାନ ଲାଭ କରୁଛନ୍ତି ।

ଉପରେ କୁହାଯାଇସାରିଛି ଯେ, ମୂଳ ସଂସ୍କୃତ ରାମାୟଣଠାରୁ ଜଗମୋହନରାମାୟଣ କିଛି ଅଂଶରେ ଭିନ୍ନ ଏବଂ ସ୍ୱତନ୍ତ୍ର । ପାର୍ବତୀ ଯେତେବେଳେ ମହାଦେବଙ୍କୁ ପାପକ୍ଷୟ ଏବଂ ରୋଗମୁକ୍ତିର କାରଣ ପଚାରିଲେ, ସେତେବେଳେ ସେ ତାଙ୍କ ସମ୍ମୁଖରେ ରାମନାମର ମହାତ୍ମ୍ୟ ବ୍ୟାଖ୍ୟା କରି ରାମଚରିତ ଶୁଣାଇଲେ । ଏହିପରି ସମ୍ପୂର୍ଣ୍ଣ ରାମାୟଣ 'ହରପାର୍ବତୀ ସମ୍ବାଦ' ରୂପରେ ଅଛି । କିନ୍ତୁ ମୂଳ ସଂସ୍କୃତ ରାମାୟଣର ଆରମ୍ଭ ଭିନ୍ନଭିନ୍ନ ପ୍ରକାରର । ଜଗମୋହନ ରାମାୟଣର କେତେ ପ୍ରସଙ୍ଗ ଯଥା, ଋଷ୍ୟଶୃଙ୍ଗ ଜନ୍ମ ଚରିତ, ଅଗସ୍ତ୍ୟ ଚରିତ, ଶିବଧନୁ ଭଙ୍ଗ ପାଇଁ ବାଣାସୁର ଆଗମନ ପ୍ରସଙ୍ଗ, ରାବଣ ତଥା ଇନ୍ଦ୍ରର ବିଫଳ ଚେଷ୍ଟା, ପର୍ଶୁରାମ ଚରିତ ଏବଂ ସହସ୍ରାର୍ଜ୍ଜୁନଙ୍କ ବିରୋଧରେ ତାଙ୍କର ଏକୋଇଶ ଥର ଅଭିଯାନ ଏବଂ ପରିଶେଷରେ ବିଷ୍ଣୁଙ୍କୁ ଆରାଧନା

କରି ସହସ୍ରାର୍ଜୁନ ବଧ ଆଦି ଜଗମୋହନ ରାମାୟଣର ନିଜସ୍ୱ । ଏହିଭଳି ଅନ୍ୟ ଅନେକ ପ୍ରସଙ୍ଗ ରହିଛି । କେବଳମାତ୍ର ଉଦାହରଣ ପାଇଁ ଏତିକି ଦିଆଗଲା । ତାମିଲ କବି କମ୍ବ ରଚିତ ରାମାୟଣ ଭଳି ବଳରାମ ଦାସ ମଧ ଅନେକ ଘଟଣାକୁ ସ୍ୱପ୍ରାନ୍ତରେ ଘଟିତ ବୋଲି କହିଛନ୍ତି । ସେ କହିଛନ୍ତି ଯେ, ମହାଦେବଙ୍କର ସ୍ଥାନ କୈଳାସ ପର୍ବତ ନୁହେଁ, ତାହାହିଁ ଉତ୍କଳର କପିଳାସ ପର୍ବତ । ରାବଣ ଉତ୍କଳର ବିରଜା କ୍ଷେତ୍ରରେ ତପସ୍ୟାକରି ମହାଦେବଙ୍କ ଠାରୁ ବରପ୍ରାପ୍ତ କରିଥିଲେ । ଶ୍ରୀରାମଙ୍କ ବାନର ସେନାପତିଙ୍କ ଜନ୍ମସ୍ଥାନ ଉତ୍କଳର କୋଣାର୍କ, ଧଉଳିଗିରି ଓ ପଞ୍ଚଧାରା ଆଦିର ନାମ ଉଲ୍ଲେଖ କରିଛନ୍ତି । ବଳରାମ ଦାସଙ୍କ ଓଡ଼ିଆ ଜାତି ଉପରେ ଏଭଳି ପ୍ରଭାବ ଥିଲା ଯେ, ତାଙ୍କଦ୍ୱାରା କୁହାଯାଉଥିବା କଥାକୁ ବେଦବାକ୍ୟ ବୋଲି ବିଚାର କରାଯାଉଥିଲା । ତାଙ୍କ ପରେ ମଧ ଅନେକ ରାମାୟଣ ରଚନା କରାଗଲା । କିନ୍ତୁ ସେଗୁଡ଼ିକ ଏତେ ଜନପ୍ରିୟ ହୋଇପାରିଲା ନାହିଁ । ବଳରାମ ଦାସଙ୍କ ପରବର୍ତ୍ତୀ କବି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଧନଞ୍ଜୟ ଭଞ୍ଜ, ମହାଦେବ ଦାସ ଓ ମାଗୁଣି ପଟ୍ଟନାୟକ ପ୍ରଭୃତି ରାମାୟଣଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ।

ଜଗମୋହନରାମାୟଣର ଭାଷା ଉତ୍କଳର ମାଟି, ପାଣିରେ ପରିପୁଷ୍ଟ ଜନଭାଷା ଅଟେ । ଏହା ସରଳ, ମଧୁର ଏବଂ ସର୍ବଜନବୋଧ । ଏହି ଗ୍ରନ୍ଥର ଭାଷାରେ ଆଧାତ୍ମିକଭାବ ବହନ କରିବାର କ୍ଷମତା ମଧ ରହିଛି । ଜଗମୋହନ ରାମାୟଣର ଭାଷା ଏବଂ ଭାବ— ଉଭୟ ଉତ୍କଳବାସୀଙ୍କର ଅତ୍ୟନ୍ତ ପ୍ରିୟ ।

ବଳରାମ ଦାସଙ୍କର ଅନ୍ୟ ରଚନାଗୁଡ଼ିକ ମଧରେ 'ଭାବସମୁଦ୍ର' ଅନ୍ୟତମ । ଏହା ଓଡ଼ିଆ ଭକ୍ତିସାହିତ୍ୟର ଅମୂଲ୍ୟ ନିଧି । ବଳରାମ ଦାସ 'ଶ୍ରୀଗୁଣ୍ଡିଚା ଉତ୍ସବ' ରେ ଭାବବିହ୍ୱଳ ହୋଇ ଅଶୌଚ ଶରୀରରେ ଜଗନ୍ନାଥଙ୍କର ରଥ ଉପରକୁ ଚଢିଯାଇଥିଲେ । ଏଥିରେ ଗଜପତି ମହାରାଜଙ୍କର ଅନୁଚରମାନେ କ୍ଷୁବ୍ଧହୋଇ ତାଙ୍କୁ ଧକ୍କାମାରି ସେଠାରୁ କାଢି ଦେଇଥିଲେ । ହଜାର ହଜାର ଲୋକଙ୍କ ସମ୍ମୁଖରେ ଅପମାନିତ ଏବଂ ବିତାଡ଼ିତ ହୋଇ ବଳରାମ ଦାସ ସମୁଦ୍ରକୂଳକୁ ଚାଲିଗଲେ । ସେଠାରେ ଗୋଟିଏ ରଥ ତିଆରିକରି ନିଜ ଯୋଗବଳରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତ୍ରିମୂର୍ତ୍ତିକୁ ସ୍ଥାପନା କଲେ । ଫଳରେ ଶ୍ରୀଗୁଣ୍ଡିଚା ଯାତ୍ରା ବନ୍ଦ ହୋଇଗଲା । ଗଜପତି ମହାରାଜ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପାଇ ବଳରାମ ଦାସଙ୍କୁ କ୍ଷମାଭିକ୍ଷା ମାଗିଥିଲେ । ତା'ପରେ ଯାଇ ରଥଟି ଗଡ଼ିଥିଲା । ଅପମାନ ତଥା ବ୍ୟଥିତ ହୃଦୟରେ ବଳରାମ ଜଗନ୍ନାଥଙ୍କୁ ଯେଉଁ ଆତୁର ନିବେଦନ କରିଥିଲେ, ତାହା ୭୪୮ ପଦ ବିଶିଷ୍ଟ 'ଭାବସମୁଦ୍ର' ନାମକ ଗ୍ରନ୍ଥ ରୂପରେ ପ୍ରକଟ ହୋଇଅଛି । ନିମ୍ନରେ ତା'ର କିଛି ପଦ ଉଦ୍ଧୃତ କରାଯାଇଛି ।

ତିନିପୁର ମଧେ ତୁହି ବିକାଉ
ସବୁରି ଦୁଃଖ ବେଦନା ହି ଫେଉ
ନାଥ ତୁ ସବୁରି ଅମୂଲ୍ୟ ଗଣ୍ଠି
କୋଟି ଯୁଗରେ ତୁ ନ ପଡୁ ଫିଟି, ହରି ହୋ...

ଭକ୍ତ ଜନଙ୍କର କଣ୍ଠର ହାର
ବଳିଆ ଦାସ ଚିତ୍ତେ ନିରନ୍ତର ।୩୫୩
ନୀଳ କନ୍ଦରେ ତୋ ପ୍ରସନ୍ନ ମୁଖ
ଦର୍ଶନେ ଖଣ୍ଡଇ ସକଳ ଦୁଃଖ
ନାଥ ମୁଁ ଆନ ନ ଜାଣଇ ତୋରେ
ତୁ ଏକା ଦୟା କରିଥିବୁ ମୋରେ, ହରି ହୋ...
ତୋ ପାଦପଦ୍ମ ନିତ୍ୟ ମୋ ଆଶ
ଏତେ ମାଗୁଛି ବଳରାମ ଦାସ, ହରି ହୋ... ।୩୫୪
ମୋହର ପାପ ସବୁ ଦୂର ଯାଉ
ତୋହରମଣି ଯେ ମୋ ତହିଁ ଥାଉ
ନାଥ ତୁ ଏକଥା ଆନ ନ କର
ତୋହର ବାନା ଶରଣ ପଞ୍ଜର, ହରିହୋ...
ବୌଦ୍ଧ କଳ୍‌କୀ ନାନା ରୂପ ହେଉ
ବଳରାମକୁ ପାଦରେ ଖଟାଉ, ହରି ହୋ... ।୩୫୫
ଏକା ପିଣ୍ଡରେ ସାତସିନ୍ଧୁଯାକ
ସାତତାଳ ଫୁଟେ ଏକା କାଣ୍ଡକ
ନାଥ ତୁ ସାମର୍ଥ୍ୟ ସବୁ ଠାବକୁ
କିସ କହିବି ମୁଁ ପ୍ରଭୁପଣକୁ, ହରିହୋ...
ଏକା କାଣ୍ଡକେ ଯେ ବାଳିକି ମାରୁ
ଦାସ ବଳିଆକୁ ରଖି ନ ପାରୁ, ହରି ହୋ... ।୩୫୬

ଏତଦ୍‌ବ୍ୟତୀତ 'ପଣସଚୋରି' ଏବଂ 'ବଟଅବକାଶ'ରୁ ଜ୍ଞାତହୁଏ ଯେ, ତାଙ୍କ ଉପରେ ଶ୍ରୀଜଗନ୍ନାଥଙ୍କର ପୂର୍ଣ୍ଣ ଅନୁଗ୍ରହ ଥିଲା । 'ବଟଅବକାଶ'ରୁ ସୁସ୍ପଷ୍ଟ ଯେ, ତାଙ୍କ ସମୟରେ ଓଡ଼ିଶାରେ ଶାକ୍ତଧର୍ମର ପ୍ରଭାବ ଥିଲା । ବଳରାମ ଦାସଦ୍ୱାରା ଲିଖିତ 'ଲକ୍ଷ୍ମୀପୁରାଣ' ଶକ୍ତିପୂଜାର ଦ୍ୟୋତକ । କମଳଲୋଚନ ଚଉତିଶା, କାନ୍ତକୋଇଲି, ବାରମାସୀ, ବେଢାପରିକ୍ରମା ଓ ବଉଳାଗାଈ ଗୀତ କୋମଳ ସଂଗୀତରେ ନିବଦ୍ଧ ହୋଇ ବିଶେଷ ଭାବରେ ଲୋକପ୍ରିୟ ଅଟନ୍ତି ।

ତାଙ୍କର ବ୍ରହ୍ମାଣ୍ଡଭୂଗୋଳ, ଗୁପ୍ତଗୀତା, ବ୍ରହ୍ମଗୀତା, ବେଦାନ୍ତସାର ଏବଂ ବିରାଟଗୀତା ଆଦି ଯୋଗତନ୍ତ୍ର ଏବଂ ବେଦାନ୍ତରେ ଭରା । ଏହାଛଡ଼ା ସେ ଶ୍ରୀମଦ୍‌ଭାଗବତଗୀତାକୁ ଓଡ଼ିଆରେ ଅନୁବାଦ କରିଥିଲେ । ଏହିପରି ଅନେକ ଅମୂଲ୍ୟ ଗ୍ରନ୍ଥ ରଚୟିତା, ଭକ୍ତି ରାଜ୍ୟର କୃପାର୍ଣ୍ଣବା ବଳରାମ ଦାସ ଅତ୍ୟନ୍ତ ଉଚ୍ଚସ୍ଥାନର ଅଧିକାରୀ ।

**ମହାପୁରୁଷ ଜଗନ୍ନାଥ ଦାସ:** ଜଗନ୍ନାଥ ଦାସ ମଧ୍ୟ ତାଙ୍କ ଦୀକ୍ଷାଗୁରୁ ବଳରାମ ଦାସଙ୍କ ପରି ପରମସିଦ୍ଧ ମହାଯୋଗୀ ଥିଲେ । ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ଅନେକ ।

ଜଗନ୍ନାଥ ଦାସଙ୍କର ଜନ୍ମ ସନ ୧୪୯୦ । ତାଙ୍କ ବାପାଙ୍କ ନାମ ଭଗବାନ ଦାସ ଏବଂ ମାତାଙ୍କ ନାମ ପଦ୍ମାବତୀ, ଆଜନ୍ମ ବ୍ରହ୍ମଚାରୀ ଏବଂ ସଂସ୍କୃତ ଭାଷାର ପରମ ପଣ୍ଡିତ । ବହୁ ଲେଖକ ମତ ଦିଅନ୍ତି ଯେ, ଜଗନ୍ନାଥ ଦାସ ଏକାଧିକ ସଂସ୍କୃତ କାବ୍ୟର ପ୍ରଣେତା ମଧ୍ୟ ଥିଲେ । କିନ୍ତୁ ଆଜିଯାଏ ତାଙ୍କର ଗୋଟିଏ ହେଲେ ସଂସ୍କୃତ ଗ୍ରନ୍ଥ ପ୍ରକାଶିତ ହୋଇନାହିଁ । ସେ ୧୬ ବର୍ଷ ବୟସରେ ଘର ଛାଡ଼ିଲେ ଏବଂ ୧୮ ବର୍ଷ ବୟସରେ ଶ୍ରୀଚୈତନ୍ୟଦେବଙ୍କ ମଣ୍ଡଳିରେ ସମ୍ମିଳିତ ହେଲେ । ଏତେ ଛୋଟ ବୟସରେ ହିଁ ସେ ସିଦ୍ଧିଲାଭ କରିଥିଲେ । ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କ ଅଲୌକିକ ଗୁଣରେ ମୁଗ୍ଧହୋଇ ତାଙ୍କୁ ଅତିବଡ଼ି ଉପାଧି ପ୍ରଦାନ କରିଥିଲେ । ଉତ୍କଳରେ ମହାପୁରୁଷ ଜଗନ୍ନାଥ ଦାସ ଯେଉଁ ବୈଷ୍ଣବ ସମ୍ପ୍ରଦାୟ ପ୍ରତିଷ୍ଠା କରିଥିଲେ, ତାହା ଅତିବଡ଼ି ସମ୍ପ୍ରଦାୟ ନାମରେ ପରିଚିତ । ଜଗନ୍ନାଥ ଦାସ ୨୪ ବର୍ଷ ବୟସ ଯାଏଁ ଚୈତନ୍ୟଦେବଙ୍କ ସାଥିରେ ରହିଲେ ଏବଂ ପରେ ୬୦ ବର୍ଷ ପର୍ଯ୍ୟନ୍ତ ପୂର୍ଣ୍ଣ ଯୋଗନିଷ୍ଠ ସାଧନାରେ ମଗ୍ନହୋଇ ଲୋକୋତ୍ତର ସିଦ୍ଧିର ଅଧିକାରୀ ହେଲେ । ୬୦ ବର୍ଷ ବୟସରେ ସେ ଶରୀର ତ୍ୟାଗକଲେ । କୁହାଯାଏ କି, ତାଙ୍କ ଆତ୍ମା ଶ୍ରୀ ଜଗନ୍ନାଥଙ୍କ ବିଗ୍ରହରେ ଲୀନ ହୋଇଯାଇଥିଲା ।

ଜଗନ୍ନାଥ ବିରଚିତ ଗ୍ରନ୍ଥଗୁଡ଼ିକ ମଧ୍ୟରେ **ଭାଗବତ** ସର୍ବଶ୍ରେଷ୍ଠ । ଏହାଛଡ଼ା ସେ **ଦୀକ୍ଷା ସଂବାଦ, ଗୁପ୍ତଭାଗବତ, ଗଜସ୍ତୁତି, ଅର୍ଥକୋଇଲି, ତୁଳାଭିଣା, ପାଖଣ୍ଡଦଳନ, ବୋଲେହୁଁ, ମନଶିକ୍ଷା, ବ୍ରହ୍ମାଣ୍ଡଭୂଗୋଳ, ଭାଗବତସାର, ଗୀତାନାମ ଚନ୍ଦ୍ରିକା** ଆଦି ବହୁ ଛୋଟ ବଡ଼ ଗ୍ରନ୍ଥ ରଚନା କରିଥିଲେ । ଏହିସବୁ ଗ୍ରନ୍ଥ ଉତ୍କଳର ଜନପ୍ରିୟ ଗ୍ରନ୍ଥ ଭାବରେ ବିଚାର କରାଯାଏ ।

ମହାପୁରୁଷ ଜଗନ୍ନାଥ ଦାସ କୃତ ଓଡ଼ିଆ ଭାଗବତ ମୂଳ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ, ଭାଗବତ ପାଠକଙ୍କ ମନୋରଞ୍ଜନପାଇଁ ସେ ବିଷ୍ଣୁ, ପଦ୍ମ, ବ୍ରହ୍ମବୈବର୍ତ୍ତାଦି ପୁରାଣରୁ ବିବିଧ ଚରିତ୍ରଙ୍କୁ ନେଇ ମୂଳ ଭାଗବତରେ ସ୍ଥାନ ଦେଇଛନ୍ତି ଏବଂ କିଛି ଅଂଶ ଅନୁବାଦ ମଧ୍ୟ କରିଛନ୍ତି । ଜଣାଯାଏ ଯେ ଓଡ଼ିଆ ଭାଗବତ ସଂସ୍କୃତ ଭାଗବତର ଅନୁବାଦ ନୁହେଁ । ରଚନାକାର ଏହି ଗ୍ରନ୍ଥର ରଚନା ଏଭଳି ଭାବରେ କରିଛନ୍ତି ଯେ, ଏହା ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଅନେକ ଶାନ୍ତି ଓ ଆନନ୍ଦର ଭାବ ଉଦ୍ରେକ କରିଥାଏ । 'ଋଷିକୂଲ୍ୟା ଚଉତିଶା', ଯାହାର ରଚନା ସର୍ବପ୍ରଥମେ ଦାମୋଦର ଦାସ କରିଥିଲେ, ତାହା ଜଗନ୍ନାଥ ଦାସଙ୍କଦ୍ୱାରା ସମ୍ମାନିତ ହୋଇ ପୂର୍ଣ୍ଣାଙ୍ଗ ଏବଂ ପରିପୁଷ୍ଟ ହେଲା । ପରବର୍ତ୍ତୀ କାଳରେ ଅଭିମନ୍ୟୁ 'ଦିବ୍ୟ ଅଦିବ୍ୟ ପଦରେ ମାନସ ମୋହିବ' କହି ଯେଉଁ ଆଦର୍ଶର ପ୍ରତିଷ୍ଠା କରିଥିଲେ, ଜଗନ୍ନାଥ ଦାସ ନିଜ ଓଡ଼ିଆ ଭାଗବତରେ ତାହାକୁ ଚରିତାର୍ଥ କରିଛନ୍ତି । ଉତ୍ତର ଭାରତରେ ସନ୍ଥ ତୁଳସୀ ଦାସ କୃତ 'ରାମଚରିତମାନସ' ଯେଉଁଭଳି ଭାବରେ ଜନପ୍ରିୟ ହୋଇଥିଲା, ଠିକ୍ ସେହିପରି ବା ତାଠୁ ଅଧିକ ଜନପ୍ରିୟ

ଉତ୍କଳରେ ଜଗନ୍ନାଥ ଦାସଙ୍କ ଭାଗବତ । ଉତ୍କଳର ପ୍ରତ୍ୟେକ ଗ୍ରାମରେ ଓ ଘରେଘରେ ଭାଗବତ ଗାଦି ପୂଜିତ ହୁଏ । ଅତୀତରେ ଉତ୍କଳରେ ଧର୍ମଚର୍ଚ୍ଚା ପାଇଁ 'ଗାଦିଗୃହ' ସର୍ବଶ୍ରେଷ୍ଠ ସ୍ଥାନ ଥିଲା । ଗାଦିଗୃହଗୁଡ଼ିକରେ ବିବିଧ ଶାସ୍ତ୍ର ବିଷୟରେ ଚର୍ଚ୍ଚା ସହିତ ପାଠଚକ୍ର ବା ଆଲୋଚନାଚକ୍ରର ଆୟୋଜନ ହୋଇଥାଏ । ଆରମ୍ଭିକ ସମୟରେ ଓଡ଼ିଆ ଭାଗବତର କିଛି ଅଂଶ ପ୍ରତ୍ୟେକ ବ୍ୟକ୍ତିର ପ୍ରାଥମିକ ଶିକ୍ଷାର ଅପରିହାର୍ଯ୍ୟ ଅଂଶ ରୂପେ ବିବେଚିତ ହୋଇଥିଲା । ପ୍ରବାଦ ଅଛି ଯେ, ମୃତ୍ୟୁ ଶଯ୍ୟାରେ ପଡ଼ିଥିବା ବ୍ୟକ୍ତି ସମ୍ମୁଖରେ ଭାଗବତ ପାଠକଲେ ସେ ମୁକ୍ତିପଥରେ ଯାତ୍ରା କରେ । ଓଡ଼ିଆ ଜାତିର ଜୀବନ ଉପରେ ଜଗନ୍ନାଥ ଦାସଙ୍କର ଅଭୂତପୂର୍ବ ପ୍ରଭାବ ପରିଲକ୍ଷିତ ହୁଏ ।

ମହାପୁରୁଷ ଜଗନ୍ନାଥ ଦାସ ଯୋଗମିଶ୍ରିତ ବା ଜ୍ଞାନମିଶ୍ରିତ ଭକ୍ତିକୁ ନିଜ ସାଧନାର ଆଧାର କରିଥିଲେ । 'ପାଖଣ୍ଡଦଳନ', 'ତୁଳାଭିଣା' ଆଦି ଛୋଟ ଛୋଟ ପୁସ୍ତକ ମାଧ୍ୟମରେ ସେ ଏହି ତତ୍ତ୍ୱର ପ୍ରଚାର ମଧ୍ୟ କରିଥିଲେ । ଏହି ପୁସ୍ତକ ଦ୍ୱୟ ଛୋଟ ହେଲେ ମଧ୍ୟ ଅତ୍ୟନ୍ତ ଜନପ୍ରିୟ ଅଟେ ।

**ମହାପୁରୁଷ ଅଚ୍ୟୁତାନନ୍ଦ ଦାସ:** ଶ୍ରୀ ଅଚ୍ୟୁତାନନ୍ଦ ଦାସଙ୍କ ଜନ୍ମ ସନ ୧୫୦୩, କଟକ ଜିଲ୍ଲା ଅନ୍ତର୍ଗତ ନେମାଳ ନିକଟବର୍ତ୍ତୀ ତିଳକଣା ଗ୍ରାମରେ । ତାଙ୍କ ପିତାଙ୍କ ନାମ ଦୀନବନ୍ଧୁ ଖୁଣ୍ଟିଆ, ମାତାଙ୍କ ନାମ ପଦ୍ମାବତୀ । ୧୧ବର୍ଷ ବୟସରେ ହିଁ ତାଙ୍କୁ ଆଶ୍ଚର୍ଯ୍ୟଜନକ ଭାବରେ ବ୍ରହ୍ମୋପଲବ୍ଧି ହୋଇଥିଲା । ଗୀତା, ଭାଗବତ, ମନ୍ତ୍ର, ଯନ୍ତ୍ର, ତନ୍ତ୍ରଆଦିର ତଥ୍ୟ ତାଙ୍କ ସମ୍ମୁଖରେ ଆପେଆପେ ପ୍ରକାଶିତ ହୋଇଯାଇଥିଲା । ସେ ନିତ୍ୟାନନ୍ଦ ମହାପ୍ରଭୁଙ୍କଠାରୁ ଦୀକ୍ଷା ନେଇଥିଲେ । ତାଙ୍କ ଚେଲାମାନଙ୍କ ସହ ଢୋଲ ଓ ମଞ୍ଜିରା ବଜେଇବଜେଇ ଭାରତର ସବୁ ତୀର୍ଥ ପରିଭ୍ରମଣ କରିଥିଲେ । ପୂର୍ବୋକ୍ତ ମହାପୁରୁଷଙ୍କ ପରି ଅଚ୍ୟୁତାନନ୍ଦ ମଧ୍ୟ ସିଦ୍ଧ ମହାଯୋଗୀ ଥିଲେ ଏବଂ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଗୋପାଳ ବଂଶର ଦୀକ୍ଷାଗୁରୁ ଥିଲେ । ଆଜିଯାଏଁ ମଧ୍ୟ ତାଙ୍କ ବଂଶଜ ଏହି ପଦର ଅଧିକାରୀ ଅଛନ୍ତି । କୃଷ୍ଣ ପ୍ରତି ତାଙ୍କ ଅଗାଧ ଭକ୍ତି ହିଁ ତାଙ୍କୁ ଗୋପାଳ ଜାତିପ୍ରତି ଆକୃଷ୍ଟ କରିଥିଲା । ଅନ୍ୟାନ୍ୟ ସଖାମାନଙ୍କ ପରି ସେ ମଧ୍ୟ ଶୂନ୍ୟ ଭଜନରେ ବିଶ୍ୱାସ ରଖୁଥିଲେ ଏବଂ ପିଣ୍ଡ ବ୍ରହ୍ମାଣ୍ଡର ଶୀର୍ଷସ୍ଥାନ, ଅର୍ଥାତ୍ କପାଳରେ ପରମାତ୍ମାଙ୍କ ସ୍ଥିତିକୁ ଅନୁଭବ କରୁଥିଲେ । ସେ ଛୋଟବଡ଼ ସବୁକୁ ମିଶାଇ ୧ ଲକ୍ଷ ଧର୍ମଗ୍ରନ୍ଥ ରଚନା କରିଥିଲେ । ସେଥିମଧ୍ୟରୁ ୩୬ ସଂହିତା, ୨୮ ଗୀତା, ୨୭ ବଂଶାନୁଚରିତ ସହିତ ହରିବଂଶ, ୧୬ ଉପବଂଶ ଓ ୧୦୦ ମାଳିକା ରଚନା କରିଥିଲେ । ଏଥିସହିତ ଅନେକ କୋଇଲି, ଚଉତିଶା, ଟୀକା, ବିଳାସ, ଉଗାଳ, ଗୁଜରୀ, ନିର୍ଣ୍ଣୟ ଓ ଭଜନଆଦି ଲେଖିଥିଲେ । ନିଜ ଗୁରୁ ଭଳି ସେ ଗୃହସ୍ଥାଶ୍ରମରେ ମଧ୍ୟ ପ୍ରବେଶ କରିଥିଲେ । କ୍ଷତ୍ରୀ ରଘୁରାମଙ୍କ ସୁପୁତ୍ରୀ ସହିତ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ଅଚ୍ୟୁତାନନ୍ଦଙ୍କର ସର୍ବଶ୍ରେଷ୍ଠ କୃତି 'ହରିବଂଶ', ଶୂନ୍ୟସଂହିତା, ଗୁରୁଭକ୍ତିଗୀତା, ପଦ୍ମକଳ୍ପଟୀକା, ଅଷ୍ଟଗୁଜ୍ଜରୀ, ଶରଣପଞ୍ଜରସ୍ତୋତ୍ର, ଦୂତୀବୋଧଚଉତିଶା, ଗୋପାଳଙ୍କଉଗାଳ । ଗୁରୁଭକ୍ତିଗୀତାରେ ବୈଷ୍ଣବମାନଙ୍କର ଆଚାର ବ୍ୟବହାର,

**କୃଷ୍ଣଲୀଳା** ତଥା **ଚୈତନ୍ୟଲୀଳାର** ବିସ୍ତୃତ ବର୍ଣ୍ଣନା କରାଯାଇଛି । ଅନ୍ୟ ଗୀତାଗୁଡ଼ିକରେ ଯୋଗ, ତନ୍ତ୍ର ଏବଂ ବେଦାନ୍ତତତ୍ତ୍ୱ ବିଷୟରେ ଅନେକ କଥା କୁହାଯାଇଛି । **ଅଷ୍ଟଗୁଜ୍ଝରୀ, ଶରଣପଞ୍ଜର, ଦୂତୀବୋଧଚଉତିଶା** ଭାବପ୍ରଧାନ କାବ୍ୟ । **ହରିବଂଶ** ସଂସ୍କୃତ ହରିବଂଶର ଅନୁବାଦ ନୁହେଁ, ବରଂ ଅଚ୍ୟୁତାନନ୍ଦ ନିଜ ଚେତନାର ତତ୍ତ୍ୱକୁ ପରିପ୍ରକାଶ କରିଛନ୍ତି । ଓଡ଼ିଶାରେ ତାଙ୍କ ଶିଷ୍ୟ ପରମ୍ପରା ଅତ୍ୟନ୍ତ ସୁଦୀର୍ଘ ଏବଂ ପ୍ରତ୍ୟେକ ଶିଷ୍ୟଙ୍କ ଘରେ ତାଙ୍କ ରଚିତ ଗ୍ରନ୍ଥ ପୂଜା ପାଇଥାଏ ।

**ମହାପୁରୁଷ ଯଶୋବନ୍ତ ଦାସ:** ଚତୁର୍ଥ ମହାପୁରୁଷ ଶ୍ରୀ ଯଶୋବନ୍ତ ଦାସ ମଧ ଅନ୍ୟ ମହାପୁରୁଷ ଭଳି ଯୋଗୀ ଏବଂ ସିଦ୍ଧପୁରୁଷ ଥିଲେ । ଅନୁମାନ କରାଯାଏ ଯେ, ତାଙ୍କ ଜନ୍ମ ସନ ୧୪୯୨ । ସେ ଉପଯୁକ୍ତ ଶିକ୍ଷା ମଧ ଲାଭ କରିଥିଲେ ଏବଂ ସଂସ୍କୃତର ପଣ୍ଡିତ ମଧ ଥିଲେ । ତାଙ୍କଦ୍ୱାରା ବିରଚିତ 'ଶିବସ୍ୱରୋଦୟ' ଗ୍ରନ୍ଥ ସଂସ୍କୃତ **ସ୍ୱରୋଦୟ** ଗ୍ରନ୍ଥର ସୁନ୍ଦର ଅନୁବାଦ ଅଟେ । ବାରବର୍ଷ ବୟସରେ ତାଙ୍କୁ ବ୍ରହ୍ମଜ୍ଞାନ ପ୍ରାପ୍ତି ହୋଇଥିଲା । ଭାରତର ଅନେକ ତୀର୍ଥ ଭ୍ରମଣକରି ସେ ସର୍ବଶେଷରେ ଶ୍ରୀକ୍ଷେତ୍ରରେ ପହଞ୍ଚିଲେ ଏବଂ ଶ୍ରୀଚୈତନ୍ୟଙ୍କଠାରୁ ଦୀକ୍ଷା ଗ୍ରହଣ କଲେ । ସେ ଗୃହସ୍ଥାଶ୍ରମରେ ମଧ ପ୍ରବେଶ କରିଥିଲେ । ଅଡଙ୍ଗ ରାଜା ରଘୁରାମଙ୍କ କନ୍ୟା ଅଞ୍ଜନାଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ତାପରେ ସେ ନିଜ ମାତୃଭୂମିରେ ହିଁ ନିବାସ କଲେ । ନିଜ ଯୋଗର ସାଧନା ଏବଂ ଭକ୍ତି ବଳରେ ଜଗନ୍ନାଥଙ୍କୁ ମଧ ବଶୀଭୂତ କରିଥିଲେ । ଜଗନ୍ନାଥ ମହାପ୍ରଭୁଙ୍କ କୃପାରୁ ସେ ଅନେକ ବିପତ୍ତିରୁ ରକ୍ଷା ପାଇପାରିଥିଲେ । ଯଶୋବନ୍ତଙ୍କଦ୍ୱାରା ରଚିତ 'ଚଉରାଶୀଆଜ୍ଞା' ବେଶ ପ୍ରସିଦ୍ଧି ଲାଭ କରିଥିଲା । ଶ୍ରୀଜଗନ୍ନାଥଙ୍କ କୃପାରୁ ସେ ନିଜ ସାଧନାରେ ଅନେକ ଅଦ୍ଭୁତ ଜ୍ଞାନ ପାଇଥିଲେ । ଯଶୋବନ୍ତ ଦାସଙ୍କଦ୍ୱାରା ରଚିତ ଗ୍ରନ୍ଥଗୁଡ଼ିକ ହେଲା **ସ୍ୱରୋଦୟ, ପ୍ରେମଭକ୍ତିବ୍ରହ୍ମଗୀତା,** ଗୀତଗୋବିନ୍ଦଚନ୍ଦ୍ର, ଗୀତା, ରାସ ଏବଂ **ମାଳିକା** । ଏହି ଗ୍ରନ୍ଥଗୁଡ଼ିକର ଅନେକ ଗୀତ ଓଡ଼ିଆ ଜାତି ଭଜନ ଭାବରେ ଗାଏ । **ପ୍ରେମଭକ୍ତିବ୍ରହ୍ମଗୀତା** ପୁସ୍ତକ ଦ୍ୱୟର ମୂଳ ଲକ୍ଷ୍ୟ ଯୋଗ ମହାତ୍ମ୍ୟର ବର୍ଣ୍ଣନା । ଯୋଗମାଧମରେ କିଭଳି ଭାବରେ ବ୍ରହ୍ମୋପଲବ୍ଧି ଏବଂ ବ୍ରହ୍ମଉପାସନା କରାଯାଏ, ତା'ର ବିସ୍ତୃତ ବର୍ଣ୍ଣନା ଏଥିରେ ରହିଅଛି । ଯୋଗ ବଳରେ ହିଁ ଗୋପୀଭାବର ପ୍ରାପ୍ତି ହୁଏ ଏବଂ ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରଗାଢ ପ୍ରେମ ମଧ ଜାତ ହୁଏ । ଯୋଗ, ତନ୍ତ୍ର ତଥା ବେଦାନ୍ତର କିଛି ତତ୍ତ୍ୱକୁ ମଧ ସେ ନିଜ ପୁସ୍ତକରେ ସ୍ଥାନିତ କରିଅଛନ୍ତି । ନିଃଶ୍ୱାସ ନିୟନ୍ତ୍ରଣଦ୍ୱାରା ସେ ଇନ୍ଦ୍ରିୟ ଦମନର କଥା କୁହନ୍ତି । ସମାଧି ଅବସ୍ଥାରେ କିଭଳି ତ୍ରିକୂଟୀରେ ରାଧା ଓ କୃଷ୍ଣଙ୍କର ନିତ୍ୟରାସ ଦେଖାଯାଇପାରିବ, ତା'ର ଉପାୟକୁ ସେ ଯୋଗ ମାଧମରେ ବର୍ଣ୍ଣନା କରିଛନ୍ତି ।

**ମହାପୁରୁଷ ଅନନ୍ତ ଦାସ:** ପଞ୍ଚମ ମହାପୁରୁଷ ଅନନ୍ତ ଦାସଙ୍କ ଜନ୍ମ, ସନ ୧୪୯୩ । ପୁରୀ ଜିଲ୍ଲାର ବାଲିପାଟଣା ଗ୍ରାମରେ । ପିତା କପିଳ ମହାନ୍ତି, ମାତା ଗୌରୀ । ତାଙ୍କୁ ସୂର୍ଯ୍ୟ ଦେବତାଙ୍କ କୃପାରୁ ସୂର୍ଯ୍ୟନାରାୟଣ ଏକାକ୍ଷର ମନ୍ତ୍ର ପ୍ରାପ୍ତ ହୋଇଥିଲା । ତାଙ୍କୁ ଶ୍ରୀଚୈତନ୍ୟ ଦେବଙ୍କଠାରୁ ଦୀକ୍ଷା ଗ୍ରହଣ କରିବାପାଇଁ ଆଜ୍ଞା

ହୋଇଥିଲା ଏବଂ ମାଳିକା ଲେଖିବାପାଇଁ ମଧ୍ୟ ନିର୍ଦ୍ଦେଶ ହୋଇଥିଲା । ତାଙ୍କ ସମ୍ବନ୍ଧରେ ଅନେକ ଅଦ୍ଭୁତ ଗଳ୍ପ ଉତ୍କଳରେ ପ୍ରଚଳିତ । ଚୈତନ୍ୟଭାଗବତର ଈଶ୍ୱର ଦାସ ଲେଖିଛନ୍ତି ଯେ, ଯୋଗବଳରେ ଅନନ୍ତ ଦାସ ଶିଶୁଟିଏ ହୋଇ ମହାଲକ୍ଷ୍ମୀଙ୍କ କୋଳରେ ଯାଇ ବସିଥିଲେ । ସେଥିପାଇଁ ଶ୍ରୀଜଗନ୍ନାଥ ପ୍ରସନ୍ନ ହୋଇ ତାଙ୍କୁ 'ଶିଶୁ' ବୋଲି ଡାକିଥିଲେ । ସେହିଦିନଠାରୁ ଲୋକମୁଖରେ ସେ ଶିଶୁଅନନ୍ତ ନାମରେ ପରିଚିତ ହେଲେ । ଅନନ୍ତ ଦାସଙ୍କର ଅବଧୂତ କଥାଗୁଡ଼ିକରୁ ସ୍ପଷ୍ଟ ହୁଏ ଯେ, ସେତେବେଳେ ସିଦ୍ଧଜ୍ଞାନୀ ମାଟିକୁ ସୁନା, ସୁନାକୁ ମାଟି କରିବାରେ କ୍ଷମ ହେଉଥିଲେ ଏବଂ ଦେହରୁ କଟି ଯାଇଥିବା ବ୍ୟକ୍ତିମାନଙ୍କର ଅଙ୍ଗପ୍ରତ୍ୟଙ୍ଗକୁ ଯୋଡ଼ିବାରେ ମଧ୍ୟ ସାମର୍ଥ୍ୟ ଥିଲେ । ଏଭଳି ସତ୍ୟ ଦାହାଣୀଗୁଡ଼ିକୁ ଚୌରାଶିକାହାଣୀ ନାମରେ ଅଭିହିତ କରାଯାଇଥିଲା । ଏଥିରୁ ଜଣାଯାଏ ଯେ, ତାଙ୍କ ସମୟରେ ଯୋଗ ସାଧନାର ପ୍ରଭାବ ଗଭୀର ଥିଲା ।

ଅନନ୍ତଙ୍କର କେତେଗୁଡ଼ିଏ ଭଜନ, ଚଉତିଶା ଏବଂ ଗଳ୍ପ ଉତ୍କଳରେ ପ୍ରସିଦ୍ଧି ଲାଭ କରିଥିଲା । ତାଙ୍କର ଅନ୍ୟାନ୍ୟ ରଚନାଗୁଡ଼ିକ ମଧ୍ୟରେ **ଉଦୟବାଖର, ଛତିଶାବାଖର,** ଟୀକାବାଖର ଏବଂ **ଆଗତଭୁମ୍ବକମାଳିକା** ଆଦି ମୁଖ୍ୟ । ଅନନ୍ତ ଦାସଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥ 'ହେତୁଦୟଭାଗବତ' । ଏହି ଗ୍ରନ୍ଥରେ ତାଙ୍କଦ୍ୱାରା ପ୍ରତିପାଦିତ ମୁଖ୍ୟ ଦାର୍ଶନିକ ତତ୍ତ୍ୱଗୁଡ଼ିକର ସମାବେଶ ହୋଇଛି । ଅନ୍ୟାନ୍ୟ ମହାପୁରୁଷଙ୍କ ପରି ଶିଶୁ ଅନନ୍ତ ଦାସଙ୍କର ଗ୍ରନ୍ଥରେ ମଧ୍ୟ ଯୋଗ, ତନ୍ତ୍ର, ବେଦାନ୍ତ ଆଦି ତଥ୍ୟର ସମାହାର ହୋଇଅଛି । ସେ 'ହେତୁଦୟ' ଭାଗବତ ରେ ଉଲ୍ଲେଖ କରିଛନ୍ତି ଯେ, ବିଷ୍ଣୁଙ୍କର ଶ୍ରେଷ୍ଠରୂପ ମନୁଷ୍ୟର ଅନ୍ତର ଭିତରେ ବିଦ୍ୟମାନ । ଶ୍ରୀଜଗନ୍ନାଥ ବୁଦ୍ଧଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ଗୋପୀପ୍ରେମ ହିଁ ମୁକ୍ତିର ଏକମାତ୍ର ମାର୍ଗ ଏବଂ ଯୋଗ ସାଧନ ହିଁ ପ୍ରେମର ନଦୀ ।

ଉତ୍କଳରେ ପରମ୍ପରାଗତ ସନ୍ନ୍ୟାସ ଧର୍ମ, ଜୈନଧର୍ମ ଓ ବୌଦ୍ଧଧର୍ମର ପ୍ରଭାବରୁ ଯୋଗ ଏବଂ ଶୁଦ୍ଧଭକ୍ତିମାର୍ଗ ଓ ବୈଷ୍ଣବଧର୍ମ ସହିତ ଏକାନ୍ତିକ ଭକ୍ତିର ସମ୍ମିଶ୍ରଣ ହୋଇଥିଲା । ପଞ୍ଚସଖା ସେହି ସନ୍ନ୍ୟାସ ଧର୍ମର ସମର୍ଥକ ଥିଲେ ଏବଂ ପ୍ରତିନିଧିତ୍ୱ କରୁଥିଲେ । ଉତ୍କଳରେ ସେମାନଙ୍କଦ୍ୱାରା ରଚିତ ଗ୍ରନ୍ଥ ଏବଂ ତାଙ୍କଦ୍ୱାରା ପ୍ରଣୀତ ପରମ୍ପରାର ପ୍ରଭାବ ଏଯାବତ୍ ରହିଛି । ସେ ଜଗନ୍ନାଥ ମହାପ୍ରଭୁଙ୍କୁ ପରମ ଅବତାରୀ ରାମକୃଷ୍ଣଙ୍କ ଅବତାର ରୂପେ ଗ୍ରହଣ କରୁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ଶ୍ରୀ ଜଗନ୍ନାଥ ଷୋହଳ କଳାରେ ପରିପୂର୍ଣ୍ଣ ଏବଂ ତାଙ୍କର ଗୋଟିଏ କଳା ବା ଅଂଶ ନେଇ ଶ୍ରୀ କୃଷ୍ଣଙ୍କର ଜନ୍ମ । ଏହା ଶାସ୍ତ୍ରବିରୋଧୀ କଥା ନୁହେଁ । କାରଣ ମହାଭାରତରେ ଅନୁଗୀତାକଥନ ସମୟରେ ଶ୍ରୀକୃଷ୍ଣ ସ୍ୱୟଂ କହିଥିଲେ, ଯୋଗବେଶ ମାଧ୍ୟମରେ ସେ ପରଂବ୍ରହ୍ମଙ୍କ ପୂର୍ଣ୍ଣକଳାକୁ ପ୍ରାପ୍ତ ହୋଇ ଶ୍ରୀମଦ୍ଭଗବତଗୀତା ଚର୍ଚ୍ଚା କରିଥିଲେ । କିନ୍ତୁ ଅନୁଗୀତା କଥନ ସମୟରେ ସେ କଳା ତାଙ୍କ ପାଖରେ ନ ଥିଲା । ଭାଗବତରେ ଦଶମସ୍କନ୍ଧର ଦ୍ୱାରକାଲୀଳାରେ ସେ ସ୍ପଷ୍ଟ କରିଦେଇଛନ୍ତି ଯେ, ବ୍ରାହ୍ମଣଙ୍କ ମୃତ ସନ୍ତାନମାନଙ୍କୁ ବଞ୍ଚାଇବାପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସାଥିରେ ନେଇ ମହାବ୍ୟୋମରେ ସ୍ଥିତ ପରମବ୍ରହ୍ମଙ୍କ ଧାମକୁ ଯାଇଥିଲେ ଏବଂ ପରମବ୍ରହ୍ମଙ୍କ ନିର୍ଦ୍ଦେଶ ଅନୁସାରେ ମର୍ତ୍ତ୍ୟଲୋକ

ଗ୍ରହଣ କରିଥିଲେ । ସେଥିପାଇଁ ପଞ୍ଚସଖାମାନଙ୍କ ସାହିତ୍ୟରେ ସେ ମାନବ କୃଷ୍ଣ ରୂପେ ସ୍ଥାନ ପାଇଛନ୍ତି । ନିତ୍ୟକୃଷ୍ଣ ମର୍ତ୍ତ୍ୟ ବ୍ରଜଧାମର ରାସଲୀଳା, ଗୋଲକଧାମର ନିତ୍ୟ ରାସଲୀଳା ବିଷୟରେ ପଞ୍ଚସଖାମାନେ ଯାହା ଲେଖିଯାଇଛନ୍ତି, ତା'ର ଶାସ୍ତ୍ରୀୟ ଆଧାର ଥିଲା । ଶ୍ରୀଜଗନ୍ନାଥ ନିତ୍ୟକୃଷ୍ଣ ବା ନିତ୍ୟରାମ ଅଟନ୍ତି । **ପଦ୍ମପୁରାଣ**ରେ ମଧ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ **ଦଶାବତାରକ୍ଷେତ୍ର** (ଅର୍ଥାତ୍ ଯାହାଙ୍କଠାରୁ ଦଶଅବତାର ସମ୍ଭୂତ ହୋଇଛନ୍ତି, ସେହି ଦଶାବତାରୀ ଶ୍ରୀ ଜଗନ୍ନାଥଙ୍କ କ୍ଷେତ୍ର) ରୂପେ ବର୍ଣ୍ଣନା କରାଯାଇଛି । ପଞ୍ଚସଖାମାନଙ୍କର ପରବର୍ତ୍ତୀ କବି ଦେବଦୁର୍ଲ୍ଲଭ ଦାସ ଏବଂ ଦୀନକୃଷ୍ଣ ଦାସ ମଧ୍ୟ ଏହି ମତର ଅନୁଗାମୀ ଥିଲେ ।

**ବିପ୍ର ନାରାୟଣ ଦାସ:** ବିପ୍ରନାରାୟଣ ଦାସ ମଧ୍ୟ ପଞ୍ଚସଖାମାନଙ୍କର ସାମସମୟିକ ଥିଲେ । ତାଙ୍କଦ୍ୱାରା ରଚିତ **ହରିବଂଶ** ସଂସ୍କୃତ ହରିବଂଶର ଅବିକଳ ଅନୁବାଦ ନୁହେଁ । ପ୍ରବାଦ ଅଛି ଯେ, ଅଚ୍ୟୁତାନନ୍ଦଙ୍କୁ ଏହି ହରିବଂଶଟି ପଢିବାର ସୁଯୋଗ ମିଳି ନ ଥିଲା । ସେଥିପାଇଁ ସେ ନିଜସ୍ୱ ହରିବଂଶର ରଚନା କରିଥିଲେ ।

**ରାୟ ରାମାନନ୍ଦ:** ରାୟ ରାମାନନ୍ଦ ଜାତିରେ କରଣ ଏବଂ **ଶୁଦ୍ଧଭକ୍ତି** ମାର୍ଗର ବିଶିଷ୍ଟ ପ୍ରତିନିଧି ଓ କବି । **ଶ୍ରୀଚୈତନ୍ୟଚରିତାମୃତ**ରେ ମହାପ୍ରଭୁ ଏବଂ ରାୟ ରାମାନନ୍ଦଙ୍କର ସମ୍ବାଦ ବିଶେଷ ଆକର୍ଷଣୀୟ । ରାମାନନ୍ଦଙ୍କଦ୍ୱାରା ସଂସ୍କୃତରେ ଲିଖିତ 'ଜଗନ୍ନାଥବଲ୍ଲଭ' ନାଟକ ସିଦ୍ଧବୈଷ୍ଣବ ଗ୍ରନ୍ଥ । ତାଙ୍କଦ୍ୱାରା ରଚିତ କୃଷ୍ଣଲୀଳା ସମ୍ବନ୍ଧି ବ୍ରଜବୋଲିର ପଦାବଳୀ ପ୍ରକାଶିତ ହୋଇସାରିଛି ଏବଂ ପ୍ରାଚୀନ ବଙ୍ଗୀୟ ସାହିତ୍ୟର ଉତ୍କୃଷ୍ଟ ନମୁନା ଭାବେ ଏହାକୁ ଗ୍ରହଣ କରାଯାଏ । ଶ୍ରୀଚୈତନ୍ୟଦେବଙ୍କର ଆଗମନ ପୂର୍ବରୁ ଉତ୍କଳରେ ଶୁଦ୍ଧଭକ୍ତି ଧାରା କେତେ ପରିପୁଷ୍ଟ ଥିଲା, ତାହାର ସୂଚନା ମଧ୍ୟ ରାୟ ରାମାନନ୍ଦଙ୍କର ଜୀବନଚରିତ୍ରରୁ ଜଣାପଡ଼େ ।

**ମାଧବୀ ଦାସୀ:** ଶ୍ରୀମତୀ ମାଧବୀ ଦାସୀ ଶ୍ରୀଚୈତନ୍ୟଦେବଙ୍କର ଅନ୍ତରଙ୍ଗ ଭକ୍ତମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଭକ୍ତ ଶିଖି ମହାନ୍ତିଙ୍କର ଭଉଣୀ ଏବଂ ଶୁଦ୍ଧାଭକ୍ତି ମାର୍ଗର ଅନୁଗାମିନୀ । ତାଙ୍କଦ୍ୱାରା ବ୍ରଜବୁଲିରେ ଲିଖିତ **ବୈଷ୍ଣବପଦାବଳୀ**, ବଙ୍ଗୀୟ ବୈଷ୍ଣବ ପଦାବଳୀରେ ସଂରକ୍ଷିତ । ଏଥିମଧ୍ୟରୁ ଆବିଷ୍କୃତ ଓଡ଼ିଆ ଭଜନର କିଛି ଅଂଶ ନିମ୍ନରେ ଦିଆଯାଉଅଛି ।

ଚକା ନୟନହେ ଜଗୁ ଜୀବନ ଶ୍ରୀ ହରି
କାତରେ ଜଣା କରୁଛି ଛାମୁରେ,
ଶୁଣ ପ୍ରଭୁ ସ୍ତୁତି ଡେରି ।୦
କେତେ ସଂକଟୁ କାହାକୁ ରଖିନାହିଁ
ଦୟାଳୁ ସାରଙ୍ଗଧାରୀ
ତା ବର୍ଣ୍ଣି ବସିଲେ ପୋଥିକର ପାଠ
କି ବର୍ଣ୍ଣିବ ଏ ପାମରୀ ।୧
X X X

ଢପିଣ ପିଙ୍ଗଳା ଆଦି ବାରବାଳା
ସଂସାରୁ ଗଲେ ନିସ୍ତରି
ଅପାର ମହିମା କେତନ ଉଡ଼ାଇ
ରଖିଛ କିରତି ଶିରୀ ।୨
ମୁଁ ଛାର ନିର୍ମାଖୀ ତୁମ୍ଭର ସେବକୀ ।
ପଣକୁ ଅଯୋଗ୍ୟ ନାରୀ
କରୁଛି ଦୟିନୀ ଯୋଡ଼ି କରବେନି
ଶୁଣ ମାଧ ବୀ ଗୁହାରି ।୩

**ଦିବାକର ଦାସ:** ଏହି ମହାପୁରୁଷ ଜଗନ୍ନାଥ ଦାସଙ୍କର ସମ୍ପ୍ରଦାୟର ଅନୁଗାମୀ । ସେ 'ଜଗନ୍ନାଥ ଚରିତାମୃତ' ଏବଂ 'ଏକାଦଶୀମହାତ୍ମ୍ୟ' ନାମକ ଦୁଇଟି ଗ୍ରନ୍ଥ ରଚନା କରିଥିଲେ ।

**ଶିଶୁଶଙ୍କର ଦାସ:** ଅନୁମାନ କରାଯାଏ ଯେ, ତାଙ୍କର ଜନ୍ମ ୧୫ଶ ଶତାବ୍ଦୀର ପ୍ରଥମ ଚରଣ । ଅର୍ଜ୍ଜୁନ ଦାସଙ୍କଦ୍ୱାରା ରଚିତ 'ରାମବିଭା' ପରେ ଶଙ୍କର ଦାସଙ୍କଦ୍ୱାରା ରଚିତ 'ଉଷାଭିଳାଷ' ଏକ ଛନ୍ଦବଦ୍ଧ କାବ୍ୟଭାବରେ ବିଶେଷ ଖ୍ୟାତି ଅର୍ଜନ କରିଥିଲା । ଶ୍ରୀମଦ୍‌ଭାଗବତ ଏବଂ ଖିଲହରିବଂଶର କଥାବସ୍ତୁକୁ ଆଧାରକରି କବି ଶିଶୁଶଙ୍କର ଏହି ମନୋହର କାବ୍ୟସୌଧର ନିର୍ମାଣ କରିଥିଲେ । ସେ ସଂସ୍କୃତଜ୍ଞାତା ଥିଲେ । ତାଙ୍କର ଭାଷା ପ୍ରାଚୀନ, କିନ୍ତୁ ପରିମାର୍ଜିତ ଏବଂ ପ୍ରସାଦପୂର୍ଣ୍ଣ । ଉତ୍କଳର ପରବର୍ତ୍ତୀ କବିମାନଙ୍କ ଉପରେ 'ଉଷାଭିଳାଷ' ବେଶ ପ୍ରଭାବ ପକାଇ ପାରିଥିଲା । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ(୧୬୮୫ ।୧୭୨୫) ମଧ୍ୟ ନିଜର ପ୍ରସିଦ୍ଧ କାବ୍ୟ 'ଲାବଣ୍ୟବତୀ'ର ରଚନା 'ଉଷାଭିଳାଷ' ଛନ୍ଦରେ ରଚନା କରିଥିଲେ । ତଳେ ଦିଆଯାଇଥିବା ଉଦ୍ଧୃତାଂଶର ତୁଳନାକରି ଆମେ ଦେଖିପାରିବା:

ପଲଙ୍କ ତେଜିଣ    ଉଠିଲା ସୁମୁଖୀ    ସପନ ସଂକେତ ପାଇଣ
ଆହା ପ୍ରାଣନାଥ    କେଣେ ଗଲୁ ବୋଲି  ଉଚ୍ଚସ୍ୱରେ କରେ କାରୁଣ୍ୟ
ଦଇବ, ଦେଖାଇ ନିଧି ହରିନେଲୁ
ଶିଶୁ କୁମାରୀ ମୁଁ    କିଛି ନ ଜାଣଇଁ    କିମ୍ପାଇ ମୋତେ ଏହା କଲୁ ।
(ଉଷାଭିଳାଷ)

ଚେତି ଚତୁରୀ    ଚାହିଁଲା ନିଶି ନାଶେ  ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ    ନାଥ ନାଥ ବୋଲି    ଅତି ଉଚ୍ଚେ କଲା କାରୁଣ୍ୟ
ଖୋଜେ ଅଧୀରେ, ଚେତନାହତ ସେ ବିଧିରେ
ଶେଯ ଲେଉଟାଇ    କବରୀ ଫିଟାଇ    କରଭରି କୁଚସନ୍ଧିରେ ।
(ଲାବଣ୍ୟବତୀ)

ଶିଶୁଶଙ୍କରଙ୍କର ନିମ୍ନୋକ୍ତ ପଂକ୍ତିଗୁଡ଼ିକ ଗୀତଗୋବିନ୍ଦ ଧାରାରେ ଲେଖାଯାଇଅଛି ।
ଈକ୍ଷିତ ଆଜ୍ଞାରେ ଜାର    ପାଶେ ଆସି ପରିଚାର

ଅବନୀ ଶୟନ ଦିଶେ ପାଣ୍ଡୁର ଗଣ୍ଡ
ଯେବେ ଅଛି ଅନୁରାଗ ଭିଡ଼ ମୋରେ ଭୁଜ ଯୁଗ
ଅପରାଧ ଅନୁରୂପେ କରହ ଦଣ୍ଡ
କରରୁହ ଦଂଶନ କ୍ଷତ
ଯେତେ ରୋଷେ ଛାଡ଼ହୁଏ ହରଷ ଜାତ ।

X X X

ଏ ତୋର ସଂଦେଶ ପାଇ ବିଳମ୍ବ ମୁଁ କରିନାହିଁ
କି ଫଳ ମଉନେ କିକେ ହେଠ ବଦନ
ତୁ ମୋର ଦେହ ଜୀବନ ତୁ ମୋର ଭୂଷଣ ମାନ
ତୁ ମୋର ଇନ୍ଦ୍ରି ବିଷୟ ମନସଦନ
ତୁ ମୋହର ମୁକୁଟ ଶିରେ
ତୁ ମୋର ସୁକୃତ ଫଳ ମୁଖ୍ୟ ସାଗରେ
ତୁ ମୋର ଚାରୁଚନ୍ଦନ ତୁ ମୋର ଶିରବନ୍ଦନ
ତୁ ମୋର ମଦନ ଜଳନିଧି ତରଣୀ
ତୁ ମୋ ଗଳେ ବନମାଳ ତୁ ମୋହର ବୀର୍ଯ୍ୟବନ
ତୁ ମୋର ଭବ ବିଭବ ସୁଖ ତରଣୀ
ତୁ ମୋହର ସବୁ ରମଣୀ,
ମୁଁ ତୋହର ପରିଚାର କି କେ ନ ଗଣି । (ଶିଶୁଶଙ୍କର)।

ସତ୍ୟ ସେବାସି ଯଦି ଦତିମୟି କୋପିନୀ ଦେହି ଖରନୟନ ଖର ଦ୍ୟାତମ୍
ଘଟୟ ଭୁଜବନ୍ଧନଂ ଜନୟ ରଜଖଣ୍ଡନଂ ୟେନବା ଭବତି ସୁଖଜାତମ୍
ସତ୍ୱମସି ସମ ଭୂଷଣଂ ତ୍ୱମସି ସମ
ଜୀବନଂ ତ୍ୱମସି ମମ ଭବ ।ଜଳନଧିରତ୍ନଂ ।
ଭବତୁ ଭବତୀମୟି ସତତ ମନୋରୋଧିନୀ
ତତ୍ରଃ ମମ ହୃଦୟମତି ୟତ୍ନା । (ଗୀତଗୋବିନ୍ଦ)

ଲକ୍ଷ୍ମଣ ମହାନ୍ତି: ସେ ଶିଶୁଶଙ୍କର ଦାସଙ୍କର ସାମସମୟିକ । ସେ ବାରଛାନ୍ଦ ବିଶିଷ୍ଟ ଉର୍ମିଳା ନାମକ ଛନ୍ଦରେ କାବ୍ୟ ରଚନା କରିଥିଲେ । କାବ୍ୟର କଥାବସ୍ତୁ ଭବିଷ୍ୟପୁରାଣରୁ ଗୃହୀତ । ଏହି କାବ୍ୟର ନାୟିକା ମହାସତୀ ଉର୍ମିଳା । ସେ ସାବିତ୍ରୀଙ୍କ ପରି ନିଜ ପତି ରତୁପୂର୍ଣ୍ଣାଙ୍କୁ ଯମପାଶରୁ ମୁକ୍ତ କରିଥିଲେ ।

ଏହା ଦ୍ରଷ୍ଟବ୍ୟ ଯେ, ରାମବିଭା ପରେ ଛନ୍ଦବଦ୍ଧ କବିତା ଲେଖିବାର ପରମ୍ପରା ଆରମ୍ଭ ହୋଇଥିଲା । ଧର୍ମ ବିଷୟକ ଗ୍ରନ୍ଥ ଏବଂ ପୁରାଣ ଗ୍ରନ୍ଥମାନଙ୍କର ଲୈଖକ ଧର୍ମସ୍ଥାପନାକୁ ଦୃଷ୍ଟିରେ ରଖି ଅସମାନ ସଂଖ୍ୟାବିଶିଷ୍ଟ ପଦାବଳୀର ନିର୍ମାଣକରି ତାହାକୁ ଦାଣ୍ଡିବୃତ୍ତରେ ଲେଖୁଥିଲେ । କାବ୍ୟ ରସିକ ଓ ବଦଗ୍ଧ ବ୍ୟକ୍ତି ନିଜ ମନବିନୋଦ ପାଇଁ ଗୀତିତତ୍ତ୍ୱରେ ପରିପୁଷ୍ଟ ଛନ୍ଦୋବଦ୍ଧ କବିତାର ରଚନା କରୁଥିଲେ, ଯାହା ସାଧାରଣ

ଭାବରେ ହୃଦୟଗ୍ରାହୀ କଥାଗୁଡ଼ିକ ନେଇ ଲେଖାଯାଉଥିଲା । ଏହିଭଳି ଦୁଇପ୍ରକାରର କବିତା ସର୍ଜନା ଦୀର୍ଘକାଳ ଧରି ସମାନାନ୍ତର ଭାବରେ ଚାଲିଆସୁଥିଲା । ପରେ ସଂଗୀତର ପ୍ରଧାନତା ବଢିଲା ଏବଂ ପୁରାଣ ଲେଖନ ପଛରେ ରହିଗଲା, କାବ୍ୟ ସୃଷ୍ଟି ଆଗକୁ ବଢିଗଲା ।

କପିଳେଶ୍ୱର ଦାସ: କପିଳେଶ୍ୱର ଦାସଙ୍କଦ୍ୱାରା ରଚିତ କପଟକେଳି ଦଶସର୍ଗ ବିଶିଷ୍ଟ କାବ୍ୟଗ୍ରନ୍ଥ । ଏଥିରେ ରାଧାକୃଷ୍ଣଙ୍କର କଥା ଅତ୍ୟନ୍ତ ସରଳ ଏବଂ ମୁଗ୍ଧକର ଭାବରେ ବର୍ଣ୍ଣିତ । ଶ୍ରୀକୃଷ୍ଣ ସ୍ତ୍ରୀର ଛଦ୍ମବେଶ ଧାରଣ କରିଛନ୍ତି ଏବଂ ମାନିନୀ ରାଧାଙ୍କ ପାଖକୁ ଯାଇଛନ୍ତି । ସମ୍ପନ୍ନଶାପନ୍ନ ହୋଇଥିବାରୁ ସ୍ତ୍ରୀ ବେଶଧାରୀ ଶ୍ରୀକୃଷ୍ଣ ରାଧାଙ୍କର ସହାନୁଭୂତି ପାଇ ତାଙ୍କର ସଖୀ ହେବାର ସୁଯୋଗ ଲାଭ କରିଛନ୍ତି । ରାତିରେ ଗୋଟିଏ ଶଯ୍ୟାରେ ଶୋଇବା ସମୟରେ ଶ୍ରୀକୃଷ୍ଣ ରାଧାଙ୍କ ସମ୍ମୁଖରେ ଆତ୍ମସ୍ୱରୂପ ପ୍ରକାଶ କରିଛନ୍ତି ଏବଂ ରାଧାକୃଷ୍ଣଙ୍କ ମାନଭଞ୍ଜନ ପରେ ରାସକ୍ରୀଡ଼ା ମଧ୍ୟ କରିଛନ୍ତି । କଥାବସ୍ତୁ ଅନୁରୂପ ଏହି କାବ୍ୟଟିର ନାମ 'କପଟକେଳି' ରଖାଯାଇଅଛି । ଏହି ପୁସ୍ତକଟିର କଥାବସ୍ତୁ ନିତାନ୍ତ ଅଭିନବ । କାବ୍ୟର ପ୍ରତ୍ୟେକ ଛନ୍ଦ ଆରମ୍ଭର ପ୍ରଥମ ଭାଗରେ ଗାହା(ଗାଥା)ର ପଦ୍ୟମୟ ବିଷୟସୂଚୀ ଉପସ୍ଥିତ । ଛନ୍ଦୋବଦ୍ଧ କାବ୍ୟ ଜଗତରେ ଏହା ଏକ ଅଭିନବ ସୃଜନ ।

ହରିହର ଦାସ (ନାୟକ): ହରିହର ଦାସ(ନାୟକ) ଜାତିରେ ଗଣକ ଥିଲେ । ତାଙ୍କ ରଚିତ କାବ୍ୟର ନାମ ଚନ୍ଦ୍ରାବତୀବିଳାସ । ଏହି କାବ୍ୟରେ 'କପଟକେଳି' ପରି ପ୍ରତ୍ୟେକ ଛନ୍ଦର ଶେଷରେ ପରବର୍ତ୍ତୀ ଛନ୍ଦର ବିଷୟସୂଚୀ ପଦ୍ୟ ମଧ(ଗାହାରୀତି)ରେ ଦିଆଯାଇଛି । ଶୃଙ୍ଗାରରସକୁ ଆଧାରକରି କଥାବସ୍ତୁ ଲେଖାଯାଇଛି । ଦୁର୍ଯ୍ୟୋଧନଙ୍କ ପୁତ୍ରୀ ଚନ୍ଦ୍ରାବତୀ ସହିତ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବଙ୍କର ଗୁପ୍ତ ପ୍ରଣୟ ଥିଲା । ଶ୍ରୀଦୁର୍ଗାଙ୍କ ଆଶୀର୍ବାଦରୁ ଉଭୟଙ୍କ ମିଳନ ପରେ ଚନ୍ଦ୍ରାବତୀଙ୍କୁ ଧରି ଗୁପ୍ତରେ ପଳାଇ ଯାଉଥିବାବେଳେ ଶାମ୍ବ ଧରାପଡ଼ିଥିଲେ ଓ ଦୁର୍ଯ୍ୟୋଧନ ତାଙ୍କୁ ବନ୍ଦି କରିଥିଲେ । ବଳରାମ ଏହି ସମ୍ବାଦ ପାଇବାପରେ ଅତ୍ୟନ୍ତ କ୍ରୋଧ ହୋଇ ହସ୍ତିନାପୁରକୁ ହଳରେ ଖୋଳି ଯମୁନା ନଦୀରେ ବିଲୀନ କରିଦେବାପାଇଁ ବ୍ୟଗ୍ରହୋଇ ପଡ଼ିଥିଲେ ।ଦୁର୍ଯ୍ୟୋଧନ ତାଙ୍କ କ୍ରୋଧକୁ ଦେଖି ଭୟଭୀତ ହୋଇପଡ଼ିଲେ । ଏହା ପରେ ଖୁବ୍ ସମାରୋହ ତଥା ଧୁମ୍‌ଧାମ୍‌ରେ ଚନ୍ଦ୍ରାବତୀ ଓ ଶାମ୍ବଙ୍କ ବିବାହ ସମ୍ପନ୍ନ ହୋଇଥିଲା । ଏହି କାବ୍ୟର ଭାଷା ଅତ୍ୟନ୍ତ ସରଳ ଓ ମାଧୁର୍ଯ୍ୟପୂର୍ଣ୍ଣ ।

ଦେବଦୁର୍ଲ୍ଲଭ ଦାସ: ସେ 'ରହସ୍ୟମଞ୍ଜରୀ' କାବ୍ୟର ରଚୟିତା । ଏଥିରେ ସେ କୃଷ୍ଣଙ୍କର ରାଣୀମାନଙ୍କ ପ୍ରେମଠାରୁ ଗୋପୀମାନଙ୍କ ପ୍ରେମକୁ ଶ୍ରେଷ୍ଠ ବୋଲି ବିବେଚନା କରିଛନ୍ତି । ରାଣୀମାନଙ୍କର ଏଥିରେ ସନ୍ଦେହ ଉପୁଜିବାରୁ କୃଷ୍ଣ ତାଙ୍କୁ ଗରୁଡ଼ ପିଠିରେ ବସାଇ ବୃନ୍ଦାବନ ନେଇଯାଇଛନ୍ତି । ସେଠି ପହଞ୍ଚି ସେ ରାଣୀମାନଙ୍କୁ ଲୁଚାଇ ଦେଇଛନ୍ତି ଏବଂ ସେ ନିଜେ ବଂଶୀ ବଜାଇ ରାସଲୀଳା କରିଛନ୍ତି । ସେଠି ରାଣୀମାନେ କୃଷ୍ଣଙ୍କର ରାସଲୀଳାକୁ ଦେଖି ଏକ ଦିବ୍ୟ ଅନୁଭୂତିରେ ଭରିଯାଇଛନ୍ତି ଏବଂ ସେହି ଅଲୌକିକ

ପ୍ରେମକୁ ଦେଖି ସେ ଏହା ମଧ୍ୟ ଅନୁଭବ କରିଛନ୍ତି ଯେ, ଗୋପୀଙ୍କ ପ୍ରେମ ତାଙ୍କଠାରୁ ବହୁ ଉଚ୍ଚରେ । ଏହାପରେ କୃଷ୍ଣ ରାଣୀମାନଙ୍କୁ ସାଙ୍ଗରେ ଘେନି ଦ୍ୱାରକା ଫେରି ଆସିଛନ୍ତି । ଭାଷା ତଥା ଭାବ ଦୃଷ୍ଟିରୁ ରହସ୍ୟମଞ୍ଜରୀ କାବ୍ୟର ସ୍ଥାନ ବହୁ ଉଚ୍ଚରେ । ସେ ପଞ୍ଚସଖା ମାର୍ଗର ପଥିକ ଥିଲେ ।

ଉଦାହରଣ

ଏ ମହା ଗ୍ରୀଷ୍ମଋତୁ ବୈଶାଖର ଶେଷ
ବହିଲା ଝଞ୍ଜା ।ପବନ କୃଶାନୁ ବତାଶ
ପାଚିଲେ ଆମ୍ବ ପଣସ ତାତିଲେ ସଲିଳ
ଜଳିଲା ଶରୀର ମୋ ଟଳିଲା କଳେବର
ମୁଁ ଗୋ ମଲି ମଲି
କାନ୍ତ ମୋ ଉପେକ୍ଷି ଗଲେ କେଉଁ ଦୋଷ କଲି ।
X X X
ଗ୍ରୀଷ୍ମମ ସଂପୂର୍ଣ୍ଣ ସଖି, ଆଷାଢର ଅନ୍ତେ
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୁଏନ୍ତେ
ଗାଜିଲେ ଗଗନେ ମେଘୁ ସାଜିଲେ ବରଷା
କି ଜାଣି ନିବିଡ଼ ଘୋର ଅନ୍ଧକାର ନିଶା ।
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି ।
ବିଜୁଳି ଝମକେ ଗୋ ଚମକି କୋଳେ ନାହିଁ ନାହା । (ରହସ୍ୟମଞ୍ଜରୀ)

ଦ୍ୱିତୀୟ ବଳରାମ ଦାସ: ଦ୍ୱିତୀୟ ବଳରାମ ଦାସ ମୁକୁନ୍ଦ ଦେବ(୧୫୫୧ ।୧୫୫୯)ଙ୍କ ଶାସନ କାଳରେ ବିଦ୍ୟମାନ ଥିଲେ । ସେ **କୃଷ୍ଣଲୀଳା**, ରାମଲୀଳା ଓ ଗୁପ୍ତଗୀତାର ରଚୟିତା । ସେ ପଞ୍ଚସଖାଙ୍କ ମତର ସମର୍ଥକ ଥିଲେ ।

ଦୀନବନ୍ଧୁ ଦାସ: ଦୀନବନ୍ଧୁ ଦାସ ଷୋଡ଼ଶ ଶତାବ୍ଦୀର ଶେଷଭାଗର କବି । 'ଛାନ୍ଦ ଚାରୁପ୍ରଭା' ଏବଂ 'ରାଧାକୃଷ୍ଣଲୀଳାମୃତ' ତାଙ୍କର ପ୍ରଧାନ କୃତି । ସେ ଶୁଦ୍ଧଭକ୍ତିମାର୍ଗୀ ଥିଲେ । ତାଙ୍କର ପ୍ରତ୍ୟେକ ରଚନାରେ ଭକ୍ତି ତଥା ନମ୍ରତାରଭାବ ପରିପୂର୍ଣ୍ଣ ରହିଛି । ସେ ଉଚ୍ଚକୋଟିର ବୈଷ୍ଣବ ଭକ୍ତ ଥିଲେ ।

ଦାମୋଦର ଚମ୍ପତିରାୟ: ଶ୍ରୀ ଦାମୋଦର ଚମ୍ପତିରାୟ ରାମଚନ୍ଦ୍ର ଦେବ(୧୫୬୦ -୧୬୦୯)ଙ୍କ ସାମସମୟିକ ଥିଲେ । ସେ ବ୍ରଜବୋଲିରେ **ଶ୍ରୀକୃଷ୍ଣଚରିତ** ଲେଖିଛନ୍ତି ।

ଆଦିରାଗ । ଘନ ଘନ ଗର୍ଜନ ଅମ୍ବର ଘୋର
ଚଉଦିଗେ ଚମକଇ ବିଜୁଳି ଘୋର
ଅହର୍ନିଶ ଝାମ୍ପଇ ମତ୍ତ ମୟୂର
ଧ୍ୱନି ଶୁଣି ହିୟାରା କମ୍ପଇ ମୋର
ଅବହୁ ବିସରି ଗୟେ ନାଗର ଭୋର ।

**ଚାନ୍ଦକବି:** ଚାନ୍ଦକବି ଦାମୋଦର ଚମ୍ପତିରାୟଙ୍କର ସାମସମୟିକ ଥିଲେ । ସେ ମଧ୍ୟ ବ୍ରଜବୋଲିରେ ଶ୍ରୀରାମକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କର ମହିମାଗାନ କରିଛନ୍ତି ।
**ରାମଚନ୍ଦ୍ରଦେବ:** ସେ ଶୁଦ୍ଧଭକ୍ତି ମାର୍ଗର ପଥିକ ଥିଲେ । ସେ ବଙ୍ଗଳା ଏବଂ ଓଡ଼ିଶାରେ **ନବାନୁରାଗ, ବଂଶୀଚୋରି,** ରାସ ଆଦି ପ୍ରସଙ୍ଗକୁ ନେଇ କୃଷ୍ଣ ସମ୍ବନ୍ଧି ଗୋଟିଏ ଗ୍ରନ୍ଥ ରଚନା କରିଥିଲେ ।

**ସାଲବେଗ:** ସାଲବେଗ ଷୋଡ଼ଶ ଶତାବ୍ଦୀର ସନ୍ଥକବି ଥିଲେ । ତାଙ୍କ ପିତା ଲାଲବେଗ ମୁସଲମାନ ସେନାପତି ଥିଲେ ଏବଂ ମାତା ଅପହୃତ ବ୍ରାହ୍ମଣୀ କନ୍ୟା ଥିଲେ । ଯୌବନ କାଳରେ ଯୁଦ୍ଧରେ ସେ କ୍ଷତ ବିକ୍ଷତ ହୋଇ ଅନେକ ଯନ୍ତ୍ରଣା ପାଇଥିଲେ । ଏପରିକି ସେ ଆତ୍ମହତ୍ୟା କରିବାପାଇଁ ଉଦ୍ୟତ ହେଲେ । କିନ୍ତୁ ମାତାଙ୍କ ପ୍ରେରଣାରେ ସେ ଜଗନ୍ନାଥଙ୍କର ଶରଣ ଭିକ୍ଷା କଲେ ଏବଂ ଜଗନ୍ନାଥଙ୍କର ସ୍ପର୍ଶରେ ରୋଗମୁକ୍ତ ହେଲେ । ସେଇ ଦିନଠାରୁ ସେ ସଂସାର ତ୍ୟାଗକରି ବୈରାଗୀ ହୋଇଗଲେ । ଶେଷଜୀବନ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ରରେ ରହି ଜଗନ୍ନାଥଙ୍କୁ ଧ୍ୟାନକରି ନିଜ ସମୟ କାଟିଲେ । ତାଙ୍କଦ୍ୱାରା ଲେଖାଯାଇଥିବା ଭଜନଗୁଡ଼ିକ ଅତ୍ୟନ୍ତ ସରଳ ଓ ଭାବଗ୍ରାହୀ । ସେଥିପାଇଁ ଏଗୁଡ଼ିକ ଲୋକମୁଖରେ ଖୁବ୍ ପ୍ରଚଳିତ । ଭଜନସାହିତ୍ୟ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟକୁ ଆମେ ଖୁବ୍ ଧନୀ କହିପାରିବା ନାହିଁ, କିନ୍ତୁ ସାଲବେଗଙ୍କଦ୍ୱାରା ରଚିତ ଭଜନଗୁଡ଼ିକ ବେଶ ଆଦୃତ ।

**ଉଦାହରଣ:**

ମୋତେ ସେହି ରୂପ ଦେଖାଅ ହରି
ଜୟଶ୍ରୀ ରାଧେରାଧେ ଡାକେ ବାଂଶରୀ
ଯେଉଁ ରୂପେ ବନ୍ଦୀଦ୍ୱାରେ ହେଲ ଭିକାରୀ ।
ଡ଼ାହାଣେ ଶ୍ରୀ ହଳପାଣି ମଧ୍ୟ ସୁଭଦ୍ରା ଭଉଣୀ
ବାମପାଶେ ବସିଛନ୍ତି ଶଙ୍ଖ -ଚକ୍ର –ଗଦା- ଧାରୀ ।
କହେ ସାଲବେଗ ହୀନ ଜାତିରେ ଅଟେ ଯବନ
କଂସ ଅଷ୍ଟମଲ୍ଲ ମାରି କାହାକୁ ନଅଛ ତାରି ।

**ଗୋପେନ୍ଦ୍ର କବି:** ଗୋପେନ୍ଦ୍ର କବିଙ୍କର 'ମଧୁପ ଚଉତିଶା' ଏକ ମାତ୍ର ରଚନା ଏଯାବତ୍ ଉପଲବ୍ଧ । ସେ ଷୋଳଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କବି । ତାଙ୍କ ରଚନାରେ ସେ ଶ୍ରୀକୃଷ୍ଣଙ୍କ ରାସଲୀଳାର ବର୍ଣ୍ଣନା କରିଅଛନ୍ତି ।

**ଧରଣୀଧର ଦାସ:** ଇଏ ଷୋଡ଼ଶ ଶତାବ୍ଦୀର ପ୍ରଥମ ଚରଣର କବି । ସେ ଉତ୍କଳବାସୀଙ୍କପାଇଁ ଗୀତଗୋବିନ୍ଦ ଓଡ଼ିଆ ଅନୁବାଦ କରିଥିଲେ । ଗୀତଗୋବିନ୍ଦର ଏହି ଓଡ଼ିଆ ଅନୁବାଦଟି ବେଶ୍ ପ୍ରସିଦ୍ଧି ଲାଭ କରିଥିଲା ।

**କାର୍ତ୍ତିକ ଦାସ:** ସେ ଷୋଡ଼ଶ ଶତାବ୍ଦୀର ଅନ୍ତିମ ପର୍ଯ୍ୟାୟର କବି । 'ନବାନୁରାଗ' ଏବଂ 'ରୁକ୍ମିଣୀବିବାହ' ତାଙ୍କର ଦୁଇଟି କାବ୍ୟଗ୍ରନ୍ଥ । ନବାନୁରାଗ ବିଷୟଟି ପାଞ୍ଚଟି ଛନ୍ଦରେ ବର୍ଣ୍ଣିତ, ତା'ପରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମିଳନର ବର୍ଣ୍ଣନା ଅତ୍ୟନ୍ତ ମାଧୁର୍ଯ୍ୟପୂର୍ଣ୍ଣ ଶୈଳୀରେ କରାଯାଇଛି । ରୁକ୍ମିଣୀବିବାହ ଦଶଟି ଛନ୍ଦରେ

ଲେଖାଯାଇଅଛି । ଏଥିରେ ରୁକ୍ମିଣୀଙ୍କୁ ବରଣ କରିବାପାଇଁ ଆସିଥିବା ଶିଶୁପାଳର ପରାଭବ, ରୁକ୍ମିଣୀଙ୍କ ଦ୍ୱାରା ପଠାଇଥିବା ଦୂତର ସମ୍ବାଦ ଅନୁସାରେ ଶ୍ରୀକୃଷ୍ଣଙ୍କର ରୁକ୍ମିଣୀ ହରଣ ଆଦି ବିଷୟ ଅତ୍ୟନ୍ତ ମଧୁରଶୈଳୀରେ ପରିବେଷଣ କରାଯାଇଅଛି । କବି ଏହି ବିଷୟଟିକୁ ଶ୍ରୀମଦ୍ଭାଗବତ ଓ ପଦ୍ମପୁରାଣରୁ ନେଇଛନ୍ତି ସତ୍ୟ, କିନ୍ତୁ ତାକୁ ଉତ୍କଳୀୟ କଳା, ସଂସ୍କୃତି ଓ ଛାନ୍ଦରେ ଏପରି ଭରି ଦେଇଛନ୍ତି ଯେ, ତାହା ସମ୍ପୂର୍ଣ୍ଣ ମୌଳିକ କୃତି ରୂପରେ ଆମ ସମ୍ମୁଖରେ ଉପସ୍ଥିତ । ନିମ୍ନୋକ୍ତ ଉଦାହରଣରୁ ଆମେ ତା'ର ମହତ୍ତ୍ୱର କଳ୍ପନା କରିପାରିବା ।

ରୁକ୍ମିଣୀ ରୂପ ବର୍ଣ୍ଣନା:

କୁଟିଳ କୁନ୍ତଳ ନୀଳ କବରୀ ଭାର । ତହିଁକି ସମାନ କାହିଁ ହେବ ମୟୂର ।।
ଭ୍ରମର ବିଳାପ କରେ ବିପିନେ ଯାଇ । ଚାମରୀ ଚାମର ଅଧୋ ଭାଗେ ଲୁଚାଇ ।।
ଉପର ମୋତି ଜାଲିକା ରଞ୍ଜିଲା ସେହୁ । ତାରାଗଣ ଘୋଟିଲା କି ନବୀନ ମେହୁ ।।
ରଂଜିଲା ସିଉନ୍ତି ସିମନ୍ତିନୀ ରତନ । ମଦନ ମାର୍ଗଣ ମାର୍ଗ ଦେଖି ଯେସନ ।।
ତଥିର ଉପରେ ବାଳୀ ସିନ୍ଦୂର ରଂଜେ । ରବିକି ବନ୍ଧନ ଜାଣି ଅନ୍ଧାର ପୁଞ୍ଜେ ।।
ତାହାର ମୁଖକୁ କି ଉପମା ଭୂତଳେ । ଦେଖି କଳାନିଧି କଳା କ୍ଷୀଣମଣ୍ଡଳେ ।।
ଦର୍ପଣ ଅଟଇ ଅତିବଡ଼ କଠିଣ । ତାହାକୁ ଉପମା କିମ୍ପା ଦେବ ମୁଖେଣ ।।
କମଳ ମୁଦ୍ରିତ ନିଶାକାଳେଣ ହୁଏ । ରୁକ୍ମିଣୀ ମୁଖମଣ୍ଡଳ ସର୍ବଦା ଶୋହେ ।।
ଅଳକା ବେଢଣ ମୁଖ ଦିଶଇ ଶୋଭା । ତହିଁକି ଉପମା କିସ ନେବାକି ଅବା ।।
ସମ୍ପୂର୍ଣ୍ଣ ଚନ୍ଦ୍ରମା ମୁଖୁ କଳଙ୍କ କାଢ଼ି । ଯେବେ ମଣ୍ଡଳ ବେଢ଼ି ।।
ସେ କାଳ ଚନ୍ଦ୍ରମଣ୍ଡଳ ହେବ ଉପମା । ସହଜେ ରୁକ୍ମିଣୀ ମୁଖ ଲାବଣ୍ୟ ସୀମା ।।

ପରବର୍ତ୍ତୀ କାଳରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର କାନ୍ତ କାବ୍ୟାବଳୀରେ ଉତ୍ପ୍ରେକ୍ଷା ତଥା ଉପମା ଅଳଙ୍କାରର ବହୁଳତା ଦେଖିବାକୁ ମିଳିଥିଲା । ଏହି ପରମ୍ପରା ସ୍ଥାପକ ଶିଶୁଶଙ୍କର ଦାସ ଓ ରୁକ୍ମିଣୀବିବାହର ରଚୟିତା କାର୍ତ୍ତିକ ଦାସ ଅଟନ୍ତି ।

ରାମଚନ୍ଦ୍ର ପଟ୍ଟନାୟକ: ରାମଚନ୍ଦ୍ର ପଟ୍ଟନାୟକ ୧୭ଶ ଶତାବ୍ଦୀରେ ପ୍ରଥମ ଚରଣର କବି । କାବ୍ୟର କଥା ନିର୍ବାଚନରେ ସେ ମୌଳିକତା ଦେଖାଇଛନ୍ତି । କଥାକୁ କୌଣସି ପୁରାଣର ଆଧାର କରିନାହାନ୍ତି । ତାଙ୍କ ଗ୍ରନ୍ଥର ନାୟକ ନାୟିକା ମଧ୍ୟ କୌଣସି ଅଭିଜାତ ବର୍ଗର ନୁହନ୍ତି । ନାୟିକା ଜାତିରେ ଗୁଡ଼ିଆଣୀ ତଥା ନାୟକ ମଧ୍ୟ ଏକ ସାଧାରଣ ଯୁବକ । ଓଡ଼ିଆ ସାହିତ୍ୟରେ ରାମଚନ୍ଦ୍ର ପଟ୍ଟନାୟକ ପ୍ରଥମ ବ୍ୟକ୍ତି, ଯିଏ କାବ୍ୟଧାରାରେ ପରିବର୍ତ୍ତନ କରି ସାଧାରଣ ଜୀବନରୁ ନାୟକ ଓ ନାୟିକା ବାଛି ନିଜ କାବ୍ୟରେ ସ୍ଥାନୀତ କଲେ । ତାଙ୍କ କାବ୍ୟରୁ ଏହା ପ୍ରମାଣିତ ହୁଏ ଯେ, ନିବିଡ଼ ପ୍ରେମ ସମାଜର ପ୍ରତ୍ୟେକ ବ୍ୟକ୍ତିଠାରେ, ସେ ଧନୀ ବା ଗରିବ, ସମ୍ଭ୍ରାନ୍ତ ଅଥବା ନିମ୍ନବର୍ଗର ହେଉ । ଅଭିଜାତ ବର୍ଗର ଲୋକଙ୍କର ପ୍ରେମ ଉପରେ ଏକତରଫା ଅଧିକାର ଉପରେ ତାଙ୍କର ବିଶ୍ୱାସ ନ ଥିଲା । ଅନୁଭବ କରୁଥିଲେ । ପ୍ରେମ ବ୍ୟାପକ ଏବଂ ସର୍ବେଶ୍ୱର, କେବଳ କୁଳୀନତା ସାପେକ୍ଷ ନୁହେଁ ।

**ପ୍ରତାପ ରାୟ:** ଅନୁମାନ କରାଯାଏ ଯେ, ସନ ୧୬୧୦ ରୁ ୧୭୨୦ ମଧ୍ୟରେ ସେ ଜୀବିତ ଥିଲେ । ସେ ଲୋକ ପ୍ରସିଦ୍ଧ କଥା ଏବଂ ଲୋକକଥାଗୁଡ଼ିକୁ ନିଜ କାବ୍ୟରେ ସ୍ଥାନ ଦେଇଥିଲେ ଏବଂ ନିଜ କାବ୍ୟକଳାର ସୁନ୍ଦରତା ପ୍ରଦର୍ଶନ ମଧ୍ୟ କରିଥିଲେ । କାବ୍ୟର ନାୟିକା ଶଶିଶେଣାଙ୍କ ନାମ ଅନୁସାରେ ତାଙ୍କ କାବ୍ୟର ନାମ ରଖାଯାଇଥିଲା । କାବ୍ୟର ନାୟକ ଅହିମାଣିକ୍ୟ ରାଜକୁମାର । ଶଶିଶେଣା ମଧ୍ୟ ମନ୍ତ୍ରୀଙ୍କର ସୁପୁତ୍ରୀ । ବାଲ୍ୟକାଳରୁ ଏକାଠି ଶିକ୍ଷାଲାଭ କଲାବେଳେ ଦୁହେଁ ଦୁହିଁଙ୍କ ପ୍ରତି ଆକର୍ଷିତ ହୁଅନ୍ତି । ଉଭୟଙ୍କ ମଧ୍ୟରେ ପ୍ରେମ ଜାତହୁଏ ଓ ଯୌବନର ଆଗମନ ପରେ ଗୁରୁଙ୍କଠାରୁ ଆଜ୍ଞାପାଇ ଦୁହେଁ ଦେଶାନ୍ତର ହୁଅନ୍ତି । ଶଶିଶେଣା ତାଙ୍କ ପତି । ପରାୟଣ ଓ ବୁଦ୍ଧିମତାପାଇଁ ଅନେକ ବିପଦରୁ ପତିଙ୍କୁ ରକ୍ଷା କରିବାରେ କ୍ଷମ ହୋଇଛନ୍ତି । ଶଶିଶେଣାଙ୍କ କହିବା ଅନୁସାରେ- ଅହିମାଣିକ୍ୟ ରାଜକୁମାରୀ ଚନ୍ଦ୍ରାବତୀଙ୍କ ସହ ବିବାହ କରିଛନ୍ତି ଓ ତିନିଜଣଯାକ ପୁନଃ ସ୍ୱଦେଶ ଫେରିଛନ୍ତି । ସଂକ୍ଷେପରେ, ତାଙ୍କ କାବ୍ୟର କଥାଟି ଉପରେ କୁହାଗଲା ।

କବି ପ୍ରତାପ ରାୟ ସର୍ବସୁଲଭ ଓ ସରଳ ଭାଷାରେ ଏହି ଛାନ୍ଦକାବ୍ୟଟିର ରଚନା କରିଥିଲେ । କେବଳ ମାତ୍ର ଚମତ୍କାର ଦେଖାଇବାପାଇଁ ସେ ଅଳଙ୍କାରର ପ୍ରୟୋଗ କରି ନ ଥିଲେ । ସେ ଚମତ୍କାରପୂର୍ଣ୍ଣ କଥାବସ୍ତୁ ଓ ଗୀତର ସାବଲୀଳ ସରଳ ପ୍ରବାହଦ୍ୱାରା ହୃଦୟକୁ ମୁଗ୍ଧ କରିବାରେ କ୍ଷମ ହୋଇଥିଲେ । ଉତ୍କଳର ଜନପ୍ରିୟ କାବ୍ୟଗୁଡ଼ିକ ମଧ୍ୟରେ 'ଶଶିଶେଣା' ଅନ୍ୟତମ । ଉଦାହରଣ ପାଇଁ ନିମ୍ନୋକ୍ତ ପଙ୍କ୍ତି ଦ୍ରଷ୍ଟବ୍ୟ ।

ଶଶିଶେଣାର ଶୋକ:

ଯେତେ ରସ କଉତୁକ ପଢିବାର ବେଳେ
ସେ କଥାମାନ କି ସବୁ ପାସୋରିଲ ତାଳେ ।
ସତ୍ୟ କରାଇଣ ମୋତେ ହୋଇଲ ଯେ ବିଭା
ଆଜ୍ଞାଦେଲ ଚାଲ ସଖି, ବିଦେଶକୁ ଯିବା ।
ମାତା ପିତା ବନ୍ଧୁବର୍ଗ ଛଡ଼ିଣ ମୁଁହାସ
ତୁମ୍ଭର ଚରଣେ ଏକା ବଳାଇଲି ଆଶ ।
ଯେତେ ଯେତେ ବିଦେଶରେ ପଡ଼ିଲା ବିପତ୍ତି
ଈଶ୍ୱର ପାର୍ବତୀ ସିନା ସେ ଦୁଃଖ ଜାଣନ୍ତି ।
ନିମିଷକ ଲକ୍ଷ ଯୁଗ ନ ଦେଖିଲେ ମୋତେ
ଦାରୁଣ ହୃଦୟ ଏବେ ହୋଇଲ କେମନ୍ତେ ।
ଛାଡ଼ିଲ ସେନେହ ତେଡ଼େ ବଢାଇ ପୀରତି
ଏବେ ଛାଡ଼ିକରି ଗଲ ଅନାଥ ଯୁବତୀ । (୧୨ତମ ଛାନ୍ଦ)

**ବୃନ୍ଦାବନ ଦାସ:** କବି ଧରଣୀଧରଙ୍କର ପରବର୍ତ୍ତୀ କବି ବୃନ୍ଦାବନ ଦାସ । ପ୍ରସିଦ୍ଧ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ'ର ସେ ଓଡ଼ିଆ ଅନୁବାଦକ । ଏହି ଅନୁବାଦଟି

ଛନ୍ଦବଦ୍ଧ ଅନୁବାଦ । ଗ୍ରନ୍ଥର ନାମ 'ରସବାରିଧି' । ନିମ୍ନୋକ୍ତ ପଙ୍କ୍ତିଗୁଡ଼ିକ ସଂସ୍କୃତ ପଦ ସହିତ ତୁଳନୀୟ: ।

ବାସନ୍ତୀ ଲତା ବସନ୍ତେ ଆମୋଦ   କୁସୁମ ବେଢ଼ି ଭ୍ରମରଙ୍କ ଖେଦ
ରାଧିକା ମଦନେ ବିକାର ପାଇ   ବନ୍ଧୁ ବିହିତେ କୃଷ୍ଣାନୁସରଇ
ସେ କନ୍ଦର୍ପ ଜ୍ୱର
ହୃଦରେ ଘେନିଲା ଚିନ୍ତା ଅପରା ।
ଆକୁଳେ ବପୁ ଖିନ କଲା ଯହୁଁ   ସହଚରୀ ରାଇ ବୋଲଇ ତହୁଁ
ବସନ୍ତ ବନିତା ବିକାର କରି   ବୋଲଇ ସଖୀ ଶୁଣ ସହଚରି ।
ସରସ ବସନ୍ତେ
ହରି ବିହରନ୍ତି ବୃନ୍ଦାବନାନ୍ତେ ।
ଯୁବତୀ ଜନଙ୍କ ସଙ୍ଗତେ ନୃତ୍ୟ   ବିରହୀ ଜନଙ୍କୁ ଅତି ଦୁରନ୍ତ
ଦେଖ ସଜନି! ବସନ୍ତ ଋତୁ   ବିରହୀ କେମନ୍ତ ଧରିବେ ଚିତ୍ତ
ଏ ଲତାକୁ ଚାହିଁ
ସ୍ୱଭାବେ କାମ ବଳିଲା ଉତ୍ସାହ ।
ଲଳିତ ଲବଙ୍ଗ ଲତା ପ୍ରବଳ   ମଳୟ ସମୀର ଅତି କୋମଳ
ଭ୍ରମର ନିକର କୋକିଳ ଭାବେ   କୁଞ୍ଜ କୁଟୀରେ କଳକଳ ରାବେ
କି ରାୟେ ମଦନ
ଆଗମ କଲା ଗୋପ ବୃନ୍ଦାବନ   ।
ମଦନ ପ୍ରବଳ ମନରେ ଜାତ   ପଥି କି ବଧୂ ବିଳପଇ ଚିତ୍ତ
ଅଳୀକୁଳ ଯୂଥ କୁସୁମ ସ୍ଫୁଟେ   ଚୁମ୍ବନ କରି ପରାଗେଣ ଲୁଟେ
ବକୁଳ କଳାପେ
ମଧୁ ପାନକରେ ବସନ୍ତ ଦର୍ପେ ।

କଣ୍ଠ ଦାସ: ଛଅପୋଇ ତଥା ନଅପୋଇ ଗୀତି ପୁସ୍ତକଗୁଡ଼ିକର ପ୍ରଣେତା । ଏହି ଗୀତି ପୁସ୍ତିକା ଦ୍ୱୟରେ ରାଧାକୃଷ୍ଣଙ୍କ ପ୍ରେମର ବର୍ଣ୍ଣନା କରାଯାଇଅଛି । ଏହାର ରଚନାଶୈଳୀ ସରଳ ତଥା ରସପୂର୍ଣ୍ଣ । କଣ୍ଠ ଦାସ ୧୭ଶ ଶତାବ୍ଦୀର ପୂର୍ବାର୍ଦ୍ଧର କବି ।

ମଧୁସୂଦନ ଦାସ: ନଳଚରିତର ରଚୟିତା, କଣ୍ଠଦାସଙ୍କର ସାମସମୟିକ ଅଟନ୍ତି । ଭାଷା ଓ ଭାବ ଦୃଷ୍ଟିରୁ ତାଙ୍କର କାବ୍ୟ ସରଳ ଓ ସର୍ବଜନଗ୍ରାହ୍ୟ । ନିମ୍ନୋକ୍ତ ପଙ୍କ୍ତିଗୁଡ଼ିକୁ ପାଠକଲେ, ଆମେ ତାଙ୍କ କାବ୍ୟ ଭାଷାର ଅନୁମାନ କରିପାରିବା ।

ଭୀମରାଜା ଉଠି ବେଗେ   ପାତ୍ର ଅମାତ୍ୟ ସଙ୍ଗେ
ପାଛୋଟି ଯାନ୍ତେ ସିଂହଦ୍ୱାରେ ଦେଖିଲେ
ପଲଙ୍କରୁ ଓହ୍ଲାଇଲେ   ଚରଣ ତଳେ ପଡ଼ିଲେ
ଦୁହିତାକୁ ବେଗେ ରାଜା ଟୋକି ଧଇଲେ
ରାଜା ବଡ଼ ଉଲ୍ଲାସ ହୋଇ

ରୋମ ପୁଲକିତ ଚକ୍ଷୁ ଲୋତକ ବହି ।
ଜନ୍ମ ଅନ୍ଧ ଯେଣେ ଥାଇ     ସେହି କ୍ଷଣି ଚକ୍ଷୁ ପାଇ
ଯେସନେ ଦରିଦ୍ର ଧର୍ମ ପ୍ରପାତ ହୋଇ
ଅପୁତ୍ରିକର ଯେସନ     ପୁତ୍ର ଜାତହେଲେ ମନ
ରାଜ୍ୟଭ୍ରଷ୍ଟ ରାଜା ତା'ର ରାଜ୍ୟକୁ ପାଇ
ଭୀମ ରାଜା ତେତେ଼ ହରଷ
ସଂଗତେ ଦୁହିତା ଘେନି ପୁରେ ପ୍ରବେଶ ।

**ଭୀମ ଧିବର:** ସେ ୧୭ଶ ଶତାବ୍ଦୀ ପୂର୍ବାର୍ଦ୍ଧର କବି । ତାଙ୍କର ଜାତି କେଉଟ । ସେ 'ଭାରତ ସାବିତ୍ରୀ' ଏବଂ ' କପଟପାଶ' ନାମକ ଦୁଇଟି କାବ୍ୟ ରଚନା କରିଥିଲେ । 'କପଟପାଶ' ର ଭାଷା ସରଳ ଓ ସୁମଧୁର ଏବଂ ଏହି ଗ୍ରନ୍ଥଟି ଅତ୍ୟନ୍ତ ଜନପ୍ରିୟ ମଧ ଥିଲା ।

**ଈଶ୍ୱର ଦାସ:** ସେ ଜାତିରେ ଗଣକ ଏବଂ ଭୀମା କବିଙ୍କ ସମକାଳୀନ । ସେ ଓଡ଼ିଶାରେ 'ଚୈତନ୍ୟଭାଗବତ' ଗ୍ରନ୍ଥର ରଚନା କରିଥିଲେ । ଚୈତନ୍ୟଭାଗବତରେ ଶ୍ରୀ ଚୈତନ୍ୟଙ୍କର ଜୀବନଚରିତ ଓ ଓଡ଼ିଆରେ ରହଣି କାଳରେ ତାଙ୍କର ଲୀଳା ବିଷୟରେ ବିଶଦ ବର୍ଣ୍ଣନା କରାଯାଇଅଛି । ଏଥିରେ ଅନେକ ଭ୍ରାନ୍ତିପୂର୍ଣ୍ଣ ଓ ଅତିରଞ୍ଜିତ ବର୍ଣ୍ଣନା କରାଯାଇଅଛି । ଈଶ୍ୱର ଦାସ ପଞ୍ଚସଖାଙ୍କ ମତାବଲମ୍ବୀ, ଅର୍ଥାତ୍ ଜ୍ଞାନମିଶ୍ରିତ ଭକ୍ତିର ପଥିକ ଥିଲେ । ସେ କହୁଥିଲେ- ଜଗନ୍ନାଥ ହିଁ ବୁଦ୍ଧଦେବ ଅଟନ୍ତି । ଶ୍ରୀଚୈତନ୍ୟ ମଧ ବୁଦ୍ଧଦେବଙ୍କର ଅବତାର । ତାଙ୍କର କୃତିକୁ ଅନୁମାନ କରାଗଲେ ଜଣାପଡ଼େ ଯେ, ସେ ବୁଦ୍ଧ, କବୀର, ନାନକ ଆଦି ସମସ୍ତଙ୍କ ଅନୁଗାମୀ । ମାତ୍ର ଶ୍ରୀଚୈତନ୍ୟଙ୍କର ମଧ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

**ଗୁରୁବାରୀ ଦାସ:** ସେ ୧୭ଶ ଶତାବ୍ଦୀର ପ୍ରଥମ ଭାଗର କବି । ସଂହିତାରେ ସେ ପିଣ୍ଡକୁ ହିଁ ବ୍ରହ୍ମାଣ୍ଡର ଆଖ୍ୟା ଦେଇଛନ୍ତି । ସେ ବିଶ୍ୱାସ କରନ୍ତି ଯେ, ସବୁ ଦେବୀ ଓ ଦେବତାଙ୍କ ନିବାସସ୍ଥାନ ହେଲା ଏହି ପିଣ୍ଡ । ପିଣ୍ଡ ସମ୍ବନ୍ଧ ସମ୍ୟକ ଜ୍ଞାନ ଉତ୍କୃଷ୍ଟ ବ୍ରହ୍ମଜ୍ଞାନ ।

**ଯଦୁପତି ଦାସ:** ଯଦୁପତି ଦାସ ରାଜା ନରସିଂହଦେବ(୧୬୦୫ ।୧୬୩୫)ଙ୍କର ସାମସମୟିକ ଥିଲେ । ସେ ବ୍ରଜବୁଲିରେ ନରସିଂହଦେବଙ୍କର ପ୍ରଶସ୍ତି ଗାନ କରିଅଛନ୍ତି । ନିମ୍ନରେ ତାଙ୍କର ପ୍ରଶସ୍ତି ଗାନ ଉଦାହରଣ ସ୍ୱରୂପ ଦିଆଗଲା ।

ସର୍ବ ଅବନୀ ପୂତିବିକ୍ରମେ ଶକତି ବିବିଧ ରଙ୍ଗ ରତି ବିହରତି
ଲାବଣ୍ୟେ ଗଞ୍ଜତି ଲାଖ ରଜନୀପତି ଗୌରବେ ଔରକି ଗିରି ପଡ଼ିଆ
ଦେବୀ ଭାନୁମତି ରସବଶସଂଖାଡି ବିବିଧ ରଙ୍ଗରତି ବିହରତିଆ
ନୀଳଗିରି କୋ ପତି ଚରଣ କମଳେ ମତି ବିଜୟ ତୁ ନରସିଂହ ନରପତିଆ
ଓଉଦିନଲେ ନୃପ ନରସିଂହ ଧରଣୀ ତଳେ ।

ହଳଧର ଦାସ: ହଳଧର ଦାସ ରାଜା ମୁକୁନ୍ଦ ଦେବ(୧୬୫୯ ।୮୫)ଙ୍କ ସମକାଳୀନ ଥିଲେ । ମୁକୁନ୍ଦଦେବଙ୍କର ଅନୁଜ ଓ ଅନନ୍ତଙ୍କର କନିଷ୍ଠ ପୁତ୍ର ଥିଲେ । ସନ ସପ୍ତଦଶ ଶତାବ୍ଦୀରେ ସେ ଆଧ୍ୟାତ୍ମରାମାୟଣର ରଚନା କରିଥିଲେ । ଏହା ମୂଳ ସଂସ୍କୃତର ସରଳ ଅନୁବାଦ । ଏହି ଗ୍ରନ୍ଥଟି ଅତ୍ୟନ୍ତ ଜନପ୍ରିୟ ହୋଇଥିଲା ।

ବିପ୍ର ସଦାଶିବ: ୧୭ଶ ଶତାବ୍ଦୀର ମଧ୍ୟଭାଗର କବି । ତାଙ୍କର ମଧୁର ଜନପ୍ରିୟ ରଚନା ହେଲା 'ବିଚିତ୍ରହରିବଂଶ' । କଂଶବଧରେ ଏହାର ଉପସଂହାର ହୁଏ । ବିପ୍ର ସଦାଶିବ 'ଗୋପଲୀଳା'ର ରଚନା ଯାତ୍ରା ଉଦ୍ଦେଶ୍ୟରେ କରିଥିଲେ । ସେଥିପାଇଁ ସ୍ଥାନେସ୍ଥାନେ ଶୈଳୀ ଗଦ୍ୟାତ୍ମକ ହୋଇଯାଇଛି । ଏଥିରେ କଥୋପକଥନ ଶୈଳୀ ମଧ୍ୟ ଅଧିକ । ସେ ପଞ୍ଚସଖାଙ୍କର ଧର୍ମାବଲମ୍ବୀ ମଧ୍ୟ ଥିଲେ । ତାଙ୍କର କାବ୍ୟ ଭାଷା ସରଳ ଏବଂ ଲଳିତ ।

ଶିଶୁ ଈଶ୍ୱର ଦାସ: ଶିଶୁ ଈଶ୍ୱର ଦାସ ସଦାଶିବଙ୍କର ସମକାଳୀନ । ସେ 'ନଳରାମ ଚରିତ'ର ରଚନା କରିଥିଲେ । ଏଥିରେ ନଳ ଏବଂ ରାମ ଉଭୟଙ୍କ ଚରିତ ସମାନ ଭାବରେ ବର୍ଣ୍ଣନା କରାଯାଇଅଛି । ଏହାର ଭାଷା ସର୍ବଜନଗ୍ରାହ୍ୟ ଓ ସରଳ । ସେ ଶୁଦ୍ଧଭକ୍ତି ମାର୍ଗର ପଥିକ ଥିଲେ ।

ମହାଦେବ ଦାସ: ମହାଦେବ ଦାସଙ୍କ ନାମ ପୁରାଣ ଲେଖକ ଭାବେ ପ୍ରସିଦ୍ଧ ରହିଛି । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣ ଦାସ ଏବଂ ମାତାଙ୍କ ନାମ ମୁକ୍ତାଦେଈ । ସେ ର୍ମାକଣ୍ଡପୁରାଣ, ବିଷ୍ଣୁକେଶରୀପୁରାଣ, ପଦ୍ମପୁରାଣ, କାର୍ତ୍ତିକପୁରାଣ, ବୈଶାଖପୁରାଣ, ମାଘପୁରାଣ, ଆଷାଢପୁରାଣ, ଦ୍ୱାଦଶୀମହାତ୍ମ୍ୟ, ନୀଳାଦ୍ରିମହୋଦୟ ଏବଂ ଇତିହାସପୁରାଣ ଗ୍ରନ୍ଥ ଲେଖିଛନ୍ତି । ସେ ସଂସ୍କୃତ ବ୍ୟାକରଣର ସିଧା ଅନୁବାଦ ନ କରି ତା'ର ବିଭିନ୍ନ ଆଖ୍ୟାୟିକାଗୁଡ଼ିକୁ ସ୍ୱତନ୍ତ୍ର ରୂପ ଦେଇଛନ୍ତି । ଉତ୍କଳର ଧର୍ମପରାୟଣ ବ୍ୟକ୍ତିମାନେ ତାଙ୍କ ପାଖରେ ଚିର ଋଣୀ ।

ମୁକୁନ୍ଦ ଦାସ: ମୁକୁନ୍ଦ ଦାସ ୧୭ଶ ଶତାବ୍ଦୀର ମଧ୍ୟ ଭାଗର କବି । ସେ ସଂସ୍କୃତରେ ବେତାଳ ।ପଞ୍ଚବିଂଶତି ଗ୍ରନ୍ଥକୁ ଆଧାର କରି ୨୫ ଛନ୍ଦରେ ଓଡ଼ିଆ କାବ୍ୟ ରଚନା କରିଥିଲେ । ତାଙ୍କର ଭାଷା ସରଳ ଓ ବୋଧଗମ୍ୟ ।

ସିଦ୍ଧେଶ୍ୱର ଦାସ: ସିଦ୍ଧେଶ୍ୱର ଦାସ ସୀତା ବନବାସ ଠାରୁ ଆରମ୍ଭକରି ରାମାୟଣର ଅନ୍ତ ପର୍ଯ୍ୟନ୍ତ କଥାକୁ ନେଇ 'ବିଚିତ୍ରରାମାୟଣ' ନାମକ କାବ୍ୟଗ୍ରନ୍ଥ ଲେଖିଥିଲେ । ତାଙ୍କ ରଚନା ଉଚ୍ଚକୋଟୀର ନୁହେଁ, କିନ୍ତୁ ସରଳ । ସେ ମୁକୁନ୍ଦ ଦେବଙ୍କର ସାମସମୟିକ ।

ଗୋପୀନାଥ ଦାସ: ଗୋପୀନାଥ ଦାସ ସାରଳା ମହାଭାରତକୁ ଆଧାରକରି 'ଟୀକା ମହାଭାରତ' ନାମକ ଗ୍ରନ୍ଥ ରଚନା କରିଥିଲେ । ଏହା ଏକ ଜନପ୍ରିୟ କୃତି । ଏଥିରେ ସାରଳା ମହାଭାରତର ସାର କଥାଗୁଡ଼ିକ ଅନ୍ତର୍ନିହିତ ରହିଛି ।

ଦ୍ୱାରକା ଦାସ: ଦ୍ୱାରକା ଦାସଙ୍କ ଜନ୍ମ ୧୬୬୨ ମସିହାରେ । ସେ ପରଚେଗୀତା, ପରଚେଚୂଡ଼ାମଣି, ତ୍ରୟୋଦଶସ୍କନ୍ଧ ଭାଗବତ, ପ୍ରେମରସ -ଚନ୍ଦ୍ରିକା, ତଥା

ଶିବ ପୁରାଣ ଆଦି ଗ୍ରନ୍ଥ ଲେଖିଥିଲେ । ସେ ପଞ୍ଚସଖା ଧର୍ମଧାରାର ଅନୁଗାମୀ । ତାଙ୍କ ଗ୍ରନ୍ଥରେ ରହସ୍ୟବାଦର ଝଲକ ମଧ୍ୟ ଦେଖିବାକୁ ମିଳିଥାଏ । ୧୭୪୦ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

**ଶ୍ରୀଧର ଦାସ:** କାଳ୍ପନିକ କଥାବସ୍ତୁକୁ ଆଧାରକରି ସେ 'କାଞ୍ଚନଲତା' ନାମକ ଏକ ଛନ୍ଦବଦ୍ଧ କାବ୍ୟ ରଚନା କରିଥିଲେ । ତାଙ୍କ ଗ୍ରନ୍ଥକୁ ପାଠକଲେ ଜଣାଯାଏ ଯେ, ସେ ଜଣେ ଉଚ୍ଚକୋଟୀର ବିଦ୍ୱାନ ମଧ୍ୟ ଥିଲେ । ତାଙ୍କ କାବ୍ୟର ନାୟକ ଶ୍ରୀକୃଷ୍ଣଙ୍କର ମାନସପୁତ୍ର ଓ ଶ୍ରୀରାଧାଙ୍କର ମାନସୀପୁତ୍ରୀ ଅଟନ୍ତି । ରାଧାଙ୍କ ଆସକ୍ତିକୁ ଆଧାରକରି ଶ୍ରୀକୃଷ୍ଣଙ୍କୁ ରାଜପରିବାରେ ଜନ୍ମ ନେବାପାଇଁ ପୃଥିବୀକୁ ପଠାଇଥିଲେ । ସେଠି ରାଜକୁମାର ମନୋଜ ତଥା ରାଜକୁମାରୀ କାଞ୍ଚନଲତାଙ୍କର ଜନ୍ମ ହେଲା । କବି ନିଜ କାବ୍ୟରେ ଏ ଦୁହିଁଙ୍କର ବିବାହ, ମିଳନ ଆଦିର ବର୍ଣ୍ଣନା ଅତ୍ୟନ୍ତ ଦକ୍ଷତାର ସହ କରିଛନ୍ତି । ଅନୁମାନ କରାଯାଏ, ସେ ୧୭ଶ ଶତାବ୍ଦୀର କବି ଥିଲେ ।

**ବିଷ୍ଣୁ ଦାସ:** ସେ ଜାତିରେ ବ୍ରାହ୍ମଣ ତଥା ବିଦ୍ୱାନ ଥିଲେ । ତାଙ୍କର ପରବର୍ତ୍ତୀ କବି ରଘୁନାଥ ହରିଚନ୍ଦନଙ୍କଦ୍ୱାରା ରଚିତ ଲାବଣ୍ୟବତୀ କାବ୍ୟରୁ ଜଣାଯାଏ ଯେ, ସେ ଅନେକ ଗ୍ରନ୍ଥ ରଚନା କରିଥିଲେ । ହରିଚନ୍ଦନ ତାଙ୍କୁ ନିଜ ଗୁରୁ ବୋଲି କହୁଥିଲେ । ତାଙ୍କ କହିବା ଅନୁସାରେ, ବିଷ୍ଣୁ ଦାସ ଉତ୍କଳରେ ନିଜ ସମୟରେ ଅନେକ ଖ୍ୟାତି ଅର୍ଜ୍ଜନ କରିଥିଲେ । ତାଙ୍କଦ୍ୱାରା ରଚିତ 'ପ୍ରେମଲୋଚନା', କେତେମୁଡ଼ିଏ ଚଉତିଶା ଏବଂ ଗୀତ ଆଦି ଆବିଷ୍କୃତ ହୋଇସାରିଛି । ଅନୁମାନ କରାଯାଏ ଯେ, ପ୍ରେମଲୋଚନା ସନ ୧୬୪୦ରେ ଲେଖାଯାଇଥିଲା । ନିଜ କାବ୍ୟରେ ବିଷ୍ଣୁଦାସ ଯେଉଁ ଛନ୍ଦର ପ୍ରୟୋଗ କରିଥିଲେ, ଅର୍ଜ୍ଜୁନ ଦାସଙ୍କର ରାମବିଭା, ଶିଶୁଶଙ୍କରଙ୍କର ଉଷାଭିଳାଷ, କାର୍ତ୍ତିକ ଦାସଙ୍କର ରୁକ୍ମିଣୀବିଭା ଏବଂ ଶ୍ରୀଧର ଦାସଙ୍କର କାଞ୍ଚନଲତାରେ ମଧ୍ୟ ସେହି ଛାନ୍ଦର ପ୍ରୟୋଗ ହୋଇଛି ।

**ରଘୁନାଥ ହରିଚନ୍ଦନ:** ରଘୁନାଥ ହରିଚନ୍ଦନ ବାଣପୁର ରାଜ୍ୟର ରାଜାଥିଲେ । ସେ 'ଲୀଳାବତୀ' ନାମକ କାବ୍ୟ ରଚନା କରିଥିଲେ । ଅନୁମାନ କରାଯାଏ ଯେ, ଏହି ଗ୍ରନ୍ଥର ରଚନା ସମୟ ୧୭୦୦ ମସିହା । ସେଥିରେ ସେ ଲେଖିଛନ୍ତି । 'ମୁଁ ଅନେକ ସଙ୍ଗୀତଜ୍ଞଙ୍କଠାରୁ ସଙ୍ଗୀତ ଶିକ୍ଷା କରିଛି ଏବଂ ଅନେକ ବିଦ୍ୱାନଙ୍କୁ ପରୀକ୍ଷା କଲାପରେ ବିଷ୍ଣୁଦାସଙ୍କୁ ନିଜ ଗୁରୁରୂପେ ବରଣ କରିଛି । ତାଙ୍କଠାରୁ କାବ୍ୟକଳା ମଧ୍ୟ ଶିକ୍ଷାଲାଭ କରିଛି । 'ଲୀଳାବତୀ' କାବ୍ୟର ଛନ୍ଦରେ ସ୍ପଷ୍ଟ ଭାବରେ ତାଳ ଓ ଲୟର ଉଲ୍ଲେଖ କରାଯାଇଛି । ଏଥିରେ ସଂଗୀତର ନିୟମଗୁଡ଼ିକୁ ପାଳନ କରାଯାଇଛି । ଲୀଳାବତୀର କଥାବସ୍ତୁ ଅନବଦ୍ୟ । ଧନଞ୍ଜୟ ଭଞ୍ଜ, ଲୋକନାଥ ବିଦ୍ୟାଧର, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଆଦି ମଧ୍ୟ ଏହି କାବ୍ୟକୁ ଏକ ଆଦର୍ଶ କାବ୍ୟ ରୂପେ ଗ୍ରହଣ କରିଛନ୍ତି । ତାଙ୍କର ଛଅ ରାଣୀଙ୍କ ମଧ୍ୟରେ ଶକୁନ୍ତଳା ପାଟରାଣୀ ଥିଲେ ।

**ରସାନନ୍ଦ:** ସେ ଓଡ଼ିଶୀ ସଂଗୀତ ରଚୟିତା ଓ ଜନପ୍ରିୟ କବି ଥିଲେ ।

ଏହିଭଳି ଭାବରେ ଓଡ଼ିଶାରେ ପୁରାଣ, ଛନ୍ଦବଦ୍ଧ କାବ୍ୟ, ଗୀତ ତଥା ସଙ୍ଗୀତର ସ୍ରୋତ ଓଡ଼ିଆ ପଦ୍ୟ ସାହିତ୍ୟର ବିକାଶ ହୋଇଥିଲା । ପୁରାଣରେ ଛନ୍ଦ ସୀମିତ । ପୁରାଣମାନଙ୍କରେ ଦାଣ୍ଡିବୃତ୍ତ, ଚଉଦଅକ୍ଷରୀ, ତେରଅକ୍ଷରୀ, ଏଗାରଅକ୍ଷରୀ ଏବଂ ନବାକ୍ଷରୀ ଛନ୍ଦର ପ୍ରୟୋଗ ରହିଛି । ଏହିଗୁଡ଼ିକରେ ସୁକୁମାର ସଙ୍ଗୀତ କଳାର ବିକାଶ ପାଇଁ ଅବକାଶ ନ ଥିଲା । ଗମ୍ଭୀର ତତ୍ତ୍ୱକୁ ଆଧାରକରି ଗପ ଲେଖାଯାଉଥିଲା ଏବଂ ତା'ରି ଭିତରେ କବିତାର ଆତ୍ମପ୍ରକାଶ କରୁଥିଲା ।

ଓଡ଼ିଶାବାସୀ ସଂଗୀତବିଳାସୀ ଥିଲେ । ଆତ୍ମାର ଶାନ୍ତିପାଇଁ ସେମାନେ ପୁରୁଣା ପରମ୍ପରାକୁ ଛାଡ଼ି ଛନ୍ଦମୟ ରଚନା କରିବାକୁ ଲାଗିଲେ । ସେମାନଙ୍କ ଛନ୍ଦରେ ଓଡ଼ିଆ ଜାତିର କାବ୍ୟ ପ୍ରତିଭା ଜାଗ୍ରତ ହୋଇଛି । କବି ହରିଚନ୍ଦନ ନିଜ କାବ୍ୟ 'ଲୀଳାବତୀ'ର ରଚନା କରି ଏହା ପ୍ରମାଣିତ କରିଛନ୍ତି ଯେ, ସଙ୍ଗୀତ ଏବଂ ଅଳଙ୍କାରକୁ ଆଧାର କରି ଉତ୍କୃଷ୍ଟ କାବ୍ୟ ଲେଖାଯାଇପାରେ । ତାଙ୍କ ପରବର୍ତ୍ତୀ କବି ଏବଂ ମହାକବିମାନେ ଏହାକୁ ଆଧାରକରି କାବ୍ୟକୁ ପରିଭାଷିତ କରିଛନ୍ତି ।

ବଚ୍ଛା ଦାସଙ୍କ 'କଳସା ଚଉତିଶା' ଏବଂ 'ରାମବିଭା'ରେ ବୃତ୍ତର ସର୍ଜନା ହୋଇଛି । ଅତଃ ଏହା ସହଜ ଅନୁମେୟ ଯେ, ଓଡ଼ିଆରେ ପୁରାଣ ସହିତ ଛନ୍ଦବଦ୍ଧ ରଚନା ମଧ୍ୟ ହେଉଥିଲା ।

ଚଉତିଶା, ଚୌପଦି ଆଦି ଖଣ୍ଡକାବ୍ୟ ସୂକ୍ଷ୍ମ ସଙ୍ଗୀତର ବାହକ ଥିଲେ । ବଚ୍ଛା ଦାସ, ଦାମୋଦର ଦାସ, କପିଳେନ୍ଦ୍ର ଦେବ ଆଦି କବି ମଧୁର ସଙ୍ଗୀତର ଆଦିମ ସ୍ରଷ୍ଟା ଅଟନ୍ତି । ରସାନନ୍ଦ ଏହି ସଂଗୀତ ବା ଚଉପଦି ରଚନାକୁ ଆଗକୁ ବଢାଇଛନ୍ତି । ପରବର୍ତ୍ତୀ କାଳରେ କବି ଧନଞ୍ଜୟ, ମହାକବି ଦୀନକୃଷ୍ଣ ଏବଂ କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜ ଆଦି ଏହି ଧାରାକୁ ପୁଷ୍ଟ ଏବଂ ବିକଶିତ କରିଛନ୍ତି ।*

*ଅନୁବାଦ: ସ୍ୱରପ୍ରିୟା ମିଶ୍ର

# ଉତ୍କଳ ଓ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ

ବର୍ତ୍ତମାନର ଉତ୍କଳଖଣ୍ଡ ପ୍ରାଚୀନକାଳର ପୁରାଣ ପ୍ରସିଦ୍ଧ ଉତ୍କଳ ଓ କଳିଙ୍ଗର ଅଂଶବିଶେଷମାନଙ୍କରେ ଗଠିତ । କଳିଙ୍ଗ ଓ ଉତ୍କଳ ଖଣ୍ଡଦ୍ୱୟ ସନ୍ନିହିତ ରାଜ୍ୟ ଥାଇ ଉଭୟର ଶିକ୍ଷା ଓ ସଭ୍ୟତା ଏକ ଧରଣର ଥିଲା; କିନ୍ତୁ ଦୁର୍ଭାଗ୍ୟର ବିଷୟ, ତାହା ଖଣ୍ଡିତ ହୋଇ ବର୍ତ୍ତମାନ ସେହି ଭୂଖଣ୍ଡ ଦ୍ୱୟ ଉତ୍କଳ ତଥା ଉଡ୍ରଦେଶ । ଓଡ଼ିଶା ନାମରେ ଖ୍ୟାତ । ଯେଉଁ କଳିଙ୍ଗୋତ୍କଳ ସର୍ବକଳା ଓ ବିଦ୍ୟାରେ ପରମ ଉତ୍କର୍ଷ ଲଭିଥିଲା, ସେଠାରେ ଉପେନ୍ଦ୍ରଭଞ୍ଜଙ୍କ ଭଳି ଜଣେ ଅଦ୍ୱିତୀୟ କବିସମ୍ରାଟ୍‌ଙ୍କ ଆବିର୍ଭାବ କିଛି ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଯେଉଁ କଳିଙ୍ଗୋତ୍କଳଖଣ୍ଡରେ ଗୟାସୁରର ପବିତ୍ର ଶରୀରର ଅଂଶ ୧୨ ପଣ ଅବସ୍ଥିତ, ଯାହା ଉପରେ ବ୍ରହ୍ମାଦି ଦେବତାମାନେ ଯଜ୍ଞ ସମ୍ପାଦନ କରିଥିଲେ, ଯେଉଁ କଳିଙ୍ଗର ଉଦ୍ଭବ ଦୀର୍ଘତମା ଋଷିଙ୍କ ଔରସରେ ବଳିରାଜାଙ୍କ ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରେ କ୍ଷେତ୍ରଜ ସନ୍ତାନରୂପେ ହୋଇଥିଲା ଏବଂ ଯେଉଁ କଳିଙ୍ଗର ପିତା ବେଦର ଦୀର୍ଘତମା ଋଷି, ଏବଂ ଯେଉଁ କଳିଙ୍ଗରେ ପରଶୁରାମ ତାଙ୍କ ଚରମ ଜୀବନରେ ଘୋର ପ୍ରବୃତ୍ତିମାର୍ଗକୁ ଜଳାଞ୍ଜଳି ଦେଇ ନିବୃତ୍ତିମାର୍ଗରେ ପରମାତ୍ମାଧ୍ୟାନରେ ମହେନ୍ଦ୍ରଗିରିରେ ବ୍ୟାପୃତ ଥିଲେ ଏବଂ ଯେଉଁ କଳିଙ୍ଗରାଜ ମହାଭାରତ ଯୁଦ୍ଧରେ ଏକ ଅକ୍ଷୌହିଣୀ ସୈନ୍ୟସହ କୁରୁରାଜ ଦୁର୍ଯ୍ୟୋଧନ ପକ୍ଷରେ ଯୁଦ୍ଧ କରିଥିଲେ ଏବଂ ଯେଉଁ କଳିଙ୍ଗରାଜ ପ୍ରଧାନ ଶୂରବୀର ବୋଲି ମହାଭାରତରେ ନାନାସ୍ଥାନରେ କଥିତ, ଏବଂ ଯେଉଁ କଳିଙ୍ଗସ୍ଥିତ ଯାଜପୁରରେ ରୁଦ୍ର ପ୍ରଥମଥର ପାଇଁ ଯଜ୍ଞର ପଶୁବଳି ପ୍ରାପ୍ତିର ଅଧିକାରୀ ହୋଇଥିଲେ ଏବଂ ଯେଉଁ କଳିଙ୍ଗରେ କିମ୍ବଦନ୍ତୀ ଅନୁଯାୟୀ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ତପସ୍ୟା କରି ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହୋଇ ଅଜେୟ ହୋଇଥିଲେ ଏବଂ ଯେଉଁ କଳିଙ୍ଗରେ କଣ୍ଡୁଋଷିଙ୍କ ଔରସରେ ଓ ଅପ୍‌ସରା ଗର୍ଭରେ ବାର୍କ୍ଷେୟୀ ଜାତ ହୋଇ ଦଶ ପ୍ରଚେତସାଙ୍କ ପତ୍ନୀରୂପେ ଦକ୍ଷଙ୍କ ମାତାରୂପେ ବର୍ଣ୍ଣିତ ଏବଂ ଯେଉଁ କଳିଙ୍ଗରେ ପ୍ରଥମେ ଋଷଭଙ୍କ ମୂର୍ତ୍ତି ପୂଜିତ ହୋଇଥିଲା ଏବଂ ଯେଉଁ କଳିଙ୍ଗରେ ଜୈନଶ୍ରେଷ୍ଠ ପରେଶନାଥ ଜିନଧର୍ମର ସାରମର୍ମ ପ୍ରଚାର କରିଥିଲେ ଏବଂ ଯେଉଁ ସ୍ଥାନରେ ଜିନଙ୍କ ବିଶାଳ ମୂର୍ତ୍ତି ପୂଜିତ ହେଉଥିଲା ଏବଂ ଯାହାକୁ

ମଗଧରାଜ ବଳାତ୍କାରରେ ନେଇ ଯାଇଥିଲେ ଏବଂ ଯାହାକୁ ପରବର୍ତ୍ତୀ କାଳରେ ମହାମେଘବାହନ ସମ୍ରାଟ୍ ଖାରବେଳ ମଗଧରୁ ବଳାତ୍କାରରେ ପୁନରାନୟନ କରିଥିଲେ ଏବଂ ଯେଉଁ କଳିଙ୍ଗ ଚନ୍ଦ୍ରଗୁପ୍ତ ଓ ବିନ୍ଦୁସାରଙ୍କ ରାଜତ୍ୱକାଳରେ ସ୍ୱାଧୀନ ଥିଲା ଏବଂ ଯେଉଁ କଳିଙ୍ଗର ଶୂରବୀର କ୍ଷତ୍ରିୟମାନେ ଆପ୍ରାଣପାତ ଯୁଦ୍ଧକରି ଅଶୋକଙ୍କ ମନରୁ ହିଂସାଭାବ ବିଦୂରିତ କରାଇ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ, କଳିଙ୍ଗ କ୍ଷତ୍ରିୟଙ୍କ ଅଶୋକଙ୍କର ସହ ଯୁଦ୍ଧ ଆଜି ଇତିହାସରେ ମହାଭୟଙ୍କର ଯୁଦ୍ଧରୂପେ ସ୍ୱର୍ଣ୍ଣାକ୍ଷରରେ ଲିଖିତ, ସେହି କଳିଙ୍ଗର ପରାଜୟ ଫଳରେ ବୌଦ୍ଧଧର୍ମ ଅଶୋକଙ୍କଦ୍ୱାରା ପୃଥିବୀର ନାନା ସ୍ଥାନରେ ପ୍ରଚାରର ବାଟ ଖୋଲି ଦେଇଥିଲା ଏବଂ ଯେଉଁ କଳିଙ୍ଗର ମହାମହିମ ଅଦ୍ଭୁତ ପରାକ୍ରାନ୍ତ ମହାମେଘବାହନ ସମ୍ରାଟ୍ ଭାରତର ପ୍ରାୟ ବାରପଣ ଜୟକରି ମଗଧ ଓ ଅନ୍ୟାନ୍ୟ ରାଜ୍ୟମାନ ଧ୍ୱସ୍ତବିଧ୍ୱସ୍ତ କରି ମଗଧରୁ ଜିନଙ୍କ ବିଶାଳମୂର୍ତ୍ତି ଆଣି ପାରିଥିଲେ ଏବଂ ଯେଉଁ କଳିଙ୍ଗରେ କ୍ଷେମରାଜ ଶ୍ରମଣଙ୍କ ପ୍ରଦତ୍ତ ବୁଦ୍ଧଙ୍କର ବାମଦନ୍ତ କଳିଙ୍ଗରାଜ ଦେବଦତ୍ତଙ୍କଦ୍ୱାରା ପୂଜିତ ହେଉଥିଲା ଏବଂ ଯେଉଁ ବାମଦନ୍ତକୁ ଭାରତର ନାନା ରାଜ୍ୟରୁ ରାଜା, ରାଜକୁମର ଓ ଜନସାଧାରଣ ଦନ୍ତପୁରକୁ ଆସି ପୂଜା କରୁଥିଲେ ଏବଂ ଯେଉଁ ଦନ୍ତକୁ ଗୁହରାଜ ସିଂହଳକୁ ତାଙ୍କ କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାର ସହିତ ସିଂହଳକୁ ପଠାଇ ଦେଇଥିଲେ ଏବଂ ଯେଉଁ କଳିଙ୍ଗ-ଉତ୍କଳର ଲୋକେ ବୋଇତଦ୍ୱାରା ଯାଇ ଦରିଆପାରିର ରାଜ୍ୟମାନଙ୍କରେ ସଭ୍ୟତା ସ୍ଥାପନ କରିଥିଲେ ଏବଂ ଯେଉଁ ଦେଶରେ ହରିହରଙ୍କ ଅପୂର୍ବ ମିଳନମୂର୍ତ୍ତି ଭୁବନେଶ୍ୱରରେ ପୂଜିତ ଏବଂ ଯେଉଁ ଉତ୍କଳରେ ସୂର୍ଯ୍ୟଦେବଙ୍କ ଉପାସନା କୋଣାର୍କରେ ପ୍ରତିଷ୍ଠିତ, ଯେଉଁ ଉତ୍କଳରାଜ ଶୁଭଙ୍କରକେଶରୀ ଚୀନ୍‌ସମ୍ରାଟ୍‌ଙ୍କ ନିକଟକୁ ସ୍ୱ ହସ୍ତଲିଖିତ ବୌଦ୍ଧଗ୍ରନ୍ଥ ଉତ୍କଳର କପିଶା ନଦୀତୀରବର୍ତ୍ତୀ ଭୂଖଣ୍ଡର ଅଧିବାସୀ ପ୍ରାଜ୍ଞଙ୍କ ହସ୍ତରେ ପ୍ରେରଣ କରିଥିଲେ(ଦୁଃଖର ବିଷୟ କପିଶା କେତେକ ପଣ୍ଡିତଙ୍କଦ୍ୱାରା ଆଫଗାନିସ୍ଥାନର ଅନ୍ତଃପାତୀ ବୋଲି ଲିଖିତ। ଆଶ୍ଚର୍ଯ୍ୟର କଥା ଉତ୍କଳରାଜ ଆଫଗାନିସ୍ଥାନର ଲୋକଙ୍କୁ ନିଜର ପ୍ରତିନିଧି ରୂପେ ଚୀନ୍‌ସମ୍ରାଟଙ୍କ ନିକଟକୁ ପଠାଇଥିଲେ।), ଯେଉଁ କଳିଙ୍ଗ ଦେଶର ପ୍ରାକୃତ ଓ ପାଲିର ମୂଳ ଭାଷାରୂପେ କେତେକ ପଣ୍ଡିତଙ୍କଦ୍ୱାରା ସ୍ୱୀକୃତ, ଯେଉଁ କଳିଙ୍ଗୋତ୍କଳର ଅଧିପତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ ଏବଂ ଯେଉଁ କଳିଙ୍ଗୋତ୍କଳର ନରପତି ଅନେକବାର ଉତ୍ତର ଓ ଦକ୍ଷିଣ ଅଞ୍ଚଳର ମୁସଲମାନମାନଙ୍କୁ ପରାସ୍ତ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତି ଚୂଡ଼ଗଙ୍ଗଦେବଙ୍କ ସଭାରେ ଗାଣିତିକ ଶତାନନ୍ଦ, ଦଶମିକପ୍ରଥାର ପ୍ରବର୍ତ୍ତନ କରିଥିଲେ; ଯେଉଁ କଳିଙ୍ଗୋତ୍କଳର ନରପତି ନରସିଂହଦେବ ହିମାଳୟରୁ ସେତୁବନ୍ଧ ପର୍ଯ୍ୟନ୍ତ ରାଜ୍ୟାଧିକାର କରି କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତିମାନେ ପୁରୀ, ଭୁବନେଶ୍ୱର ଓ କୋଣାର୍କରେ ପ୍ରସ୍ତର ନିର୍ମିତ ଅପୂର୍ବ ମନ୍ଦିରମାନ ନିର୍ମାଣ କରିବାରେ ସମର୍ଥ ହୋଇଥିଲେ, ଯେଉଁ କଳିଙ୍ଗୋତ୍କଳର ନରପତି କପିଳେନ୍ଦ୍ରଦେବ ବାହାମନୀ ସୈନ୍ୟଙ୍କୁ ପରାସ୍ତ କରିଥିଲେ, ଯେଉଁ କଳିଙ୍ଗୋତ୍କଳର ହିନ୍ଦୁ ନରପତି ଗଜପତିଙ୍କର ଚରଣ ଭାରତର ସମସ୍ତ ନୃପତିଙ୍କର

ମୁକୁଟସ୍ଥିତ ପୁଷ୍ପରେଣୁଦ୍ୱାରା ରଞ୍ଜିତ ହେଉଥିଲା, ଯେଉଁ କଳିଙ୍ଗୋତ୍କଳର ନରପତି ଜଗନ୍ନାଥଦେବଙ୍କର ପ୍ରତୀକରୂପେ ଅଭିପୂଜିତ ହେଉଥିଲେ, ଯେଉଁ ଦେଶର ବୃଦ୍ଧ ବାଜପେୟୀ ନାଗପୁରରେ ଅଷ୍ଟାଦଶ ବିଦ୍ୟାରେ ପ୍ରାବୀଣ୍ୟ ପ୍ରଦର୍ଶନ କରାଇ ରଘୁଜୀ ଭୋନ୍‌ସଲାଙ୍କଠାରୁ ଉତ୍କଳ ନରେଶଙ୍କର ଅଧିକାର ଆଣିବାରେ ସମର୍ଥ ହୋଇଥିଲେ; ଯେଉଁ ଉତ୍କଳରେ ସାରଳାଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ପ୍ରଭୃତି ସ୍ୱସ୍ୱ ଅଦ୍ଭୁତ କବିତ୍ୱ ଓ ଧର୍ମବଳରେ ଅପୂର୍ବ ଗ୍ରନ୍ଥମାନ ରଚନା କରିଥିଲେ, ଯେଉଁ କଳିଙ୍ଗୋତ୍କଳର ପୁରୀଧାମକୁ ଭାରତର ନାନା ଦର୍ଶନ ଓ ମତବାଦର ମନୀଷୀମାନେ ଆସି ସ୍ୱସ୍ୱ ମତ ଖ୍ୟାପନ ତଥା ଧର୍ମଭାବ ପ୍ରଚାର କରିଥିଲେ; ଯେଉଁ କଳିଙ୍ଗୋତ୍କଳ ଶୈବ ଓ ଶାକ୍ତ ଧର୍ମର ପ୍ରଧାନ ପୀଠସ୍ଥଳୀ ହୋଇଥିଲା (ଉତ୍କଳରେ ଶିବମନ୍ଦିର ଓ ଦେବୀମନ୍ଦିର ସଂଖ୍ୟା ଯେତେ, ତାହା ଭାରତର ଅନ୍ୟ କୌଣସିଠାରେ ପରିଦୃଷ୍ଟ ହୁଏ ନାହିଁ), ଯେଉଁ କଳିଙ୍ଗୋତ୍କଳର ତାତକାଳିକ ରାଜଧାନୀ ପୁରୀଧାମରେ ଶ୍ରୀଚୈତନ୍ୟଦେବ ଅଷ୍ଟାଦଶ ବର୍ଷ ଅଦ୍ୱିତୀୟ ବୈଷ୍ଣବପ୍ରବର ରାମାନନ୍ଦଙ୍କ ସହିତ ଅତିବାହିତ କରିଥିଲେ; ଯେଉଁ କଳିଙ୍ଗୋତ୍କଳର ପଣ୍ଡିତମାନେ ଅଳଙ୍କାରଶାସ୍ତ୍ରରେ ଧୂରୀଣ ଥିଲେ (ତାହାର ପ୍ରମାଣସ୍ୱରୂପ ଏକାବଳୀ ଓ ସାହିତ୍ୟଦର୍ପଣର ରଚୟିତା ଉତ୍କଳୀୟ), ଯେଉଁ କଳିଙ୍ଗୋତ୍କଳରେ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭକରି ମହାକାବ୍ୟମାନ ରଚିତ ହୋଇ ରାମବିଭା, ଉଷାଭିଳାଷ, ରହସ୍ୟମଞ୍ଜରୀ, ଶଶିସେଣା, ପ୍ରେମଲୋଚନା, ସର୍ବାଙ୍ଗସୁନ୍ଦରୀ, ଲୀଳାବତୀ ଓ ରସକଲ୍ଲୋଳ ରଚିତ ହୋଇଥିଲା- ସେ ଦେଶରେ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁ ଜନ୍ମିବା କିଛି ବିସ୍ମୟର ବିଷୟ ନୁହେଁ ।

ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ଉତ୍କଳରେ ଜାତ ନ ହୋଇ କାବ୍ୟ ଲେଖି ନ ଥିଲେ ମଧ୍ୟ ଉତ୍କଳର ପ୍ରାଚୀନ କାବ୍ୟ ସାହିତ୍ୟ ଅନ୍ୟ ଦେଶର କାବ୍ୟ ସାହିତ୍ୟର ପଶ୍ଚାଦ୍‌ବର୍ତ୍ତୀ ନୁହେଁ । ଏହି ତିନି ମହାକବିଙ୍କର ଗ୍ରନ୍ଥମାନ ପାଠକଲେ ଜଣାଯାଏ, ଏମାନେ ବହୁ କଳା ଓ ବିଜ୍ଞାନରେ ପାରଦର୍ଶୀ ଥିଲେ । ଦୀନକୃଷ୍ଣଙ୍କର କାନ୍ତ-କୋମଳ-ପଦାବଳୀ-କରମ୍ବିତ ରସକଲ୍ଲୋଳର ଅମିୟଧାରା ଉତ୍କଳୀୟ ଜୀବନରେ ମହାସନ୍ତୋଷ ପ୍ରଦାନ କରେ । ତାଙ୍କ ପଦ୍ୟାବଳୀର ସମତା, ତାଙ୍କ ବୈଷ୍ଣବହୃଦୟର ଅକିଂଚନତା ତଥା ପ୍ରସନ୍ନତା ଅଦ୍ଭୁତ ଧରଣର । ନିଃସ୍ୱ, ରୁଗ୍‌ଣ ଓ, ବ୍ୟାଧିଗ୍ରସ୍ତ ଥାଇ ମଧ୍ୟ ସେ ଅତ୍ୟନ୍ତ ନିର୍ଭୀକମନା ଥିଲେ । ତହୁଁ ସେ ଉତ୍କଳ ନରେଶଙ୍କର ସ୍ତୁତିଗାଥା ଗାନ କରିବାରୁ ବିରତ ହୋଇଥିଲେ । ତାଙ୍କର ପଦର ମାଧୁରୀରେ ମୁଗ୍ଧ ହୋଇ ଉତ୍କଳର କାବ୍ୟରସିକମାନେ ଉପେନ୍ଦ୍ର ଭଞ୍ଜଙ୍କର ନାମର ହାହି ଦେଇ କହନ୍ତି- "ଜୟଦେବ ଦୀନକୃଷ୍ଣ ପାଦେ ମୋ ଶରଣ, ଅନ୍ୟ କବିଙ୍କ ମଥାରେ ମୋ ବାମ ଚରଣ" । ଦୀନକୃଷ୍ଣ ବୈଷୟିକ ଲାଳସାରେ ବିତୃଷ୍ଣଭାବ ଦର୍ଶାଇବାରେ ଯେ କେବଳ ନିର୍ଭୀକତ୍ୱ ପ୍ରକାଶ କରିଥିଲେ, ତାହା ନୁହେଁ; ନିଜ ହୃଦୟର ଧର୍ମବୋଧ ବିଷୟରେ ମଧ୍ୟ ଦେଶପ୍ରଚଳିତ ମତର ବିରୋଧରେ ସ୍ୱ ମତ ପ୍ରକାଶ କରିଥିଲେ । ସେ ଜ୍ଞାନମିଶ୍ରା ଭକ୍ତିର ଉପାସକ ଥାଇ ଶୁଦ୍ଧାଭକ୍ତିର ବିଷୟ କୃଷ୍ଣଙ୍କଦ୍ୱାରା ରାଧା ରାସଲୀଳା ଅବସରରେ ଅପହୃତା ହେବାର ରସକଲ୍ଲୋଳରେ ଲେଖିଛନ୍ତି ।

ଏହାଦ୍ୱାରା ସେ ତତ୍କାଳୀନ ଜ୍ଞାନମିଶ୍ରା ଭକ୍ତି ଓ ଶୁଦ୍ଧାଭକ୍ତିର ଉପାସକଙ୍କଦ୍ୱାରା ବୋଧହୁଏ ନିନ୍ଦିତ ହୋଇଥିଲେ । ଏଇଭଳି ନିର୍ଭୀକ ମନୋଭାବର ଦୃଷ୍ଟାନ୍ତ ଯେ କେବଳ ଦୀନକୃଷ୍ଣ ଦେଖାଇନାହାନ୍ତି, ମହାପୁରୁଷ ଅଚ୍ୟୁତାନନ୍ଦ ମଧ୍ୟ ଜ୍ଞାନମିଶ୍ରାର ଉପାସକ ହୋଇ ଶୁଦ୍ଧାଭକ୍ତିର ଭଜନ- "ହରେ କୃଷ୍ଣ ରାମ"- କରୁଥିଲେ । ଏହି କଳିଙ୍ଗୋତ୍କଳରେ ସାହିତ୍ୟ, ଧର୍ମ, କଳା ଓ ବିଜ୍ଞାନ ଚର୍ଚ୍ଚା ପରାକାଷ୍ଠା ଲଭିଥିଲା, ଯାହା ଫଳରେ ଅପୂର୍ବ ମନୀଷୀ,ଅଦ୍ଭୁତ ପ୍ରତିଭାବନ୍ତ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ ଆବିର୍ଭୂତ ହୋଇଥିଲେ । ସେ ଯେପରି ଶାବ୍ଦିକ, ସେପରି ଆଳଙ୍କାରିକ । ତାଙ୍କର ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଥିଲା । ଜ୍ୟୋତିଷ, କାମସୂତ୍ର ଓ ଅନ୍ୟାନ୍ୟ ବିଦ୍ୟାରେ ଯେ ତାଙ୍କର ପାରଦର୍ଶିତା ଥିଲା, ତାହା ତାଙ୍କର ଗ୍ରନ୍ଥମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହୁଏ । ବିଚାର କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ, ସେ ଜଣେ ଅତି ଉଚ୍ଚଧରଣର ବୈଷ୍ଣବ ଥିଲେ । ମାନବର ଚାରିଗୋଟି ପ୍ରଧାନ ଉଦ୍ଦେଶ୍ୟ - ତାହା ଚତୁର୍ବର୍ଗ ନାମରେ କଥିତ: ତାହା ହେଉଛି- ଧର୍ମ, ଅର୍ଥ, କାମ, ମୋକ୍ଷ । ଏହି ପ୍ରତ୍ୟେକର ଶାସ୍ତ୍ରମାନ ଅଛି । ଯଥା - **ଧର୍ମଶାସ୍ତ୍ର** -ମନ୍ୱାଦି; **ଅର୍ଥଶାସ୍ତ୍ର** ; ଚାଣକ୍ୟାଦିକୃତ- **କାମସୂତ୍ର**; ବତ୍ସାୟନାଦିଙ୍କକୃତ- **ମୋକ୍ଷଶାସ୍ତ୍ର**- ଗୀତା, ଦର୍ଶନ ଓ ପୁରାଣାଦି । ପରବର୍ତ୍ତୀ କାଳରେ ଏହି ଚାରିଗୋଟି ସ୍ଥାନରେ ଦୁଇଟି ବିଷୟ ଗୃହୀତ ହେଲା । ଯଥା- ଧର୍ମଜିଜ୍ଞାସା ଓ ବ୍ରହ୍ମଜିଜ୍ଞାସା(ମୋକ୍ଷ) । କାରଣ ଅର୍ଥ ଓ କାମ ଉଭୟ ଧର୍ମାଶ୍ରିତ । ତେଣୁ ଯଥାର୍ଥତଃ ଭାଗବତକାର କହିଲେ – ମୋକ୍ଷର ସାଧନାଭୂତ ଧର୍ମ । ତାହାର ଉଦ୍ଦେଶ୍ୟ, ଅର୍ଥ ନୁହେଁ - ଧର୍ମାଶ୍ରିତ ଅର୍ଥର ଉଦ୍ଦେଶ୍ୟ କାମ ନୁହେଁ । କାମର ଉଦ୍ଦେଶ୍ୟ ଇନ୍ଦ୍ରିୟପ୍ରୀତି ନୁହେଁ । କାମକୁ ଏଭଳି ସେବା କରିବାକୁ ହେବ, ଯଦ୍ଦ୍ୱାରା ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ତଥା ପାରମାର୍ଥିକ ଉତ୍କର୍ଷ ସାଧିତ ହେବ । ବୈଷୟିକ କର୍ମଦ୍ୱାରା ଜୀବନଯାପନ କରିବାରେ ଜୀବନ ଚରିତାର୍ଥତା ଲାଭ କରେନାହିଁ । ତାହା କରେ ତତ୍ତ୍ୱ-ଜିଜ୍ଞାସା । ସେହି ତତ୍ତ୍ୱ-ଜିଜ୍ଞାସା ହେଉଛି, ଅଦ୍ୱୟ ଜ୍ଞାନ, ବ୍ରହ୍ମ ପରମାତ୍ମା ଓ ଭଗବାନ । ଏହା ସମ୍ପୂର୍ଣ୍ଣରୂପେ ଧାର୍ମିକପ୍ରବର ଭଞ୍ଜକୁଳପ୍ରଦୀପ ଉପେନ୍ଦ୍ର ଭଞ୍ଜ ପୂର୍ବମୀମାଂସା ଓ ଉତ୍ତରମୀମାଂସା ବେଦାନ୍ତର ତତ୍ତ୍ୱ ନିଜର କାବ୍ୟମାନଙ୍କରେ ପ୍ରକାଶ କରିଥିଲେ ।

ପ୍ରଥମତଃ, ଧର୍ମଚର୍ଯ୍ୟାଦ୍ୱାରା ଚିତ୍ତର ପ୍ରସନ୍ନତା ଆସେ । ଚିତ୍ତରୁ ମାୟାତ୍ମକ ତ୍ରିଗୁଣ ଦୂରୀଭୂତ ହେଲେ, ଅର୍ଥାତ୍ ଜୀବ ସତ୍ତ୍ୱଦ୍ୱାରା ସତ୍ତ୍ୱଗୁଣକୁ ଜିଣିଲେ, ତାହାର ହୃଦୟ ସତ୍ତ୍ୱମୟ ହେବା ପରେ, ହୃଦୟରେ ଚିତ୍ ଓ ଆନନ୍ଦ ବିଳାସ କରେ । ଏହି ଅବସ୍ଥାରେ ଜୀବନ ଗୁରୁ ସଂଦର୍ଶନ ହୁଏ ।

ତସ୍ମାଦ୍‌ଗୁରୁଂ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍
ଶାବ୍ଦେ ପରେ ଚ ନିଷ୍ଣାତଂ ବ୍ରହ୍ମଣ୍ୟୁପଶମାଶ୍ରୟମ୍ । (ଏକାଦଶସ୍କନ୍ଧ)

ଏହି ଧର୍ମଶାସ୍ତ୍ରର ଉକ୍ତିମାନ ନିଜର ଜୀବନରେ ଚରିତାର୍ଥତା ଲାଭ କରିଥିଲା ଉପେନ୍ଦ୍ରଭଞ୍ଜଙ୍କଠାରେ । ଉତ୍କଳୀୟ ବୈଷ୍ଣବ ଭଞ୍ଜକୁଳ- ପ୍ରଦୀପ ଉପେନ୍ଦ୍ର ଭଞ୍ଜ ପ୍ରକୃତ ଧର୍ମତତ୍ତ୍ୱର ଅବଗାହୀ ଥିଲେ । ଉତ୍କଳୀୟ ବୈଷ୍ଣବମାନଙ୍କ ବିଚାରରେ ଯଥାର୍ଥତଃ

ମହାନିତ୍ୟ ଗୋଲୋକର ମାଧୂର୍ଯ୍ୟ ଓ ଐଶ୍ୱର୍ଯ୍ୟମୟ ପରମାତ୍ମା ପରମବ୍ରହ୍ମ କୃଷ୍ଣଙ୍କର ପ୍ରତୀକ ହେଉଛନ୍ତି ନୀଳାଚଳର ଅଧିଷ୍ଠାତା ଜଗନ୍ନାଥଦେବ । ସେହି ପରମାତ୍ମା ପରମେଶ୍ୱର ଭଗବାନ୍ ଜଗନ୍ନାଥଙ୍କର ଅଂଶରୂପେ ରାମ ଓ କୃଷ୍ଣ ଗୃହୀତ । ଏ ବିଷୟ ଭାଗବତ ଓ ଦେବୀଭାଗବତରେ ସ୍ପଷ୍ଟାକ୍ଷରରେ ପ୍ରକାଶିତ । ବୈଷ୍ଣବ ଭାଗବତରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ବୋଲି ସ୍ଥଳବିଶେଷରେ କଥିତ ହୋଇଥିଲେ ହେଁ ଅନ୍ୟତ୍ର ଅଂଶାବତାର, ସାକ୍ଷାତ ନାରାୟଣ ରୂପେ କଥିତ । ଦେବୀଭାଗବତରେ ବିଷ୍ଣୁଙ୍କର ଅଂଶ ନାରାୟଣ ଓ ନାରାୟଣଙ୍କର ଅଂଶ ରାମ ଓ କୃଷ୍ଣ । ପ୍ରକୃତ ବୈଷ୍ଣବ ଜାଣନ୍ତି ଯେ, ରାମ ଓ କୃଷ୍ଣଙ୍କଦ୍ୱାରା ଭଗବଦ୍‌ଲୀଳା ପୂର୍ଣ୍ଣତା ଲାଭ କରିଅଛି । ରାମ ମର୍ଯ୍ୟାଦା ପୁରୁଷୋତ୍ତମ ଓ ଶ୍ରୀକୃଷ୍ଣ ଲୀଳା ପୁରୁଷୋତ୍ତମ । ଶ୍ରୁତି ଓ ସ୍ମୃତି ଅନୁମୋଦିତ ଧର୍ମର ଅନୁସରଣରେ ମାନବ ଜୀବନରେ ଧର୍ମର ମର୍ଯ୍ୟାଦା, ସୀମା ଲାଭ ହୁଏ । ମାନବ ଜୀବନର ଆଦର୍ଶ ଶ୍ରୀ ରାମଚନ୍ଦ୍ରଙ୍କର ଜୀବନଚରିତରେ ପ୍ରକାଶମାନ । ତେଣୁ ଅଳଙ୍କାରଶାସ୍ତ୍ରକାର କହିଲେ ।

ରାମାଦିବତ୍‌ପ୍ରବର୍ତ୍ତିତବ୍ୟମ୍‌ନ ରାବଣାଦିବତ୍ । ।

ଅର୍ଥାତ୍ ରାମ ଯେଉଁ ପନ୍ଥା ଅବଲମ୍ବନ କରି ଜୀବନଯାତ୍ରା ନିର୍ବାହ କରିଛନ୍ତି, ସେହି ପନ୍ଥା ଅବଲମ୍ବନ କଲେ ମନୁଷ୍ୟ ଧର୍ମ ପ୍ରବୃତ୍ତ ହୋଇ ବ୍ରହ୍ମଲାଭର ପ୍ରୟାସୀ ହୋଇପାରେ । ମହାଭାରତକାର କହିଲେ- ମହାଜନୋ ଯେନ ଗତଃ ସ ପନ୍ଥା

ଗୀତାରେ ମଧ୍ୟ କଥିତ: ମମବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।

ଏହାକୁ ଲକ୍ଷ୍ୟକରି କବିବର ଉପେନ୍ଦ୍ରଭଞ୍ଜ ବୈଦେହୀଶବିଳାସ କାବ୍ୟ, ସ୍ୱ ପିତାମହ ଧନଞ୍ଜୟ ଭଞ୍ଜଙ୍କର ରଘୁନାଥବିଳାସ ବା ରାମବିଳାସ ଅବଲମ୍ବନ କରି ଅପୂର୍ବ ଭାବରେ ରଚନା କଲେ । ସେ କେତେକ ପୌରାଣିକ ଓ କେତେକ କାଳ୍ପନିକ ମହାକାବ୍ୟ ଲେଖିଅଛନ୍ତି । ଏହି ମହାକାବ୍ୟମାନଙ୍କରେ ସେ ବାସ୍ତବ ଜୀବନର ସତ୍ୟଭୂତ ସ୍ୱକୀୟା ରତିର ବିଶ୍ଳେଷଣ କରିଅଛନ୍ତି । ପରକୀୟା ରତି ଦର୍ଶନ ଛଳରେ ସେ କୃଷ୍ଣଙ୍କର ଲୀଳା ଛାନ୍ଦଭୂଷଣ, କଳାକୌତୁକ ପ୍ରଭୃତି ଗ୍ରନ୍ଥ ରଚନା କରିଅଛନ୍ତି । ପରକୀୟା ରତିର ବିଷୟ ସ୍ପଷ୍ଟ ଭାବରେ ଲୋକେ ବୁଝି ନ ପାରି ଭ୍ରାନ୍ତମତ ପୋଷଣ କରନ୍ତି । ଏହା ସାଧାରଣ ଲୋକଙ୍କ ବୋଧଗମ୍ୟ ନ ହେବା ବିଚିତ୍ର ନୁହେଁ । ପରକୀୟା ରତି ଅପ୍ରାକୃତ ପ୍ରେମଲୀଳାର ବିଷୟ । ପ୍ରାକୃତପ୍ରେମ ତ୍ରିଗୁଣାତ୍ମକ ଓ ମାୟିକ । ଅପ୍ରାକୃତ ପ୍ରେମ, ପରକୀୟା ରତି ଯୋଗାଶ୍ରିତ । ଯେତେବେଳେ ହୃଦୟ ବିଶୁଦ୍ଧ ସତ୍ତ୍ୱମୟ, ଅର୍ଥାତ୍ ତ୍ରିଗୁଣଜଡ଼ିତ ନୁହେଁ, ସେତେବେଳେ ଜୀବର ହୃଦୟ ସତ୍ତ୍ୱମୟ, ଜ୍ଞାନମୟ ଓ ଆନନ୍ଦମୟ । ଏ ଦୁରୂହ ବିଷୟ ସାଧାରଣ ମାନବବୁଦ୍ଧିର ଅଗମ୍ୟ । ତେଣୁ ଆମ ଉତ୍କଳରେ ସୁଧୀବର୍ଗରେ କଥିତ ଯେ ଗୀତଗୋବିନ୍ଦ ଓ ଭାଗବତର ରାସପଞ୍ଚାଧ୍ୟାୟୀ ବିଦ୍ୟାର କବାଟି । ସର୍ବସାଧାରଣରେ ଏହା ପଠନ ନିମିତ୍ତ ଅଭିପ୍ରେତ ନୁହେଁ । ରାସପଞ୍ଚାଧ୍ୟାୟୀର ୨୯ ଅଧ୍ୟାୟର ୧ମ ଶ୍ଳୋକ : ଭଗବାନପିତାରାତ୍ରି ଶରଦୋତ୍‌ଫୁଲମଲ୍ଲିକା

ବୀକ୍ଷରନ୍ତୁଂ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ।

ଯେ ଭଗବାନ୍, ଅର୍ଥାତ୍ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟମୟ- ସେ ମଧ ସଂସାରକୁ ଶୁଭ୍ରମୟ ଦର୍ଶନ କରି, ଅର୍ଥାତ୍ ସତ୍ତ୍ୱମୟ ଉପଲବ୍ଧିକରି ଯୋଗମାୟାକୁ ଆଶ୍ରୟ କରି, ଅର୍ଥାତ୍ ସଚ୍ଚିଦାନନ୍ଦ ଭାବାତ୍ମକ ହୋଇ ରମଣ କରିବାକୁ, ଅର୍ଥାତ୍ ନିଜର ପରମାତ୍ମଭାବ ଜୀବ ସମକ୍ଷରେ ପ୍ରକଟନ କରିବା ନିମିତ୍ତ- ଅର୍ଥାତ୍ ସ୍ୱଭାବ ଜୀବକୁ ପ୍ରଦାନ କରିବା ନିମିତ୍ତ- ମନକଲେ । ଏଠାରେ 'ଚକ୍ରେ' ଏହି ଆତ୍ମନେପଦ ଧାତୁର ଅର୍ଥ, ଲୀଳା କରିବାକୁ ମନକଲେ । ଏହି ଲୀଳାଜନିତ ଆନନ୍ଦ ଭଗବାନଙ୍କର, ଜୀବର ନୁହେଁ । ଯେପରି ଗୁରୁ ଓ ପିତାଙ୍କର ଶିଷ୍ୟ ଓ ପୁତ୍ରର ଶ୍ରେୟରେ, ଚିତ୍ତରେ ସମାଧିକ ଆନନ୍ଦ ଉପଜାତ ହୁଏ, ସେହିପରି ଭଗବାନ୍ ନିଜ ଭାବ ପ୍ରଦାନ କରିବା ନିମିତ୍ତ ଗୋପଲୀଳା ବା ଜୀବଲୀଳା କରିବାକୁ ପ୍ରବୃତ୍ତ ହେଲେ । ସେହି ଭଗବାନ୍ କୃଷ୍ଣ ଗୋପାଳ ରୂପେ ଆଖ୍ୟାତ ।

ଗୋପାନ୍‌ଜୀବାନ୍ ବା ଆତ୍ମତ୍ୱେନ
ସୃଷ୍ଟି ପର୍ଯ୍ୟନ୍ତଂ ଆଲାତି ସ ଗୋପାଳୋ ଭବତି ।
ଧ୍ୟେୟା ତଦ୍‌ଯଦ୍‌ତଦ୍‌ସଦ୍‌ପରଂବ୍ରହ୍ମ
କୃଷ୍ଣାତ୍ମକୋ ନିତ୍ୟାନନ୍ଦୈକରୂପଃ ସୋଽହଂ ।

ଯେ ଜୀବକୁ ସୃଷ୍ଟିଥିବା ପର୍ଯ୍ୟନ୍ତ ଆତ୍ମରୂପରେ ଗ୍ରହଣ କରନ୍ତି, ସେ ଗୋପାଳକୃଷ୍ଣ ନିତ୍ୟାନନ୍ଦ ରୂପ ପରମବ୍ରହ୍ମ ।

ଏହି ହେତୁ ଭଗବାନ୍ କୃଷ୍ଣଚନ୍ଦ୍ର ସ୍ୱ ବଂଶୀଧ୍ୱନିରେ ଓଁକାର ଆଳାପ ସତତ କରୁଅଛନ୍ତି । ସେହି ଆଳାପ ଧ୍ୱନି ଶୁଣେ କିଏ ? ଶୁଣେ ଯେ, ସେ ଜାଗ୍ରତ ।

'ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ' - ଯେ ବିଶୁଦ୍ଧ ଜୀବ, ସେ ଏହି ଧ୍ୱନି, ଏହି ପରମାତ୍ମାଙ୍କ ଡାକ ଶୁଣନ୍ତି, ସଂସାରର ସମସ୍ତ ବନ୍ଧନ ଛିନ୍ନକରି ସେହିମାନେ ପରମାତ୍ମାଙ୍କ ପ୍ରାପ୍ତି ନିମିତ୍ତ ପାଗଳ ପରି ଉନ୍ମନା ହୁଅନ୍ତି; ସେହିମାନେ ହେଉଛନ୍ତି ପରମଭକ୍ତ ଗୋପୀରୂପରେ ଅଖ୍ୟାତ । ବଂଶୀ ଡାକଦେଲା, ସେହି ଗୋପୀରୂପୀ ପରମ ଭକ୍ତମାନ ସମସ୍ତ ସାଂସାରିକ ଗୃହବ୍ୟାପାରକୁ ଜଳାଞ୍ଜଳି ଦେଇ, ଯାହା ସର୍ବଭୂତଙ୍କର ମହାନିଶା, ଅର୍ଥାତ୍ ଯେତେବେଳେ ସମସ୍ତେ ତାମସ ଗୁଣରେ ଆଛନ୍ନ, ସେହି ସମୟରେ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ ସମକ୍ଷରେ ଉପସ୍ଥିତ । ତହୁଁ ସେମାନଙ୍କୁ ଦେଖି ଶ୍ରୀକୃଷ୍ଣ ମଙ୍ଗଳ ପ୍ରଶ୍ନକରି କହିଲେ- ପର ସ୍ତ୍ରୀର ଔପତ୍ୟ ଶୋଭନୀୟ ନୁହେଁ । ଏହା ସାଂସାରିକ ଦୃଷ୍ଟିରେ ଜୁଗୁପିସ୍ତ । ତୁମ୍ଭେମାନେ ଫେରିଯାଅ । କୃଷ୍ଣଚନ୍ଦ୍ର କହିଲେ- ଅନ୍ଧ, ଅସୁନ୍ଦର, ବୃଦ୍ଧ, ଜଡ଼, ଦରିଦ୍ର ହେଲେ ହେଁ ପତି କେତେବେଳେ ତ୍ୟାଗର ବିଷୟ ନୁହେଁ । ଯେବେ ପାତକୀ ହୁଏ, ତେବେ ଛଡ଼ା ଯାଇପାରେ । ତହୁଁ ଗୋପୀମାନେ ଉତ୍ତର ଦେଲେ- "ପତି, ଅପତ୍ୟ, ସହୃଦ୍‌ମାନଙ୍କର ଯେ ସେବା ସ୍ତ୍ରୀମାନଙ୍କର ଧର୍ମ ବୋଲି କହିଲେ, ହେ ଧର୍ମବିତ୍! ଧର୍ମ ଶିକ୍ଷାରେ ଆମର ପ୍ରୟୋଜନ ନାହିଁ । ସେହି ଉପଦେଶ ଆପଣଙ୍କର ଥାଉ, ଆପଣ ସ୍ୱୟଂ ପରମବ୍ରହ୍ମ ଓ ଆତ୍ମା, ପରମ ବନ୍ଧୁ । ସାଂସାରିକ ବ୍ୟାପାର କ୍ଳେଶପ୍ରଦ । ପାରମାର୍ଥିକ ବିଷୟ ଶ୍ରେୟସ୍କର ।" ଏଥିରେ ଏଭଳି ଜବାବ ପାଇ ଭଗବାନ୍ ନିରୁତ୍ତର ହୋଇ ଭକ୍ତଙ୍କର ପ୍ରପନ୍ନଭାବରେ ମୁଗ୍ଧ ହୋଇ ରାସଲୀଳା ଆରମ୍ଭ

କଲେ । ମାୟାର ଦୁଇଟି ଗୁଣ । ପ୍ରଥମ, ଆବାରିକା ଶକ୍ତି ଓ ଦ୍ୱିତୀୟ, ବିକ୍ଷେପିକା ଶକ୍ତି । ମାୟାର ଏହି ଦୁଇ ଶକ୍ତିଦ୍ୱାରା ଲୋକ ଭ୍ରାନ୍ତ ହୁଏ । ବସ୍ତ୍ରହରଣ ଛଳରେ ଭଗବାନ୍ ଗୋପୀରୂପୀ ଭକ୍ତମାନଙ୍କର ଭଗବାନଙ୍କର ଅନ୍ତର୍ଯ୍ୟାମିତ୍ୱବୋଧର ପ୍ରମାଣ । ସେମାନଙ୍କର ଲଜ୍ଜା ପ୍ରକାଶରେ ନ ପାଇ, ଅର୍ଥାତ୍ ଆବରିକା ଶକ୍ତିର ପ୍ରକୋପ ଦେଖି ସେମାନଙ୍କ ମନରେ ସ୍ୱ ଅନ୍ତର୍ଯ୍ୟାମିତ୍ୱ ଭାବ ଉଦିତ କରାଇଲେ ଏବଂ ଏହି ଭାବ ସେମାନଙ୍କଦ୍ୱାରା ପ୍ରକୃତରେ ପୋଷିତ ହେଲା କି ନାହିଁ, ତାହା ପରୀକ୍ଷା କରିବା ନିମିତ୍ତ ରାସଲୀଳାରେ ସାକ୍ଷାତ୍ କରିବାକୁ ଆଦେଶ ଦେଇଥିଲେ । ରାସଲୀଳା ଅବସରରେ ପ୍ରତ୍ୟେକ ଗୋପୀ ସ୍ୱ ପାର୍ଶ୍ୱରେ ଶ୍ରୀକୃଷ୍ଣଙ୍କୁ ଦେଖି ଅତୀବ ଆନନ୍ଦିତ ହୋଇ ଭାବିଲେ ଯେ, "ମୁଁ କେବଳ ଭାଗ୍ୟବତୀ ଓ ଶ୍ରୀକୃଷ୍ଣ ମୋର" । ଏହି ଯେ ଅହଂକାର ବା ଗର୍ବ ଅର୍ଥାତ୍ ସେହି କେବଳ ଭାଗ୍ୟବତୀ ଓ ଅନ୍ୟମାନେ ନୁହଁନ୍ତି- ଏହି ଭାବ ସେମାନଙ୍କ ହୃଦୟରୁ ଦୂରୀଭୂତ କରିବା ନିମିତ୍ତ ସେ ଅନ୍ତର୍ହିତ ହେଲେ ।

ପ୍ରଣମୟ ପ୍ରସାଦାୟ ତତ୍ରୈବାନ୍ତିରଧୀୟତ । ଆହା କି ଉଚ୍ଚ ଭାବ! ଏହି ଅହଂକାର ସାଧାରଣ ଦୃଷ୍ଟିରେ ଦୂଷ୍ୟ ନ ହେଲେ ହେଁ ପରମାର୍ଥ ଦିଗରେ ଏହା ମଧ୍ୟ ଦୂଷ୍ୟ । କାରଣ ଯେ ସର୍ବଭୂତରେ ଆତ୍ମାର ଭଗବଦ୍‌ଭାବକୁ ଏବଂ ଆତ୍ମାରେ ଓ ଭଗବାନଙ୍କଠାରେ ସର୍ବଭୂତକୁ ଦେଖେ, ସେ ହେଉଛି ଭକ୍ତଶ୍ରେଷ୍ଠ । ଭଗବାନ୍ କହିଛନ୍ତି – "ଅହଂକାରମୟ ପୁରେ ପଶି ନ ପାରିଲି ।" ଭଗବାନ ଦେଖିଲେ, ଯେବେ ଜୀବ ନିଜର କର୍ତ୍ତୃତ୍ୱ ପ୍ରକାଶ କରେ, ତେବେ ତାଙ୍କର ସ୍ଥାନ ସେଠାରେ ନାହିଁ । ପୂର୍ବଜନ୍ମରେ କେଦାର ରାଜକନ୍ୟା ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗ ଲାଭ କରବାକୁ ତପସ୍ୟା କରିଥିଲା । ସେ ବୃନ୍ଦା ରୂପରେ ଗୋପୀମାନଙ୍କ ମଧ୍ୟରେ ରାସଲୀଳାରେ ଯୋଗ ଦେଇଥିଲା । ତାହାକୁ ଏକାନ୍ତରେ ନେଇ ଶ୍ରୀକୃଷ୍ଣଙ୍କର ଏକମାତ୍ର ପ୍ରିୟତମା ବୋଲି ଭାବନ୍ତେ, ତାହାକୁ ପରିତ୍ୟାଗ କରି ଅନ୍ତର୍ହିତ ହେଲେ । ଗୋପଲୀଳାର ଏହା ହିଁ ପ୍ରକୃତ ଶିକ୍ଷା । ସେହି ରାସପଞ୍ଚାଧ୍ୟାୟୀରେ ଶୁକଦେବ ପରୀକ୍ଷିତଙ୍କୁ କହିଛନ୍ତି- ତମେବ ପରମାତ୍ମାନଂ ଜାରବୁଦ୍ଧ୍ୟାପିସଙ୍ଗତା

ଜହୁର୍ଗୁଣମୟଂ ଦେହଂ ସ୍ୱୟଂ ପ୍ରକ୍ଷୀଣବନ୍ଧନାଃ ।

ସେହି ପରମାତ୍ମାଙ୍କ ସହିତ ମଧ୍ୟ ଉପପତି ବୁଦ୍ଧିରେ ମିଳିତ ହେଲେ, ସାଂସାରିକ ବନ୍ଧନ ତ୍ୟାଗକରି ସ୍ୱୟଂ ସାଂସାରିକ ବନ୍ଧନଶୂନ୍ୟ ହୋଇ ଗୁଣମୟ ଦେହ ପରିତ୍ୟାଗ କଲେ । ଏହି ଉଦ୍ଦେଶ୍ୟରେ ଭଗବାନଙ୍କର ସମୀପବର୍ତ୍ତୀ ଯେ ତାହାଙ୍କ ବିଷୟରେ କଥିତ ଅଛି ।

"ଭିଦ୍ୟତେ ହୃଦୟଗ୍ରନ୍ଥି ଛିଦ୍ୟନ୍ତେ ସର୍ବସଂଶୟାଃ

କ୍ଷୀୟନ୍ତେ ଚାସ୍ୟ କର୍ମାଣି ଦୃଷ୍ଟେ ତସ୍ମିନ୍ ପରାବରେ (ଈଶାବାସ୍ୟୋପନିଷଦ)

ସେହି ପରମବ୍ରହ୍ମଙ୍କର ସତ୍ତା ହୃଦୟରେ ଅନୁଭୂତ ହୋଇ, ହୃଦୟରୁ ସଂସାର ବନ୍ଧନ ଛିନ୍ନହୁଏ, ସମସ୍ତ ସଂଶୟ ଦୂରୀଭୂତ ହୁଏ, ସକଳ କର୍ମଫଳ ମଧ୍ୟ କ୍ଷୀଣ ହୁଏ । ଏଠାରେ ପ୍ରଶ୍ନ ହୋଇପାରେ, ଯେ ନିର୍ଗୁଣ, ସେ ନିଷ୍କାମ । ସେ କିପରି କୃଷ୍ଣଲୀଳାରେ ମାତି ଉଠେ? ଏହାକୁ ଲକ୍ଷ୍ୟ କରି ଭାଗବତକାର କହିଲେ -

ଆତ୍ମାରାମାହି ମୁନୟୋ ନିର୍ଗ୍ରନ୍ଥା ହ୍ୟୁରୁକ୍ରମେ
କୁର୍ବନ୍ତି ଅହେତୁକୀଂ ଭକ୍ତିଂ ଇତ୍‌ଥଂଭୂତ ଗୁଣୋ ହରିଃ ।

ଯେ ଆତ୍ମାରାମ ଏବଂ ମନନ, ଶ୍ରବଣ, ନିଦିଧ୍ୟାସନପର ଏବଂ ସଂସାର ବନ୍ଧନ ଶୂନ୍ୟ, ସେମାନେ ଅପ୍ରୟୋଜନରେ କୃଷ୍ଣଙ୍କଠାରେ ଭକ୍ତି କରନ୍ତି । କାରଣ, ଭଗବାନ ଶ୍ରୀକୃଷ୍ଣ ଏଭଳି ଗୁଣଯୁକ୍ତ ଅଟନ୍ତି । ଅର୍ଥାତ୍ ନିଷ୍କାମ, ନିର୍ଗୁଣଙ୍କ ହୃଦୟରେ ଭକ୍ତିର ଦୃଢତ୍ୱ ଉତ୍ପାଦନ କରାଇ ଆତ୍ମଲୀଳା ପର କରାନ୍ତି । ସେହି ଲୀଳାରେ ସେମାନେ ଯେ ଭାବ ପୋଷଣ କରନ୍ତି, ତାହା ଭାଗବତକାର କହିଲେ ।

ଏବଂ ବ୍ରତଃ ସ୍ୱପ୍ରୟନାମକୀର୍ତ୍ତ୍ୟା
ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ
ହସତ୍ୟଥୋ ରୋଦିତି ରୌତି ଗାୟ ।
ତ୍ୟୁନ୍ମାଦବଦ୍‌ନୃତ୍ୟତି ଲୋକବାହ୍ୟଃ । (୪୦ -ଏକାଦଶସ୍କନ୍ଧ)

ଏହି ସବୁ ଧର୍ମଶାସ୍ତ୍ରର ମର୍ମ ଉପଲବ୍ଧିକରି ଧାର୍ମିକପ୍ରବର ବୈଷ୍ଣବ ଶ୍ରେଷ୍ଠ କବିବର ଉପେନ୍ଦ୍ରଭଞ୍ଜ ସ୍ୱ କୃତିମାନଙ୍କରେ ଧର୍ମ, ବ୍ରହ୍ମ ପ୍ରତିପାଦନରୂପକ ବିଷୟ ଦର୍ଶାଇ ଅଛନ୍ତି । ଏଭଳି ଧର୍ମବିଷୟକ ଗୂଢ ଭାବର ପ୍ରକାଶନ କୌଣସି କବିଙ୍କର କୃତିମାନଙ୍କରେ ଦେଖିବାକୁ ମିଳେନାହିଁ । ଏ ପ୍ରସଙ୍ଗରେ ଅନେକ କଥା କୁହାଯାଇପାରେ, ମାତ୍ର ବାହୁଲ୍ୟ ଭୟରେ ଏତିକି ମାତ୍ର କହି ନିବୃତ୍ତ ହେଲୁ । ଦୁଃଖର କଥା, ଲୋକେ ମାମଲତରେ ଅଧିକାରୀ ନ ହୋଇ ମାମଲତକାର ବୋଲାଉଅଛନ୍ତି । ବଡ଼ ଆଶ୍ଚର୍ଯ୍ୟର ବିଷୟ, ଲୋକେ ପରଠାରେ ଦୋଷ ଦର୍ଶାଇ ନିଜର ପାଣ୍ଡିତ୍ୟ ପ୍ରକାଶରେ ପ୍ରୟାସୀ ହୁଅନ୍ତି । ତେଣୁ କେତେକ ତଥାକଥିତ ସମାଲୋଚକ ଉପେନ୍ଦ୍ର ଭଞ୍ଜଙ୍କର କୃତିମାନଙ୍କରେ ଅଶ୍ଳୀଳତା, ବ୍ୟାକରଣ ଦୋଷ ଓ ଦୁରୂହ ଶବ୍ଦ ବିନ୍ୟାସ ପ୍ରତି ଆକ୍ଷେପ କରିଅଛନ୍ତି । ଏହା ମଧ୍ୟ ସେମାନଙ୍କର ପକ୍ଷରେ ସ୍ୱଭାବିକ । କାରଣ ସେମାନେ ପ୍ରାଚୀନ ଉତ୍କଳସାହିତ୍ୟର ପାରମ୍ପରିକ ଧାରା ସାବହିତ ଚିତ୍ତରେ ଅନୁସରଣ କରିନାହାନ୍ତି ଏବଂ ଦେଶ, କାଳ, ପାତ୍ର ଓ ଅବସ୍ଥାବୋଧ ପ୍ରତି ଦୃଷ୍ଟି ଦେଇନାହାନ୍ତି । ବଡ଼ ସୁଖର କଥା, ଉପେନ୍ଦ୍ର ଭଞ୍ଜଙ୍କର ଜୟନ୍ତୀ ପ୍ରତିବର୍ଷ ପାଳିତ ହେଉଅଛି । ଉପେନ୍ଦ୍ର ଭଞ୍ଜଙ୍କର କୃତିମାନଙ୍କର ସବିଚାର ଅନୁଶୀଳନ ଯଥାଯଥ ହେଉନାହିଁ । ତାଙ୍କର **ବୈଦେହୀଶ-ବିଳାସ**, **କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ**ର ଶୁଦ୍ଧ ସଂସ୍କରଣ ଏ ପର୍ଯ୍ୟନ୍ତ ନ ହେବା ଆକ୍ଷେପର କଥା । ବର୍ତ୍ତମାନ କବିବରଙ୍କର ଏହି ଯେ ପୂଜା ହେଉଅଛି, ଏହି ପୂଜାକ୍ରିୟାରେ ପ୍ରକୃତ ଉପେନ୍ଦ୍ର ଭଞ୍ଜଙ୍କର ମହତ୍ତ୍ୱ ଅନତିବିଳମ୍ବେ ପ୍ରକାଶିତ ହେବ ବୋଲି ଆମ୍ଭେମାନେ ଆଶାପୋଷଣ କରୁଅଛୁ । ପ୍ରାଚୀନ କାଳର ଅତି ସମୃଦ୍ଧ କଳିଙ୍ଗୋତ୍କଳର ମହତ୍ତ୍ୱ କିଞ୍ଚିତ୍‌ଦର୍ଶାଇ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଦିଗ୍‌ଦର୍ଶନରୂପେ କିଞ୍ଚିତ୍ ଆଖ୍ୟାତ କରାଗଲା । ଭବିଷ୍ୟତରେ ଅନ୍ୟାନ୍ୟ ଦିଗରୁ ଭଞ୍ଜଙ୍କର ମହତ୍ତ୍ୱ ପ୍ରଖ୍ୟାପନର ଆଶା ହୃଦୟରେ ପୋଷଣ କଲୁ । ଦିନେ ଏ ଉତ୍କଳ କଳାବିଦ୍ୟାରେ ପରାକାଷ୍ଠା ଲାଭ କରିଥିଲା ଏବଂ ସେହି ପରାକାଷ୍ଠା ଏ ଯୁଗରେ କିପରି ବିକାଶ ଲାଭ କରିବ- ସେଥିପ୍ରତି ଉତ୍କଳବାସୀଙ୍କର ଦୃଷ୍ଟି ଦେବା ବାଞ୍ଛନୀୟ ।

ଆର୍ତ୍ତବଲ୍ଲଭଙ୍କ ହାତଲେଖା

Artaballabh Mohanti

CUTTACK CHANDI ROAD
Date 8/8/59

I have great pleasure in certifying that Sriman Jusarathi Jena of Ayatpur of Kendrapara Sub-Division district Cuttack is personally known to me. He has taken the M.A Degree in Oriya literature and is placed in the first division. His knowledge of Oriya is very good. He contributes articles to Oriya magazines & he has got ability over Oriya language. He bears an excellent character. In my opinion he deserves to be a lecturer in a first grade College and I am confident he will acquit himself creditably there.

Artaballabh
Mohanti,
Retd Professor.

# ପ୍ରେମଚିନ୍ତାମଣି

ଶ୍ରୀମତୀ କୁନ୍ତଳାକୁମାରୀ ସ୍ୱକବିତ୍ୱ ବଳରେ ଉତ୍କଳରେ ପରିଚିତ । ଏହି ନାରୀ କବିଙ୍କ ଲେଖନୀ ସାଧନାବଳରେ କିପରି ସିଦ୍ଧିର ଦିଗକୁ ଗତି କରୁଅଛି, ତାହା କାବ୍ୟବିନୋଦୀ ମାତ୍ରେ ଅନୁଭବ କରିବେ । 'ପ୍ରେମଚିନ୍ତାମଣି' ସିଦ୍ଧ ଲେଖନୀପ୍ରସୂତ, ଏଥିରେ ଅତ୍ୟୁକ୍ତି ନାହିଁ । କବିଙ୍କର ପୂର୍ବତନ କୃତିମାନ ପାଠକରି ବିସ୍ମୟର ସହିତ ଆନନ୍ଦ ଅନୁଭବ କରିଅଛି, ଏବଂ ଅନ୍ୟ ସାହିତ୍ୟସେବୀଙ୍କ ନିକଟରେ ତାଙ୍କ କୃତିତ୍ୱର ବିଷୟ ବହୁବାର ଖ୍ୟାପନ କରିଅଛି । ପ୍ରେମଚିନ୍ତାମଣି ଥରେ ନୁହେଁ, ଦୁଇ ଥର ନୁହେଁ, ବହୁବାର ଆମୂଳଚୂଳ ପାଠକଲି, ଆନନ୍ଦରେ ବିଭୋଳ ହେଲି, ଉତ୍କଳର ନାରୀଶକ୍ତିର ଅସାମାନ୍ୟ ବିକାଶରେ ଗର୍ବ ଅନୁଭବ କଲି । ମାଧବୀ, ବୃନ୍ଦାବତୀ, ରାଣୀ ନିଶଙ୍କରାୟ ପ୍ରଭୃତି ପ୍ରାଚୀନ ନାରୀକବିମାନଙ୍କ କବିତ୍ୱ ସରଣୀ ଧରି ଆଧୁନିକ ଯୁଗରେ ମଧ୍ୟ କେତେକ ନାରୀ କବି ସ୍ୱକୁସୁମାଞ୍ଜଳିରେ ଦେବୀ ବୀଣାପାଣିଙ୍କର ଆରାଧନା କରୁଅଛନ୍ତି । ଏମାନଙ୍କ ମଧ୍ୟରେ ପ୍ରେମଚିନ୍ତାମଣିର କବି ଶ୍ରେଷ୍ଠ ଆସନ ଅଧିକାର କରିଅଛନ୍ତି ।

ପ୍ରାଚୀନ ଭିତ୍ତିରେ ନବୀନ ସୌଧ ନିର୍ମାଣକରିବା ଏ କ୍ଷେତ୍ରରେ ଶ୍ରେୟସ୍କର । ପ୍ରାଚୀନକୁ ତୁଚ୍ଛକରି ନବୀନକୁ ଗଣ୍ଠିଧନ କରିବା ବା ପ୍ରାଚୀନକୁ ଗଣ୍ଠିଧନ କରି ନବୀନ ପ୍ରତି ଚକ୍ଷୁ ମୁଦ୍ରିତ କରିବା ଅବିମୃଷ୍ୟକାରିତାର ଚିହ୍ନ । ଭାଷାର ସହଜ ଶକ୍ତି – ପ୍ରାଚୀନତା, ପାଂରପାରିକ ଜୀବନ, ତା'ର ବ୍ୟଷ୍ଟି, ତା'ର ବିଶେଷତ୍ୱ । ବ୍ୟଷ୍ଟିରେ ସମଷ୍ଟିର ପ୍ରଭାବ ଓ ସମଷ୍ଟିରେ ବ୍ୟଷ୍ଟିର ପ୍ରଭାବ ଅନିବାର୍ଯ୍ୟ ।

ଉତ୍କଳ ସାହିତ୍ୟର ବ୍ୟଷ୍ଟି ହିଁ ତା'ର ବିଶେଷତ୍ୱ । ତା'ର ଭାଷା, ଭାଷାର ରୀତିର ପ୍ରସଙ୍ଗାନୁଯାୟୀ ବିଭିନ୍ନତା, ବିଭିନ୍ନତାରେ ଚାରୁତାର ବିଳାସ ଉତ୍କଳର ପ୍ରାଣରୁ – ଅସ୍ଥିରକ୍ତ ମାଂସାଦିଗଠିତ ଶରୀରର ଜୀବନୀଶକ୍ତିରୁ ନିଃସୃତ । ତା'ର ଭାବ, ଭାବର ଅବସ୍ଥା, ଅବସ୍ଥାର ବିବିଧ ବିକାଶ ଉତ୍କଳପ୍ରାଣର ଅବସ୍ଥିତିର ପରିଚାୟକ ଓ ବିଶେଷତ୍ୱର ପରିମାପକ । ଏହି ସମସ୍ତ ପ୍ରତି ଚକ୍ଷୁ ମୁଦ୍ରିତ କରି ନବୋଦୟବତ୍ କାର୍ଯ୍ୟ କଲେ, ଘୋର ବିପ୍ଳବ – ଜାତୀୟତାର ମ୍ରିୟମାଣତା – ଜାତୀୟ ପ୍ରାଣର ପ୍ରାୟୋପବେଶନ ।

ଅଭିମନ୍ୟୁ, ଭକ୍ତଚରଣଙ୍କ ପରବର୍ତ୍ତୀ ଊନବିଂଶ, ବିଂଶ ଶତାବ୍ଦୀର ଆଧୁନିକ ଲେଖକମାନଙ୍କ ମଧ୍ୟରେ ଅତି ଅଳ୍ପ କବି ଉତ୍କଳ ସାହିତ୍ୟ ତଥା ଭାଷାରେ ସହଜ ଶକ୍ତି

ସଂରକ୍ଷଣ କରିପାରିଥିବା ଭଳି କାବ୍ୟ ଲେଖିଅଛନ୍ତି । ଭାଷାର ସହଜ ଶକ୍ତିରେ ଭାବର କମନୀୟ ଅଭିବ୍ୟକ୍ତିଜନିତ ମାଧୁର୍ଯ୍ୟ ଯେପରି ପ୍ରାଣରେ ସ୍ପନ୍ଦନ ଆଣେ, ତାହା ଅନ୍ୟତ୍ର ବିରଳ । ଏହି ସହଜ ଶକ୍ତି ଅବିଲକ୍ଷଣ **ପ୍ରେମଚିନ୍ତାମଣି**ରେ ପରିଦୃଷ୍ଟ ହୁଏ । ପୂର୍ବବର୍ତ୍ତୀ ରାଧାକୃଷ୍ଣଲୀଳାତ୍ମକ କାବ୍ୟମାନ ପ୍ରାଚୀନ ରୀତିରେ ଆଦିରସର ଆତ୍ୟନ୍ତିକ ବିଶ୍ଳେଷଣ ବିଧିରେ ମୂର୍ଚ୍ଛିତ ହେତୁ ସର୍ବତୋଭାବେ ସର୍ବଜନାଦରଣୀୟ ହୋଇପାରୁନାହିଁ । **ପ୍ରେମଚିନ୍ତାମଣି**ର ବିଶେଷତ୍ୱ - ଏହା ଜନସାଧାରଣର ଗ୍ରହଣୋପଯୋଗୀ । କବିଙ୍କର ବୁଦ୍ଧିମତ୍ତା, ଔଚିତ୍ୟ ବିନିଯୋଗରେ କୁଶଳତା, ପାରଂପାରିକ ଧର୍ମ୍ମମତର ଅନୁଭୂତିମୂଳକ ଭାବନାର ପରିଣତି, ଦେଶୀୟ ଓ ବିଦେଶୀୟ ସାହିତ୍ୟଦର୍ଶିତା- ଏକାଧାରରେ କାର୍ଯ୍ୟକରି ଏହି ଗୀତିମୟୀ ନାଟିକା **ପ୍ରେମଚିନ୍ତାମଣି**କୁ ସର୍ବଜନହୃଦ୍ୟ କରିଅଛି ।

**ପ୍ରେମଚିନ୍ତାମଣି** ଏକ ପ୍ରେମରସ ମୂର୍ଚ୍ଛିତା ଗୀତିମୟୀ ନାଟିକା । ନାୟକ କୃଷ୍ଣଙ୍କ ନାମ 'ପ୍ରେମଚିନ୍ତାମଣି' । ତାହାହିଁ ନାଟିକାର ନାମ । କବି ତାହାହିଁ ଶ୍ରୀମତୀଙ୍କ ମୁଖରେ କୁହାଇଅଛନ୍ତି ।

ସେ ଏକା ମୋ ଧନ
ସେ ଏକା ମୋ ଧ୍ୟାନ ।
ଚିତ୍ତେ 'ପ୍ରେମଚିନ୍ତାମଣି' । ପୃ ୪୧, ୪ ପଦ

କବି ଏହି ନାଟିକାର ପ୍ରାରମ୍ଭରେ ଶ୍ରୀକୃଷ୍ଣଙ୍କ ମୂର୍ତ୍ତିର ପ୍ରମାଣ, କୁମାରୀମାନଙ୍କ ଦ୍ୱାରା କରାଇ 'ଚିତ୍ତ ସୁନ୍ଦର ରାଜେ, ଚିର ରାଜେରେ' କୁହାଇଅଛନ୍ତି । ପୁନଶ୍ଚ ତାହାର ପ୍ରତିଧ୍ୱନି ମଞ୍ଜୁଳା ମୁଖରେ ୩୮ ପୃଷ୍ଠାରେ–
'ମାନସମନ୍ଦିରେ ପ୍ରେମସୁନ୍ଦର, ପ୍ରେମ ସୁନ୍ଦରେ' ରାଜେ ରେ ।

ଯେ 'ଚିତ୍ତ ସୁନ୍ଦର' ସେ 'ପ୍ରେମସୁନ୍ଦର' ସେ 'ସଚ୍ଚିଦାନନ୍ଦ', ସେ ସେହି ଶ୍ରୀକୃଷ୍ଣ । ଶ୍ରୀକୃଷ୍ଣଙ୍କ ମୂର୍ତ୍ତିର କି ଅପୂର୍ବ ଲାବଣ୍ୟ, କି ଚିତ୍ତଚୋରା ମାଧୁରୀ, କି ନିତ୍ୟ ନୂତନତା, କି ସଚ୍ଚିଦାନନ୍ଦ ସାନ୍ଦ୍ରାଙ୍ଗତା, ଯାହାର ଦର୍ଶନରେ ଗୋପକନ୍ୟାଙ୍କ ହୃଦୟ ବିସ୍ମିତ, ଦ୍ରୁତ, ଉତ୍ତରଳ । ଆହା, ସେଇ ସୁମଧୁର ରୂପ ମଧୁରରସର ଭକ୍ତିୟାପାଗଳ ବିଲ୍ୱମଙ୍ଗଳ ଗାଇଅଛନ୍ତି –

ମଧୁରଂ ମଧୁରଂ ବପୁରସ୍ୟ ବିଭୋ ।
ମଧୁରଂ ମଧୁରଂ ବଦନଂ ମଧୁରମ୍ ।।
ମଧୁଗନ୍ଧମୃଦୁସ୍ମିତ ମେତଦହୋ ।
ମଧୁରଂ ମଧୁରଂ ମଧୁରଂ ମଧୁରମ୍ ।।

ହୃଦୟର ଉତ୍ତରଳତା ଚିରସୁନ୍ଦର ପ୍ରେମସୁନ୍ଦର କୃଷ୍ଣଚନ୍ଦ୍ରଙ୍କ ପ୍ରାପ୍ତି ନିମିତ୍ତ । ଗୋପକନ୍ୟାଙ୍କ ମଧ୍ୟରେ ପ୍ରେମମୟୀ ମହାଭାବ ସ୍ୱରୂପିଣୀ ରାଧାଙ୍କର କୃଷ୍ଣଙ୍କ ପ୍ରାପ୍ତି ନିମିତ୍ତ ଲାଳସା, ଉଦ୍‌ବେଗ, ବ୍ୟଗ୍ରତା, କେତେବେଳେ ଜଡ଼ତା ପୁଣି ବ୍ୟଗ୍ରତା, କେତେବେଳେ ମୋହ, ଉନ୍ମାଦ ପ୍ରଭୃତି ଦଶାମାନ ସ୍ଥାନେ ସ୍ଥାନେ ସୁନ୍ଦର ପରିପାଟୀର

ସହିତ ବର୍ଣ୍ଣିତ ହୋଇଅଛି । ରାଧାଙ୍କର ପୂର୍ବରାଗରେ ଏହି ଦଶାତ୍ମକ ବର୍ଣ୍ଣନା ଅତି ଚମତ୍କାର ପ୍ରତିପାଦକ ।

ସାଧାରଣତଃ ନାୟକର ନାୟିକା ବିଷୟକ ଭାବ ବା ରାଗ ପ୍ରଥମରେ ପ୍ରକାଶ ପାଇବା ସମ୍ଭବପର । ନାୟିକାର ତାହା ନୁହେ, କାରଣ – ଲଜ୍ଜା, ଭୟ, ଧୈର୍ଯ୍ୟ, କୁଳାଚାର ପ୍ରଭୃତି ଆବରଣ ହେତୁ ସହସା ପୁରୁଷଠାରେ ସ୍ତ୍ରୀର ପୂର୍ବରାଗ ପ୍ରକାଶ ପାଏନାହିଁ । ପୁରୁଷର ସେ ସବୁ ନ ଥିବା ହେତୁ ରାଗ ବା ଭାବର ଉଦୟମାତ୍ରେ ସେ ନାୟିକା ଅନ୍ୱେଷଣରେ ବ୍ରତୀ ହୁଏ । କିନ୍ତୁ ପ୍ରଥମତଃ ସ୍ତ୍ରୀମାନଙ୍କର ପୂର୍ବରାଗ ବର୍ଣ୍ଣିତ ହେଲେ କାବ୍ୟର ଚାରୁତା ଅଧିକ ଭାବରେ ପ୍ରତିପାଦିତ ହୁଏ । ପ୍ରେମର ଆଧିକ୍ୟ ବା ପ୍ରାବଲ୍ୟରେ ଲଜ୍ଜା, ଭୟ, କୁଳାଚାର ପ୍ରତି ଜଳାଞ୍ଜଳି ପ୍ରଦତ୍ତ ହୁଏ । ଏବଂ ସେହି ସ୍ତ୍ରୀଗତ ପ୍ରେମର ପ୍ରଥମ ଉପସ୍ଥାପନ ଓ ବର୍ଣ୍ଣନରେ ଔଚିତ୍ୟ ଅଛି । କାରଣ ପ୍ରେମର ସର୍ବତ୍ର ଜୟ । ସାହିତ୍ୟଦର୍ପଣକାର ମଧ୍ୟ କହିଛନ୍ତି –

'ଆଦୌ ରାଗ ସ୍ତ୍ରିୟୋ ବାଚ୍ୟଃ
ପଶ୍ଚାଦ୍ ପୁଂସ ସ୍ତଦିଙ୍ଗିତୈଃ ।

ଭକ୍ତିଶାସ୍ତ୍ର ଦୃଷ୍ଟିରେ– ଭକ୍ତିହିଁ ରସ । ଭକ୍ତିରସ ଭକ୍ତକୁ ଆଶ୍ରୟ କରେ । ଭଗବଦ୍- ରସ ବା ରାଗ, ଭକ୍ତର ରସ ବା ରାଗର ପଶ୍ଚାତରେ ଜାତ ହୁଏ । ବ୍ରଜଦେବୀମାନେ ପରମ ଭକ୍ତରୂପିଣୀ ହେତୁ ସେମାନଙ୍କର ପ୍ରଥମ ପୂର୍ବରାଗ ସମୀଚୀନ ଅଟେ ।

ସତ୍ୟ, ଶିବ, ସୁନ୍ଦରଙ୍କର ପ୍ରାପ୍ତି ନିମିତ୍ତ କୁମାରୀଗଣଙ୍କର ସ୍ନିଗ୍ଧ ହୃଦୟ ଦ୍ରୁତ । ହୃଦର ଦ୍ରୁତତ୍ୱ ଯାଦୃକ୍ କୁମାରୀଗଣଙ୍କର – ନରର ତ ଦୂରର କଥା, ନାରୀର ତାଦୃକ୍ ନୁହେଁ । କାନ୍ତ କୋମଳ ହୃଦୟର ଦ୍ରୁତତ୍ୱ ସ୍ୱାଭାବିକ । ଏ ଦୃଷ୍ଟିରେ ପ୍ରଧାନ ଭକ୍ତଙ୍କ ଅନୁରାଗ ହୃଦୟ କୁମାରୀର ହୃଦୟବଦ୍ ସ୍ନିଗ୍ଧ ଓ ଦ୍ରୁତ ।

ପ୍ରବୃତ୍ତିର ବିନାଶରେ ଅନୁରାଗ ଜନ୍ମେ ନାହିଁ । କିନ୍ତୁ ଐହିକ ବିଷୟରୁ ପ୍ରବୃତ୍ତି ପାରତ୍ରିକ ବା ଭଗବଦ୍ ବିଷୟରେ ସଂକ୍ରମିତ ହେଲେ ଅନୁରାଗ ଅକ୍ଷୁଣ୍ଣ ରହେ । ଐହିକ ବିଷୟରୁ ନିବୃତ୍ତିରେ ପ୍ରବୃତ୍ତିର ଲୋପ ହୁଏନାହିଁ । ପ୍ରବୃତ୍ତି ପ୍ରକୃଷ୍ଟ ପନ୍ଥା – ସତ୍ୟପନ୍ଥା ଅବଲମ୍ବନ କଲେ, ଉତ୍ତରୋତ୍ତର ବୃଦ୍ଧି ଲାଭକରି ପରମ ପ୍ରେମମୟ ପଦବୀ ପ୍ରାପ୍ତହୁଏ ।

ଭଗବାନ୍ ପ୍ରେମସ୍ୱରୂପ । ତାଙ୍କର ଶକ୍ତି ମଧ୍ୟରେ ପ୍ରୀତିଶକ୍ତି ଶ୍ରେଷ୍ଠ । ସେ ଯେଉଁ ଶକ୍ତି ବଳରେ ନିଜେ ପ୍ରେମବାନ ହୁଅନ୍ତି ଓ ଜୀବମାନଙ୍କ ମଧ୍ୟରେ ପ୍ରେମ ବିତରଣ କରି ସେମାନଙ୍କୁ ପ୍ରେମବାତୁଳ କରାନ୍ତି, ତାହା ତାଙ୍କର ପ୍ରେମମୟୀ ଶକ୍ତି । ଭଗବାନ୍ ସ୍ୱପ୍ରେମ ଶକ୍ତିଠାରୁ ଅଭିନ୍ନ ହେଲେହେଁ ସେ ସେହି ଶକ୍ତିର ଅଧୀଶ୍ୱରରୂପେ କଥିତ । ଉକ୍ତ ଶକ୍ତିର ରାଜ୍ୟ ଏହି ବିଶ୍ୱ । ସେହି ଶକ୍ତି– ପ୍ରେମ- ବିଶ୍ୱପ୍ରେମ । ସେହି ଶକ୍ତିବଳରେ ଭକ୍ତମାନଙ୍କ ମଧ୍ୟରେ ତାରତମ୍ୟ ପରିଦୃଷ୍ଟ ହୁଏ । ଗୋପୀମାନେ ସେହି ପ୍ରେମଶକ୍ତି ବଳରେ ଭକ୍ତଶିରୋମଣି ହୋଇପାରିଅଛନ୍ତି । ପ୍ରେମଶକ୍ତିର ଅତ୍ୟଧିକ ବିଳାସ ହେତୁ ଗୋପୀମାନେ ପ୍ରେମସ୍ୱରୂପା – ଭଗବାନଙ୍କର ପ୍ରେମମୟୀ ଶକ୍ତି । ସେମାନଙ୍କ ମଧ୍ୟରେ

ରାଧା ଶ୍ରେଷ୍ଠ । ରାଧା ଓ କୃଷ୍ଣଙ୍କ ଲୀଳା – ପ୍ରେମଲୀଳା । ଭଗବତ୍ ପ୍ରେମ ଦିବ୍ୟ, ଚିନ୍ମୟ । ସେ ପ୍ରେମ ଅପ୍ରାକୃତ । ତାହା ବୈଷ୍ଣବ ଦର୍ଶନରେ କାମ ନାମରେ ଅଭିହିତ । ସେ କାମ ବାସ୍ତବ କାମଠାରୁ ପୃଥକ୍ ।

ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ହେ । ଅଭିମନ୍ୟୁ

ପୁନଶ୍ଚ –

ଅପ୍ରାକୃତ ପ୍ରେମ ଯା ନାମ କାମ । ଅଭିମନ୍ୟୁ

ସୌନ୍ଦର୍ଯ୍ୟର ଉପଲବ୍ଧି ହିଁ କାବ୍ୟର ମୁଖ୍ୟ ଉଦ୍ଦେଶ୍ୟ । କବିଙ୍କର ସୌନ୍ଦର୍ଯ୍ୟ ଅବବୋଧ ହିଁ ତାହାର ପ୍ରଧାନ କାରଣ । ସୌନ୍ଦର୍ଯ୍ୟରେ ହିଁ ପ୍ରୀତିର ବିକାସ । ରାଧା ଓ କୃଷ୍ଣ ପ୍ରୀତିମୟ ଓ ସୌନ୍ଦର୍ଯ୍ୟମୟ । କାବ୍ୟର ବିଷୟ ପ୍ରେମର ମହତ୍ତ୍ୱ ପ୍ରକଟନ । ଆଧେୟର ପ୍ରତିପତ୍ତି ଆଧାର ବିନା ହୋଇପାରେନାହିଁ । ଏତଦ୍ଦୃଷ୍ଟିରେ ଅପ୍ରତ୍ୟକ୍ଷ ନିଗୂଢ ବିଷୟ ଆଧାରରୂପେ କଳ୍ପିତ ହେଲେ ସୁକୁମାରମତି ସାଧାରଣ ଲୋକଙ୍କ ହୃଦୟ ରସାସ୍ୱାଦ କରିପାରେ ନାହିଁ । ବିଷୟଟି ଦର୍ଶନର କୋଟିକୁ ଆଶ୍ରୟ କରେ । ସଂସ୍କୃତ ଆଳଙ୍କାରିକଙ୍କ ମତରେ କାବ୍ୟ କାନ୍ତସମ୍ମିତ । ଯେ ସ୍ୱକାବ୍ୟ ବଳରେ ଜନସାଧାରଣଙ୍କ ହୃଦୟରେ ସହଜ ସରଳ ସୁନ୍ଦର ବର୍ଣ୍ଣନାଦ୍ୱାରା ଚମତ୍କାର ଭାବ ପ୍ରତିପାଦନ କରିପାରନ୍ତି, ସେ ପ୍ରକୃତ କବି । କବି ରୂପପାୟୀ । ତେଣୁ ଶଂସିତ କବି ନିଜ ସାଧନାର ସିଦ୍ଧି କଳ୍ପେ ଅରୂପକୁ ଛାଡ଼ି ରୂପକୁ ଅବଲମ୍ବନ କରିଅଛନ୍ତି । ବସ୍ତୁର ଶୋଭନ ନିର୍ଦ୍ଦେଶର ଅଭାବ ହେତୁ କାବ୍ୟର ସାଧାରଣ ଅବବୋଧରେ ବ୍ୟାଘାତ ଜନ୍ମେ । ଅସ୍ମଦ୍ଦୃଷ୍ଟିରେ କାବ୍ୟର ବିଷୟ ଯେତେ ଲୌକିକ, ଯେତେ ଜୀବନ୍ତ, ତାହା ତେତେ ଗ୍ରହଣୀୟ – ତେତେ ହୃଦୟସ୍ପର୍ଶୀ ହୁଏ । ଏତଦ୍ଦୃଷ୍ଟିରେ କବି ପ୍ରେମର ମହତ୍ତ୍ୱ ପ୍ରକଟନକଳ୍ପେ ରାଧାକୃଷ୍ଣଙ୍କ ପ୍ରେମଲୀଳା ଏହି କ୍ଷୁଦ୍ର ଗୀତିନାଟିକାରେ ବ୍ୟାଖ୍ୟାନ କରିଅଛନ୍ତି । ରାଧାକୃଷ୍ଣ- ଶରୀରୀ, ମାନବ । ତାଙ୍କର ମାନବତ୍ୱରେ ଦେବତ୍ୱର ପୂର୍ଣ୍ଣ ବିକାଶ । ତହୁଁ ଏହି ବାସ୍ତବିକତାରେ ଦିବ୍ୟପ୍ରେମର ଲୀଳା ପ୍ରକଟନିହିଁ ଏହି ନାଟିକାର ମୁଖ୍ୟ ଉଦ୍ଦେଶ୍ୟ ।

ପ୍ରକୃତିର ଅନ୍ତରରେ ଓ ବାହାରେ ସର୍ବତ୍ର ସୌନ୍ଦର୍ଯ୍ୟ ଦର୍ଶନ କରି – ଚିରସୁନ୍ଦରଙ୍କ ସତ୍ତା ସର୍ବତ୍ର ବିରାଜମାନ – ଏହାର ପତିପାଦନ ଛଳେ ଗୋପକୁମାରୀଙ୍କ ପ୍ରୀତିଭକ୍ତିରେ କୃଷ୍ଣଚନ୍ଦ୍ରଙ୍କୁ ପ୍ରଣତି ।

ସଖୀମାନଙ୍କ ଉକ୍ତିରୁ ସୁମନା-ସୌନ୍ଦର୍ଯ୍ୟ ଦର୍ଶନରେ ମାନବ-ମାନସ-ଗୀତିର ସ୍ୱତଃ ଉଦ୍‌ବୋଧନ । ଏହି ଗୀତି ଆନନ୍ଦ ଓ କାରୁଣ୍ୟରେ ମୂର୍ଚ୍ଛିତ । ସୌନ୍ଦର୍ଯ୍ୟମୟଙ୍କ ସତ୍ତାର ନିଦର୍ଶନ ପ୍ରକାଶରେ ବିପୁଳ ଆନନ୍ଦ ଓ ତଦ୍ ପ୍ରାପ୍ତି ନିମିତ୍ତ ଆକାଙ୍କ୍ଷା – ଲାଳସା-ଆବେଗ-ହେତୁକ କାରୁଣ୍ୟ ।

ଚକ୍ଷୁର କି ଅପୂର୍ବ ଆନନ୍ଦ । ପୁଷ୍ପାଦିର ଅନୁଭାବରେ ପ୍ରେମମୟଙ୍କ ପ୍ରତି ପ୍ରୀତିର ଅଭ୍ୟୁଦୟ ।

ସୌରଭମୟ, ସୌନ୍ଦର୍ଯ୍ୟମୟ ସୁମନା ସହିତ ଶ୍ରୀମତୀଙ୍କ ଆତ୍ମତୁଳନା । ଅଭୀଷ୍ଟର ପ୍ରାପ୍ତିରେ ଆଶଙ୍କାଜନିତ ହୃଦୟର ଆକୁଳ ଆଲୋଡ଼ନା, ତହୁଁ ନିଜପ୍ରତି ଅଧିକ୍ଷେପ ।

ହୃଦୟେ ଫୁଟିଛି ଏ ପ୍ରେମ କଢ଼ି
ଅନ୍ଧାରେ ଆଗୋ ଶୁଣିବ ଝଡ଼ି
ମରମ ବେଦନା କେ ବୁଝିବ ଆଉ ଯୌବନ ତା'ର ଯିବଟି ସରି ।'

ଲଳିତାର ଶଙ୍କିତ ହୃଦୟରେ ଶ୍ରୀମତୀଙ୍କ ପ୍ରତି ଆଶାୟୀ ବାଣୀ । ତତ୍ ଶ୍ରବଣରେ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀମତୀଙ୍କର –

୧ - ଲାଳସା

(କ) ମଥାମଣି ସମ, ମଣିଛି ମିତଣି
କିସ ପର ବାଛନ୍ଦରେ ! ପୃ୭

(ଖ) 'ସରବ ସୁନ୍ଦର ସାର
ସୁନ୍ଦର ଦଳର ରାଜାକୁ ଅବା ମୁଁ
କରିଚି ମୋ ଗଳାହାର
x x x x
(ସେତ) ଆଖି ମୋର ଦିଏ ଦହି । ପୃ ୮

ବୃନ୍ଦାବତୀଙ୍କ ଆଶ୍ୱାସବାଣୀ –

ଶ୍ରବଣରେ ଶ୍ରୀମତୀଙ୍କ
ଚରଣ ସ୍ପର୍ଶେ ନିବିଡ଼ ହର୍ଷେ ହେବୁ ସରବ ତ୍ୟାଗୀ । ପୃ ୯

୨ - **ଔତ୍ସୁକ୍ୟ ଓ ଜାଗରଣ**

ନିଶି ନିଶି ମୁହିଁ ଥିଲି ଉଜାଗର,
ରଖିଲି କବାଟ ଖୋଲି ।

୩- **ଗ୍ଲାନି**

ସବୁ ଦୋଷଯାକ ମନ ଆକୁଳରେ
କପାଳକୁ ଦେଲି ଲେଖି ।
x x x x
ମିଛେ ମିଛେ କହୁ ମୋର ।' ପୃ ୧୦

୪- **ଘୂର୍ଣ୍ଣା**

ଖସିପଡ଼େ ବାସ,
ଖସିପଡ଼େ କେଶ,
କ୍ଷଣେ ଫୁଟେ ହାସ,
କ୍ଷଣେ ପ୍ରାଣେ କ୍ଲେଶ । ପୃ ୧୧

୫- ଉଦ୍‌ବେଗଜନିତ କମ୍ପ

ଥର ଥର ଥର ଆଖି ଝର ଝର
ଆଗୁଳି ଧରେ କି ଲାଜ ! ପୃ୧୨

୬- ଶ୍ୱାସ

ରୁନ୍ଧିଯାଏ ଅବା ନିଃଶ୍ୱାସ ପବନ
(କହ) କି କରିବି ଏହାପାଇଁ ? ପୃ ୧୨

୭- ଉନ୍ମାଦ ଓ ବିଳାପ

ପାଗଳ ପରାଏ ଲୋଟେ ଧରାତଳେ
କେବେ ବସେ ତାର ଧ୍ୟାନେ,
ଝିଙ୍ଗାସି କେ କେତେ ହିୟା କରତନ୍ତି
କେ ମାରନ୍ତି ବାକ୍ୟବାଣେ ।
x x x x
ଆଖିରୁ ଆବେଗେ ପାଣି ପଡ଼େ ଝରି
କହ ମୁଁ ବଞ୍ଚିବି ସତେ,
ସବୁ ବାଟେ ମୋର କଣ୍ଟା ପଡ଼ିଚି ଲୋ
ଯିବି ଆଉ କେଉଁ ପଥେ ? ପୃ୧୫

୮- ମରଣ ଉଦ୍ୟମ

(କ) ଜୀବନେ ନ ଥାଏ ତିଳେ ପ୍ରୟୋଜନ
ଲୋଡ଼େ ମୁଁ ଅମୃତ ମରଣେ । ପୃ୧୬
x x x
(ଖ) 'ଶ୍ମଶାନ ମଣେ ମୋ ପୁରୀ ।
'ଦଦରା ବୋଇତେ ବସି ଅଜ୍ଞାନରେ
ଅକୂଳେ ମାଇଲି କାତ ।'
(ଗ) 'ତାହାରି ଲାଗି ମୁଁ ହେବି ବିରାଗିନୀ
x x x
(ଘ) ବାସନା ମୋହର ହେଲେ ହୁଅନ୍ତି ମୁଁ
ତା ପାଦର ଧୂଳି ଅଳିଆ । ପୃ ୨୩

ଏହି ମରଣୋଦ୍ୟମ – ଅର୍ଥାତ୍ ମୃତ୍ୟୁର ଅବସ୍ଥା ସଦୃଶ ଦଶାର ପ୍ରାପ୍ତିରେ ମଞ୍ଜୁଳାର ଘୋର ଦୁଃଖମୟ ବଚନ-

ତୁଛାକୁ ତୁଛାକୁ
କାନ୍ଦିବ ସେ ମନେ
ଜୀବନ ରହିବ କେତେ ? ପୃ ୨୫

ଓ ବୃନ୍ଦାବତୀର ମଧ୍ୟ ତଦ୍ରୂପ ଉକ୍ତି –

ଶ୍ୟାମ ଧନ ବିନା ରାଧା ମନ କି ରସିବ ? ପୃ ୨୬

ତଦ୍‌ଶ୍ରବଣରେ ଶ୍ରୀମତୀଙ୍କ ନିର୍ବେଦ, ବିରାଗ । ତାହା ନୈରାଶ୍ୟର ଫଳ । ତାଙ୍କ ଉକ୍ତିରୁ ଜଣାଯାଏ, ସେ ପ୍ରେମରେ ବିଭୋର- ପ୍ରେମ ତାଙ୍କୁ ଘାରିଚି –

ମରଣଜିଣା ଏ ପ୍ରୀତି ସରି ମିତ !
ଆଉ କି ଅଛି ମୁଁ ପାଇ ? ପୃ ୨୭

ଏହି ପ୍ରାଣମୂର୍ଚ୍ଛା ପ୍ରୀତି ଦର୍ଶନରେ ଲଳିତାଙ୍କ ଉକ୍ତି –

ମନେ ପକାନା ...... ଯେତେ । ପୃ ୩୧

ତତ୍‌ଶ୍ରବଣରେ ରାଧାଙ୍କ ଉକ୍ତି –

ସଖି ! ଏଥିରେ କି ଦୋଷ ମୋର ? ପୃ ୩୨
x x x
ପ୍ରତି ଅଙ୍ଗ ମମ ପିଇଲା ପୀୟୂଷ
ଚେତନା ରାଇକୁ ହଜିଲି । ପୃ ୩୩

ପୁନଶ୍ଚ ସେହି ଭାବର ବର୍ଣ୍ଣନ –

ଅର୍ଚ୍ଚିତ ନିର୍ମାଖୀ ବୁଲିବି ସଂସାରେ
x x ପୂଜା-ପାଠ ମୋତେ ଅଜଣା । ପୃ ୩୬
ମୋ ଦେବତା ମୋର ସଙ୍ଗାଳି x x
ତା ବିନା ମୁଁ ଦୀନ କଙ୍ଗାଳି । ପୃ ୩୭
ମୁରଲୀ ତା ମୁଖେ ବାଜଇ ମଧୁରେ x x
କି ରୂପ ଦେଖିବି କହ ନା । ପୃ ୩୯
ପ୍ରେମର ଜୟ
ମରଣର ଲୟ
x x x
ଅଣୁ ପରମାଣୁ ହୁଅନ୍ତେ ନନ୍ଦିତ ।

ଶେଷରେ ପ୍ରେମକୁହୁକାୟା କୃଷ୍ଣଙ୍କ ପ୍ରତି ପ୍ରୀତିର ପ୍ରାବଲ୍ୟରେ ରାଧାଙ୍କ ଘୋର ଅଧିକ୍ଷେପ–

ମଲିକି ବଞ୍ଚିଲି
x x x
x x ଆଗେ ରହୁତ । ପୃ ୪୩

ନବ ନୀରଦ

ଶ୍ରୀକୃଷ୍ଣଙ୍କ ପୂର୍ବରାଗ ରାଧାଙ୍କ ପୂର୍ବରାଗ ସଦୃଶ ମଧୁରକାରୁଣ୍ୟ ରସମୂର୍ଚ୍ଛିତ । ପ୍ରାରମ୍ଭ ଗୀତିଟି ଯେପରି ଭାବଗର୍ଭକ, ସେହିପରି ଚମତ୍କାର ପ୍ରତିପାଦକ । ପାଠକର ଚିତ୍ତ ଆନନ୍ଦରସରେ ଭରି ଉଛୁଳିପଡ଼େ ।

ପ୍ରେମଚିନ୍ତାମଣିର ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ, ବିଶ୍ୱପ୍ରେମର ବିତରଣକାରୀ । ସେହି ବିଶ୍ୱପ୍ରେମର ପ୍ରେମିକା ଶ୍ରୀରାଧାଙ୍କ ସହ ତାଙ୍କର ବିନୋଦ । ଶ୍ରୀକୃଷ୍ଣଙ୍କଦ୍ୱାରା ରାଧାଙ୍କ ଦର୍ଶନାଦି ନ କରାଇ ପୂର୍ବରାଗ ବର୍ଣ୍ଣନରେ ପରିପାଟୀର ଅଭାବ ହେଲେହେଁ ତାହା ତେତେ ଧର୍ତ୍ତବ୍ୟ ନୁହେ । ଯେ ଲୀଳାକାରୀ, ଯେ ପ୍ରେମ-ମଧୁ ବିତରଣ କରିଛି, ସେ ଜାଣେ କିଏ ଚାଖିଚି, କିଏ ବିଭୋର ହୋଇଛି, କିଏ ତନ୍ମୟ ହୋଇଛି । ତହୁଁ ନିର୍ଦ୍ଦେଶର ଅଭାବରେ ଚାରୁତାର ହାନି ହୋଇନାହିଁ, ବରଂ ବୃଦ୍ଧି ହୋଇଅଛି ।

ଭକ୍ତର ପୂର୍ବରାଗର ପ୍ରାଥମିକ ବର୍ଣ୍ଣନର ସମୀଚୀନତ୍ୱ ପୂର୍ବେ କଥିତ ହୋଇଅଛି । ଭକ୍ତର ହୃଦୟରେ ଭଗବତ୍ ଅନୁରାଗ ବା ରତି ଜନ୍ମିବା ସେହି ଭଗବାନଙ୍କର କାର୍ଯ୍ୟ । ସେହି ଲୀଳାକାରୀ ସ୍ୱଲୀଳାର ମାଧୁର୍ଯ୍ୟ ଆସ୍ୱାଦନ କରାଇବା ନିମିତ୍ତ ଭକ୍ତମାନଙ୍କୁ ପ୍ରବୋଧିତ କରନ୍ତି, ମଧୁର ବେଣୁ ନାଦରେ – ଓଁ କାର ଧ୍ୱନିରେ – ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ ଏକ ସ୍ପନ୍ଦନ ଆଣନ୍ତି ଏବଂ ଜୀବମାନଙ୍କୁ ସ୍ୱ ନିକଟକୁ ଆନନ୍ଦ-ଚିନ୍ମୟ ରସ ଉପଭୋଗ କରିବା ନିମନ୍ତେ ଆକର୍ଷଣ କରନ୍ତି । ଯେ ଏହା କରନ୍ତି- ସେ କୃଷ୍ଣ । ଯେ, ଆକର୍ଷଣ କରନ୍ତି, ସେ ନିଜର ଶକ୍ତି ସଂଚାର କରନ୍ତି ଏବଂ ନିଜର ଶକ୍ତିର – ପ୍ରେମର ସଂଚାରର ଯେଉଁଠାରେ ଆଧିକ୍ୟ ଦେଖନ୍ତି, ସେ ତଦ୍‌ପ୍ରତି ଆକୃଷ୍ଟ ହୋଇପଡ଼ନ୍ତି । ସ୍ୱ-ପ୍ରୀତିଶକ୍ତିରେ ରାଧାଙ୍କୁ ବିହ୍ୱଳ, ଉନ୍ମତ୍ତ ଦେଖି ସେ ନିଜେ ଆକୃଷ୍ଟ, ଉଦ୍‌ବିଦ୍ଧ, ଆତୁର ଓ ଉନ୍ମତ୍ତ । ଏହି ଭାବ, ଏହି ଉନ୍ମାଦନାର ବିଷୟ ଶ୍ରୀକୃଷ୍ଣ ଓ ତଦ୍‌ସଖାଙ୍କ ଉକ୍ତିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ଶ୍ରୀକୃଷ୍ଣଙ୍କ ମୁଖରେ-

ସୁନା ଝଳି ଘେନି ଲବଣୀ ହୁଅନ୍ତା
କଲନ୍ତି ବା ରୂପ ତାର'- ଇତ୍ୟାଦି । ପୃ ୪୬

ସୁବଳ ମୁଖରେ –

ଚପଳା ଲୀଳାରେ ଚିତ୍ତ ମଜାଇଲୁ
ବଜର କଲୁଚି ସାର' - ଇତ୍ୟାଦି । ପୃ ୪୭

ଶ୍ରୀକୃଷ୍ଣ-

ତଡ଼ିତେ ତଡ଼ିତ ଅବା କଲା ଆକର୍ଷଣ ।

ସୁଦାମ-

ସେ ସଙ୍ଗ ଗୋଧୂଳି ଆକାଶର ଶୋଭା
x x x
ଆଉ ଏ ଜୀବନେ ପାଇବ କି ? ପୃ ୫୩

ଶ୍ରୀକୃଷ୍ଣ –

ମୁକ୍ତିର ଆନନ୍ଦ ସ୍ୱାଦେ ଅଧୀର ଉନ୍ମତ୍ତ ...
x x x
ନିବିଶାଳ ଉନ୍ମାଦ ପ୍ରାଣେ ପ୍ରାଣେ ! ପୃ ୫୫

ସୁବଳ –

ସାଧିବଟି ବାଦ ଜଗତର ବାଧା
(ତୋର) ଶରଧା ଯିବଟି ସରି ....
x x x
ବେଳହୁଁ ଭୁଲିଯା ଦଳା ହରିତାଳ-
ଢଳାଅଙ୍ଗ ଚଳାପାଙ୍ଗୀ ।
ଚାରୁ ଚାମୀକର –ବର-ବରନାକୁ
କହିଲେ କି ଦେବୁ ବୋଳି ! ପୃ ୫୬
ତତ୍‌ଶ୍ରବଣରେ ଶ୍ରୀକୃଷ୍ଣଙ୍କ ଉକ୍ତି-
ଜଗତର ବାଧା.....
କନକମଞ୍ଜରୀ ଶସ୍ୟେ ସମୀର ଆଶ୍ଳେଷେ,
ତହିଁ ଜଗତର ବାଧା ! ପୃ ୫୭
ପ୍ରୀତିରେ ବାଧା ନାହିଁ, ବିଶ୍ୱପ୍ରୀତିର ଗତି ଅବାରିତ ।

ସଖାଦ୍ୱୟଙ୍କର ଉକ୍ତି –

ଜଗତଟାକୁ ଦେ ଫିଙ୍ଗି ଦୂରେ !
ଦୂରେ ! ଦୂରେ ! ଦୂରେ ! ପୃ ୫୮

ଶ୍ରବଣ କରି ଶ୍ରୀକୃଷ୍ଣଙ୍କ ପ୍ରତ୍ୟୁକ୍ତି –

ଯେଉଁଠାରେ ମୋର ଶକ୍ତିର ବିକାଶ, ମୋର ପ୍ରୀତିର ବିଳାସ, ତାକୁ ବା କିପରି ଛାଡ଼ିବି ? ସେ ମୋର, କିନ୍ତୁ ମୁଁ ବର୍ତ୍ତମାନ ତା ଛଡ଼ା ଶକ୍ତିହୀନ, ଜଡ଼ ସଦୃଶ ।

ଭାଙ୍ଗୁ ଜଡ଼ତାର ମୋହ ମୋର
ନିଦ୍ରା ବେନି ନୟନର । ନୀରପାନ-ପୃ ୮୦

ରାଧା ପରା ପ୍ରେମ-ଲୀଳାକ୍ଷେତ୍ର ଜଗତରେ ପ୍ରତିନିଧି – ଗୁରୁ! ତତ୍‌ଶ୍ରବଣରେ ଆଶ୍ଚର୍ଯ୍ୟ ସହିତ ସଖାଦ୍ୱୟଙ୍କର ଉକ୍ତି –

ମଙ୍ଗଳ ବିଧାନ ଏ କି କହିବାରେ ଭୁଲେ । ପୃ ୬୦

ବଂଶୀ ଶ୍ରବଣରେ ରାଧା ଉନ୍ମନା ହୋଇ ବଂଶୀଜନ୍ମର ସାର୍ଥକତା ଓ ନିଜର ଜନ୍ମର ଅସାରତା କହି ନିଜର ଦୁଃଖ ପ୍ରକାଶ –

କିପାଁ ବାଜୁ ଗୋ ମୁରଲୀ-
ମର୍ମ୍ମବେଦନା ବଢାଇ ?
---- ଦିଅନ୍ତା ବିଶ୍ୱ ବୁଡ଼ାଇ ! ପୃ୬୧

ସୁବଳ ଓ ସୁଦାମ ବଂଶୀନାଦରେ ଉନ୍ମତ୍ତ ହୋଇ ଗାଇବା –

ବାଜରେ ରସରାଜ, ବାଜରେ ବଂଶୀ ବାଜ !
ବ୍ରଜ କୁଞ୍ଜେ କୁଞ୍ଜେ ବାଜରେ ବଂଶୀ ବାଜ !
x x x

ସେ ମୋହନ ଛନ୍ଦେ କିଶୋରୀ ଗଣେ
ଫୁଟି ଉଠୁରେ ମଧୁରିମା ପ୍ରେମାନନ୍ଦେ
ଲାଜ ଲଜ୍ଜିତ ଲାଲି
ଲାଜ ପାଟଳ ସାଜ
ଲାଜର ଗୋଲାପ ଫୁଲ
ଲାଜରେ ଲାଜ ଲାଜ ! ପୃ ୬୨

ବେଣୁସ୍ୱନ ଶ୍ରବଣରେ ଶ୍ରୀମତୀଙ୍କର ଦଶାର ବିପର୍ଯ୍ୟୟ ଦେଖି ସଖୀମାନଙ୍କର ତିରସ୍କାର –

କିଏ ତୁ ଗାଉ ରେ ଗୀତ ଘନକାଳିଆ,
x x x
ଯା'ରେ ଚାଲି, ଯା'ରେ ଚାଲି
ଯା'ରେ ଯା' ତୁ ଢଙ୍ଗାଳିଆ ! ପୃ ୬୩

ସେ ତିରସ୍କାର ଶୁଣି ପ୍ରେମରସିକିନୀ ରାଧାଙ୍କର ଉଦାର ଉକ୍ତି –

ତୋ' ବିନା ବଜାଇବ କେ ମୁରଲୀ ଏଡ଼େ ମୋହନ । ପୃ୬୩

ଶ୍ରୀମତୀଙ୍କୁ ଦର୍ଶନ କରି ଶ୍ରୀକୃଷ୍ଣଙ୍କର ଉକ୍ତିରେ –

ନୀଳ ନୀରଧାରେ
ସୁବର୍ଣ୍ଣ ତରଣୀ
ରୂପ-ପସରାର ଭାସିଲା ....
x x x
ଲଭିଲା ମୁକ୍ତିର ଆହ୍ଲାଦ । ପୃ ୬୫

ପ୍ରେମର ଲାବଣ୍ୟଧାରା ଖେଳିଯାଉଅଛି ଏବଂ ତତ୍‌ପରେ କୃଷ୍ଣ ଏବଂ ଗୋପୀମାନଙ୍କର କଥୋପକଥନରେ ପ୍ରେମପ୍ରସ୍ରବଣର ପତିତ ପ୍ରବାହ ।

-o-

**ନୀର ପାନ**

ନୀରପାନର ଅବତରଣିକା ଗୀତିକା ଅତୀବ ଅର୍ଥଯୁକ୍ତ ।

ନ ଥାନ୍ତାରେ ଯଦି .....
x x x
ଭକ୍ତ ନ ଥିଲେ କି ଥାନ୍ତେ ଭଗବାନ ! ପୃ ୭୩

ପ୍ରେମରସ ପାନ କାହାର ? ଭକ୍ତର ନା ଭଗବାନଙ୍କର ? ସାଧାରଣ ଦୃଷ୍ଟିରେ ଭକ୍ତର । କିନ୍ତୁ ତାହା ନୁହେଁ – ପାନ ଉଭୟଙ୍କର । ସଖୀମାନେ ଆନନ୍ଦରେ ବିହ୍ୱଳ –

ଶାନ୍ତ ସୁନ୍ଦର ଛନ୍ଦେ x x x
ମୁଗ୍‌ଧ ପରମ ଆନନ୍ଦେ । ପୃ ୭୫
ଆଜି ରାତେ ନବ ସାଜେ, ସୁନ୍ଦର ସୁଧା ଆନନ୍ଦେ

x x x

ସଞ୍ଚରେ ସମୀର ମନ୍ଦେ ମନ୍ଦେ, ସୁଧା ଆନନ୍ଦେ । ପୃ ୭୬

ଆଜି ପ୍ରକୃତି ଆନନ୍ଦମୟ । ଆନନ୍ଦ ସର୍ବତ୍ର ଖେଳୁଚି । ଆଜି ଭକ୍ତ ଭଗବାନଙ୍କର ମିଳନ । ଆଜି ବିଶ୍ୱପ୍ରେମର ଦାତା – ଗ୍ରହୀତା, ଗ୍ରହୀତା – ଦାତା । ଆଜି ଗୁରୁ-ଶିଷ୍ୟ, ଭକ୍ତ-ଭଗବାନ, ପ୍ରେମିକ-ପ୍ରେମିକାଙ୍କ ଅଭିନ୍ନ ମିଳନ । ଆଜି ଗୁରୁ ଶିଷ୍ୟର ପାଦରେ, ଶିଷ୍ୟ ଗୁରୁର ପାଦରେ । ଏହାହିଁ ବିଶ୍ୱପ୍ରେମର ପୂର୍ଣ୍ଣ ସାର୍ଥକତା ।

ସଖୀଦଳଙ୍କ ମୁଖରେ –

ଜଗଜ୍ଜନମନୋରଞ୍ଜନ ଯା ନାମ
ସେ ତୋ' ପ୍ରାଣାରାମ ପ୍ରାଣାକୁଳ ଶ୍ୟାମ
ଅମରବାଞ୍ଛିତ ପଦ ତୋ ସଂପଦ
ସେ ପିପାସୀ ତୋହ ପାଇଁ । ପୃ ୭୮

ଏଠାରେ ଯେ ଭକ୍ତ – ସେ ଶିଷ୍ୟ, ଯେ ଶିଷ୍ୟ – ସେ କାନ୍ତା – ପ୍ରେମିକା । ଯେ ଗୁରୁ ସେ ଭଗବାନ୍, ଯେ ଭଗବାନ୍ ସେ କାନ୍ତ – ପ୍ରେମୀ । ଅନ୍ୟତ୍ର ବୈଷ୍ଣବଦର୍ଶନରେ ଗୁରୁ-ଶିଷ୍ୟ, ଭଗବାନ, ପ୍ରେମିକ-ପ୍ରେମିକା ଦୂତୀରୂପେ ତିନିଜଣ ଗୃହୀତ ହୋଇଥିଲେ ହେଁ ଏ ନାଟିକାରେ ଯେ ଗୁରୁ, ସେ ଭଗବାନ । ବୈଷ୍ଣବଗ୍ରନ୍ଥମାନଙ୍କରେ ତ୍ରିବୀଜ, (ହ୍ରୀଁ, ଶ୍ରୀ, କ୍ଲୀଂ), ତ୍ରିଶକ୍ତି (ପରା, ରମା, କାମ) ତ୍ରିନାମ (ହରି, ରାମ, କୃଷ୍ଣ)ର ସର୍ବତ୍ର ବିଚାର ହୋଇଅଛି । ଭଗବାନ କୃଷ୍ଣ ପ୍ରଥମରେ ଏକ, ତତ୍ପରେ ତାଙ୍କ ଶକ୍ତି ସହିତ ସେ ଦୁଇ ଏବଂ ତାଙ୍କ ଶକ୍ତିର ଲୀଳା ଆସ୍ୱାଦନ ଏବଂ ପ୍ରକଟନ ନିମିତ୍ତ ତୃତୀୟ ଶକ୍ତି ବା ବ୍ୟକ୍ତିର ପ୍ରୟୋଜନୀୟତା ।

ଯେତେବେଳେ କେବଳ ରାଧା ଏବଂ କୃଷ୍ଣଙ୍କର ପ୍ରେମର ବିଚାର, ସେତେବେଳେ ସେ ଦୁଇ ବ୍ୟକ୍ତି, ଦୁଇ ନାମ, ଦୁଇ ବୀଜର ଖେଳ । ସଖାସଖୀମାନେ ତୃତୀୟ ବୀଜକୁ, ତୃତୀୟ ଶକ୍ତିକୁ, ତୃତୀୟ ନାମକୁ ଅବଲମ୍ବନ କରି ରହିଅଛନ୍ତି । ରାଧାକୃଷ୍ଣଙ୍କ ଲୀଳା ବାସ୍ତବିକତାରେ ଆଧ୍ୟାତ୍ମିକ ଲୀଳାର ପ୍ରକଟନ । ଏଥିରେ ବାସ୍ତବ କାମର ଗନ୍ଧ ନାହିଁ । ସବୁ ଦିବ୍ୟ, ଚିନ୍ମୟ । ତାହାର ପ୍ରକାଶ ଏହି ପୃଥିବୀରେ – ଏହି ମର ଦେହରେ; ଅନ୍ୟ କୌଣସି ଊର୍ଦ୍ଧ୍ୱ ଲୋକରେ, କଳ୍ପନାଗତ ଜଗତରେ ବା କଳ୍ପନାତୀତ ରାଜ୍ୟରେ ନୁହେଁ ।

ଏ ରାଜ୍ୟ ପ୍ରେମର । ସେହି ପ୍ରେମରାଜ୍ୟ ଭଗବାନଙ୍କର ହେଲେହେଁ ତାହା ବର୍ତ୍ତମାନ ହୋଇଛି – ପ୍ରେମବାତୁଳ ରାଧାଙ୍କର । ପ୍ରେମମୟଙ୍କର ଅନ୍ତରଙ୍ଗ ସଖାମାନେ, ସେହି ଚିନ୍ମୟ ପ୍ରେମର ପୂର୍ଣ୍ଣ ବିକାସରେ ଅଭିବ୍ୟକ୍ତି ନିମିତ୍ତ ସହାୟଭୂତ ଓ ପ୍ରେମମୟଙ୍କର ଅନ୍ତରଙ୍ଗା ସଖୀମାନେ ରାଧାଗତ ପ୍ରେମର ପରିସ୍ଫୁର୍ତ୍ତିରେ ଚରିତାର୍ଥତା ନିମିତ୍ତ ସହାୟଭୂତା । ପ୍ରେମଦାତା ଓ ପ୍ରେମଗ୍ରହୀତା ପ୍ରେମର ମାହାତ୍ମ୍ୟ ବଳରେ ପରାସ୍ପରାପେକ୍ଷୀ । ଉଭୟଙ୍କର ମିଳନ ବିଶ୍ୱପ୍ରେମର ଚରିତାର୍ଥତା, ପରିସ୍ଫୁର୍ତ୍ତି, ପରାକାଷ୍ଠା ।

ଶ୍ରୀମତୀ ଓ ଶ୍ରୀକୃଷ୍ଣଙ୍କ ମିଳନରେ ଆଳାପ ଅତି ମଧୁର –

ମଧୁରଂ ରସବଦ୍ ବାଚି ବସ୍ତୁନ୍ୟପି ରସସ୍ଥିତିଃ
ଯେନ ମାଦ୍ୟନ୍ତି ଧୀମନ୍ତୋ ମଧୁନେବ ମଧୁବ୍ରତାଃ ! କାବ୍ୟାଦର୍ଶ

ଏ ମିଳନ ପ୍ରସଙ୍ଗରେ ନାଟିକାରୁ ଉଦ୍ଧାର କରିବା ପ୍ରୟୋଜନ ଦେଖୁନାହିଁ । କାରଣ ମାଧୁର୍ଯ୍ୟମୟୀଙ୍କ ସହିତ ମାଧୁର୍ଯ୍ୟମୟଙ୍କର ମିଳନ – ମଧୁର ସହିତ ମଧୁରର ମିଳନ । ରସ ମଧୁର, ବାକ୍ୟ ମଧୁର । ମାଧୁର୍ଯ୍ୟ-ଅବବୋଧକାରୀ କାବ୍ୟ-ବିନୋଦୀ, ଭକ୍ତି-ବିନୋଦୀ, ପ୍ରେମାନନ୍ଦୀ ତାହା ପାଠକରି ଆସ୍ୱାଦକଲେ ଆନନ୍ଦମୟ ଭାବପ୍ରାପ୍ତ ହେବେ । ରାମଚନ୍ଦ୍ର କବିରାଜଙ୍କ ଉକ୍ତିକୁ ଟିକିଏ ବଦଳାଇ କହିଲେ ଏଠାରେ ସମୀଚୀନ ହେବ –

ସର୍ବାଙ୍ଗସୁନ୍ଦରୀ ରାଧା
କୃଷ୍ଣଃ ସର୍ବାଙ୍ଗସୁନ୍ଦରଃ
ତୟୋରାନନ୍ଦଜନନୀ
କୃତି ସର୍ବାଙ୍ଗସୁନ୍ଦରୀ ।

ପ୍ରେମଚିନ୍ତାମଣିର ଲେଖାକୁ ସର୍ବାଙ୍ଗସୁନ୍ଦରୀ କହିବାଦ୍ୱାରା ବୁଝାଯାଉନାହିଁ ଯେ ଏ ନାଟିକା ଦୋଷବର୍ଜିତ । କିନ୍ତୁ ଗୁଣ ଅନୁପାତରେ ଦୋଷର ସତ୍ତା ଏତେ କମ୍ ଯେ, ତାହା ପ୍ରତି କାଳିଦାସଙ୍କର ଉକ୍ତି –

ଏକୋହି ଦୋଷୋ ଗୁଣସନ୍ନିପାତେ
ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କ । ପ୍ରଯୁଜ୍ୟ

କବି ଉପସଂହାର ଗୀତିକାରେ ଜ୍ୟୋତିର୍ମୟ ଶ୍ରୀକୃଷ୍ଣଙ୍କର ଆରାଧନା ସଖୀ ଓ ଶ୍ରୀମତୀଙ୍କଦ୍ୱାରା କରାଇଅଛନ୍ତି । ଭଗବାନ ନିରାକାର ଓ ସାକାର । ଯେଉଁମାନେ ତାଙ୍କୁ କେବଳ ନିରାକାର ରୂପେ ଗ୍ରହଣ କରିଅଛନ୍ତି, ସେମାନେ ଯେପରି ଏକଦେଶଦର୍ଶୀ, ସେହିପରି ସାକାରଦର୍ଶୀମାନେ ମଧ ଏକଦେଶଦର୍ଶୀ । ଉତ୍କଳର ପଞ୍ଚସଖାମାନେ ଭଗବାନଙ୍କୁ ନିରାକାର ଏବଂ ସାକାର ରୂପେ ଉପାସନା କରିଅଛନ୍ତି । ବ୍ରହ୍ମବୈବର୍ତ୍ତ ପୁରାଣରେ ମଧ ତାହାହିଁ ପ୍ରତିପାଦିତ ହୋଇଅଛି ।

ନିରୀହଞ୍ଚ ନିରାକାରଂ ନିର୍ଲିପ୍ତଞ୍ଚ ନିରାଶ୍ରୟମ୍
ନିର୍ଗୁଣଞ୍ଚ ନିରତ୍ସାହଂ ନିର୍ବ୍ୟୂହଞ୍ଚ ନିରଞ୍ଜନମ୍
ସ୍ୱେଚ୍ଛାମୟଂ ଚ ସାକାରଂ ଭକ୍ତ୍ୟାନୁଗ୍ରହ ବିଗ୍ରହମ୍
ସତ୍ୟସ୍ୱରୂପଂ ସତ୍ୟେଶଂ ସାକ୍ଷିରୂପଂ ସାନତନମ୍
x x x
ଜ୍ୟୋତିର୍ମୟଂ ପରଂବ୍ରହ୍ମ ସର୍ବକାରଣକାରଣମ୍ ।
x x x

ପୁନଶ୍ଚ କେତେବେଳେ ସେ ନିରାକାର, କେତେବେଳେ ସେ ସାକାର ଏବଂ ରାଧାଙ୍କ ସହିତ ପ୍ରେମମୟ ମିଳନରୂପ- ତାହା ମଧ ବର୍ଣ୍ଣିତ ହୋଇଅଛି ।

ପୁନଶ୍ଚ –

ଏ ପୁଷ୍ପ ଚିହ୍ନିଲେ ସିନା ବାସନା ଫୁଟିବ
ନାମ ବ୍ରହ୍ମ ଜ୍ୟୋତିବ୍ରହ୍ମ ରୂପ ପ୍ରକାଶିବ ।
ଏକାକ୍ଷର ବ୍ରହ୍ମ ଏହି ଜ୍ୟୋତି ବ୍ରହ୍ମରୂପ
ଏଥିପରେ ଅଲୌକିକ ଅଲେଖ ସ୍ୱରୂପ ।

ଶୂନ୍ୟସଂହିତା, ୨ୟ ଅଧ୍ୟାୟ

ଜ୍ୟୋତିମଣ୍ଡଳର ମଧ୍ୟେ ବିଜୟ ଶ୍ରୀହରି ।

ଶୂନ୍ୟସଂହିତା, ୪ର୍ଥ ଅଧ୍ୟାୟ

କବିଙ୍କର ଏ ରୂପ ଭାବନା ଶାସ୍ତ୍ରାନୁମୋଦିତ ଓ ଉତ୍କଳର ଧର୍ମ୍ମମତଦ୍ୱାରା ସମର୍ଥିତ ।

କବି ଯେ ମଧୁର ଭାବରେ ପ୍ରଣୋଦିତ ହୋଇ ଏହି ମଧୁର ରସମୟୀ ଗୀତି ନାଟିକା-ଲତିକାଟିକୁ ଲଳିତ ମଧୁର ପଦାବଳୀ ସୁମନରେ, ଚିର ମଧୁ ସମୟ-ବିନୋଦିନୀ ଦେବୀ ବୀଣାପାଣିଙ୍କ ସୌରଭମୟ ସୁମନ-କୁଞ୍ଜର କମନୀୟ ଅଙ୍ଗକୁ ଅଧିକତର ସୌରଭମୟ କରି ମଧୁ ବର୍ଷଣ କରିପାରିଅଛନ୍ତି, ତାହା ଉତ୍କଳର ଗୃହେ ଗୃହେ ସଂଚାର ଲାଭ କରି ଜନସାଧାରଣଙ୍କ ମନ ମୁଗ୍ଧ କରିପାରିବ- ଏହା ମୋର ଧାରଣା ।

୧୪ ।୧୨ । ୩୦

# କବିତାକୁମୁଦ

ଦେଶର ସହଜ ସାହିତ୍ୟର ପରମ୍ପରା ଅକ୍ଷୁଣ୍ଣ ରଖିବା ପ୍ରକୃତ ବୁଦ୍ଧିମାନ ସାହିତ୍ୟପ୍ରାଣଙ୍କର ଅବଶ୍ୟ କର୍ତ୍ତବ୍ୟ । ଦୈବ ବିଡ଼ମ୍ବନାରୁ ଶିକ୍ଷା ପଦ୍ଧତିରେ ଉତ୍କଳସାହିତ୍ୟ ଅନୁଶୀଳନର ଅଯଥା ପରିବର୍ତ୍ତନ ହେତୁ ଜାତୀୟ ଭାଷା ଓ ସାହିତ୍ୟର ସହଜ ଭାବ ବିଦୂରିତ ହେଲା । ମଧ୍ୟଯୁଗରେ କଳା ବିଭବର ଆଧିକ୍ୟଦୂଷଣ, ଏହି ଭାବ ଯେଉଁମାନେ ପୋଷଣ ଓ ଘୋଷଣ କରନ୍ତି, ଏହା ସେମାନଙ୍କର ଅବଶ୍ୟ ଜ୍ଞାତବ୍ୟ ଯେ, ସେଯୁଗର କୃତିମାନଙ୍କରେ ଭାଷାର ସହଜ ଭାବ ଉକ୍ତ ଚାତୁର୍ଯ୍ୟ ଓ ବୈଚିତ୍ର୍ୟମୟ କଳା ବିଭବ ସହ ସମଭାବରେ ଅନ୍ତଃସଲିଳା ଫଲ୍‌ଗୁବଦ୍ ଅବାଧରେ ଗତି କରୁଥିଲା । କିନ୍ତୁ ନୂତନ ପଦ୍ଧତିର ପ୍ରବର୍ତ୍ତନ ହେତୁ ସଂସ୍କୃତ ଭାଷାର କାରକପ୍ରକ୍ରିୟା ତଥା ଶବ୍ଦଯୋଜନା ଉତ୍କଳଭାଷାରେ ନିଜର ଆଧିପତ୍ୟ ବିସ୍ତାର କଲା । ମଧ୍ୟଯୁଗର କବିମାନେ ଉତ୍କଳ ସାହିତ୍ୟରେ କଳାବିଦ୍ୟାର ପ୍ରୟୋଗ ପ୍ରକ୍ରିୟାରେ ନିଜର ଚାତୁର୍ଯ୍ୟ ଓ ନୈପୁଣ୍ୟ ଦର୍ଶାଇ ରସାନୁକୂଳ ଗୁଣର ଅନୁରୋଧରେ ବନ୍ଧର ରୀତ୍ୟାନୁଯାୟୀ ଉପଯୁକ୍ତ ରାଗରାଗିଣୀ ତଥା ବୃତ୍ତର ପ୍ରବର୍ତ୍ତନଦ୍ୱାରା କାବ୍ୟରଚନା କରୁଥିଲେ ଓ ସଂଗୀତର ମାଧୁରୀ ତହିଁରେ ପରସ୍ଫୁଟ କରାଇ ପାରୁଥିଲେ । ଉତ୍କଳର ପ୍ରାଚୀନ ପଦ୍ୟସାହିତ୍ୟ ଯେଉଁ ବିଦ୍ୱଦ୍‌ମଣ୍ଡଳୀ ସବିଚାର ଅନୁଶୀଳନ କରନ୍ତି, ସେହିମାନେ ହିଁ ଏହି ଉକ୍ତିର ସାରବତ୍ତା ହୃଦୟରେ କଳନା କରିପାରିବେ- ଏଥିରେ ସନ୍ଦେହର ସ୍ୱଳ୍ପମାତ୍ର ଅବକାଶ ନାହିଁ । ପାଶ୍ଚାତ୍ୟ ଶିକ୍ଷାର ଶୈଳୀ ଅନୁସାରେ ପାଠ୍ୟପୁସ୍ତକର ଅଭାବ, ସକାରଣ ହେଉ ବା ଅକାରଣ ହେଉ, ଉପଲବ୍ଧି ହେଲା ଏବଂ ସେହି ଅଭାବ ପରିପୂରଣ ନିମିତ୍ତ ନୂତନ ରୀତିର ଗ୍ରନ୍ଥମାନ ଉତ୍କଳ ଭାଷାବିଦ୍‌ଙ୍କଦ୍ୱାରା ଲିଖିତ ହେଲା । ଇଂରାଜୀ ସାହିତ୍ୟର ପ୍ରକୃତି ଓ ରୀତିରେ ଅନୁପ୍ରାଣିତ ଉତ୍କଳର ତଦାନୀନ୍ତନ କୃତବିଦ୍ୟ ବ୍ୟକ୍ତିଗଣ ପାଶ୍ଚାତ୍ୟ ସାହିତ୍ୟକୁଶଳୀ ହେଲେ ଏବଂ ତଦ୍‌ସହ ଇଂରାଜୀ ରୀତି ମଧ୍ୟ ଅଜ୍ଞାତସାରରେ ଅବା ଜ୍ଞାତସାରରେ ହେଉ, ଉତ୍କଳ ଭାଷା ରାଜ୍ୟରେ ଆରୋପ କଲେ; ପାଶ୍ଚାତ୍ୟ ସାହିତ୍ୟ ତଥା ଭାଷାର ରୂପରୀତି ତଥା ପ୍ରକୃତିର ଆପାତ ରମଣୀୟତାର ବ୍ୟାମୋହରେ ମୁଗ୍ଧହୋଇ ଉତ୍କଳଭାଷାର ବିଶିଷ୍ଟତା ପ୍ରତି ଅବହେଳା ପ୍ରଦର୍ଶନ କଲେ ।

ଏହି ଅବସ୍ଥା ସଂଦର୍ଶନରେ ବ୍ୟଥିତ ହୋଇ ମୁଁ ଉତ୍କଳ ଭାଷା ତଥା ସାହିତ୍ୟର ସହଜଭାବ ଲୋକସାଧାରଣ ସମକ୍ଷରେ ଉପସ୍ଥାପିତ କରିବା ମାନସରେ ମନାସକରି, ଦୃଢ ପରିକର ହୋଇ, ପ୍ରାଚୀନ ସାହିତ୍ୟର ଅନୁଶୀଳନରେ ପ୍ରବୃତ୍ତ ହେଲି । ଯେଉଁ ଛାତ୍ରବର୍ଗ ଏ

ସୁଦୁସ୍ତର କାର୍ଯ୍ୟରେ ମୋର ସହକାରୀ ହୋଇଥିଲେ, ତନ୍ମଧ୍ୟରେ ଶ୍ରୀମାନ୍ ବିଚ୍ଛନ୍ଦଚରଣ ମୁଖ୍ୟତମ । ତାଙ୍କର ସ୍ୱଦେଶପ୍ରାଣତା ହେତୁ ସେ ଛାତ୍ରାବସ୍ଥାରୁ ପ୍ରାଚୀନ ସାହିତ୍ୟରେ ଅନୁରାଗୀ ହୋଇ ତାହାର ଉଦ୍ଧାରକଳ୍ପେ ବ୍ରତୀ ହେଲେ । ସେ ବିଶେଷ ବିଶେଷ ସ୍ଥଳରୁ ବିଷମ ପରିଶ୍ରମ ସହ ସୁଷମ ସୁମନସମୂହ ସଂଚୟ କରି ସୁରସ ସୁମନମାନର ସରସ ସଂନିବେଶିତ କରିଅଛନ୍ତି । ଶଶିରେଖା କାବ୍ୟ ଓ ଚଉତିଶା ମଧୁଚକ୍ର ପ୍ରଭୃତି ସମୁଚିତ ଯୋଜନାରେ ସମ୍ପାଦନପୂର୍ବକ ସାର ସାହିତ୍ୟ-ସାର ସରସ ରସିକତାର ଅଗ୍ରସରଣୀ ଆଶ୍ରୟ ପୁରଃସର ସାରଳାସଦ୍ମରେ ସୁଷମା ସମ୍ଭାରର ସମନ୍ୱୟ କରି ଶିକ୍ଷିତ ସୁଧୀସମୂହର ସାତିଶୟ ବିସ୍ମୟ ଉତ୍ପାଦନରେ ସମର୍ଥ ହୋଇଅଛନ୍ତି । ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ "ପ୍ରାଚୀ" ପତ୍ରିକାର ପୁରୋଧା ପଦବୀରେ ପ୍ରାପ୍ତାଧିକାର ହୋଇ ସେ କଳାକୁଶଳ ଉତ୍କଳଗୌରବର ପରାକାଷ୍ଠା ପ୍ରଦର୍ଶନ ପୂର୍ବକ ନିଜର କର୍ମଦକ୍ଷତା ତଥା ପବିତ୍ର ଦେଶପ୍ରାଣତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି । ସେ ଉତ୍କଳର  କାବ୍ୟକୁଞ୍ଜରୁ କମନୀୟ କୁସୁମନିବହର ପ୍ରାଣତର୍ପଣର ସୌରଭକୁ ଇଂରାଜୀ ଭାଷାରେ ବିକିରଣ କରି କାବ୍ୟରସିକ ତଥା କାନ୍ତ-କବି-କଳାପଙ୍କର ଚମତ୍କାର ପ୍ରତିପାଦନ କରିପାରିଅଛନ୍ତି । ଉତ୍କର୍ଷ କଳାଧାର ଉତ୍କଳର କାବ୍ୟ କବିତାଚୟ ଚିତ୍ତର ଉଲ୍ଲାସକ ପଦ-କଦମ୍ବକ-କରମ୍ବିତ, ପୁନଶ୍ଚ ତନ୍ମଧ୍ୟସ୍ଥିତ ସଂଗୀତ ଧାରା ଲାବଣ୍ୟ ମାଧୁର୍ଯ୍ୟମୟୀ ସୁଧା-ରସ-ନିଷ୍ୟନ୍ଦିନୀ ମନ୍ଦାକିନୀ । ପ୍ରାଚୀନଯୁଗର ରସିକ ଜନପ୍ରିୟ କବିନିକରଙ୍କ ମଧୁର ଦିବ୍ୟ କଣ୍ଠଦେଶରୁ ବିନିସୃତ ହୋଇ ସେହି ମନ୍ଦାକିନୀର ଅମନ୍ଦ ମନ୍ଦ୍ରଧାରା ବିବିଧ ସୁନ୍ଦର ଛନ୍ଦରେ ଅବିରାମ ଗତିରେ ଉତ୍କଳ ଧରିତ୍ରୀ ମଣ୍ଡଳ ବକ୍ଷ ପ୍ଲାବିତ କରିଥିଲା । କିନ୍ତୁ ପରିତାପର ବିଷୟ, ସଂଗୀତର ସେହି ସହଜ ସ୍ୱଚ୍ଛନ୍ଦ ମଧୁର ଅବିରାମ ପ୍ରବାହ ନୂତନ ଅପ୍ରାକୃତ ଛନ୍ଦର ବନ୍ଧରେ ହତଶ୍ୱାସ ହୋଇ ଅତି ମନ୍ଥରଗତି ପ୍ରାପ୍ତହେଲା । ଦେଶକାଳପାତ୍ର ଭେଦରେ ଅବସ୍ଥା ବିଶେଷଗତ ବିଷୟ ବିଚାର ଓ ତଦ୍‌ବର୍ଣ୍ଣିତ କ୍ରିୟାକଳାପ କି ଭାବରେ, କି ଭାଷାରେ, କି ଛନ୍ଦର ବନ୍ଧରେ ଉପସ୍ଥାପିତ କରିବାକୁ ହେବ, ଯୁଗ ଯୁଗର ପ୍ରେରଣା, ଅନୁଭୂତି ଫଳରେ ଏହାର ଯେ ସିଦ୍ଧାନ୍ତ ହୋଇଥିଲା, ତାହାର ଉପଯୋଗିତା ତଥା ଅନୁପଯୋଗିତା ବିଚାର ନ କରି ତଦ୍‌ପ୍ରତି ଅବହେଳା ପ୍ରଦର୍ଶନ କରିବା ଘୋର ଅବିମୃଶ୍ୟକାରିତାର ବିଷୟ । ପୁରାତନ ବିଷୟ ସକଳ ଯେ ଶୁଦ୍ଧପୂତ, ଏପରି ଭାବ  ପୋଷଣକାରୀ ବ୍ୟକ୍ତି ନିଶ୍ଚୟ ଅନୁଦାର ତଥା ସଂକୀର୍ଣ୍ଣଚେତା । ଜଗତ୍ ଉନ୍ନତଶୀଳ । ମାନବ ତଥା ସମାଜ ନିତ୍ୟ ନିତ୍ୟ ଉନ୍ନତି ପଦବୀରେ ଆରୋହଣ କରୁଅଛି । କ୍ରମବିକାଶର ଧାରା ଅନୁଯାୟୀ ସମାଜ ସ୍ୱତଃ ଗଠିତ ହୁଏ ଏବଂ ହେବ- ଏହା ଅବଶ୍ୟମ୍ଭାବୀ ଓ ଅନିବାର୍ଯ୍ୟ । ଏହାର ପ୍ରତିରୋଧ କରିବା ବା ରକ୍ଷଣଶୀଳତାର ମୋହରେ ପଡି ଏହାକୁ ବାଧା ଦେବା ଅବିମୃଶ୍ୟକାରିତାର ପରିଚାୟକ ।

ଲୋକେ ପ୍ରତିରୋଧ କରିବାରେ, ବାଧା ଦେବାରେ, ପ୍ରୟାସ କରନ୍ତି । କିନ୍ତୁ ତାହା ବିଫଳ ପ୍ରୟାସ । କାଳ ବା ନିୟତିର ଗତି ଅବାରିତ । ସେହି କାଳର ଚିନ୍ତାଶୀଳ ବିଶିଷ୍ଟ ବ୍ୟକ୍ତି ନିୟତିର ଗତି ଲକ୍ଷ୍ୟ କରି ଜାତିର ତଥା ଜନର କଲ୍ୟାଣ ଦୃଷ୍ଟିରେ ତାକୁ ଉପଯୁକ୍ତ ଭାବରେ ନିଜର ତଥା ଜନର କଲ୍ୟାଣ ଦୃଷ୍ଟିରେ ଉପଯୁକ୍ତ ଭାବରେ ନିଜର

ଜାତିର ତଥା ଦେଶର ପ୍ରକୃତି ଅନୁଯାୟୀ ସଂବିଧାନ ସହ ନିଯୋଜିତ କରନ୍ତି । ତଦନୁଯାୟୀ ଜୀବନକୁ ସବିଚାର ପରିଚାଳନ କରନ୍ତି ଏବଂ ଜୀବନର ଉପଯୋଗୀ ବିଷୟମାନ ମଧ୍ୟ ସେହି ରୀତିରେ ଗଠିତ କରନ୍ତି । ଏତଦ୍‌ଦୃଷ୍ଟିରେ ନୂତନକୁ ଉପଯୋଗିତା ଅନୁସାରେ ଗ୍ରହଣ କରନ୍ତି; ଏତଦ୍ଦ୍ୱାରା ପ୍ରତିପନ୍ନ ହୁଏ ନାହିଁ ଯେ, ସେ ପୁରାତନକୁ ଏକାବେଳେକେ ଉପେକ୍ଷା କରନ୍ତି । ପୁରାତନର ଯାହା ଉପଯୋଗୀ, ତାକୁ ସଂରକ୍ଷଣ କରି ତଦ୍‌ସହ ନୂତନର ମଧୁର ସମାବେଶ କରନ୍ତି- ଏହା ଯୁଗପ୍ରବର୍ତ୍ତକଙ୍କର କାର୍ଯ୍ୟ । ଏତଦ୍ଦ୍ୱାରା ଜାତୀୟ ଜୀବନ ଦୃଢ ଭାବରେ ସଂଗଠିତ ତଥା ସଂସ୍ଥାପିତ ହୁଏ । ଜାତୀୟ ଜୀବନ ପରମ୍ପରାର ସମଷ୍ଟି । ଆଜି ଦେଶ ବିଦେଶର ସଭ୍ୟତା, ନୂତନ ଚିନ୍ତା, ଭାବନା, ଆବିଷ୍କାର, ଉଦ୍‌ଭାବନ ସେହି ସେହି ଦେଶରେ ସୀମାବଦ୍ଧ ନୁହେଁ, ଜଗତର ବିଶାଳ ପ୍ରାଙ୍ଗଣରେ ଉନ୍ମୁକ୍ତ ଭାବରେ ସର୍ବସାଧାରଣ ଧନ ରୂପେ ତାହା ଉପଗତ । ଯେଉଁମାନେ କେବଳ ନୂତନର ପକ୍ଷପାତୀ, ସେମାନେ ଏକଦେଶଦର୍ଶୀ, ଅବିମୃଶ୍ୟକାରୀ ତଥା ଜାତୀୟଜୀବନର ବିଷମ ପରିପନ୍ଥୀ । ସେମାନଙ୍କର ଏହି ମୂଢତା ହେତୁକ ଭ୍ରମ ସ୍ପଷ୍ଟଭାବରେ ଦର୍ଶାଇବା ଛଳରେ ଯୁଗର ସାଧୁ ପ୍ରବର୍ତ୍ତକ ରୂପେ ଶ୍ରୀମାନ ବିଚ୍ଛନ୍ଦଚରଣ ପ୍ରାଚୀନ ଛନ୍ଦର ବନ୍ଧରେ କିପରି ଜଗତର ନୂତନ ଭାବରାଜି ସୁବିମଳ ଆଭାରେ ପ୍ରତିଭାତ ହୁଏ, ତାହା ସ୍ୱ କବିତା କୁମୁଦରେ ଯଥାଯଥ ଦର୍ଶାଇ ଅଛନ୍ତି । ମୋର ଚିର ପୋଷିତ ଅଭିଳାଷିତ ସେ କାର୍ଯ୍ୟରେ ଦର୍ଶାଇ ପରିପୂରଣ କରି ଅଛନ୍ତି । ଏହା ମୋର ଚିତ୍ତରେ କି ଅପୂର୍ବ ଆନନ୍ଦ ପ୍ରଦାନ କରିଅଛି, ତାହା ଭାଷାରେ ଅଭିବ୍ୟକ୍ତ ହୋଇପାରେ ନାହିଁ ।

ସେ ନିଜର ଆକ୍ଷେପ ଓ ତଦ୍ ବିଷୟରେ "ସେ କାଳ ବିପଞ୍ଚୀ ଏକାଳ ତାନ" କବିତାରେ ସ୍ପଷ୍ଟ ଅଭିବ୍ୟକ୍ତ କରି କହିଅଛନ୍ତି, "ଛନ୍ଦ କଳ୍ପତରୁ ତଳେ" ରହି ଉତ୍କଳୀୟର ରସକ୍ଷୁଧା ମେଣ୍ଟୁନାହିଁ । ଏହି ଉକ୍ତିରେ କବିଙ୍କର କି ଆତ୍ୟନ୍ତିକ ମର୍ମବେଦନା, ତାହା ସ୍ପଷ୍ଟ ପ୍ରକାଶ ପାଉଅଛି । ତାଙ୍କର ଏହି ଦୁଃଖ ଅସହମାନ ହେବାରୁ ସେହି ଦୁଃଖ ମେଣ୍ଟାଇବାକୁ ପ୍ରୟାସୀ ହୋଇ ସେ ସ୍ୱ କୃତିତ୍ୱ ବଳରେ ସଫଳକାମ ହୋଇଅଛନ୍ତି । ସେ ନିଜର କବିତା କୁମୁଦର ପ୍ରାରମ୍ଭରେ "ମାଆ"ଙ୍କର ସଂବର୍ଦ୍ଧନା କରିଅଛନ୍ତି । ଏହି ମାତୃପୂଜା, ଦେବୀପୂଜା; ପ୍ରକୃଷ୍ଟ ପୂଜା । ଏ ପୂଜାର ସମକକ୍ଷ ଆଉ କିଛି ନାହିଁ । ମାଆ ଶକ୍ତିସଂଚାରିଣୀ, ଅଭୟବର ଦାୟିନୀ ଏବଂ କବିତା କୁମୁଦର ଉଲ୍ଲାସ ଦାୟିନୀ କହି କବି ପ୍ରାରମ୍ଭ ଭାଷଣ କରିଅଛନ୍ତି । ଏହି କବିତାକୁମୁଦରେ ତାଙ୍କ ଚିତ୍ତ ପ୍ରତିଫଳିତ । ତହୁଁ ତାଙ୍କର ଚିତ୍ତକୁ କବିତାକୁମୁଦ କହିବାରେ ସମୀଚୀନ ଉକ୍ତି କରିଅଛନ୍ତି । ଏହା ତାଙ୍କର ଭାବ ସମୃଦ୍ଧିର ପ୍ରକାଶକ । ବାଣୀ ଆରାଧନା ତାଙ୍କ ଧର୍ମ । ସେହି ଧର୍ମର ଶୋଭନ ପରିପାଳନ ନିମିତ୍ତ ସେ ତାଙ୍କ ପୂର୍ବବର୍ତ୍ତୀ ତଥା ସମକାଳୀନ ଗୁରୁରୂପୀ ମନୀଷୀମାନଙ୍କ ସଂବର୍ଦ୍ଧନା କରି ନିଜର କର୍ତ୍ତବ୍ୟ ଯଥାଯଥ ପ୍ରାରମ୍ଭ କରି ସାଙ୍ଗ କରିଅଛନ୍ତି । "ଦେବତା ବନ୍ଦନଂ କୁର୍ଯ୍ୟାଦ୍ ଗୁର୍ବଭିବନ୍ଦନ ପୂର୍ବକମ୍" । ସେ ନିଜର ଗୁରୁରୂପେ ଉପେନ୍ଦ୍ରଭଞ୍ଜଙ୍କୁ ଅଭିବନ୍ଦନ କରି ମାଆଙ୍କଠାରୁ ଶକ୍ତିଭିକ୍ଷା କରିଅଛନ୍ତି । ମହାମାନବ ମହାତ୍ମାଜୀଙ୍କଠାରୁ ଆରମ୍ଭକରି ପଠାଣିସାମନ୍ତ, ଗୌରୀଶଙ୍କର ତଥା ଉତ୍କଳର ନେତା ମଧୁସୂଦନ ଓ ଗୋପବନ୍ଧୁ ପ୍ରମୁଖଙ୍କୁ ଅର୍ଘ୍ୟ ପ୍ରଦାନ, ସାହିତ୍ୟ ରସିକ

ରବୀନ୍ଦ୍ରନାଥ, ରାଧାନାଥ, ମଧୁସୂଦନ, ଗୋପାଳକୃଷ୍ଣ, ଗୋପାଳଚନ୍ଦ୍ର ଓ ନନ୍ଦକିଶୋର ପ୍ରଭୃତିଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ ଏବଂ ସି:ଭି: ରମଣ ଓ ଲକ୍ଷ୍ମୀକାନ୍ତଙ୍କଠାରୁ ନୃସିଂହଚରଣ ପ୍ରଭୃତିଙ୍କ ପର୍ଯ୍ୟନ୍ତ ନିଜର ସହୃଦୟ ପୁଷ୍ପର ଅର୍ଚ୍ଚନାଦ୍ୱାରା ପ୍ରତିଭାପୂଜାର ସରଣୀ ଦେଶବାସୀଙ୍କ ସମ୍ମୁଖରେ ଉଜ୍ଜ୍ୱଳାକ୍ଷରେ ଉପସ୍ଥାପିତ କରିଅଛନ୍ତି । ଆଧ୍ୟାତ୍ମିକତାରେ ମାନବର ପ୍ରକୃଷ୍ଟ ଚିତ୍ତବିଭବ ପରିସ୍ଫୁଟ ହୁଏ । ସେ ନିଜର ଶକ୍ତିର ସ୍ୱଳ୍ପତା ପ୍ରଦର୍ଶନ ପୂର୍ବକ ଜଗଦ୍‌ନିୟନ୍ତୀ ପରମଶକ୍ତି ପକ୍ଷରେ ଆତ୍ମସମର୍ପଣପୂର୍ବକ ପ୍ରାର୍ଥନା କରେ ପାଇବାକୁ ସେହି ପଦାର୍ଥ, ଯାହାଦ୍ୱାରା ସେ ଜଗତରେ ମର୍ମ କଳନା କରି ଅମର ଗୀତ ଗାଇ ସ୍ୱ ହୃଦୟରେ ଶାନ୍ତି ଆଣିବ । ତାହା ସେହି ଶକ୍ତି "ତୁମ୍ଭେ ଓ ମୁଁ" "ମା କରୁଣା ନାହିଁକି", "ବାଣୀ ରାଣୀ" । "ମା ତୁ କ୍ଷମା ବାରିଧି", "ଭାରତୀ ଆବାହନ ଗୀତ" ପ୍ରଭୃତିଦ୍ୱାରା ଉପରିକଥିତ ବିଷୟ ପରିସ୍ଫୁଟ ।

"ଶକୁନ୍ତଳାଙ୍କ ପତିଗୃହ ଯାତ୍ରା"ରେ କର୍ତ୍ତବ୍ୟ ଶିକ୍ଷା, 'ରତ୍ନରେଣୁ'ରେ ନୀତିଶିକ୍ଷା, "ମୋ ସୁନାଚାନ୍ଦ"ରେ ହୃଦୟର ଗଭୀର ବେଦନାଜନିତ ସରଳ କରୁଣ ମଧୁର କବିହୃଦର ଦିବ୍ୟ ଉଚ୍ଛ୍ୱାସ, "ଜହ୍ନ"ରେ ସରଳ ପ୍ରାଣର ମୁଗ୍ଧବାଣୀ" ଅଳଟ ନିତାଇ" ରେ ବାସ୍ତବ ଆଶ୍ୱାସନା, "ଖଣ୍ଡାୟତ"ରେ ଜାଗର ବାର୍ତ୍ତା, "ଆଲେକଜାଣ୍ଡର ଦସ୍ୟୁ ସମାନ ଉଭୟେ"- ଏହାଦ୍ୱାରା ସମୁଚିତ ଯୁକ୍ତିର ପ୍ରସ୍ତାବନାରେ ଐହିକ ବିଭବ କାମନାର ବିଷମ ପରିଣତିର ପ୍ରତିପାଦନ, "ରାମ ବିଳାପ"ରେ ଦୁଃଖୀରେ ବାସ୍ତବ ଆତ୍ମପ୍ରକାଶ ପ୍ରଭୃତି ଯଥାଯଥ ଉପସ୍ଥାପିତ ହୋଇଅଛି ।

ଅନୁବାଦରେ ସୁନ୍ଦର ଭାବ ଓ ଭଙ୍ଗୀ ଅକ୍ଷୁଣ୍ଣ ରଖିବା ବଡ଼ କଠିନ ବ୍ୟାପାର । କିନ୍ତୁ ଶ୍ରୀମଦ୍ ବିଚ୍ଛନ୍ଦଚରଣ ଉକ୍ତ କବିମାନଙ୍କ ଭାବରେ ଏପରି ଅନୁପ୍ରାଣିତ ହେଲେ ଯେ, ସେ ନିଜେ ମୌଳିକ ଭାବାପନ୍ନ ବ୍ୟକ୍ତି ତୁଲ୍ୟ କବିତା ଲେଖିଲେ । ତାହା ମୌଳିକ କବିତା ରୂପେ ବିରାଜିତ; କାରଣ ସେ ପଦ୍ୟଗୁଡ଼ିକରେ ଭାବ ଓ ବାଣୀର ଏପରି ମଧୁର ସମନ୍ୱୟ ହୋଇଅଛି ଯେ, ତାହା ଅପର ରଚନାର ଛାୟାରୂପେ ଆଦୌ ଜଣାଯାଏନାହିଁ । ତାଙ୍କ ପ୍ରୀତିଗୀତି "ଆଦ୍ୟଭେଟେ" ରେ ପୂର୍ବରାଗର ପ୍ରଥମ ପ୍ରସ୍ତାବନାରେ ପ୍ରେମମଦିରାର ପ୍ରଥମ ଅନୁଭବୀର ଉନ୍ମାଦନା ତରଳ ସରଳ ମଧୁର ଭାବରେ ଗତିକରି ସଙ୍ଗୀତର ସାର ଉଦ୍‌ଗିରଣ ପୂର୍ବକ ଦିବ୍ୟକଣ୍ଠର ବାଜେଣି ବୀଣା ଗୀତ ଶୁଣାଇଅଛି । "ମଞ୍ଜୁଳା ମାଧବ"ର ମଧୁର ପ୍ରୀତି ଭୂଷଣ ଘୋଷଣା ବା ଜଣାକୁ କାହିଁକି ବା ଡରିବ ଯେ ମଧୁ ଚାଖିଛି ସେ ମଧୁର କଅଣ ଜାଣେ, ସେ କି ବାରଣ ମାନିବ? ବାସ୍ତବ ଶାସ୍ତିକୁ କି ଭୟ କରିବ! ସେ ତାକୁ ତୁଚ୍ଛ କରି ମଣେ, ଏହା ଯେ ଉତ୍ତମ ରୂପେ ଭଣେ ।

ବସେ ସେ ରସିକ ଉଚ୍ଚ ଆସନେ
କବିରୂପେ ସାରା ଜଗତ ତାକୁ ମାନେ ।

"ଲାଳସୀ ଏ ସାରା ପରାଣ"- ରସିକ ଏହା ସଦା ପାଠକରିବ, ସୁନିଶ୍ଚିତ । କାରଣ ପ୍ରେମିକା ହୃଦୟର କାହାଣୀ ଯାକ କବି ପଦକରେ ବଖାଣି ଅଛନ୍ତି । "ରତ୍ନମାଳା ପାଖକୁ ମାଧବ", "କିଶୋର ପାଖକୁ କାମିନୀ" ଓ "କାମିନୀ ପାଖକୁ କିଶୋର", "ଗୋପ

ପାଖକୁ ମିନତି" ଓ "ମିନତି ପାଖକୁ ଗୋପ" "ମାଳତୀ ପ୍ରତି ବସନ୍ତ " " ବ୍ରଜକିଶୋର ପାଖକୁ ସ୍ନେହଲତା" "ରାଜକିଶୋର ପାଖକୁ ମାଧୁରୀ" ପ୍ରଭୃତି ପ୍ରେମ ଚିଟାଉର ଆଦାନ ପ୍ରଦାନରେ ପ୍ରେମର ଯେ ଉଚ୍ଛ୍ୱକ୍ତ ଭାବ ବିରାଜିତ, ସେଥିରେ ତ କିଛି ଅପ୍ରାକୃତ ବିଷୟର ଅବତାରଣା ନାହିଁ ।

ସମର ସମରେ ପ୍ରୀତି, ସୁନ୍ଦରର ସୁନ୍ଦର ସହିତ ସମଭାବୁକତା ଓ ସହଯୋଗିତା ସୁନିଶ୍ଚିତ । ପ୍ରକୃତିର ସମତାରେ ଶାନ୍ତି, ଅସମତାରେ ବିଗ୍ରହ, ବିପ୍ଳବ, ବିଶୃଙ୍ଖଳତା ଓ ଅଶାନ୍ତି, ପ୍ରୀତିର ମାଧୁରୀ ଶାନ୍ତିର ଆସ୍ଥାନରେ ବିଶ୍ରାନ୍ତି ଲାଭକରେ । "ସକଳ ବ୍ୟାଧିର ଭେଷଜ" ରୂପିଣୀ କବିତାରେ "ରୂପକାଙ୍ଗାତି" "କରଦ ପ୍ରଜା ମୁଁ ମାତର" "ତୋ ଶୋଭାବାରି ଆଶାୟୀ ମୋ ଜୀବ ଚାତକ", "ସବୁଠୁଁ ମନୋଜ୍ଞ ଦିଶୁ ମୋହର", କାୟା ତୁହି ଛାୟା ମୁଁ ମାତର", "କ୍ଷତିଶିର ଅଳକା ମୋ ବାଳା", "ଅଳତା ହୋଇବି ମୋ ବାଞ୍ଛିତ", ପ୍ରଭୃତି ନାୟକର ପ୍ରାଣଖୋଲା ଉକ୍ତିକୁ "ମୋର ଚିତ୍ତ ବଇଭବ ଚୋର", "ଆଖି ଲୁହେ ଆଖିର କଜ୍ଜଳ, ଗୋଳାଇ ଲିହିଛି ଲିପିମାଳ", "କୁମାରୀ ମୁଁ ରହିବି ବୀର, ପୋଛିଲା ଯାଏଁ ତୁମ୍ଭେ ମୋ ନୟନୁ ନୀର" "ହୃଦ ତସକର ମୋର, ଚନ୍ଦ୍ର ହୋଇ କୁମୁଦକୁ ମଣ କିପାଁ ଦୂର", "ଲଲାଟ ପଟେ ମୋ ଗାର, ପ୍ରିୟ ମୋହର ହେ", "ଆସ ମୋ ରଙ୍କ ସଙ୍ଗାଳି ମୁଁ ତୁମ୍ଭ ବାଳୀ", "ଅଲଙ୍ଘ୍ୟ ମୋହର ମଣି ରାଣ"- ନାୟିକାର ସରଳ ବିଶ୍ୱାସରେ ପ୍ରୀତିସ୍ନିଗ୍ଧ ମସୃଣ ଦ୍ରୁତ ଚିତ୍ତରେ ଆତ୍ମ ସମର୍ପଣ ପୂର୍ବକ ଆଶାୟୀ ଭାବସୂଚକ ଉତ୍ତରଗୁଡ଼ିକ ପ୍ରୀତି ବିନୋଦୀୟାଙ୍କ ରସିକ ଚିତ୍ତରେ କି ରତି ସ୍ଫୂର୍ତ୍ତି କରିବ- ତାହା ଅନୁଭବୀ ମାତ୍ରେହେଁ ଅନୁଭବ କରି ପାରିବେ । "ବିରହ ବାରମାସି"ରେ ବିରହର କରୁଣ ମଧୁର ଝଙ୍କୃତ", "ବିଚ୍ଛେଦ ଚଉତିଶା"ରେ କ୍ଷୁବ୍ଧ ଲଳିତ ହୃଦୟର ଦ୍ରୁତତା, "ପଲ୍ଲୀବଧୂ"ରେ ଗୌରବାବହ ଉଚ୍ଚ ଆଶୟର ଅନୁରୋଧରେ ଭାବାନୁକୂଳ ଭାଷାର କାନ୍ତିମତ୍ତା, "ମୋ ଦେଶ"ରେ ଦେଶପ୍ରାଣତାର ଉଦାତ୍ତ ଉଚ୍ଛ୍ୱାସ, "ମୋ ସୁନା ଚାନ୍ଦ"ରେ ସୁନ୍ଦରର ତିରୋଧାନରେ ଅନୁରାଗୀ ଆକୁଳ ହୃଦୟର କରୁଣ ସ୍ପନ୍ଦନଜନିତ କବିତ୍ୱର ବିଳସନ, "ଉତ୍କଳ ଚିନ୍ତାମଣି"ରେ ବହୁ ରସର ମଧୁର ସମନ୍ୱୟ ଓ ସ୍ୱାନୁଭୂତିଜନିତ ସମବେଦନାରେ ସ୍ଥିର ସଂକଳ୍ପ, 'ଜହ୍ନ'ରେ ସହଜ ସରଳ ଛବି, "ତୁ ଏବେଶ ହୋଇବୁ ନାହିଁ"ରେ କାନ୍ତକବି ବନମାଳୀଙ୍କ ଚାତୁରୀ ମାଧୁରୀର ଯୁଗପଦ୍ ବିଳାସର ପ୍ରତିବିମ୍ବ । "କବି ସଙ୍ଗାଳି"ରେ କବି ବଧାତା, ସ୍ୱାଧୀନଚେତା, ସୌନ୍ଦର୍ଯ୍ୟ ଓ ପ୍ରୀତିର ବିଳାସୀ ଚିଦାନନ୍ଦରାଜ୍ୟରେ ସମ୍ରାଟ । ଶ୍ରୀମାନ୍ କବି ବିଚ୍ଛନ୍ଦଚରଣ କବି ସଙ୍ଗାଳିର ବିଷୟ ନିଜ ଅନୁଭୂତିରୁ ପ୍ରକାଶ କରିଥିବାରୁ ସେ ତାଙ୍କ ସ୍ୱରୂପକୁ ଗୌଣ ଭାବରେ ଅଭିବ୍ୟକ୍ତ କରିଅଛନ୍ତି । ସେ ନିଜ କଥା ନିଜେ ଯଥାର୍ଥ ଭାବରେ କହିଅଛନ୍ତି । "ସ୍ୱଗୁଣାବିଷ୍କିୟା ଦୋଷୋ ନାସ୍ତି ଭୂତାର୍ଥସଂଶିନଃ । ସତ୍ୟବାଦୀଙ୍କର ନିଜଗୁଣ ପ୍ରକାଶ କରିବା ଦୋଷ ନୁହେଁ । ଶ୍ରୀମାନ୍ ବିଚ୍ଛନ୍ଦ ତାହା ପ୍ରକାଶ କରିନାହାନ୍ତି, କିନ୍ତୁ ତାହା ତାଙ୍କ ଉକ୍ତିରୁ ଜଣାଯାଏ । ମୋର ଶେଷରେ ପଦେ ଆହୁରି କହିବାର ଅଛି । ଶ୍ରୀମାନ୍ ବିଚ୍ଛନ୍ଦଚରଣ ପ୍ରକୃତ ଦେଶପ୍ରାଣ । ଯେ ପ୍ରକୃତ ଦେଶପ୍ରାଣ, ସେ ସର୍ବଗୁଣାକର- ମୋର ଏହା ଦୃଢ ବିଶ୍ୱାସ ।

# ଜାନକୀବଲ୍ଲଭ-ବିଳାସ

କବି ଗୋକୁଳାନନ୍ଦ ପଟ୍ଟନାୟକ ପୁରୀ ଜିଲ୍ଲା ଅନ୍ତର୍ଗତ ଖୋରଧା କିଲ୍ଲାର ରାମେଶ୍ୱର ଗ୍ରାମରେ, ୧୮୮୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୯୪୬ ଖ୍ରୀଷ୍ଟାବ୍ଦରେ ଇହଲୀଳା ସାଙ୍ଗ କରିଥିଲେ । ସେ ପଞ୍ଚମ ବର୍ଷ ବୟସରେ ପିତୃମାତୃହୀନ ହୋଇଥିଲେ । ପିତୃବ୍ୟଙ୍କ ଯତ୍ନରେ ସେ ସାମାନ୍ୟ ଓଡ଼ିଆ ସାହିତ୍ୟ ଓ ଗଣିତ ଶିକ୍ଷା କରିଥିଲେ । ଅବସ୍ଥାଚକ୍ରରେ ସେ ବାର ବର୍ଷ ବୟସରେ ଭୂଷଣ୍ଡପୁରସ୍ଥ ଜନୈକ ବ୍ୟକ୍ତିଙ୍କ ଗୃହରେ ଶିକ୍ଷକତା କରିଥିଲେ । ଘରୋଇ ଭାବରେ ମଧ୍ୟବୃତ୍ତି-ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ପରେ ଟ୍ରେନିଂ ପଢି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ଏବଂ ଆଜୀବନ ସ୍ୱଗ୍ରାମର ନିମ୍ନପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ସାଧନା ବଳରେ ଲୋକେ ସିଦ୍ଧିଲାଭ କରନ୍ତି, ଏହାର ଦୃଷ୍ଟାନ୍ତ ବହୁଶଃ ପରିଦୃଷ୍ଟ ହୁଏ । କବି ଗୋକୁଳାନନ୍ଦ ସ୍ୱ ସାଧନା ବଳରେ ଜଣେ ଉଚ୍ଚ ଧରଣର କବି ପଦବୀ ଲାଭ କରିବାରେ ସମର୍ଥ ହୋଇଥିଲେ ।

ପୂର୍ବେ ଶିକ୍ଷିତ ଲୋକଙ୍କ ମଧ୍ୟରେ ସାହିତ୍ୟର, ବିଶେଷତଃ ପ୍ରାଚୀନ ସାହିତ୍ୟର, ଆଲୋଚନା ହେଉଥିଲା । ଚାଟଶାଳିର ଅବଧାନମାନେ ଚାଟଙ୍କୁ ଛାନ୍ଦ, ଗୀତ ଶିଖାଉଥିଲେ । ଗଣେଶଚତୁର୍ଥୀ ଓ ଶ୍ରୀପଞ୍ଚମୀ ପୂଜା ସମୟରେ ଚାଟମାନେ ମୂର୍ତ୍ତି ଧରି ଅବଧାନଙ୍କ ସଙ୍ଗରେ ଗୃହେ ଗୃହେ ଛାନ୍ଦଗୀତ ବୋଲି ପାରିତୋଷିକ ଲାଭ କରୁଥିଲେ । ସେହି ଚାଟଙ୍କ ମଧ୍ୟରେ ଛାନ୍ଦଗୀତ ପ୍ରତି ଯାହାଙ୍କର ଅନୁରାଗ ଜନ୍ମିଥିଲା, ସେ ଆଜୀବନ ତଦ୍‌ପ୍ରତି ସ୍ୱମମତା ଉତ୍ତରୋତ୍ତର ବଢାଇ ଛାନ୍ଦ-ଗୀତମାନଙ୍କର ଅନୁଶୀଳନରେ ତଥା ରଚନାରେ ନିଜର ଚିତ୍ତ ବିନୋଦନ କରୁଥିଲେ । ପୁନଶ୍ଚ ଆମର ଏହି ଉତ୍କଳଖଣ୍ଡରେ ସତ୍ୟନାରାୟଣ, ସତ୍ୟପୀରଙ୍କ ପୂଜା ଅବସରରେ ପାଲାବାଲାମାନେ ଛାନ୍ଦ-ଗୀତମାନ ଜନସାଧାରଣରେ ଗାନକରି ଖଣ୍ଡମଣ୍ଡଳକୁ ଗୀତିରସରେ ଆନନ୍ଦମୟ କରି ତୋଳନ୍ତି । ପାଲାବାଲାଙ୍କଦ୍ୱାରା ହିଁ ପ୍ରାଚୀନ ସାହିତ୍ୟ କେତେକାଂଶରେ ଉଜ୍ଜୀବୀତ ହେବା ନିଶ୍ଚିତ ଏବଂ ତଦ୍‌ପ୍ରତି ଲୋକଙ୍କ ଅନୁରାଗ ଜନ୍ମିବା ମଧ୍ୟ ସ୍ୱୀକାର୍ଯ୍ୟ ।

କବି ଗୋକୁଳାନନ୍ଦ ସ୍ୱ ବାଲ୍ୟଜୀବନରେ ପ୍ରାଚୀନ ସାହିତ୍ୟର ଗୌରବ ତଥା ମାଧୁରୀରେ ପ୍ରଭାବିତ ହୋଇଥିଲେ । ସେଇ ଛାନ୍ଦ-ଗୀତମାନଙ୍କର ସୁନ୍ଦର ଅବବୋଧ ନିମିତ୍ତ ସେ ଯତ୍ନବାନ୍ ହୋଇ **ଅମରକୋଷ** ଆୟତ୍ତ କରିଥିଲେ ଓ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି ପ୍ରଭୃତିଙ୍କ କାବ୍ୟ-କବିତା ତଥା ସାରଳା ମହାଭାରତ, ବଳରାମଙ୍କ **ରାମାୟଣ**, ଜଗନ୍ନାଥ ଦାସଙ୍କ **ଭାଗବତ** ଓ **ହରିବଂଶ** ପ୍ରଭୃତି ପୁରାଣଗ୍ରନ୍ଥମାନ ପ୍ରତ୍ୟହ କିଛି କିଛି ପାଠ କରୁଥିଲେ ।

ନିଜର ନିଷ୍ଠା ଓ ସାଧନା ହେତୁ ସେ ବାଗ୍‌ଦେବୀଙ୍କ କରୁଣା ଭାଜନ ହୋଇଥିଲେ । ଆଳଂକାରିକ ତଥା ସାହିତ୍ୟବିତ୍‌ଙ୍କ ମତେ ପ୍ରତିଭା, ବହୁଶାସ୍ତ୍ରଦର୍ଶିତା, ଶିକ୍ଷା ଓ ଅଭ୍ୟାସ ଆଦିର ସମଷ୍ଟି ହିଁ କବିତ୍ୱର ଏକ କାରଣ ରୂପେ ଗୃହୀତ । ତନ୍ମଧ୍ୟରେ କୌଣସି ଗୋଟିଏ କବିତ୍ୱର ସ୍ୱତନ୍ତ୍ର କାରଣରୂପେ ସ୍ୱୀକୃତ ନୁହଁ । ପ୍ରତିଭାରୁ କବିତ୍ୱର ପ୍ରସବ ହୁଏ । ଶିକ୍ଷା ଓ ଅଭ୍ୟାସବଳରେ କବିତ୍ୱ ପରିବର୍ଦ୍ଧିତ ହୁଏ । କବିତ୍ୱର ପୂର୍ଣ୍ଣାଙ୍ଗତା ତଥା ଚାରୁତା ନିଷ୍ପାଦନ ନିମନ୍ତେ ବ୍ୟୁପତ୍ତି ହିଁ ପ୍ରଧାନ । ଦଣ୍ଡାଚାର୍ଯ୍ୟ କହିଅଛନ୍ତି, ପ୍ରତିଭା ଓ ପୂର୍ବବାସନାର ଅଭାବରେ ମଧ୍ୟ ଅଧ୍ୟୟନ ତଥା ନିଷ୍ଠାର ସହିତ ସେବାକଲେ ବାଗ୍‌ଦେବୀ ଅନୁଗ୍ରହ ପ୍ରକାଶ କରନ୍ତି । କବି ଗୋକୁଳାନନ୍ଦଙ୍କର ପ୍ରତିଭାର ନିଦର୍ଶନ ତାଙ୍କର କାବ୍ୟରୁ ପରିସ୍ଫୁଟ । ତାଙ୍କର ସାଧନାରେ ଦେବୀ ସରସ୍ୱତୀ ପ୍ରସନ୍ନ ହେବା ସୁନିଶ୍ଚିତ, ନୋହିଲେ ଏଭଳି କାବ୍ୟରଚନାର ସମ୍ଭବ ହୋଇ ନ ଥାନ୍ତା । ସାମାନ୍ୟ ନିମ୍ନପ୍ରାଥମିକ ବିଦ୍ୟାଳୟର ଅଳ୍ପଶିକ୍ଷିତ ଶିକ୍ଷକଙ୍କ ପକ୍ଷରେ 'ଜାନକୀବଲ୍ଲଭବିଳାସ' କାବ୍ୟ ଲେଖିବା ଅତୀବ ବିସ୍ମୟକର ବିଷୟ । ଦୈବୀ କୃପାବଳରେ ଅସମ୍ଭବ ସମ୍ଭବ ହୁଏ । ସେହି କୃପା ସାଧନା ବା ତପସ୍ୟାର ଅନୁଗତ । ସାଧନାର ପରିଣତି- ବ୍ୟୁତ୍ପତ୍ତି ମଧ୍ୟ କୃପାର ଅନୁଗାମିନୀ ।

ଜାନକୀବଲ୍ଲଭବିଳାସ ଧନଞ୍ଜୟ ଭଞ୍ଜଙ୍କ ରଘୁନାଥବିଳାସ ବା ରାମବିଳାସ ଓ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶବିଳାସର ଆଦର୍ଶରେ ଲିଖିତ । ଏହି କାବ୍ୟର ବିଶେଷତ୍ୱ ଅନୁପ୍ରାସର ସହଜ ବିଳାସ । ଶୋଭନ ଅନୁପ୍ରାସ ଯୋଜନାରେ ରୀତିର ଉତ୍କର୍ଷ ସାଧିତ ହୁଏ । ବିଶିଷ୍ଟ ପଦରଚନା ହିଁ ରୀତି । 'ବିଶିଷ୍ଟ' ଏହି ଶବ୍ଦଦ୍ୱାରା ରଚନାରେ ଗୁଣମାନଙ୍କର ଯଥାଯଥ ସମାବେଶ ହୋଇଥାଏ । ଗୁଣମାନଙ୍କର ଅସ୍ତିତ୍ୱ ହିଁ ରସମାନଙ୍କର ଅସ୍ତିତ୍ୱର ପରିଚାୟକ । ଏହା ସର୍ବତ୍ର ଜ୍ଞାତ ଓ ସ୍ୱୀକୃତ ଯେ ଯେଉଁଠାରେ ରସ, ସେହିଠାରେ ଗୁଣ ଓ ଯେଉଁଠାରେ ଗୁଣ ପରିଦୃଷ୍ଟ, ସେହିଠାରେ ରସର ବିଦ୍ୟମାନତା ସୁନିଶ୍ଚିତ । ବିଶିଷ୍ଟ ପଦରଚନା ଦ୍ୱାରା ଅଭିପ୍ରେତାର୍ଥ ପୂର୍ଣ୍ଣଭାବରେ ବିଳାସ କରେ । ଅଗ୍ନିପୁରାଣରେ ଯଥାର୍ଥ କଥିତ ଅଛି, "ଏକଃ ଶବ୍ଦଃ ସୁପ୍ରଯୁକ୍ତଃ ସମ୍ୟଗ୍‌ଜ୍ଞାତଃ ସ୍ୱର୍ଗେ ଲୋକେ ଚ କାମଧୁଗ୍ ଭବତି" । ଉତ୍ତମ ପଦମାନଙ୍କର ଯୋଜନାଦ୍ୱାରା ଅଭିପ୍ରେତାର୍ଥ ସୁଷ୍ଠୁ ପ୍ରକାଶିତ ହେଲେ ଲୋକର ହୃଦୟରେ ଚମତ୍କାର ଭାବ ଜନ୍ମେ । ତହୁଁ ଚମତ୍କାର ଭାବ ଜନ୍ମାଇବା ପଦାବଳି ହିଁ କାବ୍ୟ । ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଚାତୁର୍ଯ୍ୟର ବିଳସନରେ ହିଁ କାବ୍ୟତ୍ୱର ଯାଥାର୍ଥ୍ୟ ପ୍ରତିପାଦିତ, ଅନ୍ୟଥା ନୁହେଁ । ଜାନକୀବଲ୍ଲଭ-ବିଳାସରେ ଉକ୍ତ ଲକ୍ଷଣମାନ ଅଳ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । କବି ଗୋକୁଳାନନ୍ଦ ଭଞ୍ଜୀୟ ପନ୍ଥା ଅନୁସରଣପୂର୍ବକ ସ୍ୱ

କାବ୍ୟରେ ଉତ୍ତମ, ମଧ୍ୟମ କାବ୍ୟଗତ ବିଷୟ ବ୍ୟତୀତ ଶବ୍ଦାଳଙ୍କାର ତଥା ଚିତ୍ରକାବ୍ୟର ଯଥେଷ୍ଟ ସମାବେଶ କରିଅଛନ୍ତି । ଯଥା – ଆଦ୍ୟଯମକ, ପ୍ରାନ୍ତଯମକ, ମଧ୍ୟଯମକ, ଆଦ୍ୟପ୍ରାନ୍ତ ଯମକ, ଅନୁପ୍ରାସ, ଶ୍ଳେଷ, ବିରୋଧାଭାଷ, ଅନ୍ତର୍ଲିପି, ବହିର୍ଲିପି, ଗୋମୂତ୍ର, ମଣ୍ଡୁକପ୍ଲୁତି, ମେଷଯୁଦ୍ଧ, ସିଂହାବଲୋକନ, ଲକ୍ଷଣା, ଲକ୍ଷିତଲକ୍ଷଣା; ଅକାରାଦି ସ୍ୱର ମାତ୍ରାର ପଦାବଳୀ, ଓଷ୍ଠ୍ୟ, ନିରୋଷ୍ଠ୍ୟ, ବନା, ଅବନା ନାନାପ୍ରକାର ବନ୍ଧ-ଚାତୁରି ସହ ଶବ୍ଦମାନଙ୍କର ତଥା ରାଗରାଗିଣୀମାନଙ୍କର ଶ୍ଳେଷରେ ସନ୍ନିବେଶ ପ୍ରଭୃତିର ଉଦାହରଣମାନ ଏ କାବ୍ୟରେ ସନ୍ନିବଦ୍ଧ । ପୁନଶ୍ଚ ୩୪ଶ ଛାନ୍ଦରେ କଟକ, ସମ୍ବଲପୁର, ପୁରୀ, ଗଞ୍ଜାମ, ବର୍ଦ୍ଧମାନ, ଦରଭଙ୍ଗା, ନେପାଳ ସ୍ଥାନମାନଙ୍କର ଓ ଆଶାବରୀ ଓ ଶଙ୍କରାଭରଣ ପ୍ରଭୃତି ରାଗରାଗିଣୀଙ୍କୁ ଶ୍ଳେଷାର୍ଥରେ ପ୍ରୟୋଗ କରି ନିଜର ଚାତୁରୀ ଦେଖାଇଅଛନ୍ତି । ପୁନଶ୍ଚ ସଭଙ୍ଗ ଅଭଙ୍ଗ ଶ୍ଳେଷର ଉଦାହରଣ ମଧ୍ୟ ପ୍ରଦତ୍ତ । ବହ୍ୱର୍ଥକ ପଦାବଳିମାନ ଏବଂ ଏହି ସବୁକୁ ଦେଖି ପାଶ୍ଚାତ୍ୟ ସାହିତ୍ୟର ପଲ୍ଲବଗ୍ରାହୀ ପଣ୍ଡିତାଭିମାନୀ ବ୍ୟକ୍ତି ମତପ୍ରକାଶ କରିଥିବା ଆମ୍ଭେମାନେ ଜାଣୁ ଯେ, ପ୍ରାଚୀନ କାବ୍ୟ ସାହିତ୍ୟରେ କବିତ୍ୱ ନାହିଁ । କାବ୍ୟ ଓ କଳାର ଅନ୍ତର୍ଗତ ଉତ୍କଳର କାବ୍ୟମାନ ସଙ୍ଗୀତମୟ ହେତୁ ତାହା ଚାରୁକଳାରୂପେ ଗୃହୀତ । କଳାବିଦ୍ୟା ଚତୁଃଷଷ୍ଠୀ ଭାଗରେ ବିଭକ୍ତ । ଏ ବିଷୟରେ ଯାହାଙ୍କର ଅଭିଜ୍ଞତା ଅଛି, ସେମାନେ ଜାଣନ୍ତି ଯେ ପ୍ରହେଳିକା, ଅକ୍ଷରମୁଷ୍ଟି, ଚିତ୍ରବନ୍ଧ, ଦୂର୍ବାଚକ ତନ୍ମଧ୍ୟରେ ଗୃହୀତ । ଦୁଃଖର କଥା, ଆଧୁନିକ ଅଳ୍ପଧୀ ଶିକ୍ଷିତମାନେ ଏ ସବୁ ଅନାବଶ୍ୟକ ଓ କାବ୍ୟର ଅପକର୍ଷାଧାୟକ ବୋଲି ମତ ବ୍ୟକ୍ତ କରନ୍ତି; କିନ୍ତୁ ଉତ୍କଳର କବିମାନେ କିପରି ରସିକ, କିପରି ସାଧକ, କିପରି କାବ୍ୟରସପାନରେ ବ୍ୟସନୀ ହୋଇ ଲୋକୋତ୍ତର ଉତ୍ପାଦନାରେ ମତ୍ତ ଥିଲେ, ତାହା ପ୍ରକୃତ ଅନୁଭବୀ ହିଁ ଉପଲବ୍ଧି କରିବ । ଅନ୍ୟଲୋକମାନଙ୍କଦ୍ୱାରା କସ୍ମିନ୍‌କାଳେ ତାହା ଅନୁଭୂତ ହେବନାହିଁ । ଐକାନ୍ତିକୀ ନିଷ୍ଠାର ସହିତ ଚାଳନା କଲେ, ବୁଦ୍ଧିର ପ୍ରାଖର୍ଯ୍ୟ ବଢେ ଏବଂ ଆମ୍ଭମାନଙ୍କ ଦୃଷ୍ଟିରେ ଯାହା ଅତି ଦୁରୂହ, ତାହା ତାଙ୍କର ସହଜଲଭ୍ୟ ହୁଏ । ମେଷଯୁଦ୍ଧ, ମଣ୍ଡୁକପ୍ଲୁତି, ଲକ୍ଷିତଲକ୍ଷଣା, ମୁରଜାଦିବନ୍ଧ ରଚନା ଅତୀବ କଠିନ ବିଷୟ; କିନ୍ତୁ ତଦପେକ୍ଷା ସରଳ ରଚନା ପ୍ରସଙ୍ଗରେ କବି ଦୀନକୃଷ୍ଣ ଦାସ ତାଙ୍କର ଅମୃତରସମୟ ରସକଲ୍ଲୋଳରେ ସନ୍ତପ୍ତ ହୃଦୟର ଆବେଗରେ ପଲ୍ଲବଗ୍ରାହୀ ପ୍ରଜ୍ଞାବାଦୀଙ୍କୁ ଲକ୍ଷ୍ୟ କରି ପ୍ରକାରାନ୍ତରେ କହିଛନ୍ତି :

କହୁଅଛି ସୁଜନମାନଙ୍କୁ ଏତେ ଯେ
କୃପା କରିବ ମୋତେ ପ୍ରସନ୍ନ ଚିତ୍ତେ ଯେ,
କ ଖ ଅକ୍ଷରେ କଲି ଯେ ଗୀତ
କେବେ ହେଁ ଏଥି ନ ଦେହ ଘାତ
କବି ହେଲେ ତ ଜାଣିମ ଏଥି ଶ୍ରମ ହିଁ ଯେତେ ଯେ ।

ବହୁ ଶ୍ରମକରି ଦୀନକୃଷ୍ଣ ରସକଲ୍ଲୋଳ କାବ୍ୟ ଲେଖିଲେ ବୋଲି ସେ କ'ଣ ହୀନ କସରତିଆ କବି ହେଲେ ? ତଥାପି ଏ ସବୁ ବିଷୟରେ ମତ ବ୍ୟକ୍ତ କରିବା ଏତେ ସହଜ ବିଷୟ ନୁହେଁ । ଏ ପ୍ରସଙ୍ଗରେ କହିବାକୁ ହେବ ଯେ ଉତ୍କଳର ସେହି ସିଦ୍ଧ

କବିମାନେ ଦୁର୍ଗମ ପଥରେ ଅବଲୀଳାକ୍ରମେ ଗତିକରି ନିଜର କୃତିତ୍ୱର ପରାକାଷ୍ଠା ଦର୍ଶାଇଅଛନ୍ତି । ଅପରପକ୍ଷରେ "ଦୁର୍ଗମ ପଥ ଏ ରାଜନ, ଭୟେ ଭାଜିଲେ ଯୋଗୀଜନ" ଏହି ଉକ୍ତି ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ ।

ଏହିସବୁ ଦୃଷ୍ଟିରେ କବି ଗୋକୁଳାନନ୍ଦଙ୍କ କୃତିତ୍ୱ ଅତୀବ ପ୍ରଶଂସ୍ୟ । ପୁରାଣ ଇତିହାସରେ ବୀର ପୁରୁଷଙ୍କର ଚରିତ ବର୍ଣ୍ଣନା ଅବିକଳ ଗ୍ରହଣ କରନ୍ତିନାହିଁ । କବି ସର୍ବଦା ସତ୍ୟ ଓ ଆଦର୍ଶକୁ ନିଜର ସମ୍ମୁଖରେ ରଖି କାବ୍ୟ ଲେଖନରେ ଅଗ୍ରସର ହୁଅନ୍ତି । ମାନବ ବିଶେଷର କ୍ରିୟାକଳାପରେ ମାନବଜାତିର ଧର୍ମ ପ୍ରକାଶ ପାଏନାହିଁ । କବି ଏକ ଅପୂର୍ବ ରାଜ୍ୟର ସ୍ରଷ୍ଟା-ବିଧାତାଙ୍କ ତୁଲ୍ୟ । ସେ ସ୍ରଷ୍ଟା-କିନ୍ତୁ ଏକ ଅପୂର୍ବ ରାଜ୍ୟର । ରାମାୟଣକାର ଦଶରଥ କୈକେୟୀଙ୍କଦ୍ୱାରା ରାମଙ୍କୁ ନିର୍ବାସିତ କରାଇଥିଲେ । ରାଜଶେଖର କବି, କିନ୍ତୁ ତାଙ୍କ ବାଳରାମାୟଣ ନାଟକରେ କୌଶଲ୍ୟା କୈକେୟୀଙ୍କ ଅନୁପସ୍ଥିତିରେ ରାବଣ ଓ ସୂର୍ପଣଖା ମାୟାରେ ଦଶରଥ ଓ କୈକେୟୀଙ୍କ ରୂପ ଧାରଣ କରି ରାମଙ୍କୁ ନିର୍ବାସିତ କରାଇଥିଲେ । ତାଙ୍କର ଏପରି କରିବାର କାରଣ ହେଉଛି- କୈକେୟୀ ଓ ଦଶରଥଙ୍କ ଚାରିତ୍ର୍ୟର ପବିତ୍ରତା ଅକ୍ଷୁଣ୍ଣ ରଖିବା । ଓଡ଼ିଶାର ବ୍ୟାସକବି ସାରଳ ଦାସ ବ୍ୟାସଙ୍କର ମାତା ସତ୍ୟବତୀଙ୍କୁ ଶାନ୍ତନୁଙ୍କର ସ୍ତ୍ରୀ ନ କରାଇ ପରାଶରଙ୍କର ସ୍ତ୍ରୀ ରୂପେ ବର୍ଣ୍ଣନା କରିଅଛନ୍ତି । ଭଗବଦ୍ କଳାରେ ଜାତ ବ୍ୟାସଦେବଙ୍କର ମାତାଙ୍କ ପ୍ରତ୍ୟନ୍ତରେ ଯୋଗ କରାଇବା ଶୂଦ୍ରମୁନି ସମୀଚୀନ ମନେକରି ନ ଥିଲେ । ସାରଳା ଦାସଙ୍କର ଏପରି ବର୍ଣ୍ଣନା ଐତିହାସିକତ୍ୱର ନିଦର୍ଶନ ନ ହୋଇ କବିତ୍ୱର ନିଦର୍ଶନ ହୋଇଅଛି ।

କବି ଗୋକୁଳାନନ୍ଦ ସ୍ଥାନେ ସ୍ଥାନେ କବିତ୍ୱର ଔଚିତ୍ୟ ସଂରକ୍ଷଣରେ ସମର୍ଥ ହୋଇଛନ୍ତି । ତାହାର ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦର୍ଶନୀୟ – ବହୁ ସାଧନାବଳରେ ବୃଦ୍ଧ ବୟସରେ ଦୈବକୃପାରୁ ଲବ୍ଧ ରାମଚନ୍ଦ୍ରଙ୍କ ତୁଲ୍ୟ ପୁତ୍ରକୁ ଯାଚଞ୍ଚା ମାତ୍ରେ ବିଶ୍ୱାମିତ୍ରଙ୍କ ସହ ପ୍ରେରଣ କରିବା ମାନବ ପ୍ରକୃତିର ସତ୍ୟତାର ଅନୁକୂଳ ନୁହେଁ । ପ୍ରକୃତ ମାନବଭାବର ଦର୍ଶନ ନିମିତ୍ତ ସେ ପୁତ୍ର-ବିଚ୍ଛେଦରେ ଅସହିଷ୍ଣୁ ହୋଇ ଛଳପ୍ରୟୋଗ ପୂର୍ବକ ଉଦ୍ଦିଷ୍ଟ କାର୍ଯ୍ୟରେ ପୂର୍ଣ୍ଣ ଅସମର୍ଥ ପୁତ୍ରଦ୍ୱୟଙ୍କୁ ଉପସ୍ଥାପିତ କରାଇଥିଲେ । ଯାହାଙ୍କ ଦର୍ଶନରେ ବିଶ୍ୱାମିତ୍ର ସାହାଯ୍ୟ-ଅନାବଶ୍ୟକତା ଉପଲବ୍ଧି କରି ଏକାକୀ ପ୍ରତ୍ୟାବର୍ତ୍ତନ କରିବେ- ଏହି ଭାବନାରେ ଦଶରଥ ସାଂସାରିକ ମାୟାପରବଶ ହୋଇ କାର୍ଯ୍ୟକାରୀ ହୋଇଥିଲେ । ପୁତ୍ର ମମତାର ଆଧିକ୍ୟ ହେତୁ ସେ ମୁନିଙ୍କର ତ୍ରିକାଳଦର୍ଶିତ୍ୱ ଉପଲବ୍ଧି କରିଥିଲେ । କବି ଭରତ ଶତ୍ରୁଘ୍ନଙ୍କ ପ୍ରତି ବିରାଗଭାବ ଦେଖାଇବା ଉଦ୍ଦେଶ୍ୟରେ ଏହା ଲେଖିନାହାନ୍ତି । ରାମଚନ୍ଦ୍ରଙ୍କର ଶକ୍ତିର ଉତ୍କର୍ଷ ପ୍ରତିପାଦନ ଛଳରେ କବି ଶିବଧନୁ ଦର୍ଶନରେ ପରଶୁରାମଙ୍କ ଭୀତି ଦର୍ଶାଇଅଛନ୍ତି ଏବଂ ପରେ ବିବାହାନନ୍ତର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଅବସରରେ ବ୍ରାହ୍ମଣ ପରଶୁରାମଙ୍କର ପିତୃବଧ ହେତୁକ ପ୍ରତିହିଂସା ଛଳରେ କ୍ଷାତ୍ରବୃତ୍ତି-ଅବଲମ୍ବନ ଜନିତ ଅହଂଭାବକୁ ଦୂର କରାଇ ବ୍ରାହ୍ମଣତ୍ୱ ପ୍ରଦାନକରିବା ରାମଙ୍କର ମହତ୍ୱ ସୂଚନା କରେ । ଗର୍ବସ୍ଫୀତ ପରଶୁରାମ ଶିବଙ୍କର ଧନୁକୁ ଯୋକାଧନୁ

କହିବା ମଧ୍ୟ ଅସମୀଚୀନ ହୋଇନାହିଁ । ଏହିପରି କଳ୍ପନାଜନିତ ନୂତନ ଯୋଜନା କବିଙ୍କର ବିଶେଷତ୍ୱ । ଏହା ପ୍ରକୃତ କାବ୍ୟବିତ୍ ସ୍ୱୀକାର କରିବେ । ରାମଚନ୍ଦ୍ରଙ୍କ ବନବାସ ପରେ ଦଶରଥଙ୍କର ଖେଦୋକ୍ତି ଅତୀବ ହୃଦୟସ୍ପର୍ଶୀ । "ସୁକୁମାର ମୋର ପ୍ରିୟ କୁମର... ବୃଦ୍ଧ କରିଣ ବ୍ୟାଧିକି" (୫-୮, ଦାଦଶଛାନ୍ଦ) । କୈକେୟୀଙ୍କର ରାମଙ୍କୁ ବନ ଗମନ ବାର୍ତ୍ତା କହିବା ପରେ ରାମଙ୍କର ଔଦାର୍ଯ୍ୟପୂର୍ଣ୍ଣ ଉକ୍ତି – "ରାମ କହିଲେ ଗୋ ମାତା ସୀତାକୁ" (୯ମ ପଦ ୧୧ଶ ଛାନ୍ଦ) ରାମଙ୍କ ବାଣରେ ଆହତ ହୋଇ ବାଳୀର ପଞ୍ଚତ୍ୱ ପ୍ରାପ୍ତ ହେବା ପୂର୍ବକାଳର ରାମଙ୍କ ପ୍ରତି ଉକ୍ତି ବ୍ୟାବହାରିକ ଭାବରେ ଯୁକ୍ତିଯୁକ୍ତ । ୨୩ଶ ଛାନ୍ଦ (୨୦-୨୨ ପଦମାନ) ତାରାର ଅଭିଶାପ ଓ ପରେ ଶାପର ତୀବ୍ରତାର ନ୍ୟୂନୀକରଣ । ୨୪ଶ ଛାନ୍ଦରେ ବର୍ଷା ଋତୁ ବର୍ଣ୍ଣନାରେ ରାମଚନ୍ଦ୍ରଙ୍କ ସୀତା-ବିରହରେ ସୀତାଙ୍କ ଭାବନା ବର୍ଣ୍ଣନାକରି ବିଳାପ, ପକ୍ଷୀମାନଙ୍କ ମଧ୍ୟରେ କୁକ୍‌କୁଟରେ ସୀତାଙ୍କ ବାର୍ତ୍ତା କହିବା ଓ ରାମଙ୍କଦ୍ୱାରା ଚର୍ମ ସ୍ୱର୍ଣ୍ଣମୁକୁଟ ବର ଦେବାଟି ସୁନ୍ଦର ହୋଇଅଛି । ଅନୁପ୍ରାସରେ ଛାନ୍ଦଟି ମାଧୁର୍ଯ୍ୟ-ରସମୟ ହୋଇଅଛି । ତନ୍ମଧ୍ୟରୁ ୧୧ଶ ପଦଟି ବି ରମଣୀୟ ହୋଇଅଛି ।

୨୫ଶ ଛାନ୍ଦରେ ବର୍ଷାଋତୁ ଅବସରରେ ସୀତାଙ୍କ ଉଦ୍ଧାର ନିମିତ୍ତ ସୁଗ୍ରୀବକୁ ଉଦ୍‌ଯୋଗହୀନ ମଣି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ପଠାଇଥିଲେ । ବିଭବମଦରେ ମତ୍ତ ହୋଇ ଲକ୍ଷ୍ମଣଙ୍କ ପରିଚୟ ମାଗିବାରେ କ୍ରୁଦ୍ଧ ହୋଇ ଲକ୍ଷ୍ମଣଙ୍କ ବାଣ ପ୍ରୟୋଗ, ତଦ୍‌ପରେ ତାରାଙ୍କର ଅନୁନୟୋକ୍ତିରେ ସ୍ୱଜାତିରେ ନ୍ୟୂନତା, ଚପଳତା ଓ ବୁଦ୍ଧିହୀନତା ଦର୍ଶାଇ ପ୍ରକୃତ ଶୀଳତା ପ୍ରଦର୍ଶିତ ହୋଇଅଛି ।

୨୬ଶ ଛାନ୍ଦରେ ହନୁମାନ ସମୁଦ୍ର ଲଂଘନ କରି ଲଙ୍କା-ଠାକୁରାଣୀଙ୍କୁ ବିଧାମାରି ଲଙ୍କାପୁରସ୍ଥ ଗୃହମାନ ଖୋଜିବା ପରେ ରାବଣର ଗୃହ ଦେଖିଲା ଏବଂ ତାହା ସ୍ୱର୍ଗଠାରୁ ସୁନ୍ଦର ମଣି ରାବଣକୁ ପ୍ରଶଂସା କଲା । ଅଶୋକବନରେ ଶିଂଶପା ବୃକ୍ଷତଳେ ସୀତାଙ୍କୁ ଭେଟିଲା । ଅସୁରୁଣୀମାନେ ସୀତାଙ୍କୁ ବେଢିଥିବାର ଦେଖିଲା । ରାବଣ ଆସି ସୀତାଙ୍କୁ ନିଜର ସ୍ତ୍ରୀ କରିବାକୁ ଯେତେ ଅନୁନୟ କଲା; ସେଥିରେ ସୀତା କ୍ରୁଦ୍ଧ ହୋଇ ତାକୁ କହିଲେ, ତୋର ବୁଦ୍ଧିରେ ତୁ ଯମପୁରକୁ ଯିବୁ । ତପ୍‌ରେ ରାବଣ ଅସୁରୁଣୀମାନଙ୍କୁ ସୀତାଙ୍କୁ ଭୟ ପ୍ରଦର୍ଶନ କରିବାକୁ କହିଲା । ତ୍ରିଜଟା ସୀତାଙ୍କୁ ଆଶ୍ୱାସନା ଦେଇ କହିଲା, ମୁଁ ସ୍ୱପ୍ନ ଦେଖିଛି, ରାମଚନ୍ଦ୍ର ଆସି ରାବଣକୁ ବଧ କରିଛନ୍ତି । ଏହାପରେ ହନୁମାନ ସୀତାଙ୍କୁ ଭେଟି କହିଲା- ମୁଁ ରାମଚନ୍ଦ୍ରଙ୍କ ଦୂତ । ସୀତାଙ୍କ ବିଶ୍ୱାସ ଜନ୍ମାଇବା ନିମିତ୍ତ ସେ ରାମଙ୍କ ମୁଦି ଦେବା ପରେ ମଧୁଶଯ୍ୟା କଥା କହିବାରେ ହନୁମାନ ରାମଙ୍କର ଦୂତ ବୋଲି ସୀତାଙ୍କର ବିଶ୍ୱାସ ହେଲା । ସୀତା ନିଜର ମଥାମଣି ଦେଇ ଶୀଘ୍ର ଆସି ତାଙ୍କୁ ସେଠାରୁ ନେଇଯିବାକୁ କହିଲେ । ହନୁମାନ ତା'ର କ୍ଷୁଧା କଥା କହି ଅଶୋକବନରେ ବୃକ୍ଷସବୁ ଭାଙ୍ଗି, ଫଳ ଆଦି ଭକ୍ଷଣ କରିବାରେ ରାବଣର ସୈନ୍ୟମାନେ ତାକୁ ଶର ମାରିଲେ । ତା'ର ବହୁ ସୈନ୍ୟ ଓ ପୁତ୍ର ଅକ୍ଷୟକୁମାରଙ୍କୁ ହନୁମନ୍ତ ମାରି ପକାଇଲା । ଅକ୍ଷୟକୁମାର ଓ ସୈନ୍ୟମାନଙ୍କ ହତ୍ୟାରେ ରାବଣ ବିଷଣ୍ଣ ହୋଇ ଇନ୍ଦ୍ରଜିତକୁ ହନୁମନ୍ତର କଥା କହନ୍ତେ,

ଇନ୍ଦ୍ରଜିତ ନାଗପାଶରେ ହନୁମାନଙ୍କୁ ବନ୍ଧନକରି ଆଣିବା ଓ ବିଭୀଷଣର ଉକ୍ତିରେ ରାମଦୂତକୁ ନ ମାରି ତା ଲାଙ୍ଗୁଡ଼ରେ ଅଗ୍ନି ସଂଯୋଗ କରିବା ଏବଂ ତହିଁରେ ହନୁମାନଙ୍କଦ୍ୱାରା ଲଙ୍କାର ଗୃହମାନ ଦଗ୍ଧ ହେବା ଏବଂ ସୀତାଙ୍କୁ ଭେଟିବା ପରେ ପ୍ରତ୍ୟାବର୍ତ୍ତନ କରି ଅଙ୍ଗଦକୁ ସୀତାଙ୍କର ସମସ୍ତ ବାର୍ତ୍ତା କହିବା; ତତ୍ପରେ ଅଙ୍ଗଦ, ହନୁମାନ ଓ ସୈନ୍ୟ-ସାମନ୍ତ ସହ ଲଙ୍କାଯାତ୍ରା କରି ରାମ ସମୁଦ୍ରକୂଳରେ ଉପସ୍ଥିତ ହେଲେ । ରାବଣ ରାମଚନ୍ଦ୍ରଙ୍କ ଅଭିଯାନବାର୍ତ୍ତା ପାଇ ନିଜ ମନ୍ତ୍ରୀଦ୍ୱୟ ଶୁକସାରଣଙ୍କୁ ନିଜର ଭ୍ରାତୃମିତ୍ର ସୁଗ୍ରୀବ ଓ ଭାଇ ବିଭୀଷଣକୁ ବୁଝାଇ ଲଙ୍କାକୁ ଆଣିବା ନିମନ୍ତେ ପଠାଇଥିଲା । ସେମାନଙ୍କୁ ରାମଙ୍କ ସେନାମାନେ ବାନ୍ଧି ପକାଇବାରୁ ରାମଚନ୍ଦ୍ର ମୁକ୍ତକରି ସେମାନଙ୍କୁ ବିଦାୟ ଦେଇଥିଲେ । ତତ୍ପରେ ସେତୁ ବାନ୍ଧି ଲଙ୍କାରେ ପ୍ରବେଶ କରିଥିଲେ । ରାମଚନ୍ଦ୍ରଙ୍କୁ ଭୟ ଦେଖାଇବା ମାନସରେ ରାବଣ ହଜାର ହଜାର ଛତ୍ର ଚାମର ଆଦି ସହ ବିମାନରେ ଚଢ଼ି ଆକାଶରେ ଉପସ୍ଥିତ ହେବାରୁ ପୃଥିବୀ ଛାୟାମୟ ହୋଇଗଲା । ଏପରି ହୁଅନ୍ତେ-ବିଭୀଷଣ ରାମଚନ୍ଦ୍ରଙ୍କୁ କହିଲା, ତା'ର ବଡ଼ପଣ ଦେଖି ଆପଣ ଭୟରେ ପଳାଇବେ; ଏହି ଉଦ୍ଦେଶ୍ୟରେ ସେ ଆସିଛି । ରାମଚନ୍ଦ୍ର ବାଣ ପ୍ରୟୋଗରେ ସେସମସ୍ତ ଛିନ୍ନ କରିବାରୁ ରାବଣ ଚିନ୍ତିତ ହୋଇ ଫେରିଗଲା । ତତ୍ପରେ ରାବଣ ରାମଚନ୍ଦ୍ରଙ୍କର ଅବିକଳ ମୃତ ଶରୀର ତିଆର କରାଇ ସୀତାଙ୍କ ଆଗରେ ସ୍ଥାପନ କରାନ୍ତେ ସୀତା ଅତି ଦୁଃଖରେ କ୍ରନ୍ଦନ କଲେ । ଏହି ସମୟରେ ରାମ ସୈନ୍ୟଙ୍କର ଆକ୍ରମଣ ବାର୍ତ୍ତା ରାବଣ ନିକଟକୁ ପ୍ରହସ୍ତ ପଠାନ୍ତେ, ରାବଣ ସେଠାରୁ ପ୍ରତ୍ୟାବର୍ତ୍ତନ କଲା ଏବଂ ରାମଙ୍କର ମାୟାଶିର ଓ ଧନୁ ଉଭେଇଗଲା । ସୁରମା ଆସି ସୀତାଙ୍କୁ ପ୍ରବୋଧନ କଲା ଯେ, ତୁମେ ସତୀ । ଅଙ୍ଗଦ ଆସି ରାବଣକୁ ଭେଟି କହିଲା, ତୁ ବୈଦେହୀଙ୍କୁ ନେଇ ରାମଚନ୍ଦ୍ରଙ୍କ ଶରଣ ପଶ । ରାବଣ ଅଙ୍ଗଦକୁ ତିରସ୍କାର କରି କହନ୍ତେ, ଅଙ୍ଗଦ ତାଙ୍କୁ କହିଲା- ତତେ ପରା ମୋ ପିତା କାଖରେ ଧରିଥିଲେ । ତୁ କାଖରୁ ଖସି ପଡ଼ିଲୁ ଓ ତୋ ମୁହଁରୁ ରକ୍ତ ବହିବାରୁ ତୋତେ ମୁଁ ଦଉଡ଼ିରେ ଓ ଲଉଡ଼ିରେ ବାନ୍ଧି ଖେଳୁଥିଲି, ଦୟା କରି ମୁଁ ପରା ତୋତେ ଛାଡ଼ି ଦେଇଥିଲି । ତୁ ସବୁ ଭୁଲିଗଲୁ ? ବେଦମତିର ଶାପରେ ରାବଣ ମରିବ, ଏ କଥା ନିଶ୍ଚିତ । ତହୁଁ ତାଙ୍କର ଶରଣ ପଶ ।

୩୪ଶ ଛାନ୍ଦରେ କବି ଶ୍ଳେଷରେ ବଡ଼ କୌତୁକମୟ ପଦ ବିନ୍ୟାସ କରି କାବ୍ୟର ଚମତ୍କାରିତା ଦର୍ଶାଇ ଅଛନ୍ତି । ଯଥା – ରମ୍ଭା ଗଞ୍ଜା ବାଲେଶ୍ୱର... ମାନ ଇତ୍ୟାଦି । ତତ୍ପରେ ରାଗରେ ମଧ ଶ୍ଳେଷରେ ସଙ୍ଗୀତ ରାଗମାନଙ୍କର ବିନ୍ୟାସ କରି କାବ୍ୟର ଚାତୁରୀ ଦର୍ଶାଇ ଅଛନ୍ତି । ଯଥା – ଶଙ୍କରାଭରଣ ବିପରି ... କଲେ ବହନ ଇତ୍ୟାଦି ।

ଏହିପରି ୩୪ଶ ଛାନ୍ଦରେ କବିଙ୍କର ଚାତୁର୍ଯ୍ୟରେ କାବ୍ୟର ଚମତ୍କାରିତା ପ୍ରଦର୍ଶିତ ହୋଇଅଛି । ଏହି ଛାନ୍ଦରେ ମଧ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ନାଗପାଶରେ ବନ୍ଧନ କରିବା ବିଷୟ ବର୍ଣ୍ଣିତ । ବିଭୀଷଣ-ବାଣୀରେ ରାମ ଗରୁଡ଼ଙ୍କୁ ସ୍ମରଣ କରନ୍ତେ ଗରୁଡ଼ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ମୁକ୍ତକଲେ ।

ଯୁଦ୍ଧରେ ଅନେକ ରାକ୍ଷସ ସୈନ୍ୟ ଓ ସେନାପତିଙ୍କ ହତ୍ୟାରେ ବ୍ୟଥିତ ହୋଇ ରାବଣ କୁମ୍ଭକର୍ଣ୍ଣକୁ ନିଦରୁ ଉଠାଇଥିଲା ଏବଂ ତାଙ୍କୁ ସମସ୍ତ ବାର୍ତ୍ତା ଦିଅନ୍ତେ କୁମ୍ଭକର୍ଣ୍ଣ ଯୁଦ୍ଧକୁ ବାହାରିଲା । କୁମ୍ଭକର୍ଣ୍ଣଦ୍ୱାରା ସହସ୍ର ସହସ୍ର କପିସୈନ୍ୟ ହତ ହେଲେ । ଏହା ଦେଖି ରାମଚନ୍ଦ୍ର ତା'ର ଶିର ଛେଦନ କଲେ । ତା'ର ଶିର ଛିନ୍ନହୋଇ କେତେକ ମର୍କଟଙ୍କୁ ଭକ୍ଷଣ କଲା । ରାମଚନ୍ଦ୍ର ତା ମୁଣ୍ଡକୁ ଦ୍ୱିଖଣ୍ଡ କରିଦେଲେ । ତା'ର ଅଧେ ମୁଣ୍ଡରେ ମେଘନାଦ ପ୍ରାଚୀର ଓ ଅନ୍ୟ ଅଧକ ହ୍ରଦ ହୋଇଗଲା ।

କବି ଗୋକୁଳାନନ୍ଦ ଲେଖିଥିବା ରାମଚନ୍ଦ୍ରଙ୍କ ବାନର-ସେନାମାନଙ୍କର ଇନ୍ଦ୍ରଜିତଦ୍ୱାରା ମୃତ୍ୟୁ ଘଟିବା ଏକ ନୂତନ ବିଷୟ । ବୈଦ୍ୟ ସୁଷେଣଙ୍କ ନିର୍ଦ୍ଦେଶରେ ହିମାଳୟରୁ ଔଷଧ ଅଣାଇ ସେ ସେମାନଙ୍କୁ ବଞ୍ଚାଇଲେ । ବିଭୀଷଣର ପୁତ୍ର ଯୁଦ୍ଧରେ ମରିବାରୁ ବିଭୀଷଣ କ୍ରନ୍ଦନ କଲା । ସେ ଦ୍ରୋହକରି ମୁକ୍ତିପାଇବା ସକାଶେ ଯୁଦ୍ଧ କରିଥିଲା ବୋଲି କବି ଲେଖିଛନ୍ତି ।

୩୦ଶ ଛାନ୍ଦରେ ଦୂତ ରାବଣକୁ ସୈନ୍ୟସହ ରାମଚନ୍ଦ୍ରଙ୍କ ଆଗମନ କଥା କହନ୍ତେ ବିଭୀଷଣ କହିଲେ, ଆପଣ ରାମଙ୍କ ଚରଣରେ ସୀତାଙ୍କୁ ସମର୍ପଣ କରନ୍ତୁ ଏବଂ ଯୁଦ୍ଧରୁ ନିବୃତ୍ତ ହୁଅନ୍ତୁ । ରାବଣ ବିଭୀଷଣକୁ ବହିଷ୍କାର କରିଦିଅନ୍ତେ ବିଭୀଷଣ ଆସି ରାମଚନ୍ଦ୍ରଙ୍କ ଶରଣାପନ୍ନ ହେବାରୁ ରାମଚନ୍ଦ୍ର ତାକୁ ରାବଣର କପଟ ଦୂତ ବୋଲି ସନ୍ଦେହ ଦୂରକରି ଆଶ୍ରୟ ଦେଲେ ଏବଂ ଲଙ୍କାର ରାଜାରୂପେ ତାକୁ ଅଭିଷିକ୍ତ କଲେ ।

କବି ଗୋକୁଳାନନ୍ଦ କପିସେନାମାନଙ୍କୁ ଅସୁରବଳଦ୍ୱାରା ହତ କରାଇ ସୁଷେଣଙ୍କଦ୍ୱାରା ପୁନର୍ଜୀବିତ କରାଇବାରେ ଏକ ନୂଆ ବିଷୟର ଅବତାରଣା କରି ଅଛନ୍ତି ଏବଂ ବିଭୀଷଣର ପୁତ୍ର ଯେ କି ଅତି ବିଷ୍ଣୁଭକ୍ତ, ତାକୁ ରାମଚନ୍ଦ୍ରଙ୍କଦ୍ୱାରା ହତ କରାଇ ମୁକ୍ତ କରାଇବା ଏବଂ ବିଭୀଷଣଦ୍ୱାରା ପରିଚିତ ନ କରାଇବା ଗୋକୁଳାନନ୍ଦଙ୍କର ଭକ୍ତିମତ୍ତାର ପରିଚୟ ଦିଏ । ଅଧ୍ୟାତ୍ମ୍ୟରାମାୟଣ ଓ ବଳରାମ ଦାସଙ୍କଦ୍ୱାରା ମଧ୍ୟ ଏହା ସ୍ପଷ୍ଟ କୁହାଯାଇଅଛି । ରାବଣ ଓ ବିଭୀଷଣ ବୈକୁଣ୍ଠରେ ଦ୍ୱାରପାଳ ଥିଲେ । ଲକ୍ଷ୍ମୀଙ୍କୁ ବିଷ୍ଣୁଙ୍କ ନିକଟକୁ ଯିବାକୁ ପଥ ନ ଛାଡ଼ିବାରୁ ଲକ୍ଷ୍ମୀ ତାଙ୍କୁ ଅସୁରତ୍ୱ ପ୍ରାପ୍ତିର ଅଭିଶାପ ଦିଅନ୍ତେ ଜୟ ବିଜୟ ଶୋକକ୍ଲିଷ୍ଟ ହୋଇ ବିଷ୍ଣୁଙ୍କୁ କହିଲେ, ଆମ୍ଭେମାନେ ଅଭିଶପ୍ତ ଏବଂ ଦ୍ୱାରପାଳତ୍ୱରୁ ବଞ୍ଚିତ ହେଲୁ । ଲକ୍ଷ୍ମୀଙ୍କର ଅଭିଶାପ କଥା କହନ୍ତେ ବିଷ୍ଣୁ ତାଙ୍କୁ କହିଲେ, ଭକ୍ତିମତ୍ତାରେ ତୁମ୍ଭର ବିଳମ୍ବରେ ମୁକ୍ତି ଏବଂ ବିରୋଧିତାରେ ତିନିଜନ୍ମରେ ମୁକ୍ତିଲାଭ ହେବ । ତହୁଁ ଜୟ ବିଜୟ ବିରୋଧିତା କରି ମୁକ୍ତିଲାଭ ନିମନ୍ତେ ଇଚ୍ଛୁକ ହେବାରୁ ବିଷ୍ଣୁ ଲକ୍ଷ୍ମୀଙ୍କୁ କହିଲେ- ଯାଅ ତୁମେ ମର୍ତ୍ତ୍ୟରେ ଜାତ ହୁଅ । ତୁମକୁ ଏ ବନ୍ଦୀ କରିବ ଏବଂ ତାକୁ ବିନାଶକରି ମୁଁ ତୁମକୁ ମୁକ୍ତ କରିବି । ଦଣ୍ଡକାରଣ୍ୟରେ ରାମ ସୀତାଙ୍କର ପାଦ କଣ୍ଟକବିଦ୍ଧ ହୋଇ ରକ୍ତସ୍ରାବ ହେବାର ଦେଖି ରାବଣ ସୀତାଙ୍କୁ ଅପହରଣ କଲା ଏବଂ ନିଜର ଶୀଘ୍ର ମୁକ୍ତିର ପନ୍ଥା ସେ ସୁଗମ କରିଦେଲା । ସମସ୍ତଙ୍କର ମୃତ୍ୟୁ ପରେ ଯେତେବେଳେ ରାବଣ ରାମଚନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଯାଏ, ସେତେବେଳେ ମନ୍ଦୋଦରୀ ରାବଣକୁ ଯୁଦ୍ଧରୁ ବିରତ ହେବାକୁ କହନ୍ତେ, ରାବଣ କହିଲା- ମନ୍ଦୋଦରୀ

ତୁମେ ଜାଣନା, ମୁଁ ଜଗନ୍ମାତାଙ୍କୁ କ'ଣ ସ୍ତ୍ରୀ କରିବାକୁ ଆଣିଛି । ତାଙ୍କୁ ହରଣ କରିଛି ଶାପରୁ ମୁକ୍ତ ହୋଇ ଶୀଘ୍ର ବୈକୁଣ୍ଠରେ ଦ୍ୱାରପାଳତ୍ୱ ଲାଭକରିବାକୁ ।

ଲକ୍ଷ୍ମଣଙ୍କ ଶକ୍ତିଭେଦ ମଧ୍ୟ ଜାନକୀବଲ୍ଲଭବିଳାସରେ ସୁନ୍ଦରଭାବରେ ବର୍ଣ୍ଣିତ ହୋଇଅଛି । ରାବଣର ପୁତ୍ର ମେଘନାଦ ବିଶ୍ୱବିଜୟୀ । ରାବଣ ଇନ୍ଦ୍ରଦ୍ୱାରା ପରାଜିତ ହୋଇଥିଲା; କିନ୍ତୁ ମେଘନାଦ ଇନ୍ଦ୍ରଙ୍କୁ ଜୟକରି ଇନ୍ଦ୍ରଜିତ ପଦ ଲାଭ କଲା । ଇନ୍ଦ୍ରଜିତ ପ୍ରାତଃକାଳରେ ହୋମକରି ଭୂଗର୍ଭରୁ ଉଦ୍‌ଧୃତ ଦେବଦଳନ ରଥରେ ଯୁଦ୍ଧ କଲେ, ତାକୁ ପୃଥିବୀରେ ଜୟ କରିବାକୁ କେହି ସମର୍ଥନୁହନ୍ତି । ଇନ୍ଦ୍ରଜିତର ହୋମ ବିଷ୍ଣାତନରେ ବ୍ୟାଘାତ ଜନ୍ମାଇ ବିଭୀଷଣ ଲକ୍ଷ୍ମଣଙ୍କଦ୍ୱାରା ଇନ୍ଦ୍ରଜିତକୁ ମରାଇଲା । ଏହା କବି ଗୋକୁଳାନନ୍ଦ ସୁନ୍ଦରଭାବରେ ବର୍ଣ୍ଣନା କରିଅଛନ୍ତି ।

ରାବଣର ମୃତ୍ୟୁଭେଦ ବାଲ୍ମୀକିକୃତ ରାମାୟଣରେ କଥିତ । ଲଙ୍କାରେ ଅବସ୍ଥିତି କାଳରେ ରାବଣଙ୍କୁ ବଧ କରି ନ ପାରି ହତାଶ ହେବା ଅବସରରେ ଅଗସ୍ତି ଋଷି ଆସି ରାମଚନ୍ଦ୍ରଙ୍କୁ କହିଲେ – ଆପଣ ଅରଣ୍ୟ ବାସ କାଳରେ ମୋଠାରୁ ବ୍ରହ୍ମାସ୍ତ୍ର ପ୍ରାପ୍ତ ହୋଇଅଛନ୍ତି । ସେହି ବ୍ରହ୍ମାସ୍ତ୍ର ପ୍ରୟୋଗରେ ରାବଣର ମୃତ୍ୟୁ ସୁନିଶ୍ଚିତ । ବର୍ତ୍ତମାନ ଆପଣ ଆଦିତ୍ୟହୃଦୟ ମନ୍ତ୍ର ପାଠକରି ଶକ୍ତିମାନ ହୋଇ ବ୍ରହ୍ମାସ୍ତ୍ର ପ୍ରୟୋଗ କରନ୍ତୁ ।

ମାର୍କଣ୍ଡେୟ ପୁରାଣରେ ଚଣ୍ଡୀସ୍ତବ-ନିହିତ ଏବଂ ମାର୍କଣ୍ଡେୟ ପୁରାଣ ହିଁ ଦେବୀଙ୍କର ପ୍ରଶସ୍ତିର ପ୍ରାଥମିକ ପ୍ରଧାନ ଗ୍ରନ୍ଥ । ସେଥିରେ ରାମଚନ୍ଦ୍ର ଦେବୀଙ୍କର ଉପାସନା କରି ରାବଣଙ୍କୁ ମାରିବାରେ ସମର୍ଥ ହୋଇଥିଲେ – ଏ ଉକ୍ତି ନାହିଁ । କିନ୍ତୁ ଦେବୀଭାଗବତରେ ଭିନ୍ନ ରକମ ରାବଣର ମୃତ୍ୟୁଭେଦ କଥିତ । ରାମଚନ୍ଦ୍ର କିଷ୍କିନ୍ଧ୍ୟା-ବାସ-କାଳରେ ସୀତାଙ୍କର ଉଦ୍ଧାରରେ ନିଜକୁ ଅସମର୍ଥ ମଣି ହତାଶ ହେବାବେଳେ ସ୍ୱର୍ଗରୁ ନାରଦ ଆସି ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କଦ୍ୱାରା ଦେବୀଙ୍କ ନବରାତ୍ର ବ୍ରତ ନିଜର ଆଚାର୍ଯ୍ୟତ୍ୱରେ ପାଳନ କରାଇଥିଲେ ଏବଂ ସେହି ଦେବୀ-ଉପାସନା ବଳରେ ସେ ରାବଣକୁ ମାରିବାରେ ସମର୍ଥ ହୋଇଥିଲେ । ଦେବୀଙ୍କର ଉପାସନା ଓ ଆଦିତ୍ୟ ହୃଦୟ ପାଠର ମର୍ମ ଏକ । ଅର୍ଥାତ୍ ଲୋକ ବିପନ୍ନ ହେଲେ ନିଜର ଶକ୍ତିର ଆହରଣ କରେ । ସେହି ଦୃଷ୍ଟିରେ ରାମଚନ୍ଦ୍ର ନିଜର ଶକ୍ତିରୂପିଣୀ ଦେବୀଙ୍କର ଆଶ୍ରୟ ଗ୍ରହଣ କରିଥିଲେ । ବାଲ୍ମୀକି ଉକ୍ତିର ମର୍ମ ମଧ୍ୟ ତାହା । ରାମଚନ୍ଦ୍ର ସେ ସୂର୍ଯ୍ୟନାରାୟଣଙ୍କର ପ୍ରତିରୂପ । ଆଦିତ୍ୟହୃଦୟ ପାଠ କରିବା ଅର୍ଥ ନିଜର ଶକ୍ତିରେ ଶକ୍ତିମତ୍ତା ଲାଭ କରିବା । ଦେବୀଭାଗବତରେ ନାରଦଙ୍କର ନିର୍ଦ୍ଦେଶରେ ରାମଚନ୍ଦ୍ର ଦେବୀ-ଉପାସନା କରିଥିଲେ; କିନ୍ତୁ କବି ଗୋକୁଳାନନ୍ଦ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ରାମଚନ୍ଦ୍ର ଦେବୀ ଉପାସନା କରିବା କଥା କହି ରାବଣ-ମାରଣରୂପ କାର୍ଯ୍ୟ ସମାଧାନ କରି ଦେଇ ଅଛନ୍ତି ।

କବି ଗୋକୁଳାନନ୍ଦ ନିଜର ପ୍ରତିଭାବଳରେ ସୁନ୍ଦର ସର୍ଜନା ଶକ୍ତିର ପରିଚୟ ଦେଇ ଅଛନ୍ତି । ସ୍ଥଳେ ସ୍ଥଳେ ଉତ୍କଳର ଲୋକମୁଖରେ ପ୍ରଚଳିତ କଥାମାନଙ୍କୁ ପଦ୍ୟରେ ନିବଦ୍ଧ କରାଇ କାବ୍ୟକୁ ସ୍ପୃହଣୀୟ କରାଇ ଅଛନ୍ତି । ଉଦାହରଣ ଦେବା ନିଷ୍ପ୍ରୟୋଜନ । କାରଣ ପାଠକ ସ୍ଥଳେ ସ୍ଥଳେ ଭେଟିବେ । ଏ ଉତ୍କଳମାତା କବି ପ୍ରସବିନୀ କହିଲେ

ଅତ୍ୟୁକ୍ତି ହେବନାହିଁ । ଉତ୍କଳରେ କବିତା-ବିଳାସର ପ୍ରାଚୁର୍ଯ୍ୟ ଅନ୍ୟତ୍ର ପରିଲକ୍ଷିତ ହୁଏନାହିଁ । ତୁଳନା ମଧ୍ୟ ସ୍ପୃହଣୀୟ ନୁହଁ ।

କାବ୍ୟ ଗଣସାହିତ୍ୟ ନୁହେଁ । ଚାତୁର୍ଯ୍ୟ, ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ, ଔଚିତ୍ୟ ତଥା ଶବ୍ଦ ଯୋଜନାର କୁଶଳତାରେ ବିଳସିତ ହେଲେ, କାବ୍ୟର ମହତ୍ତ୍ୱ ବିକଶିତ ହୁଏ । କବି ସାଧକ । ପ୍ରତିଭା, ଶାସ୍ତ୍ରଦର୍ଶିତା, ଶିକ୍ଷା ଓ ଅଭ୍ୟାସବଳରେ କବିତ୍ୱର ପରିସ୍ଫୁର୍ତ୍ତି । 'ଜାନକୀବଲ୍ଲଭ ବିଳାସ' କାବ୍ୟରେ ପୂର୍ବୋକ୍ତ ବିଷୟ ଅଳ୍ପାଧିକ ପରିମାଣରେ ପ୍ରକାଶମାନ । ରସକଲ୍ଲୋଳରେ ଦୀନକୃଷ୍ଣ ଯଥାର୍ଥରେ କହିଅଛନ୍ତି – କାବ୍ୟ ଲେଖନରେ ଯେ ଶ୍ରମ ସାଧିତ, ତାହା ଅନୁଭବୀ ଜାଣନ୍ତି । ଅପର ବ୍ୟକ୍ତି ତାହାର ସନ୍ଧାନ ପାଏନାହିଁ । କବି ଗୋକୁଳାନନ୍ଦଙ୍କ କାବ୍ୟରେ କାବ୍ୟର ବିଭବମାନ ସୁନ୍ଦରରୂପେ ବିରାଜିତ । ସେ ପ୍ରଶଂସ୍ୟ । ରୀତିଯୁଗର ବିଶେଷତ୍ୱ ସେ ଅକ୍ଷୁଣ୍ଣ କରି ରଖିଅଛନ୍ତି । ସେ ଯେ ଜଣେ ଉତ୍କୃଷ୍ଟ ଶାବ୍ଦିକ, ତାହା କାବ୍ୟପାଠକ ମାତ୍ରେ ଜାଣି ପାରିବେ ।

ପୂର୍ବୋକ୍ତ ଉକ୍ତିଦ୍ୱାରା ପ୍ରତିପନ୍ନ ହେବ ନାହିଁ ଯେ, ଏ କାବ୍ୟଟି ଦୋଷ-ବିବର୍ଜିତ । ନିର୍ଦ୍ଦୋଷ କାବ୍ୟ ବିରଳ ବା ନାହିଁ କହିଲେ ଚଳେ । ଭାରତର ବରେଣ୍ୟ କବି କାଳିଦାସଙ୍କର ଓ ପୃଥିବୀର ସର୍ବପ୍ରଧାନ ବୈୟାକରଣିକ ପାଣିନିଙ୍କର କୃତିମାନଙ୍କରେ ମଧ୍ୟ ଦୋଷ ଅଛି । କବି ଗୋକୁଳାନନ୍ଦଙ୍କର ଏହି ଗ୍ରନ୍ଥ କାବ୍ୟରସିକମାନଙ୍କର କଣ୍ଠହାରରୂପେ ବ୍ୟବହୃତ ହେବାର ଉପଯୋଗୀ ।

# ଆର୍ତ୍ତବଲ୍ଲଭ

ହରେକୃଷ୍ଣ ମହତାବ

ରଘୁବଂଶରେ କବି ବର୍ଣ୍ଣନା କରିଛନ୍ତି ଯେ, ରାମଚନ୍ଦ୍ରଙ୍କର ଯେତେବେଳେ ଏ ଜଗତରେ କାର୍ଯ୍ୟ ଶେଷ ପ୍ରାୟ ହୋଇଗଲା, ସେତେବେଳେ କାଳ ମୁନିବେଶରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ, "ତୁମ୍ଭାକୁ ଏକ ସନ୍ଦେଶ ଗୋପନରେ ଦେବି, କେହି ଯଦି ତାକୁ ଶୁଣେ, ତେବେ ତାଙ୍କୁ ତୁମକୁ ପରିତ୍ୟାଗ କରିବାକୁ ହେବ" । ଶ୍ରୀରାମଚନ୍ଦ୍ର ଏଥିରେ ସମ୍ମତ ହେଲେ ଓ କାଳ ନିଜର ରୂପ ପ୍ରକାଶକରି ଗୋପନରେ କହିଲେ, "ବର୍ତ୍ତମାନ ତୁମର ସ୍ୱର୍ଗକୁ ଯିବାର ବେଳ ଆସିଲାଣି । ଇହଲୀଳା ତୁମର ଶେଷ ।" ଏ ସନ୍ଦେଶ ଅବସ୍ଥାଚକ୍ରରେ ଲକ୍ଷ୍ମଣ ଶୁଣିନେବାରୁ, ତାଙ୍କୁ ରାମଚନ୍ଦ୍ର ପରିତ୍ୟାଗ କଲେ । ସେ ଭିନ୍ନ କଥା, କିନ୍ତୁ ଶ୍ରୀରାମଚନ୍ଦ୍ର କାଳର ଏ ଗୁପ୍ତ ସଂଦେଶ ପାଇ ନିଜେ ତଦନୁସାରେ ପ୍ରସ୍ତୁତ ହୋଇ ସ୍ୱର୍ଗପଥରେ ଯାତ୍ରାକଲେ । ବାସ୍ତବିକ୍ ମୃତ୍ୟୁର କିଛିକାଳ ପୂର୍ବରୁ କାଳର ସଂକେତ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ସମସ୍ତଙ୍କୁ ମିଳିଥାଏ । ଯେଉଁମାନେ ଅବିବେକୀ ଓ ବିଷୟାସକ୍ତ, ସେମାନେ ସେହି ସଙ୍କେତକୁ ଲକ୍ଷ୍ୟ କରନ୍ତି ନାହିଁ, କିନ୍ତୁ ଯେଉଁମାନେ ବିଷୟରେ ଲିପ୍ତଥାଇ ମଧ ଚିତ୍ତ ଜାଗ୍ରତ ରଖିପାରି ଥାଆନ୍ତି, ସେମାନେ ସଙ୍କେତକୁ ସହଜରେ ଜାଣି ପାରନ୍ତି ଓ ନିଜକୁ ନିଜେ ସେହିପରି ପ୍ରସ୍ତୁତ କରନ୍ତି ।

"ବିନୋଦ, ମୋର ଦୁଃଖ ଯେ ମୁଁ ସାରଳା ଦାସ ମହାଭାରତର ମୁଖବନ୍ଧ ଶେଷ କରିପାରିଲି ନାହିଁ ।" ଏହି କଥାରୁ ଜଣାପଡ଼େ ଯେ, ମୃତ୍ୟୁର କିଛିଦିନ ପୂର୍ବରୁ ଆର୍ତ୍ତବଲ୍ଲଭ କାଳର ସଂକେତ ପାଇଥିଲେ । ସଙ୍କେତ ସେ ବୁଝିଲେ, ତାଙ୍କର ମନ ଗଲା ନାହିଁ ପୁତ୍ର, କନ୍ୟା, ପତ୍ନୀ, ବନ୍ଧୁବାନ୍ଧବ ଓ ବିଷୟ ସମ୍ପତ୍ତିଆଡ଼କୁ । ସକଳ ସ୍ଥୂଳ ସମ୍ବନ୍ଧରୁ ସେ ବୋଧହୁଏ ବହୁକାଳ ହେଲା ଚିତ୍ତ ଜଗତରେ ବିଚ୍ଛିନ୍ନ ହୋଇ ସାରିଥିଲେ । ଏ ବିଚ୍ଛେଦ ଯେ ସାମାନ୍ୟ କଥା, ତା ନୁହେଁ । "ଭାଇ, ବନ୍ଧୁ, ଦାରା, ସୁତ- ସବୁ କେବଳ ଦି'ଦିନ ମାତ୍ର ।" ଏ କୀର୍ତ୍ତନ ବୋଲିଲାବେଳେ ଓ ଶୁଣିଲାବେଳେ ମନରେ ଅଳ୍ପକାଳପାଇଁ ଟିକିଏ ବୈରାଗ୍ୟ ଆସେ, ମାତ୍ର ମୁହୂର୍ତ୍ତକ ପରେ ସେହି ବିଷୟର କୋଳାହଳରେ କୁଆଡ଼େ ଲୁଚିଲୁଚି ପଳାଏ । ଏ ବିଚ୍ଛେଦ ପାଇଁ ତୀବ୍ର ସାଧନା ଆବଶ୍ୟକ । ଜ୍ଞାନଯୋଗ, ଭକ୍ତିଯୋଗ, କର୍ମଯୋଗ, ପୂର୍ଣ୍ଣଯୋଗ- ଏ ସବୁର ପ୍ରାରମ୍ଭିକ କାର୍ଯ୍ୟ ହେଉଛି, ବିଷୟରୁ ଚିତ୍ତରୁ ଅପସାରି ନେବା । ହାଡ଼ରୁ ମାଂସ ସିଦ୍ଧ ହୋଇଗଲେ, ତାହା ସ୍ୱତଃ ହାଡ଼ରୁ ଛାଡ଼ିଯାଏ । ଆର୍ତ୍ତବଲ୍ଲଭ କିପରି ଭାବରେ ସିଦ୍ଧ ହେଲେ ଯେ, ସାଂସାରିକ ବିଷୟରୁ ସେ ଛାଡ଼ି ପଡ଼ିଲେ ? ମୋର ମନେହୁଏ,

ସେ ସାହିତ୍ୟ ମାଧମରେ ସାଂସାରିକ ବିଷୟରୁ ମକ୍ତ ହୋଇଥିଲେ । ତାଙ୍କର ସମସ୍ତ ମନଟିକୁ ସାହିତ୍ୟରେ ଢାଳିଦେଇ ସେ ଅନ୍ୟଦିଗରେ ସମ୍ପୂର୍ଣ୍ଣ ଅନାସକ୍ତ ହୋଇଯାଉଥିଲେ । ତାଙ୍କର ସାହିତ୍ୟ ସାଧାନ ଉତ୍କର୍ଷ ଲାଭ କଲା ସାରଳାଦାସ ମହାଭାରତ ସମ୍ପାଦନାରେ । ସେହି ହେତୁରୁ ସେହି କଥାଟି ତାଙ୍କର ମନେ ପଡ଼ିଗଲା- କାଳର ସଙ୍କେତ ପାଇ ।

କଲେଜରେ ଅଧ୍ୟାପକ ଥିବା ସମୟରେ ସେ ସାହିତ୍ୟରେ ଜୀବନୋତ୍ସର୍ଗ କଲେ । ଦିନରାତି ସେହି ଚିନ୍ତା । ଓଡ଼ିଆ ସାହିତ୍ୟ!!! କାହିଁ ସେ ସାହିତ୍ୟ? ରାଧାନାଥ ଓଡ଼ିଆ ସାହିତ୍ୟର ସୁନ୍ଦରୀମାକୁ ନୂତନ ପରିଧାନରେ ଆହୁରି ସୁନ୍ଦର କରିବାକୁ ଯାଇ ତାକୁ ବିକୃତାକାର କରିଦେଇଛନ୍ତି!!! ଏହି ଥିଲା ଆର୍ତ୍ତବଲ୍ଲଭଙ୍କର କ୍ଷୋଭ । ଆମେ ସବୁ ଛାତ୍ର ଥିବାବେଳେ ଏହିକଥା ସେ ବହୁ ଯୁକ୍ତିକରି ବାରମ୍ବାର ବୁଝାଉଥିଲେ । କିନ୍ତୁ କେଉଁଠି ମିଳିବ ତା'ର ସ୍ୱାଭାବିକ ରୂପ? ଅବଚେତନ କ୍ଷେତ୍ରରୁ ଶୁଣିପାରିଲେ ସେ ଏକ ସୁସ୍ପଷ୍ଟ ସ୍ୱର ଯେ, ପ୍ରାଚୀନ ସାହିତ୍ୟର ଗବେଷଣା କରିବାକୁ ହେବ । ରାତ୍ରି ଶେଷରେ ସେ ସ୍ୱପ୍ନ ଦେଖିଲେ- କିଏ ଜଣେ ଯେପରି ତାଙ୍କୁ ଆଦେଶ ଦେଉଛି, ଓଡ଼ିଶାସାରା ଯେଉଁଠି ଯେତେ ପୋଥି ଅଛି, ସବୁ ଖୋଜି ବାହାରକର । କର୍ମଠାରେ ଆତ୍ମୋତ୍ସର୍ଗ କରିଦେଲେ କର୍ମ ତା'ର ନିଜର ସାଧନପାଇଁ ସାହାଯ୍ୟ ଖୋଜିନିଏ । ଗଠନ କଲେ ସେ 'ପ୍ରାଚୀ ସମିତି' । ଅଜସ୍ର ଦାନକଲେ ଏ ଅନୁଷ୍ଠାନ ପାଇଁ ଶ୍ରୀ ଭାସ୍କରଚନ୍ଦ୍ର ମହାପାତ୍ର, ଯେ ନିଜେ ସାହିତ୍ୟିକ ନୁହନ୍ତି ବା ଯାହାଙ୍କର ସାହିତ୍ୟ ପ୍ରତି ଆଗ୍ରହ ଥିବାର ପୂର୍ବେ ଜଣା ନ ଥିଲା । ଏହି ଉଦ୍ୟମ ଫଳରେ ବହୁ ପ୍ରାଚୀନ ସାହିତ୍ୟ ପ୍ରକାଶିତ ହେଲା । ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଧୀରେ ଧୀରେ ଗଠିତ ହେଲା । ଯେଉଁ କାର୍ଯ୍ୟ ବହୁକାଳ ପୂର୍ବେ କର୍ମବୀର ଗୌରୀଶଙ୍କର ଆରମ୍ଭ ମାତ୍ର କରିଯାଇଥିଲେ, ସେହି କାର୍ଯ୍ୟ ପରିପୂର୍ତ୍ତି ଲାଭ କଲା ଆର୍ତ୍ତବଲ୍ଲଭଙ୍କ ହାତରେ; କିନ୍ତୁ କେହି ଏକଥା ପରେ ମନେ ରଖିବେ କି? ସେହି ତ ହେଉଛି ସାଧନାର ଚିରନ୍ତର ଦୁଃଖ । ସ୍ୱାଧୀନତାର ସ୍ୱପ୍ନ ମାତ୍ର ଦେଖି ଯେଉଁ ଲୋକମାନେ ହସହସ ମୁଖରେ ଫାଶି କାଠରେ ଝୁଲିଥିଲେ, ସେମାନଙ୍କର ନାମ କେହି ମନେ ରଖିଛନ୍ତି—ସମସ୍ତ ଭିତ୍ତିର ସେହି ବୋଧହୁଏ ଭାଗ୍ୟବାନ । ଭୂମି ଉପରେ ବିରାଟ ସୌଧ ଲୋକଚକ୍ଷୁ ଆକର୍ଷଣ କରେ; କିନ୍ତୁ ଭୂମିତଳେ ଯେ ଭିତ୍ତି ଲୁଚି ରହିଚି, ସେ ସମସ୍ତ ଆଗୋଚର । ସାହିତ୍ୟକ୍ଷେତ୍ରରେ ଗୌରୀଶଙ୍କର ପ୍ରାଥମିକ ଉଦ୍ୟମ ଆଜି ବିସ୍ମୃତ । ସେହିପରି କ'ଣ ଆର୍ତ୍ତବଲ୍ଲଭଙ୍କ ଦଶା ହେବ!!

ଏ ପ୍ରଶ୍ନ ଆର୍ତ୍ତବଲ୍ଲଭଙ୍କ ମନକୁ ଉଠିନାହିଁ । କାରଣ ସାହିତ୍ୟକ୍ଷେତ୍ରରେ ଥିଲା ତାଙ୍କର ଅକୁଣ୍ଠିତ ଆତ୍ମୋତ୍ସର୍ଗ । କର୍ମରେ ଯେ ସନ୍ତୋଷ ଲାଭକରେ, ସେ ଅନାଇ ରହେ ନାହିଁ, କିଏ ସେ କର୍ମ ସମ୍ବନ୍ଧରେ କି ମନ୍ତବ୍ୟ ପ୍ରକାଶ କରୁଛନ୍ତି, ସେଥିପାଇଁ । ଏ ପ୍ରକାର ନିଷ୍କାମ କର୍ମର ସାଧନା ଥିଲା କଅଣ ?

ନାମ ଥିଲା ଆର୍ତ୍ତବଲ୍ଲଭ!!! ସାଧାରଣ ନାମଟି; କିନ୍ତୁ ଏଥିରେ ମଧ ଗଭୀର ତତ୍ତ୍ୱ ନିହିତ । ପ୍ରସନ୍ନ ମନୁଷ୍ୟଙ୍କୁ ଆର୍ତ୍ତିରୁ ତ୍ରାଣ କରନ୍ତି ବୋଲି ଈଶ୍ୱର ଆର୍ତ୍ତତ୍ରାଣ । ଆର୍ତ୍ତିରୁ ରକ୍ଷା ପାଇଁ ମନୁଷ୍ୟ ଈଶ୍ୱରଙ୍କୁ ଖୋଜିଥାଏ । ଯେଉଁ ଶ୍ରେଣୀର ଲୋକେ ଈଶ୍ୱରଙ୍କୁ ଖୋଜିଥାନ୍ତି,

ସେମାନଙ୍କ ଭିତରେ "ଆର୍ତ୍ତ" ଶ୍ରେଣୀକୁ ଶ୍ରୀମଦ୍ ଭଗବଦ୍‌ଗୀତା ପ୍ରଥମ ସ୍ଥାନ ଦେଇଛନ୍ତି । ଦୁଃଖରୁ ରକ୍ଷାପାଇବା ପାଇଁ ଯେ ଯାହାର ଆଶ୍ରୟ ଖୋଜେ, ସେ ତା'ର ବଲ୍ଲଭ ବା ଅତିପ୍ରିୟ ହେବାର କଳ୍ପନାକୁ ବୁଝିବାପାଇଁ ଆଧ୍ୟାତ୍ମିକ ଅଭିଜ୍ଞତା ଆବଶ୍ୟକ । ରୋଗଯନ୍ତ୍ରଣା ଆର୍ତ୍ତବଲ୍ଲଭଙ୍କର ଥିଲା । କିନ୍ତୁ ସେ ସେଥିରୁ ମୁକ୍ତି ପାଇବା ପାଇଁ ଈଶ୍ୱରଙ୍କ ଆଶ୍ରୟ ଖୋଜିନାହାନ୍ତି । ତଥାପି ତାଙ୍କର ଚିତ୍ତ ଈଶ୍ୱରାଭିମୁଖୀ ଥିଲା । ମନେମନେ ସେ 'ଗୋବିନ୍ଦ' ନାମ ସ୍ମରଣ କରୁଥିଲେ । ସବୁ କାର୍ଯ୍ୟରେ ଲିପ୍ତଥାଇ ମଧ୍ୟ ମନେମେନ ଗୋବିନ୍ଦଙ୍କୁ ସ୍ମରଣ କରିବା ହେଉଛି ଭାବର ଉତ୍କର୍ଷ । ଥରେ ମାତ୍ର ଯାହା ସାରଳା ମହାଭାରତର ମୁଖବନ୍ଧ କଥା ସେହିମାନଙ୍କୁ ସ୍ମରଣ—ତା'ପରେ ସେ ଆଗେଇଲେ ମୃତ୍ୟୁକୁ ଭୟ ନ କରିବା ପାଇଁ । ମୃତ୍ୟୁ ଭୟ ପ୍ରଦର୍ଶନ କରେ । ସେମାନେ ତାକୁ ଭୟ କରନ୍ତି । କିନ୍ତୁ ମୃତ୍ୟୁ ଭୟକରେ ସେହିମାନଙ୍କର, ଯେଉଁମାନେ ତାକୁ ପାଛୋଟି ଆଣିବା ପାଇଁ ଆଗେଇ ଯାଆନ୍ତି । ଡାକ୍ତରଖାନାର ସାଧାରଣ ରୋଗୀଙ୍କ ୱାର୍ଡ । ପ୍ରତିଷ୍ଠିତ ବ୍ୟକ୍ତିଙ୍କପାଇଁ ମଧ୍ୟ କୌଣସି ପ୍ରକାର ବନ୍ଦୋବସ୍ତ ହୋଇ ପାରିଲାନାହିଁ । ପତ୍ନୀ, ପୁତ୍ରମାନେ, କନ୍ୟା ସମସ୍ତେ ଉଦ୍‌ବିଗ୍ନ । ବାହାରର ଲୋକ ମଧ୍ୟ ଦେଖିବାପାଇଁ ଆସୁଛନ୍ତି । କୌଣସି ଦିଗରେ ଦୃଷ୍ଟି ନାହିଁ । ପୁତ୍ର, କନ୍ୟାମାନଙ୍କୁ ବିଶେଷ କଥା କହିବାର ବହୁ ଉପରେ ସେ ପହୁଞ୍ଚି ସାରିଥା'ନ୍ତି । ଯେତେ ସେ ମୃତ୍ୟୁର ନିକଟବର୍ତ୍ତୀ ହେଉଥାନ୍ତି, ସେତେ ନମ୍ର ହୋଇ ଯାଉଥାନ୍ତି । "ମୋତେ ତମେ ଏତେ ଭକ୍ତି କର?" ଏ କଥା ଜଣେ ମରଣ ମୁତ୍ୟୁନ୍ମୁଖୀ ବ୍ୟକ୍ତି ମୁଖରୁ କେବେ ହେଲେ ବାହାରିବ ନାହିଁ । ଯାହାର ଚିତ୍ତ ଗୋବିନ୍ଦଙ୍କଠି ଲୀନ, ସେ କେବଳ ମନକରେ ଏକୁଟିଆ ରହିବା ପାଇଁ । ଲୋକର ଭିଡ଼ରେ ସେ ସୁଖ ପାଏନାହିଁ, ଯାହା ପ୍ରେମିକ ପ୍ରେମିକାଙ୍କ ବିଶ୍ରମ୍ଭାଳାପ କ୍ଷେତ୍ରରେ ହୋଇଥାଏ । ପୁଅମାନେ ଚାହିଁଛନ୍ତି, ବାପା କିଛି କହିବେ କି? ଝିଅ ଚାହିଁଛି, ଶେଷ କଥାଟି ଶୁଣିବାପାଇଁ । ସାହିତ୍ୟିକ ଚାହିଁଛନ୍ତି, କିଛି ଶୁଣିବାପାଇଁ । ଡାକ୍ତରମାନେ ଉଦ୍ୟମ କରୁଛନ୍ତି, ଚିକିତ୍ସା କରିବାପାଇଁ । କାହାରି ପ୍ରତି ଅନୁରକ୍ତି ନାହିଁ, କି କାହାରି ପ୍ରତି ବିରାଗ ନାହିଁ । ଅଦ୍ଭୁତ ସେ ଅବସ୍ଥା ସ୍ଥିତପ୍ରଜ୍ଞଙ୍କର । ଶେଷରେ 'ଜୟଗୋବିନ୍ଦ' 'ଜୟଗୋବିନ୍ଦ' 'ଜୟଗୋବିନ୍ଦ' । ତା'ପରେ ଯବନିକା ପତନ, କ୍ରନ୍ଦନରୋଳ, ହାହାକାର, ଚାରିଆଡ଼େ ଶୋକର ଛାୟା । ଏ ସବୁ ରହିଗଲା । ଏ ଜଗତରେ ଯାହାର ସମ୍ବନ୍ଧ ନାହିଁ, ସେ ଜଗତ ସହିତ- ଯେଉଁଠି ଗୋବିନ୍ଦଙ୍କ ନାମ ଧରି ସେ ଯାଇ ନିମେଷକେ ପହୁଞ୍ଚି ଯାଇଛନ୍ତି ।

ବୁଦ୍ଧଦେବ କହିଥିଲେ ଯେ "ବହୁ ଉପାଦାନର ସମଷ୍ଟିରେ ଗଠିତ ଏ ଶରୀର ଦିନେ ନାଶ ପାଇବ ।" ଆର୍ତ୍ତବଲ୍ଲଭଙ୍କ ଶରୀର ନାଶ ପାଇଗଲା; କିନ୍ତୁ ଆର୍ତ୍ତ ମିଶିଗଲେ ଯାଇ ତାଙ୍କ ବଲ୍ଲଭଙ୍କ ସହିତ । ଆର୍ତ୍ତବଲ୍ଲଭଙ୍କ ନାମ ସାର୍ଥକ, ତାଙ୍କର ଜୀବନ ସାର୍ଥକ । ଆମ୍ଭମାନଙ୍କ ପ୍ରତି ତାଙ୍କର ଆଶୀର୍ବାଦ ସାର୍ଥକ ହେବ କି ନାହିଁ, ସେତିକି ରହିଲା ଆମ୍ଭମାନଙ୍କୁ ଜୀବନରେ ପ୍ରମାଣ କରିବାପାଇଁ ।

# ବାପା

## ହୃଦୟବଲ୍ଲଭ ମହାନ୍ତି

ବାପାଙ୍କ ଜୀବନ ବିଷୟ ଅଳ୍ପରେ କହୁଛି । ସାହିତ୍ୟିକମାନେ ଲେଖିଯାଇଛନ୍ତି, ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟଯୁଗ ତାଙ୍କ ବିଚାରର ଦାନ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପାଇଁ ତାଙ୍କର ଏତେ ଗର୍ବ ଓ ବିଶ୍ୱାସ ଯେ, ସମସ୍ତ ଜୀବନ ଉତ୍ସର୍ଗ କରିଥିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଲୁପ୍ତରତ୍ନକୁ ଉଦ୍ଧାର କରିବା ପାଇଁ । ତାଙ୍କୁ ବାଧିଥିଲା କଲିକତାର ସାହିତ୍ୟିକମାନଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତୁଚ୍ଛ ଭାବ ।

ତାଙ୍କର ବ୍ୟକ୍ତିଗତ ଜୀବନ ବିଷୟରେ ଲେଖାଅଛି ଯେ, ସେ ମାଟ୍ରିକ୍ୟୁଲେସନ ପାସ୍ ନ କରିବା ପୂର୍ବରୁ ତାଙ୍କ ବାପା ବାନାମ୍ବର ମହାନ୍ତି ଇହଧାମ ତ୍ୟାଗକଲେ । କହିଯାଇଥିଲେ- ଭଲ ପାଠ ପଢିବୁ । ଯାତକରେ ଅଛି । ଚାକିରି ଏବେ କରିବୁ ନାହିଁ । ତାହା ହିଁ ହେଲା । ଜମିଦାର ପରିବାର । ବଡ଼ବାପାଙ୍କ ପୁଅ ଭାଇ ବୀରକିଶୋର ମହାନ୍ତି ଜମିବାଡ଼ି କଥା ବୁଝି ତାଙ୍କ ପାଖକୁ ଟଙ୍କା ପଠାନ୍ତି ପାଠ ପଢିବାକୁ । ସେ ମାଟ୍ରିକ୍ୟୁଲେସନ ପାସ୍ କରି କଲିକତାରେ ଆଇ.ଏ. ପଢିଲେ । ତାପରେ ରେଭେନ୍ସାରେ ବି.ଏ. ଅନର୍ସରେ ପାସକରି, ବୃତ୍ତିପାଇ କଲିକତାରେ ଏମ୍.ଏ. ପଢିଲେ । ଇଂରାଜୀରେ ଏମ.ଏ. ପଢିବାକୁ ଇଚ୍ଛା ଥିଲା । କିନ୍ତୁ ବନ୍ଧୁମାନଙ୍କ ପରାମର୍ଶରେ ସଂସ୍କୃତ ପଢିଲେ । ଏମ୍.ଏ. ପାସକରି କଟକ ଫେରିଲେ । ଭାବୁଥିଲେ, Collecter ନା Professor ହେବେ ? ଇତିମଧ୍ୟରେ ଶିକ୍ଷାବିଭାଗ Director ଫକସ୍ ସାହେବ ଓ Principal Duke ସାହେବ ତାଙ୍କୁ କହିଲେ କ୍ରିକେଟ ଖେଳିବା ପାଇଁ । ସେମାନେ ଜାଣିଥିଲେ, ସେ ଭଲ ଫୁଟ୍‌ବଲ୍ ଓ କ୍ରିକେଟ୍ ଖେଳନ୍ତି । ତାଙ୍କ ଖେଳ ଦେଖି ଏତେ ମୁଗ୍ଧ ହେଲେ ଯେ, କହିଲେ ତମେ Ravenshaw ରେ Join କର । ପାଠ ପଢେଇବ ଓ ପିଲାଙ୍କୁ ଖେଳରେ ଉତ୍ସାହିତ କରିବ । ତାହାହିଁ ହେଲା । ୧୯୧୪ ମସିହାରେ ଚାକିରି କଲେ ।

ତାଙ୍କର ଜୀବନୀ ବିଷୟରେ ସ୍ମରଣିକା ବାହାରିଛି । ବଂଶୀଧର ମହାନ୍ତି , ରେଖା ମହାନ୍ତି ଓ ନଟବର ସାମନ୍ତରାୟ ଇତ୍ୟାଦି ଲେଖିଛନ୍ତି । ଯାହା ଛପା ନାହିଁ, ବ୍ୟକ୍ତିଗତ ଜୀବନରେ ଯାହା ଅନୁଭବ କରିଛି, ତାହାହିଁ କିଛି ସଂକ୍ଷିପ୍ତରେ କହିବି । ସେ ସବୁବେଳେ ଆମକୁ ତିନୋଟି କଥା କହୁଥିଲେ-

୧. ସାଧରଣ ଜୀବନ ଯାପନ କରିବ । ଉଚ୍ଚ ଭାବନା ରଖିବ । ସେ ନିଜେ ସାଧାରଣ ପୋଷାକ ପିନ୍ଧୁଥିଲେ । ସାଧାରଣ ଖାଦ୍ୟ ଖାଉଥିଲେ ।
୨. ନିଜ ଗୋଡ଼ରେ ନିଜେ ଛିଡ଼ା ହେବ, ଆତ୍ମନିର୍ଭରଶୀଳ ହେବ ।
୩. ଛାତ୍ର ଜୀବନରେ ଭଲ ଖେଳିବ ଓ ଭଲ ପାଠ ପଢିବ । ଚାକିରିରେ ମନେରଖିଥିବ- ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ ନିଷ୍କାମ କର୍ମ କଥା । କାହାକୁ ସୁପାରିଶ ମାଗିବ ନାହିଁ; ନା ପଦ ଓ ପଦବି ପାଇଁ ଇଚ୍ଛା ପ୍ରକାଶ କରିବନାହିଁ ।

ତାଙ୍କର କାର୍ଯ୍ୟର ସଫଳତା ଦେଖି ଇଂରେଜ ସରକାର ତାଙ୍କୁ ରାୟସାହେବ ଓ ରାୟବାହାଦୁର ପଦ ଦେଇଥିଲେ । ସ୍ୱାଧୀନତା ଲାଭ ପରେ ଜାତୀୟ ସରକାର ତାଙ୍କୁ ପଦ୍ମଶ୍ରୀ ଉପାଧି ଦେଲେ । ଏହା ବିଷୟରେ ଲେଖିଲେ ଡଃ ସୁନୀତି ଚାଟାର୍ଜୀ, ଭାଷାତତ୍ତ୍ୱବିଦ୍, ନାସ୍‌ନାଲ ପ୍ରଫେସର, Modern Review ପତ୍ରିକାରେ । ଆର୍ତ୍ତବଲ୍ଲଭଙ୍କୁ ପଦ୍ମଶ୍ରୀ ଉପାଧି ଦେଇ ସରକାର ତାଙ୍କୁ ସମ୍ମାନ କରିନାହାନ୍ତି , ସମ୍ମାନ କରୁଛନ୍ତି ପଦ୍ମଶ୍ରୀକୁ । ଡଃ ଚାଟର୍ଜୀ ଓଡ଼ିଆ ସାହିତ୍ୟ ଏକାଡେମିର ପ୍ରଥମ ମେମୋରିୟଲ୍ ଲେକ୍‌ଚରରେ କହିଥିଲେ । "Professor Mohanty was quite an institution in himself, and his all- round services for the enrichment of Oriya literature, for the organization of literary and cultural activities and for the proper study, interpretation and under of Indian literature, primarily Oriya and Sanskrit, have been universally recognized. His erudition found an expression in the the long introductions of the early Oriya literary compositions. In this way he inaugurated a new chapter in the study of one of the most important literatures of India. He contributed to his editations. Because of his schlorship there will always he a special niche for him in the hall of fame in the study of Oriya and other Indian Languages and literatures. Apart from his eminence as a Scholar, Prof. Mohanty was one of the finest characters one can think of. He was an, of culture and amiability incarnation it was a pleasure to talk to him in matters not only scholarly, but also with refrence to life in general- its problems and its joy sand surrows. He had a sublte sence of humour".

ମୁଁ ବାପାଙ୍କୁ ନେଇ ଯାଇଥିଲି ଚାର୍ଟର୍ଜୀଙ୍କ ଘରକୁ । କଲିକତାରେ ସେ ତାଙ୍କ ପାଦଧୂଳି ନେଇ ମୋତେ କହିଥିଲେ, ତମ ବାପାଙ୍କଠାରୁ ମୁଁ ବଙ୍ଗଳା ଭାଷାର କେତେ ଶବ୍ଦର ଉତ୍ପତ୍ତି ଜାଣିଲି- ସେ ଓଡ଼ିଆ ଭାଷା ବିଷୟରେ ଲେଖିଛନ୍ତି । "The Oriya

Language has been the most conservative among its sisters (Bengali & Assamese), and as I have said elsewhere, if you want to find out what early Bengali was like, study early Oriya".

ନବୀନକୁ ସେ ସ୍ୱାଗତ କରନ୍ତି । କହନ୍ତି ପ୍ରାଚୀନର ରତ୍ନଭୂଷଣ ଉପରେ ନବୀନକୁ ପରିପାଟିମଣ୍ଡିତ କରିବାକୁ ହେବ । ମୁଁ ୧୯୫୪ -୫୯ IIT Kharagpurରେ ପଢୁଥିଲି । ଓଡ଼ିଆ ସମାଜର President ଥିଲି । ଠିକ୍ ହେଲା ଯେ, ମାସିକ ପତ୍ରିକା ବାହାରିବ, ଇଂରାଜୀରେ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ବିଷୟରେ । ବାପାଙ୍କୁ ଅନୁରୋଧ କଲି । ଇଂରାଜୀରେ ଓଡ଼ିଆ ଭାଷାର ଆଧୁନିକ ଲେଖା । ସେ ଅଧଘଣ୍ଟାରେ ସୁରେନ୍ଦ୍ର ମହାନ୍ତିଙ୍କ ଲେଖାକୁ ଇଂରେଜୀରେ ଅନୁବାଦ କରିଦେଇଥିଲେ । ସେ ନବୀନକୁ କିପରି ସ୍ୱାଗତ କରୁଥିଲେ, ସେବିଷୟରେ ମାୟାଧର ମାନସିଂହ, ସଚ୍ଚି ରାଉତରାୟ, ରାଜ କିଶୋର ରାୟ, ବଂଶୀଧର ମହାନ୍ତି ଇତ୍ୟାଦି ଲେଖିଛନ୍ତି ।

ସେ ତାଙ୍କ ଜୀବନରେ ବହୁ ସ୍କୁଲ ପ୍ରତିଷ୍ଠା କରିଛନ୍ତି । ଗାଁ ପାଖରେ କୋରୁଆ ହାଇସ୍କୁଲ, କଟକର ରାଣୀହାଟ ସ୍କୁଲ ଇତ୍ୟାଦି । ପରିଚାଳନା କରୁଥିଲେ କେତେକ ନୈଶ ବିଦ୍ୟାଳୟ । ବହୁ ମେଧାବୀ ଓ ଗରିବ ଛାତ୍ରଙ୍କୁ ଆର୍ଥିକ ଓ ଅନ୍ୟାନ୍ୟ ଭାବରେ ସାହାଯ୍ୟ କରୁଥିଲେ । ପରେ, ୧୯୧୯ ସାଲରେ ଏହାକୁ ବ୍ୟାପକ ଭାବରେ S.S.G.(Social Service Guild) ନାମରେ ପ୍ରତିଷ୍ଠା କରିଥିଲେ । ପ୍ରଫେସର ଗୁରୁଚରଣ ମହାନ୍ତି ଲେଖିଥିଲେ ଯେ, ଆଜି ଆମେ ପ୍ରାୟ ଉତ୍କଳର ପ୍ରତ୍ୟେକ କଲେଜରେ ଏହି S.S.G. ଅନୁଷ୍ଠାନ ଦେଖିବାକୁ ପାଉ । ୧୯୩୪ ସାଲରୁ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସେ ହିନ୍ଦୀ ରାଷ୍ଟ୍ର ଭାଷାର ସଭ୍ୟ ରୂପେ ଥାଇ ଅନେକ କାର୍ଯ୍ୟ କରିଯାଇଛନ୍ତି ।

ଛାତ୍ରଙ୍କୁ ପଢାଇବା ବିଷୟରେ ଗୋଟାଏ ଘଟଣା ମନେପଡ଼େ । କଳାହାଣ୍ଡି ମହାରାଜା ତାଙ୍କ ପୁଅକୁ ଆଣି କହିଲେ ଓଡ଼ିଆ ଓ ସଂସ୍କୃତ ପଢାଇବାକୁ । ସେ ଗାଡ଼ି ପଠେଇଦେବେ ନବାକୁ ଓ ଟଙ୍କା ମାସିକ ଦେବେ । ବାପା, କହିଲେ ତାକୁ ପଢାଇବି ଅନ୍ୟ ଛାତ୍ରପରି । ଟଙ୍କା ନେବିନାହିଁ । ତମ ପୁଅ ଅନ୍ୟ ଛାତ୍ରପରି ଏଠି ଆସି ପଢିବ । ସେ ପାଠପଢି କରି ପାସ୍‌କଲେ । ମହାରାଜା ଆସି କହିଲେ, ଆପଣ ଟଙ୍କା ନେଲେ ନାହିଁ, ମୁଁ ଆପଣଙ୍କ ଝିଅ ପାଇଁ ହୀରା ମୁଦି ଆଣିଛି । ବାପା ମନାକରିବା ସତ୍ତ୍ୱେ, ସେ ଜିଦ୍ ଧରିବାରୁ ଝିଅକୁ ଡାକି କହିଲେ, ଆଚ୍ଛା, ଦିଅନ୍ତୁ ।

ତାଙ୍କର ଦୈନନ୍ଦିନ କାର୍ଯ୍ୟ- ସକାଳୁ ଉଠି ବେଦ, ଉପନିଷଦ ଓ ଗୀତା ପାଠ କରିବେ । ତା'ପରେ ଯିବେ ବଗିଚାକୁ । ବଗିଚା ଥିଲା ଘର ସାମନା ଗଳିରେ (ଅକ୍ଷୟ ମହାନ୍ତି ଗଳିରେ) ନଅ ଗୁଣ୍ଠ ଜମି । ସେଥିରେ କଲମି ଆମ୍ବଗଛ, ସପେଟା, ଅମୃତଭଣ୍ଡା ଓ ଅନ୍ୟାନ୍ୟ ପରିବା । ନିଜେ ଆମ୍ବଗଛ, ଗୋଲାପଗଛ ମଧ କଲମି କରି ଲଗାଇବେ । ଗୋଟାଏ ଗୋଲାପ ଗଛରେ ଦୁଇପ୍ରକାର- ଗୋଲାପି ଓ ନାଲିଫୁଲ ଫୁଟିବ । Governor କୋଠିକୁ Exhibition ପଠାଇଥିଲେ ଓ Prize ମଧ ପାଇଥିଲେ । ଗାଁରେ ସେ ଚାରିଟା ବଗିଚା ମଧ କରିଥିଲେ । ବଗିଚା କାମ ପରେ ଯିବେ ଗୋସେବା

କରିବାକୁ । ହରିୟାନାରୁ ଗାଈ ମଗାଇ ରଖିଥିଲେ । ଯାପରେ ଲାଗିଯିବେ ଲେଖାଲେଖି କାମରେ । ଦିନକୁ ୧୨ରୁ ୧୪ ଘଣ୍ଟା ଲେଖାଲେଖି କରିବେ ।

ସ୍କୁଲ, କଲେଜରେ ଖେଳରେ ମଧ୍ୟ ନାଁ କରିଥିଲେ । ଆଗରୁ କହିଛି Cricket କଥା । ଫୁଟ୍‌ବଲ୍, ହକି ମଧ୍ୟ ଖେଳୁଥିଲେ । ଫୁଟବଲ୍ ଖେଳିବାକୁ ଏତେ ଭଲ ପାଉଥିଲେ ଯେ, ୬୦ ବର୍ଷ ପର୍ଯ୍ୟନ୍ତ ରେଫେରି ହୋଇଥିଲେ ଜିଲାପଡ଼ିଆରେ ।

ସେ ସଂଗୀତ ପ୍ରେମୀ ଥିଲେ । ମଧୁପୁର ପଟ୍ଟାୟତ, ଯେ କି ସଂଗୀତରେ Research କରୁଥିଲେ, ଡକାଇ କହିଲେ ଝିଅ ବୀଣାପାଣିକୁ ଶାସ୍ତ୍ରୀୟ ସଂଗୀତ, ଓଡ଼ିଶୀ ଓ ସୀତାର ଶିଖାଇବାକୁ । ଦୁଇ ସଂଗୀତ ମାଷ୍ଟ୍ରେ ଆସିଲେ, ଶ୍ୟାମସୁନ୍ଦର ଧୀର ଓ ଜାନୁଖୋଳ ଦପ୍ତରି । ସଂଗୀତ ଶିଖି ସେ କଲିକତା, ପାଟନା, ଏଲାହାବାଦ ସଂଗୀତ ସମ୍ମିଳନୀରେ ଯୋଗଦେଲା । ଗଜଲ, ଧ୍ରୁପଦ ଓ ଖେୟାଲରେ ସର୍ବଭାରତୀୟ, ପ୍ରତିଯୋଗିତାରେ ଦ୍ୱିତୀୟସ୍ଥାନ ଓ ସୀତାରରେ ପ୍ରଥମ ସ୍ଥାନ ପାଇଲା । ସେ ଏତେ ସଂଗୀତ ପ୍ରେମୀ ଥିଲେ ଯେ, ଦିନେ ତାଙ୍କୁ ସାମାନ୍ୟ ଜ୍ୱର ପରି ଲାଗିଲା । ମିନି ଓ ମତେ ଡକାଇଲେ । ମିନିକୁ ସୀତାର ଓ ମତେ କହିଲେ ତାବଲା ବଜାଇବାକୁ । ଅବାକ୍ ହେଲି । ଦେଖିଲି, କିଛି ସମୟ ପରେ ଦେହରୁ ଝାଳ ବୋହୁଛି । କହିଲେ କି ସୁନ୍ଦର ସ୍ପନ୍ଦନ । ସ୍ପନ୍ଦନରେ ଜୀବନ ଅଛି ।

ଇନ୍ଦ୍ରାଣି ରହମନ, ଯେ, ଭାରତନାଟ୍ୟମ୍‌ରେ ନାମ କରିଥିଲେ, ଆସି ବାପାଙ୍କୁ ଘରେ କହିଲେ- 'ମୁଁ ଓଡ଼ିଶୀ ନାଚ ଶିଖିବାକୁ ଚାହେଁ । ବାପା ତାଙ୍କୁ ଓଡ଼ିଶୀ ନାଚ ଲେଖାଥିବା ତାଳପତ୍ର ପୋଥି ଦେଖାଇଲେ । ଇନ୍ଦ୍ରାଣି ଖୁସି ହୋଇ କହିଲେ- ମୋତେ ଗୋଟାଏ ଗୁରୁ ଦିଅନ୍ତୁ, ଭଲ ନାଚ ଶିଖାଇବ । ସେ ଦେବୁକୁ ଡାକିଲେ ଓ କହିଲେ, ଯେ ଭଲ ନାଚିବ । ଦେବୁ ଶିଖାଇଲା । ଇନ୍ଦ୍ରାଣି ସାରା ଭାରତ ଓ ବିଦେଶରେ ଓଡ଼ିଶୀ ନାଚରେ ନାଁ କଲେ ଓ New York ରେ Settle କଲେ । ବାପା ରଙ୍ଗମଞ୍ଚରେ ଅଭିନୟ କରୁଥିଲେ । ଥରେ ଗଉଡ଼ ବେଶରେ ରଙ୍ଗମଞ୍ଚରେ ବାହାରିଲେ । ତାଙ୍କୁ ଦେଖି ସମସ୍ତେ ଅବାକ୍ ହୋଇଥିଲେ । ସେ ବୟ ସ୍କାଉଟ୍‌ରେ Examiner ମଧ୍ୟ ଥିଲେ । ଆମକୁ ବୟ ସ୍କାଉଟ୍‌ରେ ଭର୍ତ୍ତି କରିଥିଲେ । ଆମେ ଦୁଇଭାଇ ବୟ ସ୍କାଉଟ୍‌ରେ Kings Scout ହୋଇଥିଲୁ ଓ ଭାଇ Boy Scout Gamhraରେ Holland ଯାଇଥିଲେ, ଓଡ଼ିଶା ତରଫରୁ । ସେଥିରେ ତତ୍‌କାଳର ରାଜା ଲିଡର ଥିଲେ ।

କଟକରେ ଦେବୀମେଢ ପଡ଼ିବା ବେଳେ ଗଣ୍ଡଗୋଳ ହୁଏ । ବାପା ଯାଇ, ଜଷ୍ଟିସ ହରିହର ମହାପାତ୍ର, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ପାରେଶ୍ୱର ମହାନ୍ତିଙ୍କୁ ନେଇ ପୋଲିସ ଷ୍ଟେସନ୍‌ରେ ସମାଧାନ କରୁଥିଲେ । ସରକାର ତାଙ୍କୁ କଟକ Municipality ବୁଝିବା ପାଇଁ ବି ଭାର ଦେଇଥିଲେ ।

ଏ ସବୁ ଦେଖିଲେ ଜାଣିବେ ଯେ, ସେ କୌଣସି କାମ ହାତକୁ ନେବେ, ଭଲଭାବେ ସଂପନ୍ନ କରିବେ ।

ତାଙ୍କର ସାହିତ୍ୟ ଗବେଷଣା ଓ ଅନ୍ୟାନ୍ୟ କାର୍ଯ୍ୟ ଦେଖିବାକୁ ସେତେବେଳର ଗଭର୍ଣ୍ଣର ସାର ହଥର୍ଣ୍ଣ ଲୁଇସ ଓ ତାଙ୍କ ସ୍ତ୍ରୀ ଆମ ଘରକୁ ଆସିଥିଲେ । ସେତେବେଳେ ରାଜଭବନ କଟକରେ ଥାଏ । ପ୍ରଥମ ଥର ଦେଖିଲୁ ଘରକୁ ଆସିଥିଲା Sofaset । ଆମେ ଭାବିଲୁ, ବୋଉ ଇଂରେଜୀ ଜାଣେ ନାହିଁ, କିପରି କଥାହେବ Mrs Lewis ଙ୍କ ସାଙ୍ଗରେ । ଦେଖାଗଲା- ବୋଉ ଓଡ଼ିଆରେ କଥାହେଲା ଓ Mrs Lewis ଇଂରେଜୀରେ । ସେ ଅନେକ ବଡ଼ି ଦେଖିଲେ ଓ ଆଖୁ ବଡ଼ି ଖାଇଲେ । ବୋଉ ଗୋଟାଏ ପଗଡ଼ି କରିଥିଲେ, ଯାହାକୁ ଫିଠାଇବ କଷ୍ଟ । Mrs Lewis ଫିଟାଇ ପାରିଲେନାହିଁ । ବୋଉ ଫିଟାଇ ଦେଖାଇଦେଲା । ଲୁଇସ ବାପାଙ୍କ ସଙ୍ଗେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ଅନ୍ୟାନ୍ୟ ବିଷୟ କଥା ହୋଇ ଭାରି ଖୁସି ହେଲେ ଏବଂ ରାଜଭବନ ଯିବାକୁ ନିମନ୍ତ୍ରଣ କରିଥିଲେ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ତାଙ୍କ ବିଚାର ଲେଖିଛନ୍ତି ସ୍ମରଣିକାରେ- 'କେଉଁଠି କେଉଁଠି ଶବ୍ଦ ପ୍ରଯୁକ୍ତ ହେଲା, ତାର ବିଶେଷତ୍ୱ କ'ଣ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ନିଜର ଗଭୀର ଅଧ୍ୟୟନ ଓ ଗବେଷଣାବଳିରେ ସେ ତାହା ସ୍ୱଚ୍ଛନ୍ଦରେ ନିର୍ଦ୍ଧାରଣ କରିପାରୁଥିଲେ । ସାରଳା ମହାଭାରତ ଶୁଦ୍ଧ ସଂସ୍କରଣ କରିବାବେଳେ କେବଳ ସଂସ୍କୃତ ଅଭିଧାନ ନୁହେଁ; ହିନ୍ଦୀ, ମରାଠୀ, ବଙ୍ଗଳା ପ୍ରଭୃତି ବହୁ ଭାରତୀୟ ଭାଷାର ପୁରାତନ, ଦୁଷ୍ପ୍ରାପ୍ୟ ଅଭିଧାନ ସଂଗ୍ରହ କରିଥିଲେ । ପ୍ରଶାସନ ଶବ୍ଦକୋଷ ରଚନା ପାଇଁ ଭାରତ ସରକାରଙ୍କ ପକ୍ଷରୁ ବିଭିନ୍ନ ଭାଷାବିତ୍ ଓ ପଣ୍ଡିତମାନଙ୍କୁ ନେଇ ଯେଉଁ କମିଟି ଗଢାଯାଇଥିଲା, ଓଡ଼ିଶାରୁ ସେ କମିଟିର ସଭ୍ୟଥିଲେ ଓ ସେଥିରେ ତାଙ୍କର ବଳିଷ୍ଠ ଦାନ ଥିଲା ।"

ଅନସୂୟା ପ୍ରସାଦ ପାଠକ, ଓଡ଼ିଆ ରାଷ୍ଟ୍ରଭାଷା-ପ୍ରଚାର ସମିତିର କର୍ମକର୍ତ୍ତା, ସ୍ମରଣିକାରେ ଲେଖିଛନ୍ତି- ଆର୍ତ୍ତବାବୁ ରାଷ୍ଟ୍ରଭାଷା-ପ୍ରଚାର ସଭାର କାର୍ଯ୍ୟକାରିଣୀ ସମିତିର ସଭ୍ୟ ଥା'ନ୍ତି । ସରକାରି ଆଦେଶ ହେଲା- ଓଡ଼ିଶାରେ ସମସ୍ତ ସ୍କୁଲରେ ହିନ୍ଦୀ ପଢାଯିବ । ଆର୍ତ୍ତବାବୁ ପୁସ୍ତକ ରଚନା କରିବାରେ ଲାଗିଲେ । ସ୍କୁଲଗୁଡ଼ିକରେ କିପରି ହିନ୍ଦୀ ପଢାଯିବ ତା'ର ଗୋଟିଏ ସରଳ ସୁନ୍ଦର ଯୋଜନା ଗଢି ରଖିଦେଲେ..... ! ତାଙ୍କର ଅସାଧାରଣ ଜ୍ଞାନ, ପାଣ୍ଡିତ୍ୟ ଦେଖି ଥରେ ରାଜର୍ଷି ପୁରଷତ୍ତମ ଦାସ ଟଣ୍ଡନଜୀ କହିଥିଲେ- ତାଙ୍କ ସମ ବେଦ, ପୁରାଣ, କାବ୍ୟଶାସ୍ତ୍ରର ପ୍ରକାଣ୍ଡ ପଣ୍ଡିତ ଭାରତରେ ବିରଳ । ରାଷ୍ଟ୍ରଭାଷା ହିନ୍ଦୀର ପକ୍ଷ ସମର୍ଥନ କରି ସେ ଯେପରି ଯୁକ୍ତିଯୁକ୍ତ ଭାଷଣ ଦିଲ୍ଲୀରେ ଦେଇଥିଲେ, ସେଥିରେ ମୁଗ୍ଧ ହୋଇ ଶ୍ରୀଟଣ୍ଡନଜୀ ତାଙ୍କୁ ଆଲିଙ୍ଗନ କରିପକାଇଲେ । ଏହିପରି ପାଟଣାରେ ମଧ୍ୟ ବିହାର-ହିନ୍ଦୀ ପରିଷଦ ତରଫରୁ ସରଳ, ସୁନ୍ଦର, ସୁବୋଧ ହିନ୍ଦୀରେ ଭାଷଣ ଦେଇଥିଲେ । ହିନ୍ଦୀ ସାହିତ୍ୟିକଙ୍କ ମଧ୍ୟରେ ସେ ସୁପରିଚିତ ।"

ଥରେ ବନାରସର ସଂସ୍କୃତ ପଣ୍ଡିତମାନେ ଆସିଥିଲେ ଆମ କଟକ ଘରକୁ । କଥାବାର୍ତ୍ତା ହେଲେ ସଂସ୍କୃତରେ । ତାଙ୍କୁ ଆମେ ଦେଖି ଅବାକ୍ । ଏତେ ସୁନ୍ଦର, ସୁମଧୁର ସଂସ୍କୃତରେ କଥାବାର୍ତ୍ତା ପୂର୍ବରୁ ଶୁଣି ନ ଥିଲୁ ।

ଇଂରେଜୀ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା । ଦିନକର ଘଟଣା । ମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କ୍ୟାଣ୍ଟିନ୍‌ରେ ଖାଉଥିଲି । ଭି:ଭି:ବନ୍, ଯେ କି ଆମକୁ ପଢାଇଛନ୍ତି ଇଂରେଜୀ, ରେଭେନ୍ସା କଲେଜରେ, ପରେ ସେ ରାଜସ୍ଥାନ ବିଶ୍ୱବିଦ୍ୟାଳୟର କୁଳପତି ଓ ହିନ୍ଦୁ କଲେଜରେ ଭିଜିଟିଙ୍ଗ୍ ପ୍ରଫେସର ଥିଲେ- ମୋ ପାଖକୁ କ୍ୟାଣ୍ଟିନ୍‌ରେ ଆସି ପଚାରିଲେ, "How is the great man?"ମୁଁ ଅବାକ୍ ହୋଇ କହିଲି "Which greatman you are referring" । ସେ ଉତ୍ତର ଦେଲେ- "Your father Artaballav. ମୁଁ ଯେତେବେଳେ କହିଲି- ସେ ନାହାନ୍ତି, ୧୯୬୩ ମସିହାରେ ଚାଲିଗଲେ । ସେ ସ୍ତବ୍ଧ ହୋଇ ବସିପଡ଼ି କହିଲେ-He was not only a great scholar of Sanskrit and oriya, but also a scholar of English. He used to note a number of old English – and used proper English words in conservation.

କହିଲି, ତାଙ୍କ ପାଖରେ ସବୁ English Authorଙ୍କ ବହିଥିଲା- Lord Tennysom, Lord Byron, Shelley, Keats and Shakespear ପ୍ରଭୃତି । ଏହା ୧୯୬୫ ମସିହାର କଥା । ବାପା ଏମିତି ଜଣେ ମଣିଷ।

# ଜଣେ ଅତୁଳନୀୟ ସାଧକଙ୍କ ସମ୍ପର୍କରେ

ରମାକାନ୍ତ ରଥ

ପ୍ରଥମେ ଧନ୍ୟବାଦ ଦେବି ରେଭେନ୍‌ସା ବିଶ୍ୱବିଦ୍ୟାଳୟର କୁଳପତି ଓ ଏ ସଂକଳନର ମୁଖ୍ୟ ସମ୍ପାଦକ ପ୍ରଫେସର ବୈଷ୍ଣବ ଚରଣ ତ୍ରିପାଠୀଙ୍କୁ ଏବଂ ସଂପାଦନା ମଣ୍ଡଳୀର ପ୍ରତ୍ୟେକ ସଦସ୍ୟଙ୍କୁ । ସେମାନଙ୍କର ଆଗ୍ରହ ଓ ଉଦ୍ୟମ ବ୍ୟତିରେକେ ଏ ଅମୂଲ୍ୟ ଗ୍ରନ୍ଥଟି ଲୋକଲୋଚନକୁ ଆସିପାରି ନ ଥାନ୍ତା । ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅତୁଳନୀୟ ସାଧନା ସହିତ ଆମେ ପରିଚିତ ହୋଇପାରି ନ ଥାନ୍ତୁ । ଦୁର୍ଭାଗ୍ୟର ବିଷୟ ଯେ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ଓଡ଼ିଆ ସାହିତ୍ୟର ମହାନ୍ କୃତିଗୁଡ଼ିକ ଆଉ ଉପଲବ୍ଧ ନୁହେଁ, ନ ହେବା ଫଳରେ ଆମ ସମୟର ପାଠକମାନେ ସେହି କୃତିଗୁଡ଼ିକ ସହିତ ଅପରିଚିତ । ସେମାନଙ୍କ ପାଇଁ ସେଗୁଡ଼ିକ ଥିବା ଯାହା, ନ ଥିବା ତାହା ।

ଦୂ[illegible] ସାହିତ୍ୟକୃତି ପାଇଁ ଉଦାସୀନତା ଓ ବିତୃଷ୍ଣା ଖୁବ୍ ବ୍ୟାପକ । ଏ ମନୋବୃତ୍ତି କେବଳ ଆମ ରାଜ୍ୟରେ କି ଦେଶରେ ସୀମିତ ନୁହେଁ । ଅନ୍ୟାନ୍ୟ ଦେଶରେ, ଏପରିକି ପ୍ରତିଷ୍ଠିତ ଲେଖକମାନଙ୍କଠାରେ ଏହାର ନିଦର୍ଶନ ଦେଖିବାକୁ ମିଳେ । ବଳିଷ୍ଠ ଫରାସୀ ଦାର୍ଶନିକ ଓ ଲେଖକ Jean Paul Sartre ସାହିତ୍ୟକୃତିକୁ ଫଳଟିଏ ସହିତ ତୁଳନା କରି କହିଥିଲେ ଯେ, ଠିକ୍ ସମୟରେ ନ ଖାଇଲେ ତାର ସ୍ୱାଦ ରହେନାହିଁ । ପ୍ରସିଦ୍ଧ, ନାଟ୍ୟକାର Antolu Artaud କହିଥିଲେ, ଅତୀତର ମହାନ୍ କୃତିଗୁଡ଼ିକ ଅତୀତ ପାଇଁ ଉପଯୋଗୀ, ଆମପାଇଁ ସେଗୁଡ଼ିକ ଅବାନ୍ତର ।

କାଳ ଭିତ୍ତିରେ ସାହିତ୍ୟର ବିଭାଜନ ନିତାନ୍ତ ଅଯୌକ୍ତିକ- ଏହାହିଁ ମୋର ମତ । ସାହିତ୍ୟର ମାଧ୍ୟମ ହେଉଛି ଭାଷା । ଅନୁଭବକୁ ବ୍ୟକ୍ତ କରିବା, ତାହା ଆଉ ଜଣଙ୍କ ପାଖରେ ପହଞ୍ଚାଇବା ଭାଷାର କାମ । ଏପରି କେଉଁ ଅନୁଭବ ଅଛି, ଯାହା ଦିନେ ଥିଲା, ଅଉ ନାହିଁ? ମଣିଷର ପ୍ରତ୍ୟେକ ଅନୁଭବ - ପ୍ରେମ, ଆନନ୍ଦ, ବିଷାଦ ନିଜକୁ ଅତିକ୍ରମକରି ଅନ୍ୟ କେଉଁଠାରେ ପହଞ୍ଚିବାର ଅଭିଳାଷ ଚିରନ୍ତନ । ସବୁବେଳେ ଥିଲା, ସବୁବେଳେ ରହିବ । ବ୍ୟକ୍ତ କରିବାର ଶୈଳୀ ଅବଶ୍ୟ ଭିନ୍ନ ହୋଇପାରେ, କିନ୍ତୁ ଯାହା ବ୍ୟକ୍ତ କରାଯାଇଛି, ତାହା ସାମୟିକ ନୁହେଁ, ଅପରିବର୍ତ୍ତନୀୟ । ବ୍ୟକ୍ତ କରିବାର ଶୈଳୀକୁ ପ୍ରାଧାନ୍ୟ ଦେଇ ସାହିତ୍ୟର ମୂଲ୍ୟାୟନ କରିବା କେବଳ ସାହିତ୍ୟ ପ୍ରତି ଅନ୍ୟାୟ ନୁହେଁ, ସେହି ସାହିତ୍ୟ ଯେଉଁ ଜାତିର, ସେ ଜାତିପ୍ରତି ଅନ୍ୟାୟ । ମହାକବି ଗେଟେଙ୍କ ମତରେ- ସାହିତ୍ୟର ଗୁରୁତ୍ୱ ହ୍ରାସପାଇଲେ, ସେ ଜାତିର ଗୁରୁତ୍ୱ ମଧ୍ୟ ହ୍ରାସପାଏ ।

ମୁଖବନ୍ଧରେ ଯଥାର୍ଥରେ କୁହାଯାଇଛି, ଆଧୁନିକତାର ପ୍ରତିଷ୍ଠା ପାଇଁ ପରମ୍ପରାର ବିଲୋପ ଓ ଅସ୍ୱୀକୃତି ସୁସ୍ଥ ମାନବିକତାର ଲକ୍ଷଣ ନୁହେଁ, ପରମ୍ପରା [illegible]

ଥାଇ ତାହାକୁ ନୂଆ ଗତି ଓ ଦୀପ୍ତି ଦେବାକୁ ପଡ଼େ । ଆର୍ତ୍ତବଲ୍ଲଭ ମହାନ୍ତି ଏ ଜାତିର ସାହିତ୍ୟକୁ ସାମୟିକ ନୁହେଁ, ସର୍ବକାଳୀକ କରିବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି । ଯେଉଁଠାରେ ଭାଷା ପ୍ରଚଳିତ ଭାଷାଠାରୁ ଅଲଗା, ସେଠାରେ ଟୀକାଦ୍ୱାରା ଭାଷାକୁ ବୋଧଗମ୍ୟ କରିଛନ୍ତି । ଗୋଟିଏ ପୁରାତନ କୃତିର ତ୍ରୁଟିଶୂନ୍ୟ ସଂସ୍କରଣଟିଏ ପ୍ରକାଶ କରିବାପାଇଁ ତାଙ୍କର ନିଷ୍ଠା ଓ ଉଦାହରଣ ପଟାନ୍ତର ନାହିଁ । 'ବିଦଗ୍ଧ ଚିନ୍ତାମଣି'ର ଶୁଦ୍ଧସଂସ୍କରଣ ପାଇଁ ସେ ଦଶ ଖଣ୍ଡ ପୋଥି ଓ ପୂର୍ବ-ପ୍ରକାଶିତ ସଂସ୍କରଣ ସଂଗ୍ରହ କରିଥିଲେ ଏବଂ ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ତର୍ଜମା କରି ଶୁଦ୍ଧପାଠ ପ୍ରସ୍ତୁତ କରିଥିଲେ । ସେହିପରି ମଥୁରାମଙ୍ଗଳର ଶୁଦ୍ଧ ସଂକଳନ ପାଇଁ ସେ ଅନେକତ୍ର ପୁନଃମୁଦ୍ରିତ ପୁସ୍ତକ ଓ ପୋଥି ସଂଗ୍ରହ କରିଥିଲେ । ଏହା କରିବା ପଛରେ ଯେଉଁ ଉତ୍ସର୍ଗୀକୃତ ଚିତ୍ତବୃତ୍ତିର ପ୍ରେରଣା ରହିଛି, ସେହି ଚିତ୍ତବୃତ୍ତିପାଇଁ ଆର୍ତ୍ତବଲ୍ଲଭ ମହାନ୍ତି ଏ ଜାତିର ନମସ୍ୟ ।

ସେ ନମସ୍ୟ ମଧ୍ୟ ପ୍ରତ୍ୟେକ କୃତିକୁ ସାହିତ୍ୟର ପରମ୍ପରାରେ ସ୍ଥାନିତ କରିବାର ଉଦ୍ୟମପାଇଁ । ଭୀମଭୋଇଙ୍କ 'ସ୍ତୁତିଚିନ୍ତାମଣି'ର କେତେକ ଅଭିବ୍ୟକ୍ତିର ଦୃଶ୍ୟ ସେ ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ଓ ଦୀନକୃଷ୍ଣ ଦାସଙ୍କ ଅଭିବ୍ୟକ୍ତି ସହିତ ଦେଖାଇଛନ୍ତି । ଏ କବିମାନଙ୍କର ଭାବଗତ ସାମ୍ୟ ବିଷୟରେ ଆମେ ଅବଗତ ନ ଥିଲୁ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଯୋଗୁଁ ଅବଗତ ହେଲୁ । ଯେପରି ମହିମାଧର୍ମାଲମ୍ବୀ ଭୀମଭୋଇଙ୍କ ଚେତନାରେ ବୌଦ୍ଧଦର୍ଶନର ଓ ବେଦାନ୍ତଦର୍ଶନର ପ୍ରଭାବ ମଧ୍ୟ ଆମେ ତାଙ୍କରି ଯୋଗୁଁ ବୁଝିପାରିଲୁ ।

ଏପରି ଜଣେ ମନୀଷୀଙ୍କୁ ସମ୍ମାନ ପ୍ରଦର୍ଶନ କରିବାର ଅବସର ପାଇବାରୁ ମୁଁ କୃତାର୍ଥ ହେଲି ।

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ କୃତିଗୁଡ଼ିକ ଉଚ୍ଚାଙ୍ଗ ସାହିତ୍ୟ ଚିହ୍ନାଇବାରେ ସହାୟକ । ସେହି କୃତିଗୁଡ଼ିକରେ କବି ଖୁବ୍ ଅର୍ଥପୂର୍ଣ୍ଣ ଏକ ସତ୍ୟ ସହିତ ସଂପୃକ୍ତ ହୋଇଛନ୍ତି ବା ହେବାକୁ ଚେଷ୍ଟା କରିଛନ୍ତି । କବିର ଦୃଷ୍ଟିରେ ଆମର ଗତାନୁଗତିକ ଜୀବନ ଅସାର । ଜୀବନ ଜୀଇଁ ଚାଲିବା ଆମର ଲକ୍ଷ୍ୟ ନ ହୋଇ, ଜୀବନ ବାହାରେ ଥିବା, କିନ୍ତୁ ଖୁବ୍ ପାଖାପାଖି ଅନ୍ୟ ଏକ ଜୀବନର ଉତ୍ତୀର୍ଣ୍ଣ ଗୁଣରେ ଚେତନାକୁ ଗୁଣବନ୍ତ କରିବା ଆମର ଲକ୍ଷ୍ୟ ହେବା ଉଚିତ । ସେ ସତ୍ୟ ନିରାକାର ବ୍ରହ୍ମର ଗୁଣ ହୋଇପାରେ, ହୋଇପାରେ ମଧ୍ୟ କୃଷ୍ଣଙ୍କର ଦିବ୍ୟପ୍ରେମ ଗୁଣ । ନିଜ ଭିତରୁ ବାହାରିଯାଇ ସତ୍ୟପଥରେ ପହଞ୍ଚିବାର ଅଭୀପ୍ସା, ସେହି କୃତିଗୁଡ଼ିକରେ କବିଙ୍କର ଚିତ୍ତବୃତ୍ତିର ପ୍ରଧାନ ଲକ୍ଷଣ । ସେ ସାହିତ୍ୟକୁ ଶୃଙ୍ଗାର ରସ ସର୍ବସ୍ୱ ଅଭିହିତ କଲାବେଳେ, ସେହି ପ୍ରେମ ଚେତନାର ଉତ୍ତରଣର ମାର୍ଗ, ନିଜକୁ ଅତିକ୍ରମ କରିବାର ମାର୍ଗ ଭାବି ବୁଝିବା- ଏପରି ସମାଲୋଚନା ସାଧ୍ୟାତୀତ । ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ପୁସ୍ତକ ଓ ସେଗୁଡ଼ିକର ମୁଖବନ୍ଧଦ୍ୱାରା ଆମକୁ ଉଚ୍ଚାଙ୍ଗ ସାହିତ୍ୟ ସହିତ, ସାହିତ୍ୟର ସ୍ରଷ୍ଟାମାନଙ୍କର ଚିତ୍ତବୃତ୍ତି ସହିତ ପରିଚିତ ହେବାର ସୁଯୋଗ ମିଳେ । ଏପରି ଜଣେ ମନୀଷୀଙ୍କ ସମ୍ମାନ ଜ୍ଞାପନ କରିବାର ଅବସର ପାଇଥିବାରୁ ମୁଁ କୃତାର୍ଥ ହେଲି ।

# ମୁଖବନ୍ଧର ଆର୍ତ୍ତବଲ୍ଲଭ: ଶ୍ରୀଗୁରୁ ପ୍ରଣାମ

ଦାଶରଥି ଦାସ

ଏକ

ଆଲ୍‌ମା ମିଟାର(Alma matre) ରେଭେନ୍‌ସାର ନିଜସ୍ୱ ପ୍ରକାଶନ ବିଭାଗ ପ୍ରତିଷ୍ଠିତ । ସେହି ପ୍ରକାଶନ ବିଭାଗ ଆନୁକୂଲ୍ୟରେ ପୂଜ୍ୟ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ରଚିତ ପ୍ରାଚୀ ଗ୍ରନ୍ଥମାଳାର ମୁଖବନ୍ଧ ସମଷ୍ଟି ଏକତ୍ର ସଂକଳିତ ହୋଇ ପ୍ରକାଶପାଇଛି । ସର୍ବପ୍ରଥମେ । ଏହାଠାରୁ ବଳି ଆନନ୍ଦର କଥା ଆଉ କ'ଣ ଅଛି? ଓଡ଼ିଶାର ଜାତୀୟ ଆକାଙ୍‌କ୍ଷାଟି ଚରିତାର୍ଥ ହୋଇଛି । କାର୍ଯ୍ୟଟିକୁ ସୁସମ୍ପନ୍ନ କରିଛନ୍ତି ରେଭେନ୍‌ସାର କୁଳପତି, କୁଳସଚିବ ଓ ଓଡ଼ିଆ ବିଭାଗର ପ୍ରଫେସର-ଚତୁଷ୍ଟୟ । ସେମାନେ ଜାତିର ସାଧୁବାଦ ଗ୍ରହଣ କରନ୍ତୁ । ଅଗ୍ରଜସ୍ଥାନୀୟ ହୃଦୟବଲ୍ଲଭ ବାବୁ ବି କୃତଜ୍ଞତା ଜାଣନ୍ତୁ । ଓଡ଼ିଶାର ଜାତୀୟ କାର୍ଯ୍ୟ ସମ୍ପନ୍ନତା ପାଇଁ ସାହିତ୍ୟିକଙ୍କ ପୁଅମାନେ ସହାୟତା କରିଥାନ୍ତି । କବି ରାଜେନ୍ଦ୍ର କିଶୋରଙ୍କ ଏକ କବିତାକୁ କିଂଚିତ ବଦଳାଇ କହିହେବ, "ପୁତ୍ ନାମ ନରକରୁ ତ୍ରାହି ପାଇଲେ ହେଲା? ସାହିତ୍ୟିକ କେମିତି ହେବ ଓଡ଼ିଆ ସାହିତ୍ୟ ଇତିହାସରେ/ବହିପତ୍ର ଛପାଇବାର ଖର୍ଚ୍ଚାଦି ବହନଯୋଗ୍ୟ ପୁଅଟେ ଯେବେ ଛାଡ଼ି ନ ଯିବ ପୃଥିବୀରେ?"

ଆର୍ତ୍ତବଲ୍ଲଭଙ୍କ ମୁଖବନ୍ଧ ସମଷ୍ଟିର ଲୋକାର୍ପଣ ଉତ୍ସବରେ ନିମନ୍ତ୍ରଣ ପତ୍ରଟିଏ ପାଇଥିଲେ ଯଥେଷ୍ଟ ହୋଇଥାନ୍ତା । ଅତିଥି ହେବା ପରମ ସୌଭାଗ୍ୟର କଥା । କବି ରମାକାନ୍ତ ରଥଙ୍କ ସହିତ ଏକାମଞ୍ଚରୁ ଭାଷଣ ଦେବା ତହିଁରେ ଅଧିକ ମାତ୍ରା ଯୋଡୁଛି । କବିଙ୍କ ସହିତ ଭାଷଣ ଦେବା କିନ୍ତୁ ବିପଦଜନକ । ଏକେତ ତାଙ୍କ ପାଖରେ ଅନୁଜ୍ଜ୍ୱଳ ଦିଶିବ, ଦୁଜେ ତାଙ୍କ ଭାଷଣ ପାଖରେ ବକ୍ତବ୍ୟ ପ୍ରୀତିକର ମନେହେବନାହିଁ । ବିଚାର

ତୁଳନାଶୀଳ । ତେବେ ଆଜିର ଅଦ୍ଭୁତ ଯୋଗାଯୋଗକୁ ଅଭିନନ୍ଦନ କରାଯାଉ । ମୁଖବନ୍ଧ- ସଭାରେ ପୃଷ୍ଠବନ୍ଧ ପାଇଁ ପ୍ରସିଦ୍ଧ କବି ଉପସ୍ଥିତ ।

ଦୁଇ

ପ୍ରଣାମରୁ ଆରମ୍ଭ କରୁଛି । ବ୍ୟକ୍ତିଗତ ଭାବରେ ଲେଖକ ଆଚାର୍ଯ୍ୟ ମହୋଦୟଙ୍କଦ୍ୱାରା ଉପକୃତ ହୋଇଛି ଏକଦା । ପ୍ରଥମ ଦିନର ସ୍ମୃତି ଅବିସ୍ମରଣୀୟ । ୧୯୫୯ ଖ୍ରୀଷ୍ଟାବ୍ଦର କଥା । ଭେଟିଥିଲି ଆର୍ତ୍ତବଲ୍ଲଭଙ୍କୁ ତାଙ୍କ ଘର ବାରଣ୍ଡାରେ, ସଶରୀରେ । ଡ୍ରେସ୍ ଓ ଚେହେରାରୁ ମହାନ୍ ଆଚାର୍ଯ୍ୟଙ୍କୁ ଚିହ୍ନିବାର କୌଣସି ବାଟ ନ ଥିଲା । ପିନ୍ଧିଥାନ୍ତି ବଡ଼ ଗାମୁଛାଟିଏ । ପଚାରିଥିଲି ମୂର୍ଖଙ୍କ ପରି, "ଆର୍ତ୍ତବାବୁ ଅଛନ୍ତି"- ସେହି ସାଧାରଣ ମଣିଷଟି ମୁହୂର୍ତ୍ତକେ ପାଲଟି ଗଲେ ଆତ୍ମବିଶ୍ୱାସ ଭରପୂର ଅସାଧାରଣ ବ୍ୟକ୍ତିରେ; ଉଦାର, ସୁଜନ, ପ୍ରସନ୍ନ ଗୁରୁଟିରେ । ଭିତରକୁ ଡାକିଲେ, କୁଶଳ ଜିଜ୍ଞାସିଲେ । ଯାଇଥିଲି ଟେଷ୍ଟିମୋନିଆଲ ପାଇଁ । ଚାକିରି ପାଇଁ ପ୍ରୟୋଜନ । ଯଥାଶୀଘ୍ର ଚମତ୍କାର ଇଂରାଜୀ ଅକ୍ଷରରେ ପ୍ରଶଂସାତ୍ମକ ଟେଷ୍ଟିମୋନିଆଲ୍‌ଟିଏ ଲେଖିଦେଲେ । ଅବଶ୍ୟ ବିନା ପରୀକ୍ଷାରେ ନୁହେଁ । ଆଉ ଥରେ ଦୁଇଥର ଭେଟିଛି । ଓଡ଼ିଆ ଭାଗବତ ସମ୍ବନ୍ଧରେ ଗବେଷଣା କ୍ଷେତ୍ରରେ ମୋର ତତ୍ତ୍ୱାବଧାରକ ହେବାକୁ ଲେଖି ଦେଇଥିଲେ ନିଜେ । ଭାଗବତ ବିଷୟରେ ଗବେଷଣା ପାଇଁ ଆନନ୍ଦିତ ହୋଇଥିଲେ ଅଶେଷ । ଏକଦା ସେ ଥିଲେ ଓଡ଼ିଆ ବିଭାଗର ଅଭିଭାବକ । ଦିନେ ପ୍ରସ୍ତାବ ଆସିଲା- ଓଡ଼ିଆ M.I.L. ଟିଉଟୋରିଆଲ୍ କ୍ଲାସ୍ ଉଚ୍ଛେଦ ହେବ । M.I.L. ଓଡ଼ିଆ ଗୋଟେ ପାଠ, ତା ପାଇଁ ପୁଣି ଟ୍ୟୁଟରିଆଲ୍ କ୍ଲାସ ! ବୁଢାଙ୍କ ରଡ଼ିରେ ଉଡ଼ିଯାଇଲା ଅପପ୍ରସ୍ତାବଟି । ଏବେ ଅବଶ୍ୟ ଟ୍ୟୁଟରିଆଲ୍ କ୍ଲାସ୍ କ'ଣ କେହି ଜାଣନ୍ତିନାହିଁ ।

ଯେଉଁଦିନ ଭେଟିଥିଲି ଆଚାର୍ଯ୍ୟ ମହୋଦୟଙ୍କୁ, ସେଦିନ ତାଙ୍କ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ପରିମାପ-ଶକ୍ତି ଲେଖକର ନଥିଲା, ଆଜି ବି ନାହିଁ । ମୁଖବନ୍ଧ ସଂକଳନଟିର ଅବତରଣିକା ପ୍ରସ୍ତୁତ କରିଛନ୍ତି ମୋର ସୁଯୋଗ୍ୟ ଛାତ୍ରଦ୍ୱୟ: ବାବାଜୀଚରଣ ପଟ୍ଟନାୟକ ଓ ଗୌରାଙ୍ଗ ଚରଣ ଦାଶ । ଅବତରଣିକାଟି ବେଶ୍ ଗବେଷଣାତ୍ମକ, ପାଣ୍ଡିତ୍ୟପୂର୍ଣ୍ଣ; ଯଥାସମ୍ଭବ ବିଚାରବନ୍ତ ବି । ମହାନ୍ ପଣ୍ଡିତଙ୍କୁ ବୁଝିବୁଝାଇବାର କୃତିତ୍ୱ ଅଭିନନ୍ଦନୀୟ । ପ୍ରାଚୀନ ସାହିତ୍ୟାନୁରାଗୀଏ ଅବଶ୍ୟ ପଢିବେ ।

ଲେଖକର ବକ୍ତବ୍ୟର ପରିପୂରକ ଭାବରେ ଅବତରଣିକାଟିକୁ ସ୍ୱୀକାର କଲେ ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱ,କୃତିତ୍ୱ ଓ ପାଣ୍ଡିତ୍ୟର ପରିମାପ ଦିଗରେ ଯତ୍‌ସାମାନ୍ୟ ଉଦ୍ୟମ ହୋଇଛି ବୋଲି ବୁଝିବାକୁ ହେବ । ଆର୍ତ୍ତବଲ୍ଲଭଙ୍କ ଭାଷାରେ କହିଲେ ହେବ "ଲୋକେ ତିଳକୁ ତାଳ କରନ୍ତି, ଆମେ ତାଳକୁ ମୁଦ୍ଧା ତିଳ କରିପାରିବାନାହିଁ ।"

ତିନି

'ପ୍ରାଚୀ' ନାମରୁ ଆରମ୍ଭ କରିବା । ପ୍ରାଚୀ, ପ୍ରାଚ୍ୟ ଓ ପ୍ରାଚୀନ ଆଦି ପ୍ରାୟ ଏକା କଥା ବୁଝାଏ- ଗୋଟିଏ ପ୍ରାଚ୍ୟ ଭୂମିଖଣ୍ଡକୁ ଓ ଅନ୍ୟଟି ପ୍ରାଚୀନତାକୁ । ପ୍ରାଚୀନ ପୋଥି ସଂଗ୍ରହ, ସଂରକ୍ଷଣ, ସଂପାଦନ, ଟୀକାୟନ, ପ୍ରକାଶକ ଓ ବିପଣନ ତଥା ପ୍ରାଚୀନ ଲିପି, ସ୍ମୃତିଫଳକ, ତାମ୍ରଶାସନ, ଚିତ୍ର ଓ ମୂର୍ତ୍ତି ଆଦିର ଆବିଷ୍କାର ଓ ସଂରକ୍ଷଣ ଇତ୍ୟାଦି ହେଉଛି ପ୍ରାଚୀ ସମିତିର ମୁଖ୍ୟ ଉଦ୍ଦେଶ୍ୟ ଓ ଆଭିମୁଖ୍ୟ । ଓଡ଼ିଶା ତ ପ୍ରାଚ୍ୟ ଭୂଖଣ୍ଡର ଭୂମି । ପ୍ରାଚୀ ନାମଟିକୁ ତେଣୁ ପ୍ରାଚ୍ୟ ବିଦ୍ୟାଚର୍ଚ୍ଚା ଓ ଚର୍ଯ୍ୟାର ସର୍ବଭାରତୀୟ ସ୍ତରରେ ମର୍ଯ୍ୟାଦାବନ୍ତ ଐତିହ୍ୟ ସହିତ ସିଧା ଯୋଡ଼ିଦେଇ ହେବ । 'The Prachi' ପତ୍ରିକାରେ କେଜାଣି କାହିଁକି ବିଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରାଚୀକୁ East ଓ Orient ସହିତ ସଂଶ୍ଳିଷ୍ଟ କରିବାକୁ ଚାହିଁନାହାନ୍ତି । ତାଙ୍କ ପାଇଁ ପ୍ରାଚୀ 'is another name of Kalinga. କଥାଟା ଉଗ୍ର ଉତ୍କଳୀୟତା ଓ ଓଡ଼ିଆ ଜାତିପ୍ରୀଥାର ପରିଚାୟକ ହୋଇପାରେ, କିନ୍ତୁ ନିର୍ଭୁଲ ସତ୍ୟ ନୁହେଁ । ଓଡ଼ିଶାକୁ ସର୍ବଭାରତୀୟ ସ୍ତରରୁ ବିଚ୍ଛିନ୍ନକରି ଦେଖିବା ସମୀଚୀନ ବି ନୁହେଁ । ଓଡ଼ିଶା କ'ଣ ପ୍ରାଚ୍ୟରୁ ବିଚ୍ଛିନ୍ନ? ସର୍ବଭାରତୀୟ ସ୍ତରର ସେଦିନର ପୁନରୁତ୍ଥାନର ଉତ୍ସାହ ଉନ୍ମାଦନାରେ ଓଡ଼ିଶା ଯୋଗଦାନ କରି ଧନ୍ୟ ହୋଇଛି । ଗୋପବନ୍ଧୁ ଓଡ଼ିଶାକୁ ମିଶାଇଛନ୍ତି ଅସହଯୋଗ ଆନ୍ଦୋଳନରେ, ଆର୍ତ୍ତବଲ୍ଲଭ ଓଡ଼ିଶାକୁ ମିଶାଇଛନ୍ତି ପ୍ରାଚ୍ୟ-ବିଦ୍ୟାଚର୍ଚ୍ଚା ଓ ଚର୍ଯ୍ୟାର ଉତ୍ସାହ-ଉନ୍ମାଦନାରେ । ସଂସ୍କୃତ ଭାଷା ଓ ସାହିତ୍ୟର ଛାତ୍ର ଆର୍ତ୍ତବଲ୍ଲଭ ସମୟର ପ୍ରାଣସ୍ପନ୍ଦନ ସହିତ ୧୯୨୪ରେ ଅପରିଚିତ ନ ଥିବେ । ସେ ପୁଣି ପଢିଥିଲେ ଏମ୍.ଏ. ସଂସ୍କୃତ ଭାଷା ଓ ସାହିତ୍ୟରେ, କଲିକତାରେ; ଦେଖିଥିବେ ନିଶ୍ଚୟ ବିଭିନ୍ନ Oriental Series ଗ୍ରନ୍ଥମାଳା । Oriental Studies ବା Orientology— ଯାହାକୁ କହନ୍ତି ପ୍ରାଚ୍ୟ-ବିଦ୍ୟାଚର୍ଚ୍ଚା- ଏହା ସେଦିନ ଥିଲା ଭାରତୀୟ ସଂସ୍କୃତି ଇତିହାସରେ ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ ଓ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ । ଆର୍ତ୍ତବଲ୍ଲଭ ଓଡ଼ିଶାକୁ ଜାତୀୟ ସ୍ରୋତରେ ମିଶାଇଛନ୍ତି । Indology 'ଭାରତଚର୍ଚ୍ଚା । 'ପ୍ରାଚୀ' ଓଡ଼ିଶାଚର୍ଚ୍ଚା- ଏତିକି ଯାହା

ପାର୍ଥକ୍ୟ । ଦୁହିଁଙ୍କର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ପୂରା ସମାନ । ପ୍ରାଚ୍ୟ ବିଦ୍ୟାଚର୍ଚ୍ଚାର ଉନ୍ମେଷ ଓ ବିକାଶଧାରା ଲକ୍ଷ୍ୟ ନ କଲେ, ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱକୁ ଠିକ୍ ବୁଝିହେବ ନାହିଁ ।

ଚାରି

ଏଇ ସେପ୍ଟେମ୍ବର ମାସଟି ଭାରତୀୟ ବିଦ୍ୟାଚର୍ଚ୍ଚାର ଇତିହାସରେ ପୁଣ୍ୟ ସ୍ମରଣୀୟ ମାସ । (୨୦୧୪ର ସେପ୍ଟେମ୍ବର ୨୫ ତାରିଖ ଥିଲା ମୁଖବନ୍ଧ ସମଷ୍ଟିର ଲୋକାର୍ପଣ ଦିନ) । ୧୭୮୩ ସେପ୍ଟେମ୍ବର ମାସରେ ଭାରତରେ ପଦାର୍ପଣ କରିଥିଲେ ଉଇଲିଅମ୍ ଜୋନ୍ସ (1746-1794) । ଭାରତରେ ପ୍ରାଚ୍ୟ ବିଦ୍ୟାଚର୍ଚ୍ଚାର ପୁରୋଧା ଓ ପ୍ରବକ୍ତା ସେ; 1784ରେ ଏସିଆଟିକ୍ ସୋସାଇଟି ଗଢନ୍ତି ।

ପୃଥିବୀରେ ସେଦିନ କ'ଣ ଥିଲା ଭାରତର ଭାବମୂର୍ତ୍ତି? ଭାରତ ପାଇଁ ଉଇରୋପର ଘୋର ଘୃଣା ଓ ତୁଚ୍ଛତାବୋଧ ସମୁଦ୍ୟତ ଥିଲା । ଇଉରୋପୀୟ ଧର୍ମ, ସଂସ୍କୃତି ଓ ସାହିତ୍ୟ ବାହାରେ ପୃଥିବୀରେ ଆଉ କିଛି ମହତ୍ତର କି ଅପେକ୍ଷାକୃତ ଭଲ ଧର୍ମ, ସାହିତ୍ୟ ଓ ସଂସ୍କୃତି ଥାଇପାରେ ବୋଲି କୌଣସି ଇଉରୋପୀୟ ଭାବି ପାରୁ ନ ଥିଲେ । ସେମାନଙ୍କର ଧ୍ୟାନଧାରଣା ଓ ବିଚାର କେତେ ସଂକୀର୍ଣ୍ଣ ଥିଲା, ତାହା ଏବେ ଆମର ଧାରଣାତୀତ ବ୍ୟାପାର । ଧର୍ମ କୁଆଡ଼େ ଥିଲା, The beastly devices of the Heathen । ତେଣୁ ଏତିକି ସାନ୍ତ୍ୱନା ଥିଲା ଯେ, ପାଦ୍ରି ଓ ଧର୍ମପ୍ରଚାରକଙ୍କ ମନ ଓ ବିଚାର ଇଉରୋପର ପ୍ରତିନିଧିସ୍ଥାନୀୟ ଶ୍ରେଷ୍ଠ ମନ ଓ ବିଚାର ନ ଥିଲା । ରେନେସାଁର ପରବର୍ତ୍ତୀ କାଳରେ ଇଉରୋପୀୟ ମନୀଷା ସର୍ବଗ୍ରାସୀ ବିଶ୍ୱମାନବିକତା ମନ୍ତ୍ରରେ ଦୀକ୍ଷିତ ହୋଇ ତଦ୍‌ବଳରେ ଏସିଆର ସ୍ୱର୍ଣ୍ଣରୌପ୍ୟ କି ପଣ୍ୟଦ୍ରବ୍ୟ ପ୍ରଭୃତି ପାର୍ଥିବ ସଂପଦରେ ତୁଷ୍ଟ ହୋଇନାହିଁ; ସୁସଭ୍ୟ ଭାରତୀୟଙ୍କ ଧର୍ମ, ସାହିତ୍ୟ, ସଂସ୍କୃତି ଓ ଇତିହାସ ସମ୍ବନ୍ଧରେ ଯଥାର୍ଥ ଜ୍ଞାନ ଆହରଣ କରିବାକୁ ଯଥାସମ୍ଭବ ବ୍ୟଗ୍ର ଓ ଆଗ୍ରହାନ୍ୱିତ ହୋଇଉଠିଛି । ଭାରତର ପାର୍ଥିବ ସଂପଦ ଅଛି, ତଦପେକ୍ଷା ମହତ୍ତର ମେଧା, ମନନ ଓ ଅଧ୍ୟାତ୍ମ ସଂପଦ ଅଛି । ଉଇଲିଆମ୍ ଜୋନ୍ସଙ୍କ ଭାରତ ଆଗମନ ପୂର୍ବରୁ ଇଉରୋପରେ ଭାରତର ଭାଷା, ସାହିତ୍ୟ, ଧର୍ମ ଓ ସଂସ୍କୃତି ଆଦିର ଆବିଷ୍କାର ପ୍ରବୃତ୍ତି ପ୍ରତିଷ୍ଠା ପାଇସାରିଥାଏ, ଆଉ ପ୍ରାଚ୍ୟ ବିଦ୍ୟାବିଷୟକ ଅନୁସନ୍ଧାନ ଓ ଗବେଷଣାର ନୂତନ ବିଦ୍ୟାଟିଏ ଭୂମିଷ୍ଠ ହୋଇସାରିଥାଏ । ସେହି ପ୍ରାଚ୍ୟବିଦ୍ୟା-ଚର୍ଚ୍ଚାର ଦୃଢ ଭିତ୍ତିଟିଏ ସ୍ଥାପନ କରନ୍ତି ମାନ୍ୟବର

ଜୋନ୍ସ । ଭାରତରେ ତାଙ୍କ ଇତିହାସବୋଧ, କଳ୍ପନା ଓ ବିଚାର ଅଭାବିତପୂର୍ବ । ସେ ସ୍ୱୟଂନିଷ୍ଠା ଓ ଆନ୍ତରିକତା ସହିତ ଅଧ୍ୟୟନ କରନ୍ତି ସଂସ୍କୃତ ଭାଷା ଓ ସାହିତ୍ୟ, ପ୍ରତିଷ୍ଠା କରନ୍ତି ଆନ୍ତର୍ଜାତିକ ଏକ ପ୍ରତିଷ୍ଠାନ ଏସିଆଟିକ୍ ସୋସାଇଟି । କାର୍ଯ୍ୟକାରିତା ଅକ୍ଷୁଣ୍ଣ ଏବେ ବି । ମାତ୍ର ୧୭୮୪ରୁ ୯୪- ଦଶବର୍ଷ ଭିତରେ ଜୋନ୍ସ ଭାରତପାଇଁ ଯାହା କରିଛନ୍ତି, ତାହା ଅଘଟନ ଘଟନ ବୋଲି କୁହାଯାଇଥାଏ । ସେ ଇଉରୋପ ପାଖରେ ଭାରତର ମର୍ଯ୍ୟାଦା ପ୍ରତିଷ୍ଠିତ କରିଦେଲେ ସବୁଦିନ ପାଇଁ । ଭାରତର ଗୌରବ ବି ନୂଆ ଭାବରେ ଉଦ୍ଭାସିତ ହୋଇଉଠିଲା ଭାରତୀୟଙ୍କ ଆଗରେ । ଭାରତୀୟଙ୍କ ଆଗରେ, ନୂଆ ଏକ ବାଟରେ ଭାରତର ଆତ୍ମ-ସମୀକ୍ଷାର ସୂତ୍ରପାତ ଘଟିଲା । ଇଉରୋପର ସତର୍କ ସହଯୋଗରେ ଓ ସହାୟତାରେ ଭାରତ ନିଜର ବିସ୍ମୃତ ଅବଲୁପ୍ତ ଆତ୍ମଚୈତନ୍ୟ ଫେରିପାଇଲା । ପ୍ରାଚ୍ୟବିଦ୍ୟା-ଚର୍ଚ୍ଚା ପ୍ରବର୍ତ୍ତିତ ହେଲା ଭାରତରେ; ଅଧିକନ୍ତୁ ତାହା ଇଉରୋପୀୟ ପଣ୍ଡିତଙ୍କ ଭିତରେ ସୀମାବଦ୍ଧ ହୋଇ ରହିଲା ନାହିଁ; କ୍ରମଶଃ ମାତ୍ର ୫୦ ବର୍ଷ ଭିତରେ ଭାରତୀୟ ବିଦ୍ୱାନଗଣ ଐତିହାସିକ ଓ ତୁଳନାତ୍ମକ ନୂଆ ପଦ୍ଧତି-ପ୍ରକରଣର ସନ୍ଧାନ ପାଇ ନିଜର ନଷ୍ଟକୋଷ୍ଠୀ ଉଦ୍ଧାର କରିବାକୁ ଅଣ୍ଟାଭିଡ଼ି ବାହାରିଲେ । 'ନଷ୍ଟ-କୋଷ୍ଠୀ-ଉଦ୍ଧାର" ବାକ୍ୟାଂଶଟି ଭାଷାବିଜ୍ଞାନୀ ସୁନୀତି କୁମାର ଚଟୋପାଧ୍ୟାୟଙ୍କର ଉଦ୍ଭାବିତ ଭାଷା । ଆର୍ତ୍ତବଲ୍ଲଭଙ୍କୁ ସେହିସବୁ ଭାରତୀୟ ପଣ୍ଡିତମାନଙ୍କର ପରବର୍ତ୍ତୀ ଓଡ଼ିଶୀ ସଂସ୍କରଣ ଭାବରେ ଗ୍ରହଣ କରନ୍ତୁ । ସେ ଓଡ଼ିଆଙ୍କ ନଷ୍ଟକୋଷ୍ଠୀ ଉଦ୍ଧାର ଉପଲକ୍ଷେ ଯଥାସାଧ୍ୟ ନିଜର ଜୀବନକୁ ବ୍ୟୟ କରି ଦେଇଥିଲେ ।

ଆର୍ତ୍ତବଲ୍ଲଭ ମଞ୍ଚକୁ ଆସନ୍ତି ୧୯୨୪ରେ, ଜୋନ୍ସ ଆସିବାର ୧୪୧ ବର୍ଷପରେ । ଏହି ୧୪୧ ବର୍ଷ ଥିଲା ପ୍ରାଚ୍ୟବିଦ୍ୟା-ଚର୍ଚ୍ଚାର ଉର୍ବର ଅଧ୍ୟାୟ । ପୋଥିସଂଗ୍ରହ ଓ ପାଠୋଦ୍ଧାର ସାଙ୍ଗକୁ ଲିପି ପାଠୋଦ୍ଧାର, ମୁଦ୍ରା ପାଠୋଦ୍ଧାର, ତାମ୍ରଲେଖ ପାଠୋଦ୍ଧାର, ଶିଳାଲେଖ ପାଠୋଦ୍ଧାର ଓ ନୂଆଗ୍ରନ୍ଥ ଆବିଷ୍କାର ପୂରାଦମ୍‌ରେ ଚାଲିଥିଲା । ଆକୁମାରୀ ହିମାଚଳ । ଭାରତୀୟ ବିଦ୍ୟାପଥିକ କୋଲବ୍ରୁକ୍ (୧୭୬୫-୧୮୩୭) ତାଙ୍କ ବେଳେ ହାତରୁ ୧୦,୦୦୦ ପାଉଣ୍ଡ ଖର୍ଚ୍ଚ କରି ପୋଥି କିଣିଥିଲେ । ପୋଥି ଉଦ୍ଧାର ଓ ନୂଆଗ୍ରନ୍ଥ ଆବିଷ୍କାର ଆଦି ପୋଥି ଚର୍ଚ୍ଚାବିଦ୍ୟାର ଗତିବେଗକୁ ଯଥେଷ୍ଟ ବଢ଼ାଇ ଦେଇଥିଲେ ଆଉ ଜଣେ ଇଉରୋପୀୟ । ଧର୍ମ, ସଂସ୍କୃତି, ଶିକ୍ଷା, ସାହିତ୍ୟ ଓ ଇତିହାସ ଘେନି ଇଉରୋପୀୟ ଆସ୍ପର୍ଦ୍ଧାର ଚୂଡ଼ାନ୍ତ ସେ ଇଂରେଜ ମହୋଦୟ । ନାମ

ଟମାସ୍ ବ୍ୟାବିଂଟନ୍ ମେକଲେ । ତାଙ୍କ ଉପରେ ଯେତେ ରାଗ ଓ ବିମୁଖତା, ସେତେ ଶ୍ରଦ୍ଧା ଓ ଭକ୍ତି ଲେଖକର । ସେ କ'ଣ କହିଲେ ଜାଣନ୍ତି ୧୮୩୫ ରେ? କହିଲେ, "A Single Self of good European Library was worth the whole native literature of India and Arabia" ଆମ ସାହିତ୍ୟ ସଂସ୍କୃତିପ୍ରତି ତୁଚ୍ଛତାବୋଧର ଅତ୍ୟୁତ୍କଟ ଭାଷା ତାଙ୍କର । ସେତେବେଳକୁ ପୁଣି ସଂସ୍କୃତ ସାହିତ୍ୟର ଉଜ୍ଜ୍ୱଳବନ୍ତ ଦିଗଦିଗନ୍ତ ଉଦ୍ଭାସିତ ହୋଇ ଉଠିଲାଣି । କାଳିଦାସଙ୍କ 'ଅଭିଜ୍ଞାନ ଶକୁନ୍ତଳା'ର ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ଜାଣିଲେଣି ସମସ୍ତେ । ସେ ଜାଣିଥିଲେ ସବୁ, ତଥାପି ଉଦ୍ବୋଧହୀନ ଭାବରେ ଡାକି କହିଛନ୍ତି, I am certainly never met with an orientalist who ventured to maintain that the Arabic and Sanskrit poetry could be compared to that of the great European nations" । ଉଭୟ ଉଚ୍ଚକୋଟିର ସାହିତ୍ୟ-ସୃଷ୍ଟିରେ ଓ ଇତିହାସ-ଉପାଦାନ ସଂପନ୍ନତାରେ ତାଙ୍କ ପାଇଁ ଇଉରୋପର ଉତ୍କର୍ଷ ଅପରିସୀମ । ତେଣୁ ସଂସ୍କୃତ ଭାଷା ସାହିତ୍ୟ- ଅଧ୍ୟୟନ ଅର୍ଥହୀନ । ସେ ବୁଝାଇଛନ୍ତି ସେଦିନ, "It is said that Sanskrit and Arabic are the languages in which the sacred books of a hundred millions of people are written,and they are, on that account entitled to peculiar encouragement. Assduredly, it is the duty of the British Government in India to be not only tolerant, but neutral on all religious questions. But to encourage the study of a literature, admitted to be of small intrinsic value, only because that literature inculcates the most serious errors on most important subjects, is a course hardly reconcilable with reason, with morality, or even with that very neutrality which ought, as we all agree, to be sacredly preserved. It is confessed that a language is barren of useful knowledge. We are to teach it because it is fruitful of monstrons superstitions. We are to teach false history, false astronomy, false medicine, because we find them in company with a false religion. କ'ଣ କରାଯିବ? ସଂସ୍କୃତ ବହିଛପା ବନ୍ଦ ହେବ, କଲିକତାରୁ ସଂସ୍କୃତ କଲେଜଟିକୁ ଉଠେଇ ଦିଆଯିବ । ଘୋଷଣାକଲେ, I would at once stop the printing of Arabic and Sanskrit books. I would abolish the mudrasa and the Sanskrit college at Calcutta.

(Macaulay minute, 2nd Feb, 1835) ଧନ୍ୟ କହିବା ଇଂରେଜଟିର ତୁମୁଳ ସାହସ ଓ ବିରାଟ ପରିକଳ୍ପନାକୁ । ଭାରତ ତାଙ୍କ ପାଖରେ ଗୋଟିଏ ଦିଗରୁ ଚିରଋଣୀ ନିଶ୍ଚୟ । ସେ ଯେବେ ସେଦିନ ଆମକୁ ନୂଆ ଶିକ୍ଷାଦୀକ୍ଷାରେ ଦୀକ୍ଷିତ କରି ନ ଥାନ୍ତେ, ଏବେ ବି ଭାରତରେ ସୂର୍ଯ୍ୟ ପୃଥିବୀ ଚାରିପଟରେ ଘୂରୁଥାନ୍ତା ଅବିରତ । ଆଧୁନିକ ଭାରତ ତାଙ୍କରି ପରିକଳ୍ପନାର ଦାନ । ତେବେ ସେ ଆମ ସାହିତ୍ୟ ସଂସ୍କୃତି ସମ୍ପର୍କରେ ଯେଉଁ ଅନୁଦାର ଓ ଅନାଦରସମ୍ମତ ମନ୍ତବ୍ୟ କରିଛନ୍ତି, ତାହା କେବଳ ଔଦ୍ଧତ୍ୟର ପରିଚାୟକ ନୁହେଁ; ଅଜ୍ଞାନତା, ଅନୁଦାରତା ଓ ଧର୍ମାନ୍ଧତାର ଅଭିଜ୍ଞାନ ବି । ଅପମାନ ଜୀର୍ଣ୍ଣ କରିପାରିନାହାନ୍ତି ଐତିହ୍ୟ-ପରିଶୀଳିତ ଭାରତୀୟଗଣ । ଆମ ସାହିତ୍ୟ ଓ ସଂସ୍କୃତିର ଲୁପ୍ତ ରତ୍ନୋଦ୍ଧାର କାର୍ଯ୍ୟରେ ଲାଗିପଡ଼ିଛନ୍ତି ପ୍ରାଣପଣେ । ପ୍ରାଣାନ୍ତକ ଉଦ୍ୟମରେ ଚାଲିଛି ଏଣିକି ପୋଥିସଂଗ୍ରହ, ପାଠୋଦ୍ଧାର, ପୋଥି ସଂରକ୍ଷଣ, ନୂଆଗ୍ରନ୍ଥ ଆବିଷ୍କାର, ସଂପାଦନା, ଟୀକାୟନ, ଉପକ୍ରମଣିକା ରଚନା ଓ ସାହିତ୍ୟ ସମାଲୋଚନା । ପାଲି, ପ୍ରାକୃତ, ସଂସ୍କୃତ, ଅପଭ୍ରଂଶ ଭାଷାରେ ରଚିତ ବିଭିନ୍ନ ଧର୍ମ, ସାହିତ୍ୟ, ଦର୍ଶନ, ତନ୍ତ୍ରମନ୍ତ୍ର, ରାଜନୀତି ଓ ଇତିହାସ ସଂକ୍ରାନ୍ତ ସୁଦୁର୍ଲଭ ରତ୍ନରାଶି ବିସ୍ମୃତିଗର୍ଭରୁ ଫୁଟି ଉଠିଛନ୍ତି ଗୋଟିକ ପରେ ଗୋଟିଏ । ବିଶ୍ୱ ଚମତ୍କୃତ ହୋଇଛି । Oriental Research ଅନୁଷ୍ଠାନମାନ ଗଢିଉଠିଛି ଭାରତସାରା । ଉଭୟ ବିଦେଶୀୟ ଓ ସ୍ୱଦେଶୀୟ ଗବେଷକମାନେ ଅକ୍ଲାନ୍ତ ପୋଥିଉଦ୍ଧାର ଓ ପାଠୋଦ୍ଧାର କାର୍ଯ୍ୟରେ ଶ୍ରମ ଓ ସମୟ ଆନ୍ତରିକଭାବରେ ନିୟୋଜିତ କରିଛନ୍ତି । ବିଦେଶୀ ଭାରତ-ପଥିକମାନଙ୍କ ମଧ୍ୟରେ ଅଛନ୍ତି କୋଲବ୍ରୁକ୍, ଶ୍ଲେଗେଲ୍, ବୁର୍ନୁଫ, ମାକ୍ସମୁଲାର, ଲେଭି, ଉଇଣ୍ଟରନିଜ, ଗ୍ରୀୟରସନ (୧୮୫୧-୧୯୪୧), ମାକଡ଼ୋନେଲ୍ (୧୮୫୪-୧୯୩୦), କୀଥ୍ (୧୮୫୧-୧୯୪୧) ଆଦି ଅର୍ଦ୍ଧଶତାଧିକ ବୁଦ୍ଧିଦୀପ୍ତ ଗବେଷକ । ଭାରତୀୟ ନାମ ଶତାଧିକ । ଦିକ୍‌ପାଳମାନଙ୍କ ନାମ ଶୁଣନ୍ତୁ । ଭାଓଦାଜୀ, ରାଜେନ୍ଦ୍ରଲାଲ ମିତ୍ର, ଗୋପାଳ ଭଣ୍ଡାରକର,ଇନ୍ଦ୍ରଜୀ, କୁପ୍ପୁସ୍ୱାମୀ ଶାସ୍ତ୍ରୀ, ହରପ୍ରସାଦ ଶାସ୍ତ୍ରୀ, ହୀରାଚାନ୍ଦ ଓଝା, ଖ୍ୟାମାଶାସ୍ତ୍ରୀ, ଗଙ୍ଗାନାଥ ଝା, ବେଲଭେଲକର । ଆର୍ତ୍ତବଲ୍ଲଭଙ୍କ ସମସାମୟିକ ହେଉଛନ୍ତି- ବିଷ୍ଣୁ ସୀତାରାମ ସୁକଣ୍ଠକର, ସୁରେନ୍ଦ୍ର ଦାସଗୁପ୍ତ, ଗୋପୀନାଥ କବିରାଜ, ସୁଶୀଲକୁମାର ଦେ, ସୁନୀତି କୁମାର ଚଟ୍ଟୋପାଧ୍ୟାୟ ଓ ରାହୁଲ ସାଂକୃତ୍ୟାୟନ । ପ୍ରାଚୀସମିତି ୧୯୨୫ ରୁ ୧୯୩୩ ମଧ୍ୟରେ ୪୦ଟି ପୋଥିର ପାଠୋଦ୍ଧାର କରିଛି । ଏହି

ସମୟରେ ଭାଣ୍ଡାରକର ଓରିଏଣ୍ଟାଲ୍ ରିସର୍ଚ୍ଚ ଇନ୍‌ଷ୍ଟିଚିଉସନ୍‌ରେ ୨୦୦୦ ବର୍ଷଧରି ପ୍ରଚଳିତ ମହାଭାରତର ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରାଯାଉଥିଲା ସୁକଣ୍ଠକରଙ୍କ ଅଧିନାୟକତ୍ୱରେ । 'ଆଦିପର୍ବ'ର ଶ୍ରେଷ୍ଠ ଭାଗଟି ପ୍ରକାଶ ପାଏ ୧୯୩୩ରେ, ଗୋଟିଏ ଦୀର୍ଘ ଉପକ୍ରମଣିକା ସହିତ । ପ୍ରାମାଣ୍ୟ ସଂସ୍କରଣ କାମରେ ଯେଉଁ ରୀତି ବା ପଦ୍ଧତି ଅନୁସୃତ ହେବା ଉଚିତ, ତାହାରି ଦିଗ୍‌ଦର୍ଶନ ଥିଲା ଏହି Prolegomena । ସେଠାରେ କେତେ ଅର୍ଥ, କେତେ ପୋଥି, କେତେ ବିଦ୍ୱାନ୍ ପଣ୍ଡିତ- ଅପରିକଳ୍ପନୀୟ । କାମଟି ଆମ ଧାରଣାତୀତ ବ୍ୟାପାର । ମହାଭାରତର ପ୍ରତ୍ୟେକ ଶବ୍ଦର ଐତିହାସିକ ଓ ଭାଷାତାତ୍ତ୍ୱିକ ଅଧ୍ୟୟନ ଉପରେ ପ୍ରତିଷ୍ଠିତ ତାହାର ଶୁଦ୍ଧପାଠ ! ପୂରା ୧୭ ବର୍ଷର ଶ୍ରମ, ସମୟ ଓ ଅଭିନିବେଶ । ଯେତେଦୂର ସମ୍ଭବ, ଆର୍ତ୍ତବଲ୍ଲଭ ପ୍ରସିଦ୍ଧ ଉପକ୍ରମଣିକା (Prolegomena)ଟିକୁ ପଢିନାହାନ୍ତି, ପଢିଥିଲେ ପ୍ରମାଣଥାନ୍ତା କେଉଁ ମୁଖବନ୍ଧରେ ହୁଏତ । ତେବେ ଆର୍ତ୍ତବଲ୍ଲଭ ଇଉରୋପୀୟ ଅବଜ୍ଞା ଓ ଅପମାନର ଜ୍ୱାଳା ଓ ଯନ୍ତ୍ରଣା ନିଜ ଦେହକୁ ଘେନିଛନ୍ତି । ଭାରତୀୟ ଧର୍ମ, ଦର୍ଶନ ଓ ସାହିତ୍ୟ ସଂସ୍କୃତି ଇଉରୋପୀୟ ଧର୍ମ, ଦର୍ଶନ କି ସାହିତ୍ୟ, ସଂସ୍କୃତି ତୁଳନାରେ କୌଣସି ଗୁଣରେ ନ୍ୟୂନ ନୁହେଁ; ବରଂ ଇଉରୋପର ବେଦବେଦାନ୍ତ ନାହିଁ, କାଳିଦାସଙ୍କ ସମକକ୍ଷ କବି ନାହାନ୍ତି । ଇଉରୋପର ପାଦ୍ରି ଓ ଧର୍ମପ୍ରଚାରକ ଅବଶ୍ୟ ଓଡ଼ିଶା ନାମ ଧରିନାହାନ୍ତି, କି ମେକେଲେ ଓଡ଼ିଆ ସାହିତ୍ୟ କଥା ଉଠାଇ ନାହାନ୍ତି; ତେବେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ମେକେଲ୍‌ଙ୍କ ଶିକ୍ଷାବିଚାର-ସଂସ୍କାର-ପୁଷ୍ଟ ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କ ଉନାସିକ ଶ୍ରଦ୍ଧା ଓ ସମ୍ମାନବୋଧ କଥା ସମସ୍ତେ ଜାଣନ୍ତି । ଆର୍ତ୍ତବଲ୍ଲଭ ସମ୍ମୁଖୀନ ହୋଇଛନ୍ତି ସବୁର; ଆଉ ଘୋଷଣା କରିଛନ୍ତି, ଓଡ଼ିଆ ବଡ଼ ବଢିଆ ଜାତି, ଓଡ଼ିଆ ଭାଷା ଉନ୍ନତ ଭାଷା, ଓଡ଼ିଆ ସାହିତ୍ୟ ଉଚ୍ଚକୋଟିର ସାହିତ୍ୟ । ମୁଖବନ୍ଧଗୁଡ଼ିକରେ ଲକ୍ଷ୍ୟକରି ହେବ ଘୋର ଧର୍ମଦର୍ଶନ ସଚେତନତା ଓ ଉଗ୍ର ଉତ୍କଳୀୟତା, ପୁନର୍ଜାଗରଣବୋଧ ଓ ଇଉରୋପୀୟ ସାହିତ୍ୟ ସଚେତନତା । ଯେମିତି ମନେଅଛି ତାଙ୍କର ସବୁ । ପାଦ୍ରି ଓ ଧର୍ମ ପ୍ରଚାରକଙ୍କ ଅବଜ୍ଞା କଥା, ମେକେଲ୍‌ଙ୍କ ଇଉରୋପୀୟ ସାହିତ୍ୟ ଆସ୍ଫାଳନ କଥା ଓ ପ୍ରତିବେଶୀମାନଙ୍କର ଓଡ଼ିଆ ଭାଷା ସାହିତ୍ୟ ପ୍ରତି ତୁଚ୍ଛତାବୋଧ କଥା । ସେ ଓଡ଼ିଶାରେ ପ୍ରଚଳିତ ଧର୍ମଦର୍ଶନର ମହତ୍ତ୍ୱ ବଖାଣିଛନ୍ତି । ବଙ୍ଗାଳୀମାନଙ୍କ ଭୁଲଭାଲ ଓଡ଼ିଆ ସାହିତ୍ୟ ବିଚାର ପ୍ରତିଷେଧକଳ୍ପେ ଶାଣିତ ପ୍ରତ୍ୟୁତ୍ତର ରଖିଛନ୍ତି । ଦାନ୍ତେ କି ଗେଟେଙ୍କଠାରୁ ଓଡ଼ିଆ କବିଏ ନ୍ୟୂନ ନୁହନ୍ତି ବୋଲି ବଖାଣିଛନ୍ତି,

ଥାଉ ନ ଥାଉ ବିଚାରର ଯୁକ୍ତିଯୁକ୍ତତା, କି ପ୍ରାସଙ୍ଗିକତା । ସେଦିନ ତାଙ୍କ ପାଇଁ ସୁବିଚାର ଅପେକ୍ଷା ଭାବପ୍ରବଣତାର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପ୍ରାଚ୍ୟ ବଦ୍ୟାଚର୍ଚ୍ଚା ଓ ଚର୍ଯ୍ୟାର ଗଙ୍ଗାକୁ ସେ ଓଡ଼ିଶାକୁ ଆଣିଛନ୍ତି; ଅବଲୁପ୍ତ ଆତ୍ମଚୈତନ୍ୟ ଫେରାଇ ଦେଇଛନ୍ତି । ପ୍ରାଚୀ ସମିତି ପ୍ରାଚ୍ୟ ଗବେଷଣା କେନ୍ଦ୍ରଗୁଡ଼ିକର ମିନି ଓଡ଼ିଶୀ ସଂସ୍କରଣ ନିଶ୍ଚୟ । ମହତ୍ତମ ଥିଲା ଏସିଆଟକ୍ ସୋସାଇଟି । ୨୩୧ ବର୍ଷ ହେଲା ସୋସାଇଟି ଅଛି, Bibliotheca Indica ଗ୍ରନ୍ଥମାଳା ପ୍ରକାଶପାଉଛି । ସେମିତି ଯଦି ପ୍ରାଚୀ ସମିତି ଥା'ନ୍ତା, ପ୍ରାଚୀ ଗ୍ରନ୍ଥମାଳା ପ୍ରକାଶ ପାଉଥାନ୍ତା; କେମିତି ହୁଅନ୍ତା !

**ପାଞ୍ଚ**

ଇଉରୋପୀୟମାନେ ଯେଉଁ ଦୃଷ୍ଟିରେ ଦେଖୁଥିଲେ ଭାରତୀୟଙ୍କ ଧର୍ମଦର୍ଶନ ଓ ସାହିତ୍ୟକୁ, ବଙ୍ଗାଳୀମାନେ ପ୍ରାୟ ସେହି ଦୃଷ୍ଟିରେ ଦେଖୁଥିଲେ ଓଡ଼ିଶାର ଧର୍ମ, ଦର୍ଶନ ଓ ସାହିତ୍ୟକୁ । ସ୍ୱାଭିମାନ ଦୂରର କଥା, ଜାତି ହିସାବରେ ସେଦିନ ଆମର ଅସ୍ତିତ୍ୱ ପର୍ଯ୍ୟନ୍ତ ବିପନ୍ନ ହୋଇ ପଡ଼ିଥିଲା । ବଙ୍ଗାଳୀ ଜାତି ବି ବିଶେଷ ଭଲ ନଥିଲେ । ଭାଷା ଓ ଧର୍ମ ନିର୍ବିଶେଷରେ ଭାରତର ପ୍ରାୟ ସବୁ ଜାତି ଅଳ୍ପ ବହୁତେ ହତଭାଗ୍ୟ ଥିଲେ । କୀର୍ତ୍ତିବନ୍ତ ପୂର୍ବପୁରୁଷଙ୍କ କୀର୍ତ୍ତି ସମ୍ବନ୍ଧରେ କେହି କିଛି ଜାଣି ନ ଥିଲେ । ସର୍ବତ୍ର ସ୍ମୃତିଭ୍ରଂଶ, ଘୋର ବିସ୍ମୃତି । To Forget is to die । ପ୍ରକୃତରେ ଭାରତୀୟମାନେ ସେଦିନ ଥିଲେ ଜୀବନ୍ମୃତ । ସର୍ବଭାରତୀୟ ସ୍ତରରେ ଯାହା, ପ୍ରାଦେଶିକ ସ୍ତରରେ ସେଇଆ । ଜାତିମାତ୍ରେ ମୃତ । କାହାର ଆତ୍ମଚୈତନ୍ୟ ଆଗେ ଫେରିଛି ତ, କାହାର ପଛେ । ଏତିକି ଯାହା ପାର୍ଥକ୍ୟ । ଜୀବନ୍ମୃତ ଜାତି ଭିତରେ ଓଡ଼ିଆ ଅଗ୍ରଗଣ୍ୟ ଜାତି ଥିଲା ବୋଧହୁଏ । ପୂରା ମନୋବଳହୀନ, ପୂରା ବାହୁବଳହୀନ । ପୂର୍ବପୁରୁଷଙ୍କ ସୁକୀର୍ତ୍ତି ସମ୍ବନ୍ଧରେ ପୂରା ଅନବଗତ । କୋଣାର୍କ ମନ୍ଦିର ଥିବା କଥା ଜଣା ନ ଥିଲା, ଭାଷା ସାହିତ୍ୟ କୀର୍ତ୍ତି ତ ଦୂରର କଥା । କିଏ ମନେ ପକାଇଦେବ ତାଙ୍କ ପୂର୍ବପୁରୁଷଙ୍କ କୀର୍ତ୍ତିଗାଥା? ସ୍ମୃତିରେ ପରିତ୍ରାଣ । ଉପନିଷଦରେ କୁହାଯାଇଛି, ସ୍ମୃତି ଆକାଶଠୁଁ ମହତ୍ତର । ସ୍ମରଣକରି ନ ପାରିଲେ କିଛି ଶୁଭେନାହିଁ, କିଛି ମନନ କରିହୁଏ ନାହିଁ, କିଛି ବି ବୁଝି ହୁଏନାହିଁ, (ଛାନ୍ଦୋଗ୍ୟୋପନିଷଦ୍) । ସ୍ମରଣ କରିପାରିଲେ ଶୁଭେ, ମନନ କରିହୁଏ ଓ ବୁଝିହୁଏ । ଶଙ୍କରାଚାର୍ଯ୍ୟ ବୁଝାଇଛନ୍ତି, ସ୍ମରଣକାରୀର ସ୍ମୃତିଶକ୍ତି ଥିଲେ ସବୁ ବସ୍ତୁ ସାର୍ଥକ ହୁଏ ।

କିଏ ଉଜ୍ଜୀବିତ କରିବ ଓଡ଼ିଆଙ୍କ ସ୍ମୃତି ଓ ଆଶାବିଶ୍ୱାସ? କିଏ ବୁଝାଇବ ଓଡ଼ିଆଙ୍କୁ ଓଡ଼ିଆ ଭାଷା ଉନ୍ନତ ଭାଷା- ଯେଉଁ ଭାଷାର ପାଞ୍ଚଶହ ବର୍ଷର ସମୃଦ୍ଧ ସାହିତ୍ୟ ଅଛି ।

ପରମ ହିତୈଷୀ ଜନ୍ ବୀମସ୍(୧୮୩୭-୧୯୦୨) ସେ ଦାୟିତ୍ୱ ଗ୍ରହଣ କରିଛନ୍ତି ଅଭିଭାବକ ଭାବରେ । ଶୁଣାଇ କହିଛନ୍ତି, ଓଡ଼ିଆ ଭାଷା ଉନ୍ନତ ଭାଷା- ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ବଡ଼ ଆକର୍ଷଣୀୟ ଭାଷା ବି— One of the most interesting language of the Aryan group, especially because, owing its long isolation from the rest, it has preserved words and forms which have perished from them, and exhibits at times very singular developments of its own. ସେ ଓଡ଼ିଆଙ୍କୁ ୮୨ଟି ଓଡ଼ିଆ ପୋଥିର ପରିଚୟ ପ୍ରଦାନ କରିଥିଲେ, ତନ୍ମଧ୍ୟରେ ପ୍ରାଚୀ ଆବିଷ୍କୃତ ପ୍ରେମପଞ୍ଚାମୃତ କାବ୍ୟର ନାମ ଅଛି ମଧ୍ୟ । ସେ ପ୍ରବର୍ତ୍ତାଇ ଥିଲେ ଓଡ଼ିଆଙ୍କୁ ସେଇସବୁ ପୋଥି ପଢିବାକୁ । କାହିଁକି? ଭାଷାକୁ ଚିହ୍ନିବାକ ହେଲେ, ଜାତିକୁ ଚିହ୍ନିବାକୁ ହେଲେ, ପୋଥି ଅବଶ୍ୟ ପଢିବାକୁ ହେବ । କିଏ ଜାଣିଥିଲା ସେଦିନ ଓଡ଼ିଆ ଭାଷା କେମିତିକା, କେମିତିକା ତା'ର ଉନ୍ନତି ଓ ସାହିତ୍ୟସମୃଦ୍ଧି? ପ୍ରଥମେ ଖୋଜି ଦେଖିବାକୁ ହେବ କି କି ବହି ଅଛି ଆମ ଭାଷାରେ । ପଢାଯିବ ଦ୍ୱିତୀୟରେ; କେଉଁ କେଉଁ ଗ୍ରନ୍ଥ ସଂରକ୍ଷଣଯୋଗ୍ୟ ଓ ମୁଦ୍ରଣମୂଲ୍ୟବାନ୍ ତାହା ନିର୍ଣ୍ଣୟ କରାଯିବ । ତୃତୀୟରେ ଗବେଷକ ଓ ସମାଲୋଚକଗଣ ସେଗୁଡ଼ିକର ଶୁଦ୍ଧ ପାଠୋଦ୍ଧାର କରିବେ ଓ ସୁସଂପାଦନା ମାଧ୍ୟମରେ ସେଗୁଡ଼ିକ ଛାପିବେ । ଏଠାରେ ଓଡ଼ିଆଙ୍କ ପାଇଁ ଥିଲା ସ୍ୱତନ୍ତ୍ର ନିର୍ଦ୍ଦେଶ- We should then be able to place in the hands of the students real genuine native words from which he could learn what the language he was studying really was, instead of, as at present, misleading him by trash like the **Bagh-o-Bahar or Baital pashis**, composed in a language which no native even speaks, and which he can with difficulty understand (The Indigenous Literature of Ori(di)ssa, March 1, 1872) ଓଡ଼ିଶା ଜନ୍ ବୀମସ୍ଙ୍କ କଥା ଶୁଣିଛି । ସୌଭାଗ୍ୟର କଥା । ଆହ୍ୱାନଟି ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିଥିଲା ଆର୍ତ୍ତବଲ୍ଲଭଙ୍କୁ । ପ୍ରାଚୀ ପ୍ରତିଷ୍ଠିତ । ଜନ୍ ବୀମସ୍ଙ୍କ ଉଦ୍ଦେଶ୍ୟ ଚରିତାର୍ଥ । ଊନବିଂଶ ଶତାବ୍ଦୀର ଶେଷଭାଗରୁ ଓଡ଼ିଶା ସର୍ବଭାରତୀୟ ସ୍ତରର ପୋଥିଖୋଜା ଉଲ୍ଲାସ ଓ ଉନ୍ମାଦନାରେ ଯୋଗ ଦେଇଛି । ପୋଥିଖୋଜା ମାନେ ପୂର୍ବପୁରୁଷଙ୍କ କୀର୍ତ୍ତିଖୋଜା,

ଲୁପ୍ତରତ୍ନ ଖୋଜା । ପୋଥିଖୋଜା ମାନେ ପ୍ରକୃତ ଓଡ଼ିଆ ଭାଷାଖୋଜା, ସାହିତ୍ୟଖୋଜା ଓ ଆତ୍ମପରିଚିତିଖୋଜା । ଆତ୍ମସମ୍ମାନ ଅନୁସନ୍ଧାନ ବି ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ତଥା ପ୍ରତିଷ୍ଠା-ପ୍ରତିପତ୍ତି ନଖଶିଖ ପୋଥିଖୋଜା ସହିତ ସଂଶ୍ଳିଷ୍ଟ ।

ତେଣୁ ପ୍ରାୟ ୧୦୦ବର୍ଷ ବ୍ୟାପୀ ପୋଥିଖୋଜା ଉତ୍ସାହ ଉନ୍ମାଦନାଠାରୁ ପୋଥିଖୋଜା ପର୍ଯ୍ୟନ୍ତ ଦୀର୍ଘ ଇତିହାସ ନ ଜାଣିଲେ ଆର୍ତ୍ତବଲ୍ଲଭଙ୍କୁ ଚିହ୍ନି ଚିହ୍ନାଇ ହେବନାହିଁ । ୧୮୬୭ରୁ କୁଆଡେ ପୋଥିସଂଗ୍ରହର ଉତ୍ସାହ ଭୂମିଷ୍ଠ । ଏଣିକି ପୋଥିସଂଗ୍ରହ, ପୋଥିପାଠ, ପୋଥିସଂରକ୍ଷଣ, ସଂପାଦନା, ଟୀକାପ୍ରସ୍ତୁତି, ପ୍ରକାଶନ ଓ ବିପଣନ କ୍ରମଶଃ ଦିନକୁଦିନ ବଳବତ୍ତର ହୋଇଉଠିଛି । ନାନା ସାଂସ୍କୃତିକ ଅନୁଷ୍ଠାନ ଗଢିଉଠିଛି । ଏପରିକି ତାଳପତ୍ର ପୋଥି ଉଦ୍ଧାରଣ କମ୍ପାନୀ ଗଢାହୋଇଛି । ଗୌରୀଶଙ୍କର ରାୟ, ବନମାଳୀ ସିଂହ, କପିଳେଶ୍ୱର ବିଦ୍ୟାଭୂଷଣ, ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ, ଗୋବିନ୍ଦ ରଥ ଓ ମୃତ୍ୟୁଞ୍ଜୟ ରଥ ପ୍ରମୁଖ ଦେଶହିତୈଷୀ, ଓଡ଼ିଆପ୍ରାଣ, ଓଡ଼ିଆ ସାହିତ୍ୟପ୍ରୀତ ବିଦ୍ୱାନଗଣ ପୋଥିସଂଗ୍ରହ, ପାଠୋଦ୍ଧାର, ଶୁଦ୍ଧପାଠନିର୍ଣ୍ଣୟ, ଟୀକା ପ୍ରସ୍ତୁତି ଏବଂ ଆଲୋଚନା କ୍ଷେତ୍ରରେ ଆତ୍ମନିୟୋଗ କରିଛନ୍ତି । ଭଲ ଭଲ ଓଡ଼ିଆ କାବ୍ୟକବିତା ମୁଦ୍ରିତ ଓ ପ୍ରକାଶିତ । ପ୍ରାଚୀ ସମିତିର ଜନ୍ମ ପୂର୍ବରୁ ରାଜକିଶୋର ଦାସ ପାଞ୍ଚଶହ ବର୍ଷର ପ୍ରଚଳିତ ଓଡ଼ିଆ ଭାଗବତର ଶୁଦ୍ଧପାଠ ଓ ସଂପାଦନା କରି ପ୍ରକାଶକରି ସାରିଥାନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଶିଷ୍ଟ ରତ୍ନରାଶି ଆଲୋକ ଦେଖି ସାରିଥାଏ । ପ୍ରକାଶନ ଓ ବିପଣନ ହାତଧରାଧରି ହୋଇ ଚାଲିଥାନ୍ତି । ଉଚ୍ଚକୋଟୀର କାବ୍ୟଗୁଡ଼ିକର ସଂଗ୍ରହ ଓ ଟୀକାୟନ ଚାଲିଥାଏ ।

ଆର୍ତ୍ତବଲ୍ଲଭ ନୂଆ କଥା କଲେ କ'ଣ? ପ୍ରାଚ୍ୟ ବିଦ୍ୟାଚର୍ଚ୍ଚା ଯେମିତି ଆରମ୍ଭ ହୋଇଥିଲା ଇଉରୋପରେ ପ୍ରଥମେ, ଠିକ୍ ସେମିତି ପ୍ରାଚୀନ ଓଡ଼ିଆ ସାହିତ୍ୟଚର୍ଚ୍ଚା ବି ପ୍ରଥମେ ଆରମ୍ଭ ହୋଇଥିଲା ଓଡ଼ିଶା ବାହାରେ । କଲିକତାରେ ମନମୋହନ ଚକ୍ରବର୍ତ୍ତୀ (1863-1918) ପୋଥିରୁ ମୂଳ ଓଡ଼ିଆ କାବ୍ୟକବିତା ପଢି ତା'ର ଯଥାର୍ଥ ମୂଲ୍ୟାୟନ ପ୍ରସ୍ତୁତ କରନ୍ତି ୧୮୯୭-୯୮ରେ । ଇଂରାଜୀରେ Language and Literature of Orissa ବେଶ୍ ବଳିଷ୍ଠ ଗବେଷଣାତ୍ମକ ଲେଖା । ପ୍ରାଚୀ ସମିତି ପ୍ରତିଷ୍ଠାର ଅବ୍ୟବହିତ ପୂର୍ବରୁ ବିଜୟ ଚନ୍ଦ୍ର ମଜୁମଦାର (1862-1942) ସଂପାଦନା କରିଥାନ୍ତି Typical Selections from Oriya Litreature । ୧ମ ଓ ୨ୟ ଭାଗ ଯଥାକ୍ରମେ ୧୯୨୧

ଓ ୧୯୨୩ ରେ ପ୍ରକାଶପାଏ । ତାହାର ମୁଖବନ୍ଧ ବି କିଛି କମ୍ ବିଦ୍‌ବତ୍ତାପୂର୍ଣ୍ଣ ନୁହେଁ । ଓଡ଼ିଆ କବିତା ନିର୍ବାଚନ ଓ ତା'ର ମୂଲ୍ୟାୟନ ଯଥାସମ୍ଭବ ଭଲ । ଉପର୍ଯ୍ୟୁକ୍ତ ଦୁଇ ବିଦ୍ୱାନଙ୍କ ଓଡ଼ିଆଭାଷା ପ୍ରୀତି, ଗବେଷଣାତ୍ମକ ମନୋବୃତ୍ତି, ରସାନୁଭୂତି ଓ ଇତିହାସବୋଧ ତଥା ବିଶ୍ଳେଷଣାତ୍ମକ ସାହିତ୍ୟବିଚାର ପଦ୍ଧତି ପ୍ରଶଂସାର୍ହ ନିଶ୍ଚୟ । ଆମ ପଣ୍ଡିତ ଗୋପୀନାଥ ନନ୍ଦ ବି ଲେଖି ସାରିଥାନ୍ତି ଏକ ଅଦ୍ଭୁତ ଗ୍ରନ୍ଥ । ନାମ **ଶ୍ରୀଭାରତ ଦର୍ପଣ** । ସଂସ୍କୃତ ମହାଭାରତ ଓ ଓଡ଼ିଆ ମହାଭାରତର ତୁଳନାତ୍ମକ ଅଧ୍ୟୟନର ଅମଳିନ କୀର୍ତ୍ତି । ପୋଥିସଂଗ୍ରହ, ଉଦ୍ଧୋଦ୍ଧାର, ପାଠୋଦ୍ଧାର, ଟୀକାପ୍ରସ୍ତୁତି ଓ ସାହିତ୍ୟବିଚାର (Higher Criticism) ସବୁ ଥିଲା । ଆର୍ତ୍ତବଲ୍ଲଭ କଲେ କ'ଣ? ମଞ୍ଚ ପ୍ରସ୍ତୁତ ଥାଏ, ନାଟକ ଆରମ୍ଭ ହୋଇସାରିଥାଏ; ନାୟକ ପହଞ୍ଚନ୍ତି । ଓଡ଼ିଶାର ପୋଥି ଉତ୍ସାହ ଉଦ୍ଭାବନାର ଚୂଡ଼ାନ୍ତ ପ୍ରାଚୀ ବୋଧହୁଏ, ବେସରକାରୀ ଉଦ୍ୟମର ଶେଷ ସଫଳତା । ସବୁ ଥିଲା ନିଶ୍ଚୟ । ପୋଥିସଂଗ୍ରହଠାରୁ ଶୁଦ୍ଧପାଠ ସଂପାଦନା ପର୍ଯ୍ୟନ୍ତ । ଟୀକା ପ୍ରସ୍ତୁତିଠାରୁ ଗ୍ରନ୍ଥ ପ୍ରକାଶନ ଓ ବିପଣନ ପର୍ଯ୍ୟନ୍ତ, ଟୀକାସଂଗ୍ରହଠାରୁ ନୂଆ ଟୀକା ପ୍ରସ୍ତୁତି ପର୍ଯ୍ୟନ୍ତ ସବୁଥିଲା ନାନା ବିଚ୍ଛିନ୍ନର ଦ୍ୱୀପଭୂମି । ସେହି ସବୁ ବିଚ୍ଛିନ୍ନ ଦ୍ୱୀପପୁଞ୍ଜଙ୍କୁ ଏକ ମହାଦେଶୀୟ ଅଖଣ୍ଡତାରେ ପ୍ରତିଷ୍ଠା କରିବା ହିଁ ଆର୍ତ୍ତବଲ୍ଲଭଙ୍କର ପ୍ରଧାନ କୀର୍ତ୍ତି । ପ୍ରାଚ୍ୟ ପ୍ରଦେଶରେ ବଙ୍ଗୀୟ ସାହିତ୍ୟ ପରିଷଦର ପୋଥିସଂଗ୍ରହ, ସଂରକ୍ଷଣ ଓ ପ୍ରକାଶନ ଥିଲା, ଅଥଚ ଉତ୍କଳ ସାହିତ୍ୟ ସମାଜର ଉଦ୍ୟମ ନ ଥିଲା । କିଏ ନେବେ ଦାୟିତ୍ୱ ପୋଥିଭର୍ତ୍ତି ସଂସ୍କୃତିର ପୁନରୁଦ୍ଧାର ଓ ପୁନରୁତ୍ଥାନର? ଆର୍ତ୍ତବଲ୍ଲଭ ସେଦିନ ସ୍ୱଉଦ୍ୟମରେ ଚାହିଁଛନ୍ତି ଭାରତର ପ୍ରାଦେଶିକ ସ୍ତରର ପ୍ରାଚ୍ୟବିଦ୍ୟାଚର୍ଚ୍ଚାର ଅନୁଷ୍ଠାନଗୁଡ଼ିକ ପରି ଅନୁଷ୍ଠାନଟିଏ ଗଢ଼ିବେ ଓଡ଼ିଶାରେ, ପ୍ରାଚୀ ଗ୍ରନ୍ଥମାଳା ପ୍ରକାଶନ ଅବ୍ୟାହତ ରହିବ ଚିରକାଳ, ଓଡ଼ିଶା ଓ ଓଡ଼ିଶା ବାହାରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଗୌରବୋଜ୍ଜ୍ୱଳ ଅଧ୍ୟାୟଗୁଡ଼ିକ ସମୁଦ୍ଭାସିତ ରହିବ । ପରିକଳ୍ପନାଟି ଭୁଷୁଡ଼ି ପଡ଼ିଛି କୋଣାର୍କ ପରି । କ'ଣ କରାଯାଏ? ଓଡ଼ିଶାରେ ଯେମିତି ସବୁ ଗଢାଯାଏ ଭାଙ୍ଗିବାପାଇଁ? ସୁତୁଙ୍ଗ କୋଣାର୍କ ଥିଲା । ମିଛ ନୁହେଁ । ପ୍ରାଚୀ ଥିଲା । ମନେପକାନ୍ତୁ- କୃତବିଦ୍ୟ ପଣ୍ଡିତଟିଏ ନିଜର ଯଥାସାଧ୍ୟ ମେଧା ମନନ, ଶ୍ରମ ସମୟ, ନିଷ୍ଠା, ଆନ୍ତରିକତା, ଯଥାସମ୍ଭବ ପରିଶୀଳିତ ସମାଜସାହିତ୍ୟ, ସଂସ୍କୃତିଇତିହାସ-ବୋଧ, ଅଖଣ୍ଡ ଓଡ଼ିଆ ଭାଷାପ୍ରୀତି ଓ ବୈଷ୍ଣବସୁଲଭ ଭକ୍ତିବିଶ୍ୱାସ- ସବୁ କିଛି ପ୍ରାଚୀସମିତି ପରିକଳ୍ପନାର ରୂପାୟନରେ ପୂରା ନିୟୋଜିତ କରିଥିଲା । ସେଦିନ

ଓଡ଼ିଶାବୋଧ ପ୍ରବଳ । ମାତୃଭାଷା ଗୌରବବୋଧ ଉତ୍ତାଳ । ସମୟର ପ୍ରାଣସ୍ପନ୍ଦନ ସାରସ୍ୱତ କ୍ଷେତ୍ର ଓ ଭାଷା ସାହିତ୍ୟ ଜଗତରେ ମୂର୍ତ୍ତରୂପ ଘେନିଥିଲା ପ୍ରାଚୀ ସମିତି ପରିକଳ୍ପନା ମଧ୍ୟରେ । ଆର୍ତ୍ତବଲ୍ଲଭ କ'ଣ ନ କଲେ? ଜାତୀୟ ଆବେଗକୁ ଯଥାର୍ଥ ରୂପଦେଲେ, ସମୟର ପ୍ରାଣସ୍ପନ୍ଦନକୁ ପ୍ରାଦେଶିକ ସ୍ତରରେ ଆମ ସାହିତ୍ୟ ଅଙ୍ଗରେ ନିଭାଇଲେ । ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ମାନମର୍ଯ୍ୟାଦା ବଢାଇଦେଲେ ଯଥେଷ୍ଟ । କ'ଣ ସେ କଲେ? ଧାରାବାହିକ ପାଞ୍ଚଶହ ବର୍ଷର ପ୍ରାଚୀନ ଓଡ଼ିଆ ସାହିତ୍ୟ ବୋଲି ବିରାଟ ଗୌରବଦୀପ୍ତ ବ୍ୟାପାରଟିଏ ଅଛି ବୋଲି ଜାତିକୁ ଦେଖାଇଦେଲେ, ଓଡ଼ିଆ ଭାଷାସାହିତ୍ୟ ବିଷୟକ ଅନୁସନ୍ଧାନ ଓ ଗବେଷଣାକୁ ଓଡ଼ିଶାରେ ଏକ ନୂଆ ବିଦ୍ୟା (discipline)ର ମର୍ଯ୍ୟାଦା ପ୍ରଦାନ କଲେ; ଶିକ୍ଷିତ ଓଡ଼ିଆଙ୍କ ମାନସିକ ଚର୍ଯ୍ୟାକ୍ଷେତ୍ରରେ ଭାଷା ଓ ସାହିତ୍ୟକୁ ଉଚିତ୍ ସ୍ଥାନ ମିଳିଲା । ଓଡ଼ିଆଙ୍କ ଗୌରବ ନୂଆ ଭାବରେ ପ୍ରଖ୍ୟାପିତ ହେଲା ।

ସମୟ ତାଙ୍କ ସପକ୍ଷରେ । ବ୍ୟକ୍ତିକୁ ଗଢେ ସମୟ, ବଢାଏ ବି । ଓଡ଼ିଆ ପରିଚିତିବୋଧ (Identily)ର ଉର୍ବର କାଳରେ ସେ ଜନ୍ମିଥିଲେ । ବେଶଭୂଷା, ଖାଦ୍ୟପେୟ, ଭାବଚିନ୍ତା, କାର୍ଯ୍ୟକଳାପ, ଭାଷାବୋଧ ଓ ସାହିତ୍ୟବୋଧ ଘେନି ସେ ଖାଣ୍ଟି ଓଡ଼ିଆଟିଏ ହୋଇ ଉଭାହୋଇଛନ୍ତି ଜାତି ଆଗରେ । ଜାତି ଏମିତି ଜଣେ ବ୍ୟକ୍ତି ଖୋଜୁଥିଲା; ପାଇଗଲା । ସେଇଥିପାଇଁ ତାଙ୍କ ପ୍ରତି ଜାତିର ଏତେ ଶ୍ରଦ୍ଧା ଓ ବିଶ୍ୱାସ, ଏତେ ଭକ୍ତି ଓ ସମ୍ମାନବୋଧ । କୃତିତ୍ୱ ଅପେକ୍ଷା ତାଙ୍କ କୀର୍ତ୍ତି ସୁପ୍ରଚୁର । ତେଣୁ ସେ ସଂସ୍କୃତ ଭାଷା ଓ ସାହିତ୍ୟର ଛାତ୍ର- କିନ୍ତୁ ସମାନ ଅନୁରାଗ ତାଙ୍କର ଥିଲା ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି । ବିଶ୍ୱବିଦ୍ୟାଳୟରେ ହାତଧରାଧରି ହୋଇ ଚାଲିଛନ୍ତି ଓଡ଼ିଆ ଓ ସଂସ୍କୃତ । ଏକଦା ଗୋଟିଏ ବିଭାଗ ଥିଲେ ଦୁହେଁ । ଓଡ଼ିଆରେ ଅନର୍ସ ପଢା ଓ ସ୍ନାତକୋତ୍ତର ଶିକ୍ଷା ପ୍ରବର୍ତ୍ତନ କ୍ଷେତ୍ରରେ ଆର୍ତ୍ତବଲ୍ଲଭଙ୍କ ଭୂମିକା ଥିଲା । ସେ ଥିଲେ ବି ଏହି ବିଭାଗର ହର୍ତ୍ତାକର୍ତ୍ତା, ଦଇବବିଧାତା ଦିନେ । ଓଡ଼ିଆ ବିଭାଗ ତାଙ୍କୁ ପ୍ରାଣପ୍ରତିଷ୍ଠାତା ପିତୃପୁରୁଷ ଭାବରେ ବି ଶ୍ରଦ୍ଧା ଓ ସମ୍ମାନ ଦିଏ । କ୍ୱଚିତ କେହି ପୋଥି ସଂପାଦକ ଏତେ ଶ୍ରଦ୍ଧା ଓ ବିଶ୍ୱାସ, ଏତେ ଭକ୍ତି ଓ ମାନସମ୍ମାନ ପାଇଥାନ୍ତି । ଅଧିକନ୍ତୁ ଓଡ଼ିଶାରେ ପୋଥିସଂଗ୍ରହ, ପାଠୋଦ୍ଧାର ଓ ସଂପାଦନ ପ୍ରକାଶନକୁ ସେ ଯେଉଁ ମାନ ଓ ଗତିବେଗ ପ୍ରଦାନ କଲେ, ତାହାର ପରିଣାମ ବି ବଡ଼ ଶୁଭଙ୍କର ଥିଲା । ସେହି ପ୍ରଖର ସ୍ରୋତରୁ

ଆବିର୍ଭୂତ ହେଲେ ଅନେକ ଲୁପ୍ତ ବୈଭବ- **ଭଗବଦ୍‌ଗୀତାର ଅନୁବାଦ, ପ୍ରସ୍ତାବଚିନ୍ତାମଣି, ପ୍ରେମଲୋଚନା, ପରିମଳା, ଚାଟଇଚ୍ଛାବତୀ, କଳାବତୀ, ଦାଣ୍ଡୀରାମାୟଣ, ବିଚିତ୍ରରାମାୟଣ, କବିସୂର୍ଯ୍ୟ ଗ୍ରନ୍ଥାବଳୀ** ପରି ରାଶିରାଶି ରତ୍ନାବଳୀ । ଓଡ଼ିଆ ସାହିତ୍ୟର ଐଶ୍ୱର୍ଯ୍ୟ ବଢ଼ିଲା, ଓଡ଼ିଆଏ ଧନ୍ୟ ହେଲେ ।

ତେବେ ଆର୍ତ୍ତବଲ୍ଲଭଙ୍କ ଜୀବଦ୍ଦଶାରେ ପୋଥି ସଂସ୍କୃତିର ବଦନାମ ହେଲା । ପୋଥିସଂଗ୍ରହ ଉତ୍ସାହ ଅତ୍ୟୁତ୍କଟ ହୋଇଥିଲା ବୋଧହୁଏ । ଯୁଆଡେ ଯାଅ ସିଆଡେ ପୋଥିବିଭାଗ । ରାଜ୍ୟ ସଂଗ୍ରହାଳୟ ହେଲାପରେ ବି ଏଠିସେଠି ହଜାରେ ପୋଥିଗୃହ । ଏଣେ ଆର୍ତ୍ତବଲ୍ଲଭଙ୍କ ଶିଷ୍ୟ-ପ୍ରଶିଷ୍ୟମାନେ ଚାହିଁଲେ ହେବେ ଏକେ ଏକେ ଆର୍ତ୍ତବଲ୍ଲଭ । ମଜାର କଥା ଯେ, ଆର୍ତ୍ତବଲ୍ଲଭ ବେଳେବେଳେ ପୋଥିରୁ ଉତ୍କୃଷ୍ଟ ସାହିତ୍ୟ ଆବିଷ୍କାର କରୁଥିଲେ, ଆବିଷ୍କାର କରିଛନ୍ତି **ରହସ୍ୟମଞ୍ଜରୀ, ପ୍ରେମପଞ୍ଚାମୃତ, ଉଷାଭିଳାଷ, ଚତୁରବିନୋଦ** ଓ **ରୁଦ୍ରସୁଧାନିଧି** । ପୋଥିରେ ଥାଇପାରେ ଉତ୍କୃଷ୍ଟ ସାହିତ୍ୟ । ନୂଆ ଆର୍ତ୍ତବଲ୍ଲଭମାନେ ଭାବିଲେ ସୁସ୍ଥଚିତ୍ତରେ ଯେ, ପୋଥିରେ ଯାହା ଥାଏ ତାହା ଉତ୍କୃଷ୍ଟ ସାହିତ୍ୟ । ବାଛେ ବହିସବୁ ପୋଥିରୁ ବାହାରକରି ସେମାନେ ଛାପି ପାଠ୍ୟକ୍ରମରେ ଖଞ୍ଜି ବିପଣନ ବ୍ୟବସ୍ଥା କରାଇଲେ । ପୋଥି ଅନୁସନ୍ଧାନ ଓ ଗବେଷଣା ହେଲା ପିଏଚ୍.ଡି ଡିଗ୍ରୀ ଲାଭର ଅନ୍ୟତମ ସୁଲଭ କରଣକୌଶଳ । ଶିଶୁବେଦ, ଅମରକୋଷଗୀତାଠାରୁ ଆରମ୍ଭକରି ଚାରିଖାନି ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ଓଡ଼ିଆ ଅପସାହିତ୍ୟର ପରିସର ବଢାଇଦେଲା ଯଥେଷ୍ଟ । ଏଣେ ପୋଥି କିଣାବିକା, ଚୋରିଚାରି ଓ ଜାଲଫାଲ୍ ଚାଲିଲା ପୂରାଦମ୍‌ରେ । ପୋଥିକୋଣାର୍କ ଉପରେ ନୂଆ ଆଲୋକ ସଂପାତ କଲା ଓ ଓଡ଼ିଶାର ଇତିହାସକୁ ନୂଆ ଭାବରେ ଲେଖାଇଲା! ପ୍ରାଚୀନ କବିଙ୍କ ରଚନାସଂଖ୍ୟା ବଢିଗଲା ଅଭାବିତ ଭାବରେ । ଶେଷକୁ ଆବିଷ୍କୃତ ହେଲା ମତ୍‌କୃତ ସଂଗୃହୀତ ପୋଥି । ଯାହା ଆଉ କେଉଁଠି ନାହିଁ, ତାହାର ପ୍ରମାଣ ଧ୍ରୁବ ହେବାକୁ ବାଧ । ଏଇଥିରୁ ବୁଝନ୍ତୁ ଆର୍ତ୍ତବଲ୍ଲଭଙ୍କ ପ୍ରତିଷ୍ଠା ପ୍ରତିପତ୍ତିର କଥା, ପୋଥି ସଂପ୍ରୀତିର କଥା । ସେ ପୋଥିର ମର୍ଯ୍ୟାଦା ବୁଝିଥିଲେ- ପୋଥି କିଣାବିକାର ସାମଗ୍ରୀ ନୁହେଁ, ଠକାଠକିର ପଣ୍ୟ ଦ୍ରବ୍ୟ ନୁହେଁ, ତାହା ପବିତ୍ର ଜାତୀୟ ସମ୍ପଦ । ଯେଉଁଠି ଥାଉ, ପୋଥି ସୁସ୍ଥ ବ୍ୟବସ୍ଥିତ ଥାଉ । ଆମେ ବୁଝିଲେ ଓଲଟା- ପୋଥି ମୋରି ହୋଇଥାଉ- ଲାଭ ଆଉ ଲୋଭର ଅବଲମ୍ବନ ଭାବରେ ।

ଛଅ

ଆର୍ତ୍ତବଲ୍ଲଭ ଲୁପ୍ତ ରତ୍ନୋଦ୍ଧାର ପାଇଁ ପ୍ରସିଦ୍ଧ ନୁହନ୍ତି, ସେ ପାଠ ଉଦ୍ଧାରଣ ପାଇଁ ଖ୍ୟାତିକୀର୍ତ୍ତି । ୫୪ଟି ପ୍ରାଚୀ ପ୍ରକାଶନ ମଧ୍ୟରୁ ପ୍ରକାଶିତପୂର୍ବ ରତ୍ନସଂଖ୍ୟା ୩୦ରୁ ଊର୍ଦ୍ଧ୍ୱ । ଅର୍ବାଚୀନ ରଚନା ପ୍ରାୟ ୧୦, ସଂକଳନଗ୍ରନ୍ଥ ଗୋଟିଏ: **ଗଦ୍ୟପଦ୍ୟାଦର୍ଶ** । ଅବଶିଷ୍ଟ ମଧ୍ୟରୁ ଅପ୍ରକାଶିତପୂର୍ବ ରତ୍ନ କେତୋଟି, ତାହା ନିର୍ଦ୍ଧାରଣ କରିବା ସହଜ ନୁହେଁ । ସମ୍ଭବତଃ ୧୭ଟି ଗ୍ରନ୍ଥ ଅପ୍ରକାଶିତପୂର୍ବ । (ଲେଖକ ସବୁକୁ ଦେଖିନାହିଁ) ତନ୍ମଧ୍ୟରୁ କେଉଁଗୁଡ଼ିକୁ ରତ୍ନ ଶ୍ରେଣୀଭୁକ୍ତ କରାଯିବ, ତାହା ସାନୁପୁଂଖ ମୂଲ୍ୟାୟନ ସାପେକ୍ଷ । ତେବେ ରତ୍ନସଂଖ୍ୟା ୧୦ରୁ ବେଶି ନିଶ୍ଚୟ । **ରହସ୍ୟମଞ୍ଜରୀ**, **ପ୍ରେମପଞ୍ଚାମୃତ**, **ରସବାରିଧି**, **ଉଷାଭିଳାଷ**, **ରୁକ୍ମିଣୀବିଭା**, **ରାମବିଭା**, **ପୂର୍ଣ୍ଣତମଚନ୍ଦ୍ରୋଦୟ**, **ରସବାରିଧି** ଓ **ରୁଦ୍ରସୁଧାନିଧି** ଓଡ଼ିଆ ଭାଷାର ରତ୍ନ ନିଶ୍ଚୟ । କାହାର ସାରସ୍ୱତ ମୂଲ୍ୟ ଅଛିତ, କାହାର ଐତିହାସିକ ମୂଲ୍ୟ । ଏଗୁଡ଼ିକୁ ବାଦଦେଇ ଓଡ଼ିଆ ସାହିତ୍ୟର ଇତିହାସ କଥା କଳନା କରିହେବନାହିଁ । ଏଗୁଡ଼ିକ ଆର୍ତ୍ତବଲ୍ଲଭଙ୍କ ଆବିଷ୍କାର। ଅଧିକାଂଶର ପାଠୋଦ୍ଧାର ଓ ମୁଖବନ୍ଧ ରଚନା କରିଛନ୍ତି ସ୍ୱୟଂ ସେ । ତାଙ୍କ ପାଇଁ ରତ୍ନୋଦ୍ଧାର ଓ ପାଠୋଦ୍ଧାର ହାତଧରାଧରି ହୋଇ ଚାଲିଛନ୍ତି । ଶେଷ ଜୀବନ ଅତିବାହିତ ହୋଇଛି ସାରଳା ଦାସଙ୍କ ମହାଭାରତର ପାଠୋଦ୍ଧାର ପରିକଳ୍ପନା କାର୍ଯ୍ୟରେ । ଭଦ୍ରଲୋକେ ମହାଭାରତ ପଢୁଛନ୍ତି ତାଙ୍କରି ପ୍ରସାଦରୁ । ସେ **ଦାଣ୍ଡୀରାମାୟଣ** ଓ **ଭାଗବତ**ର ପାଠୋଦ୍ଧାର ପରିକଳ୍ପନା କରିଥିଲେ । କୌଣସି କାରଣରୁ ପାରିନାହାନ୍ତି । ପାଠୋଦ୍ଧାର କାମଟି ପ୍ରାଣାନ୍ତକ କାମ । ସେ କ'ଣ କରିଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ପ୍ରାଚୀ-ପ୍ରକାଶିତ ୫୪ ଟି ଗ୍ରନ୍ଥ ସହିତ ୧୮ ଖଣ୍ଡ ସାରଳା ମହାଭାରତକୁ ମିଶାଇ ଦେଖିଲେ ଭାବି ହୁଏନାହିଁ, ଆର୍ତ୍ତବଲ୍ଲଭ ପଢିଥିବେ କିପରି ଏତେ ସବୁ ବହି? ପାଠୋଦ୍ଧାର ପାଇଁ ପ୍ରତ୍ୟେକ ଶବ୍ଦକୁ ଭେଟିବାକୁ ହୁଏ । ଜୀବଦ୍ଦଶାରେ କିଏ ପଢ଼ିପାରିବ ଆମୂଳାନ୍ତ ଏତେ ଗ୍ରନ୍ଥ?

ପାଠୋଦ୍ଧାର କ'ଣ? ପାଠୋଦ୍ଧାର କ'ଣ, ତାହା ନ ଜାଣିଲେ ଆର୍ତ୍ତବଲ୍ଲଭଙ୍କ ଭାବମୂର୍ତ୍ତି ପରିକଳ୍ପନା କରିହେବନାହିଁ । Textual Criticism ବୋଲି ଗୋଟିଏ ଏକାଡେମିକ୍ ବିଦ୍ୟା (discipline)ଅଛି, ତାହା ସାହିତ୍ୟ-ସମାଲୋଚନା (Higher Criticism)ର ସହାୟକ ବିଦ୍ୟା । ଗ୍ରନ୍ଥ ଅନୁଲେଖନକ୍ରମେ କି ପୁନର୍ମୁଦ୍ରଣ ଉପଲକ୍ଷେ

ଅଶୁଦ୍ଧ ପାଠ ଭାରାକ୍ରାନ୍ତ ହୋଇପଡ଼େ । Textual Criticism ବା ପାଠାଲୋଚନାର କାମ ହେଲା ଗ୍ରନ୍ଥକର୍ତ୍ତାଙ୍କ ପାଠ (Text)ର ମୂଳ ବିଶୁଦ୍ଧତା (Initial purity of an author's text) ଫେରାଇ ଆଣିବା । ଅନ୍ତତଃ ସମ୍ଭାବ୍ୟ ପାଠ ପାଖରେ ଉପନୀତ ହେବା । ସାହିତ୍ୟ ସମାଲୋଚନାପାଇଁ ସୁସ୍ଥ, ଅକ୍ଷତ, ଅବିକୃତ (Sound Text) ପାଠ ଲୋଡ଼ା । ପାଠୋଦ୍ଧାର ବିନା ସମାଲୋଚନା ଅନ୍ଧ । ଯେ କେହି ସାହିତ୍ୟର ମୂଲ୍ୟାୟନ ସକାଶେ ଅବିକୃତ ପାଠ ପସନ୍ଦ କରିବେ ନିଶ୍ଚୟ, ନଚେତ୍ ହାସ୍ୟାସ୍ପଦ ହେବେ । F.O. Matthiessen ଫସି ଯାଇଥିଲେ ଥରେ । ସେ ମେଲଭିଲେଙ୍କ Soiled fish of sea ବାକ୍ୟାଂଶଟିର ଯେଉଁ ପ୍ରଶଂସାତ୍ମକ ବ୍ୟାଖ୍ୟା କରିଥିଲେ, ତାହାର କୃତିତ୍ୱ ଥିଲା ଅନବହିତ ମୁଦ୍ରାକ୍ଷର ସଜାଳିର ପ୍ରାପ୍ୟ । ସେ ମୂଳପାଠ 'Coiled fish of the sea ସ୍ଥାନରେ Soiled fish ମୁଦ୍ରଣ କରି ଦେଇଥିଲେ । ଭୁଲକ୍ରମେ । (Textual Criticism, Fredson Bowers) । ପାଠପ୍ରମାଦ ଯୋଗୁ ସମାଲୋଚନା ଉପହସିତ ହୁଏ ଅଥବା ପରିତ୍ୟକ୍ତ ହୁଏ । ସମାଲୋଚନା ପାଇଁ ପାଠୋଦ୍ଧାର ଅବଶ୍ୟ ପ୍ରୟୋଜନ । ଯେଉଁ ଗ୍ରନ୍ଥ ଯେତେ ଲୋକପ୍ରିୟ, ତାହାର ଅନୁଲେଖନ ସଂଖ୍ୟା ସେତେ ବେଶି, ଆଉ ତାହାର ପାଠ ସେତେ ପ୍ରମାଦପୂର୍ଣ୍ଣ । ଗୋଟିଏ ପୋଥିରୁ ଆଉ ଗୋଟିଏ ପୋଥିକୁ ପାଠ ଉତାରିଲା ବେଳେ, ଯେତେ ସାବଧାନତା ଅବଲମ୍ବନ କଲେ ବି ତିନି ପ୍ରତିଶତ ଶୁଦ୍ଧତା ନଷ୍ଟହୁଏ । ଏମିତି ଅନୁଲିଖନ କ୍ରମାଗତ ଚାଲିଲେ, ଦିନେ ଦେଖିଲା ବେଳକୁ ମୂଳପାଠ ଆଉ ନ ଥାଏ, ଥାଏ କବିଙ୍କ ନାମ ଓ କିଛି ଭଣିତା ମାତ୍ର । କେଉଁଠୁ ଆସେ ଏତେ ପ୍ରମାଦ? ପାଠୋଦ୍ଧାର କର୍ତ୍ତାମାନେ ନାନା କାରଣ ଦର୍ଶାଇ ଥାଆନ୍ତି- ପ୍ରକୃତ କାରଣ କିନ୍ତୁ ମଣିଷର ପ୍ରକୃତି । ମଣିଷ ମାତ୍ରେ ଅସାବଧାନ, ଭ୍ରମପ୍ରବଣ ଓ ବିକୃତବୁଦ୍ଧି । ତେଣୁ କାହାର ଦୋଷ ନ ଖୋଜି ସ୍ଥିରଚିତ୍ତରେ ପାଠୋଦ୍ଧାର କରିବା ପ୍ରତ୍ୟାଶିତ କର୍ତ୍ତବ୍ୟ ।

ପାଠୋଦ୍ଧାରକାରୀର ବି ପ୍ରମାଦ ଥାଏ । ପାଠୋଦ୍ଧାର କାର୍ଯ୍ୟରେ ଯେଉଁ ଆର୍ତ୍ତବଲ୍ଲଭ ସାରାଜୀବନ ବ୍ୟୟ କରିଛନ୍ତି, ତାଙ୍କ ଲେଖାର ପାଠୋଦ୍ଧାର କ'ଣ ଠିକ୍ ହୋଇପାରିଛି? ଆର୍ତ୍ତବଲ୍ଲଭ ରଚନାସମଗ୍ରରୁ ଗୋଟିଏ ପୃଷ୍ଠାକୁ ଦେଖନ୍ତୁ । ପୃଷ୍ଠା ୬୦୭ ରେ ବାକ୍ୟଟିଏ ଅଛି, "ଶ୍ରୀରାଧାଙ୍କର ଅନୁଗ୍ରହରୁ ମୋର ଭାଗବତରେ ପ୍ରବେଶ ହୋଇଛି ଏବଂ ଯେ ବ୍ୟକ୍ତି ରାଧାଙ୍କର ବ୍ୟାଖ୍ୟା ଅବଲମ୍ବନ ନ କରି ଅନ୍ୟଥା ଭାଗବତରେ ପ୍ରବେଶ କରେ ତାକୁ ବେଶ୍ୟା ଭିତରେ ଗଣନା କରେ" ଉକ୍ତିଟି ଚୈତନ୍ୟଙ୍କର । ଆର୍ତ୍ତବଲ୍ଲଭ

ଉପସ୍ଥାପନ କରିଛନ୍ତି; ଓଡ଼ିଆରେ ଶୁଦ୍ଧପାଠ ହେଉଛି 'ଶ୍ରୀରାଧାଙ୍କର' ସ୍ଥାନରେ 'ଶ୍ରୀଧରଙ୍କ' ଓ 'ରାଧାଙ୍କର' ସ୍ଥାନରେ 'ଶ୍ରୀଧରଙ୍କ' । ଭାଗବତର ବ୍ୟାଖ୍ୟା କରିଛନ୍ତି ଶ୍ରୀଧର ସ୍ୱାମୀ, ଶ୍ରୀରାଧା ନୁହନ୍ତି । ଏଇଥିରୁ ବୁଝନ୍ତୁ (ଓଡ଼ିଆ ପାଠ ଅପେକ୍ଷା ସଂସ୍କୃତ ପାଠର ଅଶୁଦ୍ଧତା ବେଶି, ପୁଣି) ପାଠଶୁଦ୍ଧତା ରକ୍ଷା କରିବା କେଡ଼େ କଷ୍ଟକର । ଆର୍ତ୍ତବଲ୍ଲଭ ପୋଥିପାଠର ଶୁଦ୍ଧରୂପ ଉଦ୍ଧାର କରିବାକୁ ଏପରି କଠିନ ଅନେକ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଆମ ପ୍ରାଚୀନ ସାହିତ୍ୟର ଯେଉଁ ସବୁ ଜନପ୍ରିୟ ସମ୍ଭାର ଥିଲା, ସେଗୁଡ଼ିକ ଆମ ପାଖରେ ପହଞ୍ଚିଲା ବେଳକୁ ସେଦିନ ଯଥାସମ୍ଭବ ଶୋଚନୀୟ ଭାବରେ ଅଶୁଦ୍ଧ ପାଠ ଭାରାକ୍ରାନ୍ତ ହୋଇଯାଇଥିଲା । କୌଣସି କୌଣସି ଗ୍ରନ୍ଥ ବି ହୋଇ ଉଠିଥିଲା ଆମୂଳାନ୍ତ ଅଶୁଦ୍ଧ । ଅରଣ୍ୟକୁ ସଫା କରି ଆମପାଇଁ ପଠନମାର୍ଗ ପ୍ରସ୍ତୁତ କରିବାକୁ ଆର୍ତ୍ତବଲ୍ଲଭ ଉଦ୍ୟମ କରିଛନ୍ତି ଯଥାସାଧ୍ୟ । କାର୍ଯ୍ୟଟି ପ୍ରାଣାନ୍ତକ । ପାଖରେ ନ ଥିଲା ବି ଦିଗ୍‌ଦର୍ଶନ, ନ ଥିଲା ବି ପ୍ରାମାଣ୍ୟ ଗ୍ରନ୍ଥ ବି ସମ୍ପାଦନାର ଆଦର୍ଶ ପଦ୍ଧତି ପ୍ରକରଣର ରୋଲ୍ ମଡ଼େଲ୍ । ପାଠୋଦ୍ଧାରର ନିଜସ୍ୱ ପଦ୍ଧତି, ପ୍ରକରଣ ସେ ନିଜେ ଖୋଜି ପାଇଛନ୍ତି ବୋଧହୁଏ ।

କୁହାଯାଏ, ଶ୍ରମ ଓ ସମୟ କ୍ରମେ ପାଠାଲୋଚକ ନିଜ ବାଟ ନିଜେ ପାଏ; A man who possesses common sense and the use of reason must not expect to learn from treatises or lectrures on textual criticism any thing he could not, with liesure and industry, find out for himself (A.E. Houseman) ଏଠାରେ "good critics are born not made"କଥାଟା ସତ୍ୟ ବୋଧହୁଏ । କାମ କରୁକରୁ ମଣିଷ ପାଇଯାଏ କର୍ମକୌଶଳ । ମୂଳ ପାଥେୟ ଦୁଇଟି, ମାତ୍ରାଜ୍ଞାନ ଓ ସଂଗତିବୋଧ । ଆର୍ତ୍ତବଲ୍ଲଭଙ୍କର ଥିଲା ଯଥାସାଧ୍ୟ ମାତ୍ରାଜ୍ଞାନ ଓ ସଂଗତିବୋଧ, ଥିଲା ବ୍ୟୁତ୍ପତ୍ତି ଥିଲା ଓଡ଼ିଆ ଭାଷା ଓ ସଂସ୍କୃତ ଭାଷା କ୍ଷେତ୍ରରେ ସମାନ ଅନୁରାଗ ଓ ଦକ୍ଷତା, ଥିଲା ବି ଦେଶାତ୍ମବୋଧ-ସମ୍ମତ ମାତୃଭାଷାପ୍ରୀତି ଓ ପ୍ରାଚୀନ ସାହିତ୍ୟସଂଗୀତ-ମୁଗ୍ଧତା । ପାଠୋଦ୍ଧାର ବିଦ୍ୟା-ସାଧନର ଯେଉଁ ଅନ୍ୟ ତିନୋଟି ପାଥେୟ ତାହା ସେ ଅର୍ଜନ କରିଥିଲେ ସାଧନାକ୍ରମେ । ସେଗୁଡ଼ିକ ହେଲା; Recension, Examinatiom ଓ Emendation । Emendation ମାନେ ଯଥାସାଧ୍ୟ ମୂଳପାଠରେ ଉପନୀତ ହେବାର ଉଦ୍ୟମ । ଯାହାକୁ କହନ୍ତି, "to restore the transmitted text to its authentic" state ସର୍ବଥା ଏହା ଦୁଃସାଧ୍ୟ ନୁହେଁ, ଅସାଧ୍ୟ ବି । ଆର୍ତ୍ତବଲ୍ଲଭ ପାଠୋଦ୍ଧାର ସଙ୍ଗରେ ଟୀକା ପ୍ରସ୍ତୁତ କରିଛନ୍ତି ।

Recension ମାନେ ସଟୀକ ସଂଶୋଧନ । Examinations ତ ପୋଥିସଂଧାନ, ପୋଥିପରୀକ୍ଷା ଓ ପୋଥିର ପରିବାର ନିର୍ଣ୍ଣୟ ଇତ୍ୟାଦି ଇତ୍ୟାଦି । [Textual Criticism, Edward John Kenney]

ଏଠାରେ ଗୋଟିଏ କଥା ମନେରଖିଲେ ଆର୍ତ୍ତବଲ୍ଲଭଙ୍କୁ ଯଥୋଚିତ ସମ୍ମାନ ଦେଇହେବ । Textual Criticism କ'ଣ? ଏହା ଏକ ଟେକ୍‌ନିକ୍ । ଏକ ପ୍ରାୟୋଗିକ ବିଦ୍ୟା- "The technique of restoring texts as nearly as possible to their original form" ଏଠାରେ ପାଠୋଦ୍ଧାର କ୍ଷେତ୍ରରେ ପରିପୂର୍ଣ୍ଣ ସିଦ୍ଧିଲାଭ ଅସାଧ ବ୍ୟାପାର । ଉଭୟ ପାଠୋଦ୍ଧାର ଓ ଟୀକା ପ୍ରସ୍ତୁତି ଏକ ଏକ ପ୍ରସେସ୍- ଏକ ଏକ ପ୍ରଣାଳୀ । ଏ କ୍ଷେତ୍ରରେ ଜାତୀୟ ଉଦ୍ୟମ ସବୁଦିନେ ଧେୟ । ଆର୍ତ୍ତବଲ୍ଲଭଙ୍କ ପାଠୋଦ୍ଧାର ତେଣୁ ଉଦ୍ୟମ ସ୍ତରର ଜିନିଷ । ସେ ଲାବଣ୍ୟବତୀର ପାଠୋଦ୍ଧାର ଓ ଟୀକାପ୍ରସ୍ତୁତ କଲାପରେ ଏତେ କାମ୍ ବାକି ରହିଯାଇଥାଏ ଯେ, ପଣ୍ଡିତ ନୀଳକଣ୍ଠଙ୍କୁ ଆଉଥରେ ସଟୀକ ପାଠୋଦ୍ଧାର କରିବାକୁ ପଡ଼େ । ଆର୍ତ୍ତବଲ୍ଲଭଙ୍କ 'ଉଷାଭିଳାଷ' ସଂପାଦନା ପରେ ଭାଗ୍ୟଲିପି ମଲ୍ଲ ସଟୀକ 'ଉଷାଅଭିଳାଷ' ଆବିଷ୍କାର କରନ୍ତି । ସନ୍ଧିବିଚ୍ଛେଦ ଥିଲା ମୂଳପାଠରେ, ସନ୍ଧିସଂପନ୍ନ ଶବ୍ଦଟି ଦେଖିଛନ୍ତି ଆର୍ତ୍ତବଲ୍ଲଭ । ଉଷାଭିଳାଷ ନୁହେଁ, ଗ୍ରନ୍ଥର ନାମ ଉଷାଅଭିଳାଷ । ହୋଇ ପାରିଥାଏ । ପରବର୍ତ୍ତୀ ପାଠୋଦ୍ଧାର କାର୍ଯ୍ୟ ପୂର୍ବବର୍ତ୍ତୀ ପାଠୋଦ୍ଧାର ଅପେକ୍ଷା ଭଲ ହୋଇପାରେ, କାରଣ ଭିତ୍ତିପ୍ରସ୍ତୁତ କରିଥିଲେ ପୂର୍ବସୂରୀ ନିଶ୍ଚୟ । ତେବେ ଗୋଟିଏ ମଜାର କଥା ଲକ୍ଷ୍ୟକରି ହେବ, ନୀଳକଣ୍ଠ ସ୍ୱପ୍ରସ୍ତୁତ ପାଠ ଅପେକ୍ଷା ଆର୍ତ୍ତବଲ୍ଲଭଙ୍କ ପାଠକୁ ଠାଏ ମର୍ଯ୍ୟାଦା ଦେଇଛନ୍ତି ବେଶି । 'ପଦ ଶ୍ରବଣଧ୍ୱନିରେ ମାନସ ମୋହିବ' ପଦର ପାଠ ତାଙ୍କର, ଅଥଚ ସଂପାଦିତ ଲାବଣ୍ୟବତୀର ଉପୋଦ୍‌ଘାତରେ ଉଦ୍ଧାର କରିଛନ୍ତି ସେ ଆର୍ତ୍ତବଲ୍ଲଭଙ୍କ ପାଠକୁ – ''ପଦ ସରଳ ଧ୍ୱନିରେ ମାନସ ମୋହିବ' । କାହିଁକି? ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ପୋଥିଅଧ୍ୟୟନ ଓ ପାଠୋଦ୍ଧାର ପୁଣ୍ୟ ପ୍ରକ୍ରିୟାଟି ଅକ୍ଷୁଣ୍ଣ ଓ ଅବ୍ୟାହତ ନରହିଲେ ଜାତି ଅସମ୍ପୂର୍ଣ୍ଣ ଭ୍ରମପ୍ରମାଦପୂର୍ଣ୍ଣ ଅଶୁଦ୍ଧ ପାଠକୁ ଘେନି କୃତକୃତ୍ୟ ହେଉଥିବ, ତାହା ଭାଗ୍ୟରେ ଯଥାସମ୍ଭବ ଶୁଦ୍ଧପାଠ ମିଳିବନାହିଁ । ସାରଳାଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମଙ୍କ ଦାଣ୍ଡୀରାମାୟଣ ଓଡ଼ିଆଙ୍କ ହୃଦୟର ଅମୂଲ୍ୟ ସଂପଦ । ସରକାରଙ୍କ ପ୍ରସାଦରୁ କି ବ୍ୟକ୍ତିଗତ ଉଦ୍ୟମରୁ ଏସବୁର ଯେଉଁ ସବୁ ପାଠ

ଏବେ ମିଳୁଛି, ତନ୍ମଧ୍ୟରୁ କୌଣସିଟି ଶୁଦ୍ଧପାଠ ଭାବରେ ନିର୍ଭରଯୋଗ୍ୟ, କି ଗ୍ରହଣଯୋଗ୍ୟ ନୁହେଁ । ଏହି ମହାଗ୍ରନ୍ଥଗୁଡ଼ିକର ପାଠୋଦ୍ଧାର ପ୍ରକ୍ରିୟା ସବୁଦିନେ ସମୁଦ୍ୟତ ରହିଲେ ହୁଏତ ଦିନେ ଆମେ ଶୁଦ୍ଧପାଠ ପାଖରେ ଉପନୀତ ହୋଇ ଧନ୍ୟହେବା । ପାଠୋଦ୍ଧାର ମର୍ଯ୍ୟାଦା ପାଇବ, ଆର୍ତ୍ତବଲ୍ଲଭ ସମ୍ମାନ ପାଇବେ ।

ସାତ

ଏବେ ଉପକ୍ରମ ଶେଷ । ମୁଖବନ୍ଧ ଉପସ୍ଥିତ । ପାଠୋଦ୍ଧାର ପରେ ସାହିତ୍ୟ-ସମାଲୋଚନା – Textual Criticism ପରେ Higher Criticism । ସମୁଦାୟ ୩୧ଟି ମୁଖବନ୍ଧ ଅଛି । ୩୦ଟି ଲେଖା ଓଡ଼ିଆ ଭାଷାରେ, ଗୋଟିଏ ରଚିତ ଇଂରାଜୀ ଭାଷାରେ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ'ରେ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟର କ୍ରମ ପରିଣାମ ଦେଖାଇ ଦିଆଯାଇଛି ସଂକ୍ଷେପରେ, ସଦୃଷ୍ଟାନ୍ତ । ୧୯୩୨ରେ ଗ୍ରନ୍ଥଟି ପ୍ରକାଶ ପାଏ । ପ୍ରାଚୀନ ଗଦ୍ୟପଦ୍ୟରଚନାର ସଂଗ୍ରହ, ସମୀକ୍ଷା ଓ ନିର୍ବାଚନ ଆଦି ସବୁ ଅଭାବିତ-ପୂର୍ବ । ଓଡ଼ିଆଏ ବ୍ୟାପ୍ତ ବିଶାଳ ବୈଚିତ୍ର୍ୟମୟ ସାରସ୍ୱତ ପରମ୍ପରା ଦେଖି ଚମତ୍କୃତ ହୁଅନ୍ତି ସେଦିନ । ଅନ୍ୟ ତିରିଶଟି ମୁଖବନ୍ଧ ମଧ୍ୟରୁ ଗୋଟିଏ ହେଉଛି ଆର୍ତ୍ତବଲ୍ଲଭଙ୍କ ବୈଷ୍ଣବ ସାଙ୍ଗ ଚିନ୍ତାମଣି ତ୍ରିପାଠୀଙ୍କ ସଦ୍ୟ ସଦ୍ୟ ୧୯୨୭ର ଲେଖା ନାରଦୀୟପୁରାଣଅନୁବାଦର ଭୂମିକା । ଅନୁବାଦ ପ୍ରକାଶନ ପ୍ରାଚୀ ସମିତିର ଲକ୍ଷ୍ୟ ଓ ଆଭିମୁଖ୍ୟର ଅନ୍ତର୍ଗତ ବ୍ୟାପାର ଅବଶ୍ୟ ; ତେବେ ଗ୍ରନ୍ଥର ସାରସ୍ୱତ ଉତ୍କର୍ଷ କି ଉପାଦେୟତା ଦେଖାଯାଇନାହିଁ । କଥାଟା ହୋଇଯାଇଛି ମୂଳତଃ ବୈଷ୍ଣବସୁଲଭ ବନ୍ଧୁକୃତ୍ୟ । ଆର୍ତ୍ତବଲ୍ଲଭ ପରମ ବୈଷ୍ଣବ ମଧ୍ୟ । ଦୁଇ ସାଙ୍ଗଙ୍କର ପରମ କାମ୍ୟ ହେଉଛି ହରିକଥାମୃତପାନ ଓ ହରିମାହାତ୍ମ୍ୟ ପ୍ରଚାର । ଆର୍ତ୍ତବଲ୍ଲଭଙ୍କର ଏହି ବୈଷ୍ଣବ ମନୋପ୍ରତିନ୍ୟାସ ଅନ୍ୟାନ୍ୟ ମୁଖବନ୍ଧରେ ଯତ୍ରତତ୍ର ସକ୍ରିୟ ରହିଛି । ସେଇଥିପାଇଁ ସଂପାଦିତ ଅଧିକାଂଶ ରଚନାର ସୌନ୍ଦର୍ଯ୍ୟମାଧୁର୍ଯ୍ୟ ଉନ୍ମୋଚନର ସୂକ୍ଷ୍ମଦର୍ଶିତା କି ରସିକତା ପରିବର୍ତ୍ତେ ଧର୍ମଦର୍ଶନ ସଂକ୍ରାନ୍ତ ବ୍ୟାଖ୍ୟାବିବେଚନା ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଛି; ଶାସ୍ତ୍ରପୁରାଣ, ଗୀତାଭାଗବତ, ବୈଷ୍ଣବ ରସଶାସ୍ତ୍ର ଓ ନ୍ୟାୟାଦି ଦର୍ଶନ ସଂକ୍ରାନ୍ତ ବିଚାର ବିଶ୍ଳେଷଣ ଯଥେଷ୍ଟ ପ୍ରଶ୍ରୟ ପାଇଛି । ଦୈବକ୍ରମେ ଆର୍ତ୍ତବଲ୍ଲଭଙ୍କ ପାଠୋଦ୍ଧାର କାର୍ଯ୍ୟଟି ଆରମ୍ଭ ହୋଇଛି 'ବିଦଗ୍ଧଚିନ୍ତାମଣି'ରୁ । 'ବିଦଗ୍ଧଚିନ୍ତାମଣି' ଆମର ଆଉ ଏକ ଗୀତଗୋବିନ୍ଦ । ଏଥିରୁ ଯୁଗପତ ହରିକଥା ଶୁଣିହେବ ଓ ଶୃଙ୍ଗାରରସ ଆସ୍ୱାଦନ

କରିହେବ । 'ବିଦଗ୍ଧ ଚିନ୍ତାମଣି'ର ପାଠୋଦ୍ଧାର କିନ୍ତୁ ମଜାର କଥା ନୁହେଁ । ସକଳ ଉପଜୀବୀ ଗୋଟିଏ କାବ୍ୟ ଯେବେ ଓଡ଼ିଆ ଭାଷାରେ ଥାଏ, ତେବେ ତାହା ଏହି ସୁବିଶାଳ ବିଦଗ୍ଧ ଚିନ୍ତାମଣି । ନ୍ୟାୟାଦି ଶାସ୍ତ୍ରପୁରାଣ ବେଦାଗମ କାବ୍ୟ । କବିତ୍ୱ ଓ ବ୍ୟୁତ୍ପତ୍ତିର ଗଭୀର ଗହନ ଭଣ୍ଡାର ଏହା । ଏଇ କାବ୍ୟକୁ ଯେବେ କେହି ଆମୂଳାନ୍ତ ପଢ଼ି ଉପଭୋଗ କରିପାରେ, ତେବେ ତାଙ୍କ ପାଇଁ କୌଣସି ପ୍ରାଚୀନ ଓଡ଼ିଆ କାବ୍ୟ ଦୁରୂହ ହୋଇ ଉଠିବ ନାହିଁ ଆଉ; ନୂଆ ଶବ୍ଦ ମିଳିବ କି ନାହିଁ ସନ୍ଦେହ । ଏହାର ପାଠୋଦ୍ଧାର ପାଇଁ ଆର୍ତ୍ତବଲ୍ଲଭଙ୍କୁ ଲାଗିଛି ଅନ୍ୟୂନ ୧୮ ବର୍ଷ । ପ୍ରଥମଭାଗ ସଂପାଦିତ ୧୯୨୫ ରେ; ପଞ୍ଚମ ଖଣ୍ଡ ପ୍ରକାଶିତ ୧୯୪୨ରେ । ଆଉ ଯେତେ ଗ୍ରନ୍ଥର ପାଠୋଦ୍ଧାର ଓ ମୁଖବନ୍ଧ ରଚନା କରାଯାଇଛି, ସେଗୁଡ଼ିକ ଯେମିତି ଥିଲା ବିଦଗ୍ଧଚିନ୍ତାମଣିର ପାଠୋଦ୍ଧାରର ପ୍ରସ୍ତୁତି ମାତ୍ର । ଏହା କେବଳ ସମ୍ଭବ ହେଲା ତାଙ୍କ ସଂସ୍କୃତ ଭାଷା ସାହିତ୍ୟ କ୍ଷେତ୍ରର ବ୍ୟୁତ୍ପତ୍ତିବଳରେ । ଏଥିପାଇଁ କ'ଣ ନ ପଢ଼ିଥିବେ ? ଷଡ୍‌ଦର୍ଶନ, ପ୍ରସ୍ଥାନତ୍ରୟ, ପୁରାଣ ଓ ଉପପୁରାଣ, ତନ୍ତ୍ରଗ୍ରନ୍ଥ, କାମଶାସ୍ତ୍ର, ଅଳଙ୍କାରଶାସ୍ତ୍ର, ସଂସ୍କୃତ କାବ୍ୟକବିତା, ନାଟକ ଓ ବୈଷ୍ଣବ ରସଶାସ୍ତ୍ର ଏବଂ ବୈଷ୍ଣବ ସାହିତ୍ୟ ସବୁ । ମୁଖବନ୍ଧ ସାରା ବହୁ-ଶାସ୍ତ୍ର-ଦର୍ଶିତାର ଭୂରିଭୂରି ଅଭିଜ୍ଞାନ ଅନାୟସଲକ୍ଷ୍ୟ । ପ୍ରସ୍ତୁତି ବିରାଟ । ଓଡ଼ିଆଙ୍କ ପାଇଁ ବିସ୍ମୟକର ଏବେ ବି । କ୍ୱଚିତ କେହି ପଢ଼ିଥିବେ ବିଦଗ୍ଧଚିନ୍ତାମଣି ଆମୂଳାନ୍ତ । ମୁଖବନ୍ଧଗୁଡ଼ିକରେ ଭାଷା, ସାହିତ୍ୟ, ସଂସ୍କୃତି ଓ ଧର୍ମଦର୍ଶନ କ୍ଷେତ୍ରରେ ତାଙ୍କ ମାନସିକ ଅଭିଯାତ୍ରାର ଜୀବନ୍ତ କାହାଣୀ ଲିପିବଦ୍ଧ ରହିଛି । ଆମୂଳାନ୍ତ ପଢ଼ି ସେଗୁଡ଼ିକର ମୂଲ୍ୟାୟନ କରିବା ଦୁସାଧ ମାତ୍ର ନୁହେଁ, ଅସାଧ ବ୍ୟାପାର ।

ମୁଖବନ୍ଧଗୁଡ଼ିକର ନିର୍ଦ୍ଦିଷ୍ଟ କୌଣସି ଆଦର୍ଶ ନାହିଁ, କି ଆକାର ନାହିଁ । ଗ୍ରନ୍ଥ ଅଲଗା ଅଲଗା, ମୁଖବନ୍ଧ ଅଲଗା ଅଲଗା । କୌଣସିଟି ପଛରେ ମଧ ସୁପରିକଳ୍ପିତ ଚିନ୍ତା କି ଯୋଜନା ନାହିଁ । ବିଚାର, ବିଶ୍ଳେଷଣ ଓ ବିତର୍କର ଆଦିମଧ୍ୟଅନ୍ତଃଯୁକ୍ତ ପରିପୂର୍ଣ୍ଣତା ନାହିଁ; ଲେଖୁ ଲେଖୁ ଯାହା ଲେଖି ହୋଇଯାଇଛି ସେତେବେଳେ ; ତାହାହିଁ ଯଥେଷ୍ଟ । ପୋଥିସଂଗ୍ରହ ଓ ପୋଥିପରିଚୟ ସଂକ୍ରାନ୍ତ ବିବରଣୀ ମାତ୍ର ଅଛି ୮ଟି ଗ୍ରନ୍ଥର ମୁଖବନ୍ଧରେ । ସେଗୁଡ଼ିକ ହେଲା- ବିଦଗ୍ଧଚିନ୍ତାମଣି, ଲାବଣ୍ୟବତୀ, ରହସ୍ୟମଞ୍ଜରୀ, ରସକଲ୍ଲୋଳ, ଜଗମୋହନଛାନ୍ଦ, ଉଷାଭିଳାଷ, ମଥୁରାମଙ୍ଗଳ ଓ ମାଦଳାପାଞ୍ଜି ।

ଅନ୍ୟତ୍ର ନାହିଁ । ସବୁଠୁଁ ଅଛି ଗ୍ରନ୍ଥକର୍ତ୍ତାଙ୍କ ପରିଚୟ ପ୍ରଦାନ କିନ୍ତୁ । ଏହି ଗୋଟିକ ହିଁ ସାଧାରଣ ଧର୍ମ । ଅନେକ ଗ୍ରନ୍ଥର ଛାନ୍ଦ କି ଅଧ୍ୟାୟ ଅନୁଯାୟୀ ସାରାଂଶ ସହିତ ସାହିତ୍ୟ ବିଚାର-ପ୍ରବଣତା ରହିଛି । ଅଧିକାଂଶ ମୁଖବନ୍ଧ କିନ୍ତୁ ପରିଶ୍ରମଲବ୍ଧ । ତନ୍ମଧ୍ୟରୁ **ରହସ୍ୟମଞ୍ଜରୀ, ମଥୁରାମଙ୍ଗଳ, ଉଷାଭିଳାଷ, ରୁକ୍ମିଣୀବିଭା ଓ ଲାବଣ୍ୟବତୀ** ଆଦିର ମୁଖବନ୍ଧ ବିଚାର ବିଶ୍ଳେଷଣପୁଷ୍ଟ ଓ ରସାନୁଭୂତିବିଭୋର । ଗବେଷଣାତ୍ମକ ଚିତ୍ତବୃତ୍ତିଠାରୁ ବହୁଶାସ୍ତ୍ରଦର୍ଶିତା ପର୍ଯ୍ୟନ୍ତ କୌଣସିଟିର ଅଭାବ ନାହିଁ; ବିଷୟ ପରିଶୀଳନ ବେଶ୍ ଗଭୀର ଅନୁଧ୍ୟାନସହିଷ୍ଣୁ । ତେବେ ଅର୍ଦ୍ଧାଧିକ ମୁଖବନ୍ଧ ଅପୂର୍ଣ୍ଣାଙ୍ଗ ଓ ଆଂଶିକ ଲକ୍ଷଣାକ୍ରାନ୍ତ- ଯେମିତି ଯଥାଶୀଘ୍ର ଲେଖିବାକୁ ହେବ । ଆର୍ତ୍ତବଲ୍ଲଭଙ୍କର ସୀମାବଦ୍ଧତା ଥିଲା ନିଶ୍ଚୟ । ସମୟାଭାବ ଓ ଅର୍ଥାଭାବର ସମ୍ମୁଖୀନ ସେ ହୋଇଛନ୍ତି । ବିପୁଳ କାର୍ଯ୍ୟଭାର ପାଇଁ ଗୋଟିଏ ଜୀବନ ଅକୁଳାଣ । ଯେଉଁ ଗ୍ରନ୍ଥକୁ ଯେତିକି ଶ୍ରମ, ସମୟ ଓ ଅଭିନିବେଶ ଯୋଗାଇବା କଥା, ସେ ତାହା କାହୁଁ ପାଇବେ? ଅନ୍ୟପକ୍ଷରେ, କେତେଗୁଡ଼ିଏ ସଦ୍‌ଗୁଣ ତାଙ୍କର ବିଚାର-ବିଶ୍ଳେଷଣର ଓ ବ୍ୟାଖ୍ୟା-ବିବେଚନାର ସୀମାନିର୍ଦ୍ଧେଶ କରିଛି । ତାଙ୍କର ଦେଶାନୁରାଗ ପ୍ରବଳ, ଭାଷାନୁରାଗ ତତୋଧିକ । ଭାଷା ଓ ସାହିତ୍ୟର ଗୌରବବୋଧ ସାଙ୍ଗକୁ ଅଛି ନିବିଡ଼ ଧର୍ମପ୍ରାଣତା ଓ ମଧ୍ୟଯୁଗୀୟ ଜୀବନଦୃଷ୍ଟିର ପ୍ରଖରତା । ଧର୍ମଦର୍ଶନର ପ୍ରବକ୍ତା କବିଙ୍କୁ ଘେନି ସେ ଉତ୍ସାହିତ ହୋଇପଡ଼ନ୍ତି ଅଶେଷ । ଆଉ ସେମାନେ ଯାହା ଯେଉଁଠି ଲେଖିଛନ୍ତି, ସେଗୁଡ଼ିକୁ ଅଖଣ୍ଡ ସତ୍ୟ ବୋଲି ସ୍ୱୀକାର କରିନିଅନ୍ତି ସର୍ବାନ୍ତଃକରଣରେ । ସାହିତ୍ୟ ଜଗତ କଳ୍ପନାର ଜଗତ । ଇଂରାଜୀ-ସାହିତ୍ୟ-ଶିକ୍ଷାର୍ଥୀକୁ ପ୍ରଥମରୁ ଶିଖାଯାଏ- ଗଳ୍ପ, ନାଟକ ଓ କବିତାରେ ଯାହା ଯେଉଁଠି ଲେଖାଯାଇଛି, ସେସବୁ ବିବୃତ୍ତି କି ବକ୍ତବ୍ୟକୁ ନିର୍ଭୁଲ ସତ୍ୟ ଭାବରେ ଗ୍ରହଣ କରାଯାଇ ପାରିବନାହିଁ, "In all of them, the reference is to a world of fiction, of imagination. The statement in a novel in a poem, or in a drama are not literally true; they are not logical propositions. There is a central and important difference between a statement, even in a historical novel or a novel by Balzac, which seems to convey 'information about actual happening, and the same information' appearing in a book of history, or sociology (Wallek and Warren), ଗଳ୍ପ ଉପନ୍ୟାସ, କି କାବ୍ୟ କବିତାର କୌଣସି ବିବୃତ୍ତି କି ବକ୍ତବ୍ୟକୁ ଆକ୍ଷରିକ ଅର୍ଥରେ ସତ୍ୟ ଓ ସାର୍ଥକ

ବୋଲି ଗ୍ରହଣ କରିହେବନାହିଁ, କୌଣସିଟି ଐତିହାସିକ ସତ୍ୟ, କି ଯୁକ୍ତିସମ୍ମତ ପ୍ରସ୍ତାବ ନୁହନ୍ତି । ଓଡ଼ିଆ ସାହିତ୍ୟଶିକ୍ଷାର୍ଥୀକୁ ଶିଖାଯାଏ- ଯାହା ଯେଉଁଠି ବେଦପୁରାଣ କି ପ୍ରାଚୀନ ସାହିତ୍ୟରେ ଲେଖାଯାଇଛି, ସବୁ ଘଟନା ନିର୍ଭୁଲ ଭାବରେ ସତ୍ୟ ଓ ସାର୍ଥକ । ଶବ୍ଦ ପ୍ରମାଣଠାରୁ ବଡ଼ ପ୍ରମାଣ ନାହିଁ । ଓଡ଼ିଆ ଛାତ୍ରଙ୍କ ପାଇଁ ସବୁ ସତ୍ୟ, ଆକ୍ଷରିକ ଅର୍ଥରେ ସତ୍ୟ । ପୋଥିରେ ଲେଖାଯାଇଥିଲେ ଆଉ ପ୍ରଶ୍ନ କାହିଁ? ଓଡ଼ିଆ ଛାତ୍ର ରହିଯାଏ ପ୍ରାୟ ଷୋଡ଼ଶ ଶତାବ୍ଦୀରେ; ପ୍ରଶ୍ନହୀନ ଭକ୍ତି ଓ ବିଶ୍ୱାସ ଜଗତରେ ।

ଏହି ବିଶ୍ୱାସ-ପ୍ରବଣତାର ଆରମ୍ଭ ଆର୍ତ୍ତବଲ୍ଲଭଙ୍କଠାରୁ । ସେ ପୋଥିରେ ଲେଖାକଥାକୁ ଓ ଅଲୌକିକ ଶୁଣାକଥା ସବୁକୁ ଅକାଟ୍ୟ ପ୍ରମାଣ ଭାବରେ ଗ୍ରହଣ କରନ୍ତି, କୌଣସି କବିଙ୍କୁ ଅବିଶ୍ୱାସ କରି ପାରନ୍ତିନାହିଁ, ଲୋକକଳ୍ପନାକୁ କି ଲୋକବିଶ୍ୱାସକୁ ଧ୍ରୁବଜ୍ଞାନ କରନ୍ତି । ସମ୍ବାଦର ମୂଳକଥାଟି ମିଛ ଓ କଳ୍ପନାର ଡେଣ୍ଡ଼ା । ତିନୋଟି ଦୃଷ୍ଟାନ୍ତ ଦେଖନ୍ତୁ- ବୁଝିହେବ ଆର୍ତ୍ତବଲ୍ଲଭଙ୍କ ମିଥ୍ୟାଦୃଢ଼ତାକୁ ଏ କ୍ଷେତ୍ରରେ । ଆର୍ତ୍ତବଲ୍ଲଭଙ୍କ ଶ୍ରୀଚୈତନ୍ୟ ଶ୍ରୀକୃଷ୍ଣଙ୍କର ନୂଆ ଅବତାର । ଦେବକୀ କୃଷ୍ଣଙ୍କର ବାଲ୍ୟ ଓ କୈଶୋର ଲୀଳା ଦେଖିପାରି ନଥିଲେ, ଏବେ ଦେଖିବେ । ସେ କଳିଯୁଗରେ ପୁରନ୍ଦରଙ୍କ ପତ୍ନୀ ହେବେ, ଜନ୍ମିବେ ତାଙ୍କ ଗର୍ଭରୁ ଶ୍ରୀଚୈତନ୍ୟ । ଏଥର ବାଲ୍ୟ ଓ କୌଶୋର ଲୀଳାମାତ୍ର ଦେଖିବେ । ଏକଥା ଈଶ୍ୱର ଦାସ ଲେଖିଛନ୍ତି 'ଚୈତନ୍ୟ ଭାଗବତ'ରେ । କିଏ ଅବିଶ୍ୱାସ କରିବ? ମା'କୁ ଅନ୍ୟ ଲୋକର ସ୍ତ୍ରୀ ହୋଇ ପୁତ୍ରର ବାଲ୍ୟ ଓ କୌଶୋର ଲୀଳା ଦେଖିବାକୁ ପ୍ରବର୍ତ୍ତାଇବାରେ ଅବଶ୍ୟ ସୁନ୍ଦର ଲୋକକଳ୍ପନା ଅଛି । ସେଠାରେ ଶ୍ରୀକୃଷ୍ଣଙ୍କର କି ଈଶ୍ୱରତା ପ୍ରକାଶ ପାଇଲା ଯେ, ଭକ୍ତିରେ ଗଦ୍‌ଗଦ୍ ହୋଇଯାଇ ହେବ? ବଳରାମ ଜଗନ୍ନାଥଙ୍କ ସାଙ୍ଗରେ ଲଙ୍କା ଗଲେ, ବିଭୀଷଣକୁ ଭେଟିଲେ ଓ କଳା ମଲ୍ଲୀଫୁଲ ଆଣି ଆସିଲେ । ଏକଥା ଅଛି 'ବଟଅବାକାଶ'ରେ । ଭକ୍ତ ଓ ଠାକୁରଙ୍କ ଲଙ୍କାଯାତ୍ରା, ବିଭୀଷଣର ଉପସ୍ଥିତି, ସମ୍ବର୍ଦ୍ଧନା, କଳା ମଲ୍ଲୀଫୁଲର ପ୍ରାତ୍ୟୁପହାର କଥା ବେଶ୍ କାଳ୍ପନିକ ବ୍ୟାପାର ନିଶ୍ଚୟ । ଯେବେ ଏଥିରୁ ସତସତିକା ବଳରାମଙ୍କ ଲଙ୍କାଯାତ୍ରା ଓ ସ୍ୱର୍ଣ୍ଣଝରି ଚୋରି ଉପାଖ୍ୟାନକୁ ଆକ୍ଷରିକ ସତ୍ୟ ଘଟନା ଅର୍ଥରେ ବିଶ୍ୱାସ କରାଯାଏ, ତେବେ ସାହିତ୍ୟ ବିଚାର କେଉଁଠି ପହଞ୍ଚିବ ତାହା ବୁଝାଇ କହିବାକୁ ହେବନାହିଁ ।

ଅଚ୍ୟୁତାନନ୍ଦ ଲେଖିଛନ୍ତି ଯେ, ତାଙ୍କ ଗ୍ରନ୍ଥ ସଂଖ୍ୟା ଏକ ଲକ୍ଷରୁ ଊର୍ଦ୍ଧ୍ୱ । ପଦ ପଦାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା । ପ୍ରଶ୍ନାତୀତ ଭାବରେ କଥାଟାକୁ

ବିଶ୍ୱାସ କଲେ ଅସଂଖ୍ୟ ଅଚ୍ୟୁତାନନ୍ଦଙ୍କୁ ଅନନ୍ତକାଳ ଶ୍ରୀକୃଷ୍ଣ ମହିମାଗାନ କରିବାକୁ ପଡ଼ିବ । ଏପର୍ଯ୍ୟନ୍ତ ପ୍ରକାଶିତ ସବୁ ଓଡ଼ିଆ ବହିର ସଂଖ୍ୟା କେତେହେବ? ଲକ୍ଷକରୁ ବେଶି ? ଏଥିରୁ କିନ୍ତୁ ଆର୍ତ୍ତବଲ୍ଲଭ ଏକ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଯେ, "ଅଣାକାର ସଂହିତା" ମହାପୁରୁଷଙ୍କ ଶେଷଲେଖା । କେମିତି ବିଶ୍ୱାସ କରିବା ? ଆର୍ତ୍ତବଲ୍ଲଭ ପ୍ରାଚୀନ କବିଙ୍କ ବକ୍ତବ୍ୟ ଓ ବିବୃତ୍ତିକୁ ଆକ୍ଷରିକ ଅର୍ଥରେ ନିର୍ଭୁଲ ସତ୍ୟ ବୋଲି ବୁଝନ୍ତି ଓ ତଦନୁସାରେ ସାହିତ୍ୟର ବିଚାର କରନ୍ତି; ସେଇଥିପାଇଁ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଚୈତନ୍ୟ ଦାସ, ଭୀମଭୋଇ ଆଦି ସ୍ରଷ୍ଟାଙ୍କ ଗ୍ରନ୍ଥର ମୁଖବନ୍ଧରେ ସ୍ପଷ୍ଟତା, ସୂକ୍ଷ୍ମତା, ପରିମିତ କି ଯୁକ୍ତିଯୁକ୍ତତା ଖୋଜିଲେ ମିଳିବ ନାହିଁ , ସତ୍ୟ ଇତିହାସ ଖୋଜିଲେ ମିଳିବ ନାହିଁ । ପରିବର୍ତ୍ତେ ଦେଖିବାକୁ ମିଳିବ- ସଂସ୍କୃତଶ୍ଳୋକ- ସଂକୁଳ ଧର୍ମଦର୍ଶନାତ୍ମକ ଲୋକଗଳ୍ପ ଓ ଲୋକବିଶ୍ୱାସ ଅଧ୍ୟୁଷିତ ଅନର୍ଗଳତା । ବ୍ରହ୍ମଶାଙ୍କୁଳି ଓ ଅଣାକାର ସଂହିତାର ମୁଖବନ୍ଧକୁ ସେ ନିଜେ 'ନିଷର୍ମାର ବାଚାଳତା' ବୋଲି ଭାବିଚିନ୍ତି ବି । ଓଡ଼ିଶାର ଅସଂଖ୍ୟ ଅଚ୍ୟୁତନନ୍ଦ ଭର୍ତ୍ତି । ସେ କିନ୍ତୁ ସମସ୍ତଙ୍କୁ ଏକ ଓ ଅଭିନ୍ନ ବୋଲି ଭାବନ୍ତି; ତାଙ୍କ ପାଇଁ ଶ୍ରୀଚୈତନ୍ୟ ଓ ଶ୍ରୀଜଗନ୍ନାଥ ଏତେ ଗୁରୁତ୍ୱପୂର୍ଣ୍ଣ ଯେ, ସରସ୍ୱତୀ ଆପେ ଆପେ ତାଙ୍କ ସାହିତ୍ୟ-ମଞ୍ଚ ଛାଡ଼ି ପଳାନ୍ତି; ଅର୍ଥାତ୍ ସାହିତ୍ୟ ବିଚାରରେ ତାଙ୍କର ଧର୍ମ ଆଗେ, ସାହିତ୍ୟ ପଛେ । ଦର୍ଶନ ଆଗେ, ଭୂୟୋଦର୍ଶନ ପଛେ । ଧର୍ମାତ୍ମକ ଗ୍ରନ୍ଥର ମୁଖବନ୍ଧଗୁଡ଼ିକ ଉଚ୍ଚକୋଟିର ନୁହନ୍ତି କେବେ ତେଣୁ । ନିର୍ଭରଯୋଗ୍ୟ ନୁହନ୍ତି । ଧର୍ମ-ଦୁର୍ବଳତା ହିଁ ତାଙ୍କର ବଳ । ସେହିହିଁ ଭୀମଙ୍କ ସହିତ ଆମ ପରିଚୟକୁ ଭଦ୍ର ଓ ବ୍ୟବସ୍ଥିତ କରିଛନ୍ତି, 'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ' ବାଣୀ ସହିତ ଆମର ଆତ୍ମୀୟତା ଯୋଡ଼ିଛନ୍ତି । ସବୁଠୁଁ ଭଲ ମୁଖବନ୍ଧ 'ଲାବଣ୍ୟବତୀ'ର । ଉଭୟ ଦୀର୍ଘତମ ଓ ମହତ୍ତମ ଏହା । ଏଥିରେ ଆର୍ତ୍ତବଲ୍ଲଭଙ୍କ ଐତିହ୍ୟ ନିର୍ଭର ସାହିତ୍ୟାନୁରାଗ ଅଭାବିତପୂର୍ବ । ତାହା ସାଙ୍ଗକୁ ଅଛି ଇତିହାସବୋଧ, ସାଂସ୍କୃତିକ ଅବଧାନତା ଓ ସଂସ୍କୃତ କାବ୍ୟକବିତାଅଳଂକାର ଶାସ୍ତ୍ର ପରିଶୀଳନ-ସଂଜାତ ରସବୋଧ । ଆମୂଳାନ୍ତ ପଢିଲେ ଯେ କେହି ଉପକୃତ ହେବ । ଆମୂଳାନ୍ତ ପଢିବା ସହଜସାଧ୍ୟ ନୁହେଁ ଅବଶ୍ୟ । ବିଷୟ ଉପସ୍ଥାପନାରେ ପାରସ୍ପର୍ଯ୍ୟ ଶୃଙ୍ଖଳା ନାହିଁ କାହିଁ । ବିଷୟ ନିର୍ବାଚନରେ ଅଛି କିନ୍ତୁ ପ୍ରାଚୀନ କାବ୍ୟବୋଧର ପଥନିର୍ଦ୍ଦେଶ ଓ ମୂଲ୍ୟବାନ ପାଥେୟ ଅନେକ । ପ୍ରଥମେ ଅଛି ସଂସ୍କୃତ ଅଳଙ୍କାରର ଶାସ୍ତ୍ର ପରିଚିତି- କବି, ପ୍ରତିଭା ଓ କାବ୍ୟର ସଂଜ୍ଞାଠାରୁ ଆରମ୍ଭକରି ରସ, ରୀତି ଓ ଅଳଙ୍କାର

ପର୍ଯ୍ୟନ୍ତ ନାନା କଥା । ଏହି ଅଂଶଟି ବୋଧହୁଏ ଓଡ଼ିଆ ଭାଷାରେ ରଚିତ ପ୍ରଥମ ଅଳଙ୍କାର ଶାସ୍ତ୍ର । ଏହା ସହିତ ଆନୁଷଙ୍ଗିକ ଭାବରେ ରହିଛି ଆହୁରି ଅନେକ ଉପାଦେୟ କଥା- ବିଜୟ ଚନ୍ଦ୍ର ମଜୁମଦାରଙ୍କ ଉଞ୍ଜବିଦୂଷଣର କଡ଼ା ପ୍ରତ୍ୟୁତ୍ତର, ଶ୍ଳୀଳତାଅଶ୍ଳୀଳତା ବିଚାର, ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ନିରୂପଣ, ରାଗରାଗିଣୀ ଓ ଛାନ୍ଦ ସଂକ୍ରାନ୍ତ ସୂକ୍ଷ୍ମ ମନ୍ତବ୍ୟ ଓ ବିଚାର ବିଶ୍ଳେଷଣ, ରତ୍ନମଞ୍ଜରୀ ଓ ଲାବଣ୍ୟବତୀର ତୁଳନାତ୍ମକ ବିଚାର । ରହିଛି ବି ଲାବଣ୍ୟବତୀ ଉପରେ ପୂର୍ବସୂରୀଙ୍କ ପ୍ରଭାବ ନିର୍ଣ୍ଣୟ ଓ ପରବର୍ତ୍ତୀ କବି ସମାଜ ଉପରେ ଲାବଣ୍ୟବତୀର ପ୍ରଭାବ-ବିସ୍ତାର-ବିଶ୍ଳେଷଣ । ଅଧିକନ୍ତୁ ରହିଛି ବି ସମଗ୍ର କାବ୍ୟର ଆତ୍ମଜାତ ଛାନ୍ଦବାଗରେ ଆଖ୍ୟାନବସ୍ତୁର ସାରାଂଶପ୍ରଦାନ । ଉଚ୍ଚାଙ୍ଗ ସାହିତ୍ୟ ସମାଲୋଚନାର ଉପାଦାନ ଉପକରଣର ଅଭାବ ନାହିଁ; ବିଚାର ବିଶ୍ଳେଷଣ ଅଛି, ତୁଳନାତ୍ମକ ବିଚାର ଅଛି, ଅଛି ବି ବୋଧ-ବୁଦ୍ଧି-ମନନ ସହିତ ଆବେଗ, ସମ୍ବେଦନା ଓ କୌତୂହଳ,  ଅଛି ବି ପ୍ରଚୁର ଜ୍ଞାନ ଓ ନିବିଡ଼ ଭଲପାଇବା ଓ ମମତ୍ୱବୋଧ । ଶେଷ ପର୍ଯ୍ୟନ୍ତ କିନ୍ତୁ ଉପସ୍ଥାପନାର ପଦ୍ଧତି ପ୍ରକରଣର ଦୁର୍ବଳତା ଯୋଗୁ ବିଶାଳ ରଚନାଟି ନିଷ୍ପ୍ରାଣ ହୋଇପଡ଼ିଛି । କାହିଁ ସୁଚିନ୍ତିତ ଯୋଜନା ନାହିଁ, କି ବିଶେଷ ଅନ୍ତର୍ଦୃଷ୍ଟି ନାହିଁ । ତଥାପି ପାଠୋଦ୍ଧାର, ସଟୀକ ସଂଶୋଧନ ଓ ସାହିତ୍ୟ ସମାଲୋଚନା ଘେନି ଏହି ଲାବଣ୍ୟବତୀର ସଂପାଦନା ପାଠାଲୋଚନା (Textual Criticism)ର ରୋଲମଡେଲ୍ ହୋଇ ରହିବ । ପୂରାଟା ପଢିଲେ ବୁଝିହେବ ଲାବଣ୍ୟବତୀକୁ, ବୁଝିହେବ ଉପେନ୍ଦ୍ର ଭଞ୍ଜଙ୍କୁ ଓ ପ୍ରାଚୀନ ସାହିତ୍ୟର ସୌନ୍ଦର୍ଯ୍ୟମାଧୁର୍ଯ୍ୟକୁ । ମୁଖବନ୍ଧଗୁଡ଼ିକର ଅମୂଲ୍ୟତା କିନ୍ତୁ ଏଇଠି ଶେଷ ନୁହେଁ; ସେଗୁଡ଼ିକର ଅଖଣ୍ଡ ସମଗ୍ରତା କଥା ଭାବିବାକୁ ହେବ ।

ଆଠ

ଆସନ୍ତୁ ସିଂହାବଲୋକନ କରିବା । ଊନବିଂଶ ଶତାବ୍ଦୀର ଶେଷ ଭାଗର କଥା । ଓଡ଼ିଆ ଜାତିର ସାହିତ୍ୟବୋଧ ଅପରିଣତ ଥାଏ; ଇତିହାସବୋଧ ନ ଥାଏ ଆଦୌ । ନୂଆ ମଧ୍ୟବିତ୍ତ ଶିକ୍ଷିତ ସମାଜଟିଏ ଗଢିଉଠୁଥାଏ । ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ପ୍ରସରୁଥାଏ, ନୂଆ ବଙ୍ଗଳାସାହିତ୍ୟର ରଙ୍ଗରସ ସଞ୍ଚରୁ ଥାଏ । ନୂଆ ଓଡ଼ିଆ ସାହିତ୍ୟ ଭୂମିଷ୍ଠ ହେଲା । ଆତ୍ମପରିଚିତବୋଧଅନ୍ୱେଷଣରୁ ଏଣେ ଉନ୍ନତ ପ୍ରାଚୀନ କାବ୍ୟ କବିତାର ଉଦ୍ଧାର ଓ ସଂରକ୍ଷଣ କରାଗଲା । ଦୁଇଦିଗ ଜଗିବା ଦୁଷ୍କର । ଗୋଟିଏ ପାଖରେ ପ୍ରାଚୀନ ଓଡ଼ିଆ ସାହିତ୍ୟଚର୍ଚ୍ଚା ପ୍ରତି ଜାତି ବିମୁଖ ନୁହେଁ, ଅନ୍ୟପକ୍ଷରେ ବିଦେଶୀ

ଭାଷାର ସାହିତ୍ୟ ପ୍ରଭାବ ସୂତ୍ରେ ସଦ୍ୟୋଜାତ ଆଧୁନିକ ସାହିତ୍ୟ ସମ୍ବନ୍ଧରେ ଆଗ୍ରହ ଓ ଔତ୍ସୁକ୍ୟ ବଢାଇବାକୁ କୁଣ୍ଠିତ ନୁହେଁ । ଫଳତଃ ଦୁଇଟି ଉଗ୍ର ଦୁର୍ବିଚାର ସେଦିନ ସଂଗ୍ରାମୋଦ୍ୟତ ହୋଇଉଠିଥିଲେ । ଦଳେ କହୁଥିଲେ- ଯାହା ପ୍ରାଚୀନ, ତାହା ଗ୍ରାହ୍ୟ ଓ ସଂରକ୍ଷଣୀୟ ; ଆଉ ଦଳେ କହୁଥିଲେ- ଯାହା ସଦ୍ୟୋଜାତ ନୂତନ, ତାହାହିଁ ଭଲ ଓ ଅନୁକରଣୀୟ । ପୁରୁଣା ମାତ୍ରେ ସାଧୁ ନୁହେଁ, ନୂଆ ମାତ୍ରେ ପରିତ୍ୟାଜ୍ୟ ନୁହେଁ । ସେଦିନ କେହି ବୁଝୁ ନ ଥିଲେ ଏକଥା । ପ୍ରାଚୀନ ଥିବାରୁ ଆଧୁନିକର ଭୂମି ଓ ଭୂମିକା ପ୍ରସ୍ତୁତ ଥାଏ । ସାମାଜିକ ଓ ରାଜନୀତିର ଇତିହାସ କ୍ଷେତ୍ରରେ ଯାହା ସତ୍ୟ, ସାହିତ୍ୟ ଇତିହାସରେ ତାହାହିଁ ସତ୍ୟ । ଜାତି ଇତିହାସ ଜାତିର ନିର୍ଝର । କବି ଉପେନ୍ଦ୍ର ଯେମିତି ମହାନ୍, ରାଧାନାଥ ସେମିତି ବି ମହାନ୍ । ଜାତୀୟ ସାହିତ୍ୟର ବୈଶିଷ୍ଟ୍ୟ ଓ ତା'ର ଅନ୍ତର୍ନିହିତ ମୌଳିକ ପ୍ରତିଭା ଓ ପ୍ରବଣତା ସବୁଦିନେ ଇତିହାସର ଆବର୍ତ୍ତନ-ବିବର୍ତ୍ତନ ଦ୍ୱାରା ନିୟମିତ ଓ ନିୟନ୍ତ୍ରିତ । ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡର ମଣିଷ, କାଳ, ଭାଷା, ଭୌଗୋଳିକ ପରିବେଶ, ରାଜନୀତିକ ବ୍ୟବସ୍ଥା, ଶିକ୍ଷା, ସମାଜବିନ୍ୟାସ ଓ ଅର୍ଥନୀତି ପ୍ରଭୃତିର ପାରସ୍ପରିକ ସଂବନ୍ଧଦ୍ୱାରା  ସାହିତ୍ୟ-ଇତିହାସ ଗଭୀର ଭାବରେ ପ୍ରଭାବିତ ହୋଇଥାଏ । ଇତିହାସବୋଧରୁ ଜାଣିହୁଏ ଯେ, ଦେଶକାଳ-ଧୃତ ଜାତୀୟ ସାହିତ୍ୟର ବୈଶିଷ୍ଟ୍ୟ ଉପରୋକ୍ତ ପ୍ରଭାବ ଓ ନିୟନ୍ତ୍ରଣରୁ ଯେତେ ପରିବର୍ତ୍ତନଶୀଳ ହେଲେହେଁ ତାର ମୌଳ ଚରିତ୍ର ଓ ଲକ୍ଷଣ ହିଁ ଅବ୍ୟବହିତ ଯୁଗର ସୃଜ୍ୟମାନ ଇତିହାସର ନିୟାମକ ଓ ନିର୍ଦ୍ଦେଶକ ହୋଇଥାଏ । ପୂର୍ବବର୍ତ୍ତୀକାଳ ପରବର୍ତ୍ତୀକାଳ ହାତରେ ଯେଉଁ ଉତ୍ତରାଧିକାର ଧରାଇ ଦିଏ, ତାହାରି  ଅବଲୋକନରେ ନୂଆକାଳର କବି ଓ ସାହିତ୍ୟିକ ନିଜ କାବ୍ୟ ପ୍ରଚେଷ୍ଟାକୁ ନିୟୋଜିତ କରିଥାନ୍ତି । ପ୍ରାଚୀନ ନୂତନକୁ ବାଟ ବଢାଇଦିଏ ଓ ବାଟ ଛାଡ଼ିଦିଏ ।

କବି ଉପେନ୍ଦ୍ର ରାଧାନାଥଙ୍କ ଦିଗଦର୍ଶକ ନିଶ୍ଚୟ । ଭଂଜ ଥିଲେ ବୋଲି ରାଧାନାଥ ଭୂମିଷ୍ଠ ହେଲେ । ଯାହାର ଅତୀତ ନାହିଁ, ତାହାର ବର୍ତ୍ତମାନ ନାହିଁ, କି ଭବିଷ୍ୟତ ନାହିଁ । ଏହି ସଦ୍‌ବୁଦ୍ଧିରୁ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଓଡ଼ିଆଏ ଅତୀତକୁ ଖୋଜିଛନ୍ତି, ଇତିହାସ ଉଦ୍ଧାର କରିଛନ୍ତି, ଆତ୍ମସମ୍ମାନବୋଧ ଅର୍ଜିଛନ୍ତି ଓ ଗୌରବାନ୍ୱିତ ହୋଇଛନ୍ତି । ଆର୍ତ୍ତବଲ୍ଲଭ ସାହିତ୍ୟର ଇତିହାସ ଖୋଜିଛନ୍ତି । ଇତିହାସ ପ୍ରତି ତାଙ୍କର ଅସୀମ ଉତ୍ସାହ ଓ କୌତୂହଳ ସବୁ ମୁଖବନ୍ଧରେ ସମୁଦ୍ୟତ ଅଛି; ସେ ଓଡ଼ିଆ ସାହିତ୍ୟର

ଇତିହାସର ପୁନର୍ଗଠନ କରିବେ । ଏ କ୍ଷେତ୍ରରେ ତାଙ୍କ ଆଗ୍ରହ ଓ ଶ୍ରମଶୀଳତା ବାରିହୋଇ ପଡ଼େ ସର୍ବତ୍ର । ସେ ଓଡ଼ିଆଙ୍କୁ ଆଉ ଗୋଟିଏ କଥା ଶିଖାଇଛନ୍ତି । ସେଦିନ ଶିକ୍ଷିତ ଓଡ଼ିଆଏ ପ୍ରାଚୀନ ସଂସ୍କୃତ ସାହିତ୍ୟକୁ "ନିହାତି ପୁରୁଣା ଶୁଖିଲା ଫଳ" ବୋଲି ଭାବୁଥିଲେ । ଫକୀରମୋହନଙ୍କ 'ମୁଁ ହାଟ ବାହୁଡ଼ା'ରୁ ପାଖକୁ ପାଖ ଥିବା ଦୁଇଟି ଶିକ୍ଷା ଦୋକାନ କଥା ମନେ ପକାନ୍ତୁ, ପାଶ୍ଚାତ୍ୟ ସାହିତ୍ୟ ଫଳ ସୁନ୍ଦର, ଟଟକା ଓ ପାଚିଲା । କିଣୁଛନ୍ତି ଲୋକେ ଉବୁଡ଼ାପଡ଼ି । ସେ ଫଳ ଟଟକା- ପଚରା ସଢ଼ା ନୁହେଁ । ସଂସ୍କୃତ ସାହିତ୍ୟ ଫଳ ଶୁଖିଲା ନଡ଼ିଆ ପରି- ଉପରେ କଠା ଭିତରେ ରସ । ଏଇ ଯେମିତି କିଛିଦିନ ପରେ ପଚିଯିବ । ଓଡ଼ିଆ ସାହିତ୍ୟ ଫଳ କଥା ଉଠୁନାହିଁ । ପ୍ରକାରାନ୍ତରେ ଫକୀରମୋହନ ନୂଆପୁରୁଣା ସାହିତ୍ୟ ଏବଂ ଭେଦଭାବକୁ ଇଙ୍ଗିତ କରିଛନ୍ତି- ଯାହା ବିଦେଶାଗତ, କି ବିଦେଶ-ସଂସ୍ପର୍ଶ-ଜାତ, ତାହା ଯେତେ ପୁରୁଣା ହେଲେବି ଆଧୁନିକ ଓ ଟଟକା; ଯାହା ସ୍ୱଦେଶୀୟ ତାହା ଯେତେ ଅର୍ବାଚୀନ ହେଲେ ବି ପଚାସଢ଼ା !! ସାହିତ୍ୟ ଫଳ ମର୍ତ୍ତ୍ୟର ଫଳ ନୁହେଁ; ତାହା ଜନ୍ମରୁ ଟଟକା, ପାଚିଲା ଓ ସ୍ୱାଦିଷ୍ଟ । ଆମ ଭାଗବତକୁ କୁହାଯାଇଛି ଅମୃତଫଳ । ସାହିତ୍ୟଫଳର ମଞ୍ଜି, ଚୋପା ଓ ଟାକୁଆ ନ ଥାଏ- ସମସ୍ତ ଅଂଶ ରସ-ସ୍ୱରୂପ ଓ ଅମୃତମୟ । ସ୍ୱାଦିଷ୍ଟ । ପଚେ ନାହିଁ କେବେ ।

ଆର୍ତ୍ତବଲ୍ଲଭ ସୁନ୍ଦର ସୁନ୍ଦର ପାଚିଲା ଟଟକା ଫଳ ଇତିହାସରୁ ତୋଳି ଶିକ୍ଷିତ ଓଡ଼ିଆଙ୍କ ହାତରେ ଧରାଇ ଦେଇଛନ୍ତି- ଅମୃତ ନିନ୍ଦେ ସ୍ୱାଦୁପଣେ । ଓଡ଼ିଆଏ ଭୁଞ୍ଜନ୍ତୁ ଜାତି ଓ ଭାଷା ଥିବାଯାଏ । ରସବାରିଧି, ରହସ୍ୟମଞ୍ଜରୀ, ଲାବଣ୍ୟବତୀ, ବିଦଗ୍ଧଚିନ୍ତାମଣି ଓ ରସକଲ୍ଲୋଳ ଆଦି କ'ଣ କେବେ ପୁରୁଣା ହୋଇ ଯିବେ? ସେ କେବଳ ପ୍ରକାଶିତ ପୂର୍ବ ରଚନାଗୁଡ଼ିକୁ ଶୁଦ୍ଧ ଓ ସ୍ୱାଦିଷ୍ଟ କରି ପରଶିନାହାନ୍ତି, ନୂଆନୂଆ ଆବିଷ୍କାର ବଳରେ ବି ସୁସଂଗଠିତ ବିଷୟରେ ପ୍ରାଚୀନ ସାହିତ୍ୟକୁ ଆଧୁନିକ ସାହିତ୍ୟ ପାଖରେ ଭର୍ତ୍ତି କରାଇ ଦେଇଛନ୍ତି । ସେଗୁଡ଼ିକ ସ୍ୱମହିମାରେ ଝଲସି ଉଠିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସର ପୁନର୍ନିର୍ମାଣକୀର୍ତ୍ତି ଆର୍ତ୍ତବଲ୍ଲଭଙ୍କର ଅକ୍ଷୟକୀର୍ତ୍ତି । ରସବାରିଧି, ରାମବିଭା, ଉଷାଭିଳାଷ, ରହସ୍ୟମଞ୍ଜରୀ, ରୁକ୍ମିଣୀବିଭା, ଶଶିରେଖା, ମାଦଳାପାଞ୍ଜି, ରୁଦ୍ରସୁଧାନିଧି ଓ କଳସାଚଉତିଶାଦି ତାଙ୍କର ନୂଆ ଆବିଷ୍କାର ସେଦିନ । ରତ୍ନଗୁଡ଼ିକ କେବଳ ଆବିଷ୍କୃତ କି ପରିଷ୍କୃତ ହେଲେନାହିଁ, ସେଗୁଡ଼ିକର ଆବିର୍ଭାବରେ ୪୦୦ ବର୍ଷର ପ୍ରାଚୀନ ଓଡ଼ିଆ

ସାହିତ୍ୟ ପଦକ୍ଷେପ ପଦକ୍ଷେପ ଅବଲମ୍ବନରେ ସୁସ୍ଥ, ସୁନ୍ଦର ଓ ବ୍ୟବସ୍ଥିତ ଭାବରେ ଗଢ଼ିଉଠିଲା; ଧାରାବାହିକ ବିକାଶକ୍ରମର ଶୂନ୍ୟସ୍ଥାନଗୁଡ଼ିକ ପୂରଣ ହୋଇଗଲା ।

ସେ ଚର୍ଯ୍ୟାପଦ ଆବିଷ୍କାର କଥା ଜାଣିଥିଲେ । ତାହାକୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ନିଦର୍ଶନ ବୋଲି ସ୍ୱୀକାର କରୁଥିଲେ, କିନ୍ତୁ ତାହାକୁ ଘେନି ବିଶେଷ ଉତ୍ସାହ ପ୍ରକାଶ କରିନାହାନ୍ତି, ତାହା ତାଙ୍କପାଇଁ ପୂରା ଓଡ଼ିଆ ଭାଷାର ରଚନା ନୁହେଁ, ଅବହଟ୍‌ଠ ଭାଷାର ଲେଖା । ଚର୍ଯ୍ୟାପଦ ପୋଥି ଆବିଷ୍କାର ଯୋଗୁ ପୂର୍ବଭାରତର ସବୁ ଆର୍ଯ୍ୟଭାଷାର ବୟସ ବଢ଼ିଗଲା ଯଥେଷ୍ଟ । ଏବେ କେନ୍ଦ୍ର ସରକାରଙ୍କ 'Classical Language' ଯୋଜନା ଯୋଗୁ ବଢ଼ିଯିବ ଆହୁରି ୨୦୦୦ ହଜାର ବର୍ଷ ଲେଖା । ମଜାର କଥା, ଆର୍ତ୍ତବଲ୍ଲଭ ଥିଲେ ଓଡ଼ିଆ-ପ୍ରାଣ ନିଶ୍ଚୟ । ସେ ସାରଳାଙ୍କ କୃଷ୍ଣବଳରାମଙ୍କୁ ଓଡ଼ିଆ ଭାଷା ଶିଖାଇଛନ୍ତି ଦ୍ୱାପର ଯୁଗରେ, ପଞ୍ଚଦଶ ଶତାବ୍ଦୀରେ ଆମ ଭାଷାର ନାମ ଓଡ଼ିଆ ନ ଥିବା ସତ୍ତ୍ୱେ । (କ୍ଲାସିକାଲ୍ ଲାଙ୍ଗୁଏଜ୍‌ବାଲା କଥାଟାକୁ ଜାଣିନାହାନ୍ତି ବୋଧହୁଏ, ଓଡ଼ିଆ ଭାଷା ଆହୁରି ୫୦ ହଜାର ବର୍ଷ ତଳକୁ ଚାଲିଯାଇଥାନ୍ତା!) ସେ କିନ୍ତୁ ଅଯଥା ଉତ୍ସାହିତ ହୁଅନ୍ତିନାହିଁ, କି ଆଶୁ ଲାଭ ଆଶାରେ ଭୁଲଭାଲ କଥା କହନ୍ତିନାହିଁ । ଆର୍ତ୍ତବଲ୍ଲଭ ପ୍ରକାଶିତ-ପୂର୍ବ ଗ୍ରନ୍ଥଗୁଡ଼ିକୁ ଯଥାସମ୍ଭବ ଯତ୍ନ ଓ ସତର୍କତାର ସହିତ ସଂପାଦନା କରି କାଳକ୍ରମେ ସଜାଇଛନ୍ତି । ପଦ୍ଧତି ଓ ପ୍ରକରଣ ତର୍କାତୀତ ନୁହେଁ, କିନ୍ତୁ ଆର୍ତ୍ତବଲ୍ଲଭଙ୍କ ମାତୃଭାଷାପ୍ରୀତି, ସାହିତ୍ୟବୋଧ, ନିଷ୍ଠା, ଆନ୍ତରିକତା ଓ ଜାତୀୟତାବୋଧ ଅବିସମ୍ବାଦିତ । ସେ ଗ୍ରନ୍ଥର ପାଠୋଦ୍ଧାର କରିଛନ୍ତି, ଆଉ ତାହାକୁ କେଉଁଠି ସ୍ଥାପିଲେ ଗ୍ରନ୍ଥର ମର୍ଯ୍ୟାଦା ବଢ଼ିବ ଓ ଓଡ଼ିଆ ସାହିତ୍ୟ ସମୃଦ୍ଧ ଦିଶିବ, ତାହା ସେ ଦେଖିଛନ୍ତି ସର୍ବାଗ୍ରେ । ଅପୂର୍ବ ଉତ୍ସାହରେ ସେ ଗ୍ରନ୍ଥର ରଚନାକାଳ ନିରୂପଣ କରିଛନ୍ତି, ବ୍ୟବହୃତ ଅନେକ ଶବ୍ଦର ଭାଷାତାତ୍ତ୍ୱିକ, ସାମାଜିକ ଓ ଐତିହାସିକ ଅଧ୍ୟୟନ ପ୍ରସ୍ତୁତ କରିଛନ୍ତି । ବାଣୀ ଓ ବୃତ୍ତଗୁଡ଼ିକର ପ୍ରୟୋଗ ଅନୁଧ୍ୟାନ କରି, କାଳାନୁକ୍ରମିକ ହିସାବ ରଖି, କିଏ କାହାପରେ ଆସିଥିବ ତାହାର ସମ୍ଭାବନା କଳିଛନ୍ତି । ତୁଳନାତ୍ମକ ବିଚାର କରି କିଏ କାହା ଉପରେ କି ପ୍ରଭାବ ପକାଇଥିବ, ତାହା ନିରୂପଣ କରିଛନ୍ତି । ମୁଖବନ୍ଧ ଏକ ଏକ ସେତୁବନ୍ଧ । ଉପେନ୍ଦ୍ର କି ଅଭିମନ୍ୟୁ ଆକାଶରୁ ଖସି ନାହାନ୍ତି, ସେମାନେ ଆମ ଐତିହ୍ୟର ସନ୍ତାନ । ଓଡ଼ିଆ ସାହିତ୍ୟର ଇତିହାସ ତାଙ୍କ ଆବିର୍ଭାବର ପ୍ରଶସ୍ତ ଭିତ୍ତିଭୂମି ଯୋଗାଇଛି । ଆମ ସାହିତ୍ୟ ଇତିହାସର ଧାରାବାହିକତା ଦେଖାଇବାରେ ଆର୍ତ୍ତବଲ୍ଲଭଙ୍କର ୍ର୍ତାର୍ଥତା ନିହିତ । ଗଙ୍ଗା ବହି ଚାଲିଛି । ସେ ସିନା ଓଡ଼ିଆ ସାହିତ୍ୟର ଇତିହାସ ଲେଖି ନାହାନ୍ତି, ଇତିହାସର ଉପାଦାନ ଓ ଉପକରଣ ସବୁ କିନ୍ତୁ ଯୋଗାଡ଼କରି ଦେଇଯାଇଛନ୍ତି । ସେ ନ ଥିଲେ ସେଦିନ ସମ୍ଭ୍ରାନ୍ତ ଏଡ଼େ ବିଶାଳ ଧାରାବାହିକ ପ୍ରାଚୀନ ଓଡ଼ିଆ ସାହିତ୍ୟ ବୋଲି ବ୍ୟାପାରଟିଏ ଅଛି ବୋଲି ଜାଣି ହୋଇଥାନ୍ତା କିପରି? ତାଙ୍କ ରୀତିପଦ୍ଧତି ପ୍ରକରଣ ଭଙ୍ଗୁର ହୋଇପାରେ, ତାଙ୍କୁ କେହି ବିତର୍କରେ ପରାଭୂତ୍ କରିପାରନ୍ତି, କିନ୍ତୁ ତାଙ୍କ ଆସନ କେହି ଟାଳି ପାରିବେ ନାହିଁ ।

ଆର୍ତ୍ତବଲ୍ଲଭଙ୍କ ସାହିତ୍ୟ-ବିଚାର ପ୍ରଶ୍ନର ସମ୍ମୁଖୀନ ହୋଇପାରେ, ଉଦ୍ଦେଶ୍ୟ କିନ୍ତୁ ପ୍ରଶ୍ନାତୀତ । ଏବେ ବି ଓଡ଼ିଆଏ ତାଙ୍କ 'ମୁଖବନ୍ଧ' ପଢ଼ନ୍ତି; ହାତରେ ମୁଖବନ୍ଧ, ମନରେ ଶ୍ରଦ୍ଧା ଓ ବିଶ୍ୱାସ । ତାଙ୍କର ଅନ୍ୟ ଏକ ସଦ୍‌ଗୁଣ ଥିଲା, ତାହା ହେଉଛି ଅଖଣ୍ଡ ଆତ୍ମପ୍ରତ୍ୟୟ । ସେ ଯାହା କହନ୍ତି, ସେ ବିଷୟରେ ସେ ନିସନ୍ଦିଗ୍ଧ ଓ ନିଶ୍ଚିନ୍ତ ବୋଲି

ଘୋଷଣା କରନ୍ତି । ସମାଲୋଚନାକୁ ଏତେ ଦମ୍ଭୋକ୍ତି ସାଜେ ନାହିଁ ବୋଧହୁଏ । ସେଥିପାଇଁ ସେ ପ୍ରାୟ ସତ୍ୟର ସମ୍ମୁଖୀନ ହୋଇପାରନ୍ତିନାହିଁ । ଆତ୍ମବିଶ୍ୱାସରେ ଭରପୂର ଥାଏ ତାଙ୍କ ଭାଷା ଓ ପ୍ରକାଶଭଙ୍ଗୀ । ବୋଧଶକ୍ତି ନାହିଁ ବୋଲି ନୁହେଁ, ସେ ବୁଝି ଅବୁଝା ରହନ୍ତି ପ୍ରାୟ । ସେ ଜାଣନ୍ତି- ଗୁରୁଭକ୍ତି ଗୀତାର ପ୍ରଣେତା ଅଚ୍ୟୁତାନନ୍ଦ ଅଷ୍ଟାଦଶ ଶତାବ୍ଦୀର, ଅଥଚ ଲେଖାରେ ମାନନ୍ତିନାହିଁ । ସେ ବୁଝନ୍ତି, ଚୈତନ୍ୟ ଦାସ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଖଡ଼ିଆଳ ରାଜା ପ୍ରତାପରୁଦ୍ର ଦେବଙ୍କ ସମୟର ବଡ଼ମୂଳ ଗାଁର ଅଧିବାସୀ, ଅଥଚ କଥାଟାକୁ 'ବିଷ୍ଣୁଗର୍ଭପୁରାଣ' ମୁଖବନ୍ଧରେ ବାଆଁରେଇ ଦେଇଛନ୍ତି । ପରେ ଭାବିବେ । ଗଦ୍ୟ ଶୈଳୀଟି ସ୍ୱଚ୍ଛ ଓ ସୁବୋଧ । ପଦବିନ୍ୟାସ ବ୍ୟାକରଣ- ନୀତି-ନିୟମନିଷ୍ଠ । ଉପସ୍ଥାପନା ଦୀର୍ଘ ଉଦ୍ଧୃତି ବହୁଳ । ଯତ୍ରତତ୍ର ଅଛି ପୁଣି ପ୍ରସଙ୍ଗୋଚିତ ସଂସ୍କୃତ ଶ୍ଳୋକ, ଅନୁବାଦ ବିନା । ସଂସ୍କୃତ ଭାଷାରେ ସାମାନ୍ୟ ପ୍ରବେଶ ନ ଥିଲେ ପାଠକ ପକ୍ଷେ ବିଷୟ ଅବଧାରଣା ସହଜସାଧ ବ୍ୟାପାର ନୁହେଁ । ତତ୍‌ସମ ଶବ୍ଦ ବ୍ୟବହୃତ ପ୍ରାୟ ।  ଆବେଗ ଓ ଅନୁଭବ ଅଛି କିନ୍ତୁ ଆର୍ତ୍ତବଲ୍ଲଭଙ୍କ ଗଦ୍ୟରେ । ଓଡ଼ିଆ ଭାଷା ଓ ସାହିତ୍ୟପ୍ରତି ତାଙ୍କ ଗଭୀର ମମତ୍ୱବୋଧ ଅନୁରଣିତ ରହିଛି ସର୍ବତ୍ର । ଓଡ଼ିଆ ଭାଷାଠାରୁ ଭଲ ଭାଷା କାହିଁ? ସଂସ୍କୃତ ଓ ଓଡ଼ିଆରୁ ଗୋଟିଏ ବାଛିବାକୁ ହେଲେ, ସେ ଓଡ଼ିଆକୁ ବାଛନ୍ତେ ।  ତାଙ୍କ ସମୟରେ ସ୍ୱଭାଷା, ସ୍ୱଦେଶ ଓ ସ୍ୱସାହିତ୍ୟବତ୍ସଳ ଲୋକେ ଓଡ଼ିଆ ଭାଷାକୁ କିପରି ଭଲ ପାଉଥିଲେ, ତାହା ଏବେ ବୁଝିହେବନାହିଁ ।ଭାଷା ଓ ସାହିତ୍ୟ ଯେମିତି କଅଁଳା ବାଛୁରୀ, ମା ଜଗିଛି; ଯେଉଁଠୁ ସାମାନ୍ୟତମ ଆଘାତର ଆଶଙ୍କାର ସଙ୍କେତ ଉପୁଜିବ, ତାହାକୁ ସେ ପ୍ରତ୍ୟାଘାତ ନ କରି ଛାଡ଼ିବେ ନାହିଁ । ତେଣୁ ଯିଏ ଯେଉଁଠି ପ୍ରାଚୀନ ଓଡ଼ିଆ ସାହିତ୍ୟ ସମ୍ପର୍କରେ ସାମାନ୍ୟତମ ଅଶାଳୀନ କି ଅମର୍ଯ୍ୟାଦାକର କଥା କହିଥିବେ, ତାଙ୍କୁ ଆର୍ତ୍ତବଲ୍ଲଭ ଆକ୍ରମଣ କରିବେ ହିଁ କରିବେ । ମନମୋହନ ଚକ୍ରବର୍ତ୍ତୀ ଓ ବିଜୟଚନ୍ଦ୍ର ମଜୁମଦାରଙ୍କୁ ସେ କ୍ଷମା କରିନାହାନ୍ତି ଆମରଣ । ମନମୋହନ ତ ଅନନ୍ତ, ଯଶୋବନ୍ତ ଓ ଅଚ୍ୟୁତ ଆଦି ପ୍ରାଚୀନ ବୈଷ୍ଣବ କବିଙ୍କ ଲେଖାରେ କବିତ୍ୱ ବିଶେଷ ଦେଖିନାହାନ୍ତି; ବିଜୟଚନ୍ଦ୍ର ଭଂଜସାହିତ୍ୟରେ ଦେଖିନାହାନ୍ତି ବ୍ୟାକରଣଜ୍ଞାନ ଓ ଶ୍ଳୀଳତାବୋଧ । କ'ଣ କରାଯାଏ ? ଶେଷକୁ ଅଛି ତାଙ୍କ ଧର୍ମପ୍ରାଣତା । ଧର୍ମ ଏକା ସିନା ମହତପଣିଆ । ସାହିତ୍ୟରେ ବି ଆଉସବୁ କଥା ଅଡେଇ ଦିନିଆ? ଆର୍ତ୍ତବଲ୍ଲଭଙ୍କ ଉତ୍ତର- ହଁ । ସେ ବୁଝିବେ ନାହିଁ କେବେ, ଏତେ ଶ୍ରମ ଓ ସମୟ ଦେଇ ସେ ଯେଉଁସବୁ ଧର୍ମାତ୍ମକ ବହିର ସଂପାଦନା କରିଛନ୍ତି, ତନ୍ମଧ୍ୟରୁ ଅଧିକାଂଶ ପ୍ରାୟ ସଂରକ୍ଷଣ ଅଯୋଗ୍ୟ, କବିତ୍ୱ ସଂସ୍ପର୍ଶଶୂନ୍ୟ ହଯବରଲ; ସାହିତ୍ୟ ଆସନ ପାଇଁ ଅଭାଜନ ।

ଏସବୁ ଦୁର୍ବଳତା ସତ୍ତ୍ୱେ ସର୍ବାନ୍ତଃକରଣରେ ସ୍ୱୀକାର କରିବାକୁ ହୁଏ ଯେ, ଯିଏ ଯେତେବେଳେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବେ, ସିଏ ସେତେବେଳେ ଅବଶ୍ୟ ଆର୍ତ୍ତବଲ୍ଲଭଙ୍କର ଏହି ମୁଖବନ୍ଧ ସମଷ୍ଟିକୁ ପଢିବେ ହିଁ ପଢିବେ । ଗତ୍ୟନ୍ତରହୀନ ଭାବରେ ପଢିବେ । ଏପର୍ଯ୍ୟନ୍ତ ଯେତେ ଓଡ଼ିଆ ସାହିତ୍ୟର ଇତିହାସ ଲେଖାଯାଇଛି ସେଠାରେ ସର୍ବତ୍ର ଆର୍ତ୍ତବଲ୍ଲଭଙ୍କ ମତ ଓ ମନ୍ତବ୍ୟ ଉପସ୍ଥିତ ଅଛନ୍ତି । ଏପରିକି ସେ ଯେଉଁ ଯେଉଁ ଗ୍ରନ୍ଥର ଯେଉଁ ଯେଉଁ ଅଂଶରେ ସୌନ୍ଦର୍ଯ୍ୟମାଧୁର୍ଯ୍ୟ ଲକ୍ଷ୍ୟ କରିଥିଲେ, ଅନେକେ ସେହିସେହି ଅଂଶ ଉଦ୍ଧାରକରି ସାହିତ୍ୟବୋଧର ପରିଚୟ ଦେଇଛନ୍ତି । ଅନେକଙ୍କ ପାଇଁ ତ ସେ ବ୍ରହ୍ମା, ଯାହା ଯେଉଁଠି ଲେଖିଛନ୍ତି ସବୁ ଅକାଟ୍ୟ ବେଦ ।' ବଂଶୀ ବିଳାସ'କୁ ସେ 'ବଂଶୀ ବିଳାପ' କହିଲେ ମାନିବାକୁ ହେବ । ତାଙ୍କୁ ପୂରା ମାନିବାକୁ କେହି କହିବେ

ନାହିଁ । ତାଙ୍କୁ ପଢନ୍ତୁ, ପରିକ୍ରମନ୍ତୁ ଓ ଅତିକ୍ରମନ୍ତୁ; ତେବେ ଯାଇଁ ଓଡ଼ିଆଙ୍କର ସଦ୍‌ଗତି । ମୁଖବନ୍ଧଗୁଡ଼ିକ ଆର୍ତ୍ତବଲ୍ଲଭଙ୍କ ଚିନ୍ତା, ବିଶ୍ୱାସ, ସାହିତ୍ୟବୋଧ, ମୂଲ୍ୟବୋଧର ଜୀବନ୍ତ ବିଗ୍ରହ । ସେଥିରେ ଆମେ ଗୋଟିଏ ସମୟର ଧର୍ମପ୍ରାଣ, ଓଡ଼ିଆପ୍ରାଣ, ସ୍ୱଭାଷା, ସ୍ୱଜନବତ୍ସଳ, ଭକ୍ତିବିଶ୍ୱାସ ନିବଦ୍ଧଚିତ୍ତ, ସଂଗୀତ-ସାହିତ୍ୟ-ମର୍ମଜ୍ଞ, ସଂସ୍କୃତ-ଭାଷା ସାହିତ୍ୟ-ଅଭିଜ୍ଞ, ଇତିହାସ ପ୍ରତି ସାନୁପୁଙ୍ଖ ସାବଧାନ ଓ ଐତିହ୍ୟନିର୍ଭର ସଂସ୍କୃତି-ଅନୁରାଗୀ ଜଣେ ବିଦ୍ୱାନପୁରୁଷଙ୍କୁ ପ୍ରତ୍ୟକ୍ଷ କରିଥାଉ । ତାଙ୍କୁ ପ୍ରଣାମ ।



ଆର୍ତ୍ତବଲ୍ଲଭ ମହାନ୍ତି (୧୮୮୭-୧୯୬୩)
ବହୁଭାଷାଭିଜ୍ଞ, ବହୁପାଠୀ, ଶିକ୍ଷକ-ଗବେଷକ,
କ୍ରୀଡ଼ାବିତ୍, ସାହିତ୍ୟ-ସଂଗଠକ ଓ ସମାଜସେବୀ ।
ଓଡ଼ିଶାରେ ସ୍ନାତକୋତ୍ତର ଓଡ଼ିଆ ଶିକ୍ଷାଦାନ
ବ୍ୟବସ୍ଥା (୧୯୪୬)ର ମୁଖ୍ୟ ସ୍ଥପତି । ପ୍ରାଚୀନ ଓ
ମଧ୍ୟକାଳୀନ ସାହିତ୍ୟଗ୍ରନ୍ଥ ସଂଗ୍ରହ, ଶୁଦ୍ଧପାଠନିର୍ଣ୍ଣୟ
ଓ ସମ୍ପାଦନା କ୍ଷେତ୍ରରେ ମାର୍ଗଦର୍ଶକ, ଅନ୍ତର୍ଦୃଷ୍ଟିସମ୍ପନ୍ନ
ଚର୍ଚ୍ଚାକାର । କୁହାଯାଏ-ପୋଥିପୁରୁଷ ।

ଏହି ଗ୍ରନ୍ଥ ତାଙ୍କ ପୋଥି-ପରିଣୀତ ବ୍ୟକ୍ତିତ୍ୱର
ପ୍ରେମପତ୍ର । ଓଡ଼ିଆ ଅସ୍ମିତା ଅନୁଭବର ଅକ୍ଷରଚିତ୍ର ।




ରେଭେନ୍ସା ବିଶ୍ୱବିଦ୍ୟାଳୟ